**ଏହି ଲେଖକଙ୍କର ଅନ୍ୟ କେତେକ ବୈଜ୍ଞାନିକ ଉପନ୍ୟାସ ଓ ଗଳ୍ପ**

**ଉପନ୍ୟାସ**

ନିସ୍ତବ୍ଧ ଗୋଧୂଳି

ପୃଥିବୀ ବାହାରେ ମଣିଷ

ଚତୁର୍ଥ ପରିସର

**ଗଳ୍ପ**

ବିଜ୍ଞାନର ଶ୍ରେଷ୍ଠ ଆବିଷ୍କାର

ଯୁଗାନ୍ତକାରୀ ଆବିଷ୍କାର

ସମୟର ଫାଟ

# ନିଶ୍ଚଳ ପୃଥିବୀ

(ବୈଜ୍ଞାନିକ ଉପନ୍ୟାସ)

ଅଧ୍ୟାପକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ବିଦ୍ୟାପୁରୀ

NISCHALA PRUTHIVI
(The Earth at stand still)
A Scientific Imagination of Future of Mankind
By Prof. Dr. Gokulananda Mohapatra
Dolamundai, Cuttack - 9
Published by Vidyapuri, Cuttack 753002



ISBN 81-7411-023-2

ପ୍ରଥମ ପ୍ରକାଶ, ଜୁଲାଇ ୧୯୯୦
ଦ୍ୱିତୀୟ ମୁଦ୍ରଣ, ଜୁଲାଇ ୧୯୯୯

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି. ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ
ଶ୍ୟାମ ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୯୦.୦୦

# ମୁଖବନ୍ଧ

ବୈଜ୍ଞାନିକ ଉପନ୍ୟାସ ହେଉଛି ଆଗାମୀ ଯୁଗର ଏକ ବାସ୍ତବଚିତ୍ରର ପ୍ରତିଫଳନ । ଆଗାମୀ ଯୁଗରେ ଆମ ସମାଜ, ଆମ ପରିବାରର ରୂପରେଖ କ'ଣ ହେବ, ତାହାର ଏକ ବର୍ଣ୍ଣନା ଦିଆଯାଇଥାଏ ବୈଜ୍ଞାନିକ ଉପନ୍ୟାସରେ । ଆଗାମୀ ଯୁଗରେ ମଣିଷ ଅଜଣା ରୋଗରୁ ମରିଗଲେ ତା'ର ସଂସ୍କାର ନ କରି ରଖି ଦିଆଯିବ ଶୀତଳ ଭଣ୍ଡାରରେ, ତା'ର ରୋଗ ପାଇଁ ଔଷଧ ବାହାରିବା ପର୍ଯ୍ୟନ୍ତ । ଔଷଧ ବାହାରିଲେ, ତାକୁ ଶୀତଳ ଭଣ୍ଡାରରୁ ବାହାର କରି ଚିକିତ୍ସା କରି ଭଲ କରି ଦିଆଯିବ । ଏହା ଏକ କଳ୍ପନା ନୁହେଁ, ଆସନ୍ତାକାଲିର ସତ୍ୟ । ଏହିଭଳି ଏକ ବିଷୟବସ୍ତୁ ଉପରେ ରଚିତ ହୋଇଛି ଏହି ଉପନ୍ୟାସଟି । ସେହି ଲୋକ ଭଲ ହୋଇ ଯେତେବେଳେ ଘରକୁ ଫେରୁଛି, ତା'ର ସଂସାର, ତା'ର ସ୍ତ୍ରୀ, ଛୁଆପିଲାଙ୍କର କି ପରିବର୍ତ୍ତନ ହେଉଛି, ସେହି ପରିବର୍ତ୍ତିତ ସଂସାର ଭିତରେ ସେ କେମିତି ରହୁଛି ତା'ର ଏକ ବର୍ଣ୍ଣନା ଏହି ଉପନ୍ୟାସର ବିଷୟବସ୍ତୁ । ନିଜ ପିଲାକୁ ନିଜ ଗର୍ଭରେ ବଢ଼ାଇବାକୁ ନ ଦେଇ, ସରୋଗେଟ୍ ମା ଗର୍ଭରେ ବଢ଼ାଇ ନିଜ ପିଲାର ଜନ୍ମ ଦେବା ଧନିକ ଦେଶରେ ଆଧୁନିକ ସଭ୍ୟତାର ଏକ ଅଙ୍ଗ ହୋଇପଡ଼ିଛି । ସେହି ପରିସ୍ଥିତି ଆମ ସମାଜ ଉପରେ କ'ଣ ପ୍ରଭାବ ପକାଉଛି, ତହିଁର ଚିତ୍ରଣ ଏହି ଉପନ୍ୟାସରୁ ମିଳିପାରିବ । ଆଗାମୀ କାଲି ପାଇଁ ଏକ ନୂଆ ଆହ୍ୱାନ ହେଉଛି ମସ୍ତିଷ୍କ ପରିରୋପଣ । ହୃଦ୍‌ପିଣ୍ଡ ପରିରୋପଣ, କିଡ୍‌ନି ପରିରୋପଣ ପରି ଏହା ଏକ ପରିରୋପଣ ହେଲେହେଁ ଏହାଫଳରେ ମଣିଷ ଯେ ବଦଳିଯାଏ, ତାହା ହିଁ ହେଉଛି ଏହାର ଅନ୍ୟ ପରିରୋପଣଠାରୁ ବିଶେଷତ୍ୱ । ଏହି ଉପନ୍ୟାସରେ ମସ୍ତିଷ୍କ ପରିରୋପଣ ଯୋଗୁଁ ଯେଉଁ ସମସ୍ୟା ଦେଖାଦେଇଛି, ତାହା ଗୋଟିଏ ପରିବାରକୁ କେମିତି ଓଲଟପାଲଟ କରି ଦେଇଛି, ତହିଁର ଆଲୋଚନା ଓ ବର୍ଣ୍ଣନା ଏହି ଉପନ୍ୟାସର ଏକ ବିଶେଷତ୍ୱ ।

ଏହିଭଳି ଭାବରେ ବହୁ ନୂଆ ନୂଆ ଧାରଣା ଓ ତତ୍ତ୍ୱକୁ ନେଇ ଉପନ୍ୟାସଟି ପୁଷ୍ଟ ହୋଇଛି । ଉପନ୍ୟାସରେ ଆଜି ଯାହା କଳ୍ପନା କରାଯାଇଛି, ଆଗାମୀ ଯୁଗରେ ଯେ ତାହା ହେବ ନିରାଟ ସତ୍ୟ ଏହା ନିଃସନ୍ଦେହରେ କୁହାଯାଇପାରେ । ସେହି ଯୁଗ ପାଇଁ ଆମ ଲୋକମାନଙ୍କୁ ତାଲିମ କରି ରଖିବା ଏହି ଉପନ୍ୟାସର ଅନ୍ୟତମ ଲକ୍ଷ୍ୟ । ତା' ନ କଲେ ସେମାନେ ଆଗାମୀ ଯୁଗର ଯଥାର୍ଥ ନାଗରିକ ହୋଇ ରହି ପାରିବେନି । ସେମାନଙ୍କ ସଂସାର ଚୂରମାର ହୋଇ ଭାଙ୍ଗିଯିବ ।

ଏହିସବୁ ଦୃଷ୍ଟିରୁ ଦେଖିଲେ ବୈଜ୍ଞାନିକ ଉପନ୍ୟାସ ସାଧାରଣ ଗତାନୁଗତିକ ପ୍ରେମ-ବିରହ ଉପନ୍ୟାସଠାରୁ ଢେର୍ ଅଲଗା । ପ୍ରେମ-ବିରହ ଉପନ୍ୟାସ ପାଠକକୁ କେବଳ ଆନନ୍ଦ ଦେଇଥାଏ, କିନ୍ତୁ 'ନିଶ୍ଚଳ ପୃଥିବୀ' ସେମାନଙ୍କୁ ଆନନ୍ଦ ଦେବା ବ୍ୟତୀତ ସେମାନଙ୍କ ମସ୍ତିଷ୍କକୁ ଆଗକୁ ଆଗକୁ ଚିନ୍ତା କରିବା ପାଇଁ ଖୋରାକ ଯୋଗାଇବ ।

ଏହି ନୂଆ ଧରଣର ଉପନ୍ୟାସଟି ଆମ ପାଠକ-ପାଠିକାମାନଙ୍କଠାରେ କିପରି ଆଦର ପାଉଛି, ତାହା ଏହି ଉପନ୍ୟାସ ପଢ଼ି ସେମାନଙ୍କ ପ୍ରତିକ୍ରିୟାରୁ ହିଁ ଜଣାପଡ଼ିବ । ଉପନ୍ୟାସଟି ସେମାନଙ୍କଠାରେ ଲୋକପ୍ରିୟ ହେଉ, ଏହା ହିଁ କାମନା ।

**ଗୋକୁଳାନନ୍ଦ ମହାପାତ୍ର**

ଆମ୍ରପଲ୍ଲୀ
ଦୋଳମୁଣ୍ଡାଇ, କଟକ
ଶ୍ରୀଗୁଣ୍ଡିଚା
ତା ୨୪।୬।୧୯୯୦

# ଏକ

ଦେବକିଷନବାବୁଙ୍କ ବିରାଟ କେଡ଼ିଲାକ୍ ଗାଡ଼ି ଛୁଟି ଚାଲିଥାଏ ବୋମ୍ବେ ଅଭିମୁଖେ । ଶେଠ୍‌ଙ୍କ ଧଳା ମଖମଲି ଚୋଗାଚପ୍‌କନ୍ ପିନ୍ଧା ଡ୍ରାଇଭର ଗୋବିନ୍ଦ ଗାଡ଼ିର ଚାଳକ । ଦେବକିଷନବାବୁ ପଛସିଟ୍‌ରେ ବସିଥାନ୍ତି । ଗୋବିନ୍ଦକୁ ବରାଦ ହୋଇଥାଏ, ଗାଡ଼ି ଯିବ ବୋମ୍ବେର ମାଲବାର ହିଲ୍‌ସ ଉପରେ ଥିବା ଆଭିଜାତ୍ୟଭରା ଶିଳ୍ପପତି କ୍ଲବ୍‌କୁ । ସେଦିନ କ୍ଲବରେ ଥାଏ ଏକ ବିଶେଷ ଉତ୍ସବ । ମାର୍କିନ୍ ନୃତ୍ୟାଙ୍ଗନା ମିସ୍ ଡରୋଥି ମିଡଲଟନ୍ ନିଉୟର୍କରୁ ପ୍ରଧାନ ଅତିଥି ଭାବରେ ଆସିଥାନ୍ତି, ସେଦିନ ସନ୍ଧ୍ୟାରେ ନୃତ୍ୟ ପରିବେଷଣ କରିବା ପାଇଁ । ଦେବକିଷନବାବୁ ଶିଳ୍ପପତି କ୍ଲବ୍‌ର ଜଣେ ବିଶିଷ୍ଟ ସଭ୍ୟ ହେଲେହେଁ ଏହିସବୁ ଉତ୍ସବ ଛଡ଼ା ଅନ୍ୟଦିନମାନଙ୍କରେ ସେ ପ୍ରାୟ ଆସନ୍ତିନି । ଶିଳ୍ପପତି କ୍ଲବ୍‌ର ସେ ଜଣେ ଯୁବ କର୍ମକର୍ତ୍ତା ହୋଇଥିବାରୁ ଏହିଭଳି ଉତ୍ସବ ଦିନରେ ନ ଆସିଲେ ସଭ୍ୟମାନେ କାଳେ ଖରାପ ଭାବିବେ, ସେହି ଭୟରେ ସେ ନ ଆସି ରହି ପାରନ୍ତିନି । କର୍ମକର୍ତ୍ତା ପାଇଁ ସେ ସର୍ବଦା ପରାଙ୍‌ମୁଖ ଥିଲେହେଁ ଯୁବକ ବୋଲି ତାଙ୍କୁ ଜୋର ଜବରଦସ୍ତି ତାଙ୍କ ମତ ବିରୋଧରେ ତାଙ୍କୁ କର୍ମକର୍ତ୍ତା ଭାବରେ ରଖାଯାଇଛି ।

ତାଙ୍କ ଗାଡ଼ି ହାଇୱେରେ ତୀର ବେଗରେ ଛୁଟି ଚାଲିଥାଏ । ହଠାତ୍ ରାସ୍ତାକଡ଼ରେ ଆଉ ଏକ ଗାଡ଼ି ଠିଆ ହୋଇଥିବାର ତାଙ୍କର ଦୃଷ୍ଟିଗୋଚର ହେଲା । ଜନୈକା ଯୁବତୀ ଗାଡ଼ିର ଇଞ୍ଜିନ୍ ଖୋଲି ସଜାଡ଼ିବାରେ ବ୍ୟସ୍ତ । ଯୁବତୀଟି ଅତୀବ ସୁନ୍ଦରୀ, ତନୁପାତେଳୀ, ଉଚ୍ଚଶିକ୍ଷିତା ଓ ଧନୀଘରର ଲଳନା ଭଳି ଜଣାପଡୁ ଥାଏ । ନୀଳବର୍ଣ୍ଣର ଏକ ମୂଲ୍ୟବାନ ସୁନ୍ଦର ରେଶମୀଶାଢ଼ି ପରିହିତା ସେ । ଏକାଟିଆ ରାସ୍ତାରେ ଜଣେ ସ୍ତ୍ରୀ ଲୋକ ନିଜେ ନିଜ ଗାଡ଼ିକୁ ସଜାଡ଼ିବା ଦେଖି ସେ ସ୍ତମ୍ଭିତ ହୋଇଗଲେ । ଗାଡ଼ି ଖରାପ ହେଲେ ଜଣେ ସ୍ତ୍ରୀ ଲୋକ ନିଜ ଗାଡ଼ି ସଜାଡ଼ିବା ତାଙ୍କୁ କେମିତି ନୂଆ ନୂଆ ବୋଧ ହେଲା । ମନେ ମନେ ଭାବିଲେ, "ଆମ ଦେଶର ସ୍ତ୍ରୀ ଲୋକମାନେ କ'ଣ ଏତେ ଆଧୁନିକା ହେଲେଣି ଯେ ନିଜ ଗାଡ଼ି ନିଜେ ସଜାଡ଼ି ପାରୁଛନ୍ତି ? ଯୁବତୀଟି ନିଶ୍ଚୟ କୌଣସି ଅସୁବିଧାରେ ପଡ଼ିଯାଇଛି ଭାବି ଦେବବାବୁ ନିଜ ଗାଡ଼ିକୁ ଅଟକାଇଲେ । ଗାଡ଼ିରୁ ଓହ୍ଲାଇ ଯୁବତୀଟି ପାଖକୁ ଯାଇ ପଚାରିଲେ, "ଗାଡ଼ିଟି ଖରାପ ହୋଇଯାଇଛି ବୋଧେ ?" ଆପଣ କ'ଣ ଏମିତି ଏକା, ଆପଣଙ୍କ ସହିତ କୌଣସି ଡ୍ରାଇଭର ନାହିଁ ?

"ନାଇଁ ଆଜ୍ଞା !" ଇଞ୍ଜିନ୍ ସଜାଡ଼ିବା ଛାଡ଼ି ଦେବବାବୁଙ୍କୁ ଅନାଇ କହିଲେ, "ମୁଁ ନିଜେ ଗାଡ଼ି ଚଳାଇ ଆସୁଥିଲି, ଇଞ୍ଜିନ୍‌ର ଇଗ୍ନିସନ୍ ବକ୍ସରେ କ'ଣ ଟିକିଏ ଗଣ୍ଡଗୋଳ ହୋଇଯାଇଛି ବୋଲି ଇଞ୍ଜିନ୍ ଷ୍ଟାର୍ଟ ଧରୁନି । ବାକ୍ସଟାକୁ ମୁଁ ଖୋଲିବାକୁ ଚେଷ୍ଟା କରୁଛି । ଜାମ୍ ହୋଇ ଯାଇଥିବାରୁ ଖୋଲୁନି ବୋଧେ ।"

"ଆପଣ ଯଦି କିଛି ମନେ ନ କରନ୍ତି, ତେବେ ମୋ ଡ୍ରାଇଭର ଆପଣଙ୍କୁ ସାହାଯ୍ୟ କରିପାରେ କି ?"

"ବେଶିକିଛି ସାହାଯ୍ୟ ଦରକାର ନାହିଁ । ଏଇ ଇଗ୍ନିସନ୍ ବାକ୍ସଟିକୁ ଖୋଲିଦେଲେ ହୋଇଗଲା ।"

"ଠିକ୍ ଅଛି, ଆପଣ ସେଠୁ ଉଠି ଆସନ୍ତୁ, ମୋ ଡ୍ରାଇଭର ସବୁ ଠିକ୍ କରିଦେବ । ସେ ଜଣେ ଦକ୍ଷ ମେକାନିକ୍ । ଇଗ୍ନିସନ୍ ବାକ୍ସରେ ଗଣ୍ଡଗୋଳ ଅଛି ବୋଲି ଆପଣ କେମିତି ଜାଣିଲେ ?"

"ମୁଁ ସବୁ ଅଂଶ ପରୀକ୍ଷା କରି ଦେଖି ସାରିଲିଣି ଆଜ୍ଞା । ଗଣ୍ଡଗୋଳଟା ଏହି ବାକ୍ସ ଛଡ଼ା ଅନ୍ୟ କେଉଁଠି ହୋଇ ନ ପାରେ, ଏହା ମୋର ଦୃଢ଼ ଧାରଣା ।"

ଦେବବାବୁ ଡ୍ରାଇଭରକୁ ଆଦେଶ ଦେଲେ ସେହି ବାକ୍ସଟି ଖୋଲି ସଜାଡ଼ିବା ପାଇଁ । ଡ୍ରାଇଭର ବାକ୍ସଟି ଖୋଲି ଦେଖେତ ମେଡେମ୍‌ଙ୍କ ସନ୍ଦେହ ପୂରାପୂରି ଠିକ୍ । ସଙ୍ଗେ ସଙ୍ଗେ ଠିକ୍ କରିଦେଲାରୁ ଗାଡ଼ି ଷ୍ଟାର୍ଟ ଧରିଲା ।

"ଆପଣଙ୍କ ହାତ ମଇଳା ହୋଇଯାଇଛି, ମିସ୍– ।"

"ମୋ ନାଁ ଗୀତା ଗୋଏଙ୍କା । ଆପଣ ମୋତେ ଗୀତା ବୋଲି ଡାକି ପାରନ୍ତି ।"

"ହଁ ମିସ୍ ଗୋଏଙ୍କା । ଆପଣ ଯଦି କିଛି ମନେ ନ କରନ୍ତି, ମୋ ଗାଡ଼ିରେ ପାଣି ଅଛି । ଆପଣଙ୍କ ମଇଳା ହାତଟାକୁ ସେଥିରେ ଧୋଇ ପାରନ୍ତି ।"

ଏତକ କହି ଦେବବାବୁ ନିଜ ଗାଡ଼ିରୁ ପାଣି ଆଣି ଗୀତାଦେବୀଙ୍କ ହାତ ଧୋଇଦେବା ପାଇଁ ପାଣି ଧରି ଠିଆ ହେଲେ ।

ଦେବବାବୁ ପାଣି ଢାଳିବା ପାଇଁ ଉଦ୍ୟତ ହେଲାବେଳକୁ ଗୀତାଦେବୀ ତାଙ୍କ ମଇଳାହାତକୁ ଦେଖାଇଦେଲେ । ଗୀତାଦେବୀଙ୍କ ହାତକୁ ପାଣି ଢାଳୁ ଢାଳୁ ଦେବବାବୁ ଅନ୍ୟମନସ୍କ ହୋଇ ପଡୁଥାନ୍ତି । ପାଣି ଯେ ଗୀତାଦେବୀଙ୍କ ହାତରେ ନ ପଡ଼ି ତଳେ ପଡ଼ୁଯାଉଛି, ସେଆଡ଼କୁ ତାଙ୍କର ଖିଆଲ ନାହିଁ ।

ଗୀତାଦେବୀ ହସି ହସି କହିଲେ, ''ଆଜ୍ଞା, ମୋ ହାତ କେଉଁଠି ? ଆପଣ ପାଣି ଢାଳୁଛନ୍ତି କେଉଁଠି ?''

ଦେବବାବୁ ହଠାତ୍ ପ୍ରକୃତିସ୍ଥ ହୋଇପଡ଼ିଲେ । ''ଓଃ, ନା, ନା, ମୋର ଭୁଲ ହୋଇଗଲା ମିସ୍ ଗୋଏଙ୍କା । ମୋତେ କ୍ଷମା କରିବେ । ଆପଣଙ୍କ ଶାଢ଼ି ଖରାପ ହୋଇଯାଇ ନାହିଁ ତ ?''

''ନାଇଁ ଆଜ୍ଞା, ଖରାପ ହୋଇନି । ଆଉ ଟିକକେ ଖରାପ ହୋଇ ଯାଇଥାନ୍ତା ।''

''ମୁଁ ସେଥିପାଇଁ ଅତ୍ୟନ୍ତ ଦୁଃଖିତ ମିସ୍ ଗୋଏଙ୍କା ?''

''ନାଇଁ, ନାଇଁ କିଛି ନାହିଁ । ଏଭଳି ଭୁଲ ବେଳେବେଳେ ହୋଇଯାଏ ।''

ଗୀତାଦେବୀ ଜାଣି ସାରିଲେଣି, ଦେବବାବୁଙ୍କ ଅନ୍ୟମନସ୍କତା ଏଥିପାଇଁ ଦାୟୀ । ଦେବବାବୁ ଅନ୍ୟମନସ୍କ ହେବାର କାରଣ କ'ଣ ତାଙ୍କୁ ଅଜଣା ରହିଲାନି ।

ପାଣି ଢାଳିଲାବେଳେ ଦେବବାବୁ ଗୀତାଦେବୀଙ୍କ ମଇଳାହାତକୁ ନ ଅନାଇ ତାଙ୍କର ସୁନ୍ଦର ମୁଖମଣ୍ଡଳକୁ ଅନାଇ ରହିଥାନ୍ତି । ମନେ ମନେ ଭାବୁଥାନ୍ତି, ''ଆଃ, ଏଡ଼େ ସୁନ୍ଦରୀ ଯୁବତୀ କ'ଣ ଦୁନିଆରେ ଅଛନ୍ତି ? କି ସୁନ୍ଦର ରୂପ ସତେ ? କି ଆଖି, କି ନାକ, କି ଦନ୍ତପନ୍ତି, କି ଗ୍ରୀବା, ସବୁ ସୌନ୍ଦର୍ଯ୍ୟ ଭଗବାନ ଏକାଠି କରିଛନ୍ତି ଏହି ଯୁବତୀଟି ଠାରେ । ନାରୀସୁଲଭ ସବୁ ସୌନ୍ଦର୍ଯ୍ୟଯାକ କ'ଣ ଏଇଠି ?

ହାତଧୋଇ ସାରିଲାବେଳକୁ ଗୀତାଦେବୀ କେଉଁଥିରେ ହାତ ପୋଛିବେ, ଭାବିପାରୁ ନ ଥିଲେ । ନିଜ ପିନ୍ଧିଥିବା ମୂଲ୍ୟବାନ ରେଶମ ଶାଢ଼ିରେ ତ ପୋଛି ହେବନି, ସେ କ'ଣ କରିବେ, ହାତକୁ ହଲାଇ ଏପଟସେପଟ ଅନାଉଥାନ୍ତି, ଦେବବାବୁ ନିଜ ପକେଟରୁ ରୁମାଲ କାଢ଼ି ତାଙ୍କ ହାତକୁ ବଢ଼ାଇଦେଲେ ।

ଗୀତାଦେବୀ ଈଷତ୍ ହସି କହିଲେ, ''ଅଶେଷ ଧନ୍ୟବାଦ ଆଜ୍ଞା । ଆପଣଙ୍କ ଏହି ଉପକାର ଭୁଲିବାର ନୁହେଁ ।''

ଏହି ସମୟରେ ଡ୍ରାଇଭର ଆସି କହିଲା, ''ମେଡ଼େମ୍, ଗାଡ଼ି ଠିକ୍ ହୋଇଗଲାଣି । ଆପଣ ବର୍ତ୍ତମାନ ଚଳାଇ ଯାଇପାରନ୍ତି ।''

''ଅଶେଷ ଧନ୍ୟବାଦ ଆପଣମାନଙ୍କୁ । ଆପଣମାନେ ମୋତେ କେତେବଡ଼ ଅସୁବିଧାରୁ ରକ୍ଷା କଲେ ଭୁଲି ପାରିବିନି ମିଷ୍ଟର— ।''

''କ୍ଷମା କରିବେ, ମୋ ନାଁ ହେଉଛି ଦେବକିଷନ ଅଗ୍ରୱାଲ, ମୋତେ ଦେବ ବୋଲି ଡାକିଲେ ଚଳିବ ।''

"ଅଶେଷ ଧନ୍ୟବାଦ, ଦେବବାବୁ ।" ମୃଗାକ୍ଷୀ ଦୁଇଟିକୁ ନଚାଇ ଉତ୍ତର ଦେଲେ ଗୀତାଦେବୀ । ଆପଣ କ'ଣ ବୋମ୍ବେ ଯାଉଛନ୍ତି ?

"ହଁ, ମୁଁ ବର୍ତ୍ତମାନ ବୋମ୍ବେର ଶିଳ୍ପପତି କ୍ଲବ୍‌କୁ ଯାଉଛି । ଆଜି ସେଠାରେ ଗୋଟିଏ ଫଙ୍କ୍‌ସନ ଅଛି । ଆପଣ – ?"

"ମୁଁ ବାନ୍ଦରା ଯାଉଛି । ସେଠାରେ ମୋର ଜଣେ ସଙ୍ଗିନୀ ଅଛନ୍ତି । ତାଙ୍କୁ ଅନେକଦିନ ହେଲା ଦେଖିନି ବୋଲି ଦେଖିବାକୁ ଯାଉଛି ।"

"ଆଜି ମୋର ବଡ଼ ଭାଗ୍ୟ, ଆପଣଙ୍କ ଭଳି ଜଣେ ମହିୟସୀ ଯୁବତୀଙ୍କ ସହ ସାକ୍ଷାତ ହୋଇଗଲା । ହେଉ, ଆଉ କେବେ ଦେଖାହେବ ।"

ଏତକ କହି ଦେବବାବୁ ବିଦାୟକାଳୀନ ନମସ୍କାର ଜଣାଇ କାର୍‌ରେ ବସିଲେ । ଡ୍ରାଇଭର ଗାଡ଼ିରେ ଷ୍ଟାର୍ଟ ଦେଲା । ସେତେବେଳ ପର୍ଯ୍ୟନ୍ତ ଦେବବାବୁ ଏକଲୟରେ ଗୀତାଦେବୀଙ୍କ ଆଡ଼କୁ ଅନାଇ ରହିଥାନ୍ତି । ମନ ଭିତରେ ଗୀତାଦେବୀଙ୍କ ଅପରୂପ ସୌନ୍ଦର୍ଯ୍ୟ ନେଇ ଅସୁମାରୀ ପ୍ରଶଂସା । ମନ ଭିତରେ ପ୍ରଶ୍ନ ପରେ ପ୍ରଶ୍ନ । ଏହି ତରୁଣୀଟି କିଏ ? ମଣିଷ କେବେ କ'ଣ ଏତେ ସୌନ୍ଦର୍ଯ୍ୟ ନେଇ ଏହି ଦୁନିଆରେ ଜନ୍ମ ହୋଇପାରେ ? ବିଧାତା କ'ଣ ଦୁନିଆଯାକର ସବୁ ନାରୀ ସୌନ୍ଦର୍ଯ୍ୟ ଢାଳି ଦେଇଛନ୍ତି, ଯାଙ୍କରିଠାରେ । ହରିଣୀ ବିଲୋଳ ନୟନ, ମୁକ୍ତାନିନ୍ଦୀ ଦନ୍ତପନ୍ତି, ଲଜ୍ଜାରୁଣ ଆରକ୍ତ କପୋଳ, ମୃଣାଳନିନ୍ଦୀ ବାହୁଯୁଗଳ, ଆଜାନୁଲମ୍ବିତ କାଳିନ୍ଦୀକୃଷ୍ଣ କେଶଗୁଚ୍ଛ, ଆଉ ବର୍ଣ୍ଣନା ପାଇଁ ଭାଷା ଖୋଜି ପାଇଲେନି ଦେବବାବୁ । କ'ଣ ନାହିଁ ଯୁବତୀଟିଠାରେ । ତାଙ୍କର ମନ ହେଉଥାଏ, ତରୁଣୀଟିକୁ ଛାଡ଼ି ନ ଯିବାକୁ । ଭାବୁଥାନ୍ତି, ତାଙ୍କ ଗାଡ଼ିଟା ଖରାପ ହୋଇଯାଆନ୍ତା କି, ସେ ଅଟକିଯାଇ ତରୁଣୀଟି ସହିତ କଥାବାର୍ତ୍ତା କରିବା ପାଇଁ ଆଉକିଛି ସମୟ ପାଆନ୍ତେ । ନିଜର ଏଭଳି ଦୁର୍ବଳତା କାଳେ ଡ୍ରାଇଭର ଆଖିରେ ପଡ଼ିଯିବ, ସେ ଶୀଘ୍ର ଗାଡ଼ି ଚଳାଇବା ପାଇଁ ଡ୍ରାଇଭରକୁ ଆଦେଶ ଦେଲେ । ସେତେବେଳ ପର୍ଯ୍ୟନ୍ତ ତରୁଣୀଟି ଗାଡ଼ି ଭିତରକୁ ପଶି ନ ଥାଏ । କିଛିଦୂର ଗଲାପରେ ସେ ଥରକୁଥର ପଛକୁ ଅନାଉଥାନ୍ତି, ତରୁଣୀଟି ଗାଡ଼ି ଚଳାଇ ଆସୁଛି କି କଅଣ ଦେଖିବା ପାଇଁ । ଯେତେବେଳେ ଦେଖିଲେ ଯୁବତୀଟିର ଗାଡ଼ି ତାଙ୍କ ଗାଡ଼ି ପଛେ ପଛେ ଆସୁଛି, ସେ ଭାରି ଖୁସୀ ହୋଇଗଲେ । କିଛିବାଟ ଆଗପଛ ହୋଇଯିବା ପରେ ବାନ୍ଦରା ଷ୍ଟେସନଛକରୁ ଗାଡ଼ିଟି ହିଲ୍ ରୋଡ଼ଦେଇ ପଶ୍ଚିମ ବାନ୍ଦରା ଅଭିମୁଖେ ଭାଙ୍ଗିଗଲା । ତାଙ୍କ ଗାଡ଼ି ମାଲବାର ହିଲ୍‌ସ ଅଭିମୁଖେ ଛୁଟି ଚାଲିଲା ସେହି ବିବେକାନନ୍ଦ ରୋଡ଼ରେ ।

ଦେବବାବୁ ଯାଉଁ ଯାଉଁ ଡ୍ରାଇଭରକୁ ପଚାରିଲେ, "ସେହି ମେଡେମ୍‌ଜଣକ ଗାଡ଼ିକୁ ଯେମିତି ଭାବରେ ସଜାଡୁଥିଲେ, ତାହା କ'ଣ ଠିକ୍ ଥିଲା ଗୋବିନ୍ଦ ?"

"ହଁ, ସାର୍, ମେଡେମ୍‌ଙ୍କୁ ଗାଡ଼ିସଜଡ଼ା ଜଣାଅଛି । ତା ନ ହୋଇଥିଲେ ଗାଡ଼ିର କେଉଁ ଅଂଶରେ ଗଣ୍ଡଗୋଳ ଅଛି, ସେ ସଙ୍ଗେ ସଙ୍ଗେ ଧରି ପାରିଥାନ୍ତେ କେମିତି ? ଏହା ନିଶ୍ଚିତ ମେଡେମ୍‌ଙ୍କୁ ଇଞ୍ଜିନ୍ ସମ୍ପର୍କରେ ଟିକିନିଖି ସବୁ ଜଣା । ମୁଁ ଏମିତି ମେଡେମ୍ କେଉଁଠି ଦେଖିନି ସାର୍ ।"

ଶିଳ୍ପପତି କ୍ଲବ୍‌ରେ ଦେବବାବୁ ପହଞ୍ଚିଲାବେଳକୁ ବଡ଼ ବଡ଼ ଶିଳ୍ପପତିମାନେ ପହଞ୍ଚିଗଲେଣି । ସେ ଶିଳ୍ପପତି କ୍ଲବ୍‌ର ଭାଇସ୍ ପ୍ରେସିଡେଣ୍ଟ ହୋଇଥିବାରୁ ତାଙ୍କୁ ଯୁବ ଶିଳ୍ପପତିମାନେ ପାଛୋଟି ନେଲେ । ସେତେବେଳକୁ କ୍ଲବ୍‌ର ପ୍ରେସିଡେଣ୍ଟ ଶେଠ୍ ରାମଦାସ ଗୋଏଙ୍କା ଆସି ସାରିଲେଣି । ସେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତାରେ ଲାଗି ଯାଇଥାନ୍ତି । ଦେବବାବୁ ଯାଇ ସେଠି ପହଞ୍ଚିଲାବେଳକୁ, ଶେଠ୍ କହିଲେ, "ଆସ, ଆସ, ଦେବକିଷନ । ମୁଁ ତ ତୁମକୁ କିଛି ସମୟ ତଳେ ଖୋଜୁଥିଲି । ବସ, ବସ, ତମ ସହିତ ଢେର୍ କଥାବାର୍ତ୍ତା ଅଛି ।

ଦେବବାବୁ ସେଠି ବସିଛନ୍ତି କି ନାହିଁ, କେତେ ସାଙ୍ଗସାଥି ଯୁବ ଶିଳ୍ପପତି ଆସି ସେଠି ଜୁଟିଗଲେ । ଯେଉଁ ମାର୍କିନ୍ ନର୍ତ୍ତକୀ ଆସିଛନ୍ତି, ତାଙ୍କ ସମ୍ପର୍କରେ କେତେ ଦୁନିଆ ଛାଡ଼, ଛତରା କଥାବାର୍ତ୍ତା ଯୁବ ଶିଳ୍ପପତିମାନଙ୍କ ଭିତରେ ଲାଗିଗଲା । ଦେବବାବୁ ସେମାନଙ୍କୁ ମୃଦୁ ଭର୍ତ୍ସନା ଦେଇ ସେଭଳି ଆଲୋଚନାରୁ ବିରତ ହେବା ପାଇଁ ତାଗିଦ୍ କଲେ ।

ଏହି ସମୟରେ ନାଚ ଆରମ୍ଭ ହେବାର ଇସାରା ଆସିଗଲା । ସେଥିସହିତ ଖାନାପିନା ବି । ମୁଖ୍ୟ ଖାଦ୍ୟ ପରିବେଷଣ ପୂର୍ବରୁ ପ୍ରତି ଟେବୁଲ ଉପରେ ପରଷା ଚାଲିଲା ବିଦେଶରୁ ଆନୀତ କେତେ ପ୍ରକାର ଦାମିକା ଦାମିକା ମଦ୍ୟ । ଦେବବାବୁ ଦେଖିଲେ ମାର୍କିନ୍ ନର୍ତ୍ତକୀଙ୍କର ଅର୍ଦ୍ଧଉଲଗ୍ନ ନାଚବେଳେ ଶେଠ୍ ରାମଦାସଙ୍କ ନିକଟରେ ବସିଲେ ଚଳିବନି । ସେ ଯେତେବେଳେ ପିତୃପ୍ରତିମ ଲୋକ, ତାଙ୍କ ପାଖରେ ବସି ମାର୍କିନ୍ ନୃତ୍ୟାଙ୍ଗନାଙ୍କ ନୃତ୍ୟ ମୋଟେ ଦେଖିହେବନି । ନିଜକୁ ଖରାପ ଲାଗିବ । ସେ କେତେଜଣ ଯୁବ ଶିଳ୍ପପତିଙ୍କୁ ଧରି ତାଙ୍କଠାରୁ ଦୂରେଇ ଯାଇ ଆଉ ଏକ ଟେବୁଲ ଚାରିପାଖରେ ଘେରି ବସିଲେ ।

ତାଙ୍କ ଟେବୁଲ ଉପରକୁ ମଦ ବୋତଲ ଓ ମଦ ଗିଲାସ ଆସିଛି କି ନାହିଁ ଟୋକା ଟୋକା ଶିଳ୍ପପତିମାନେ ଥୟ ଧରି ରହି ପାରିଲେନି । ବିଦେଶରୁ ଅଣା ଯାଇଥିବା ସ୍କଚ୍ ହୁଇସ୍କିକୁ ଦେଖି କେତେକଙ୍କ ପାଟିରୁ ଲାଳ ବହିଲା । ଅନ୍ୟ ଟେବୁଲରେ ମଦ ଲାଗୁ ନ ଲାଗୁଣୁ ଏମାନେ ବୋତଲ ଖୋଲି ପିଇବା ଆରମ୍ଭ କରି ଦେଲେ । ଦେବବାବୁ ତ ସେଥିର ଧାର୍ ଧାରନ୍ତି ନାହିଁ, ତାଙ୍କ ପାଇଁ ଆସିଥାଏ ମୃଦୁପାନୀୟ । ସେ ସେହି ମୃଦୁପାନୀୟ ପିଇ ପାନୀୟ ପର୍ବ

ଶେଷ କଲେ । ବୁଢ଼ାମାନେ ଦେଖିଚାହିଁ ସମ୍ଭାଳି ପାଗିଲାଭଳି ପିଉଥାନ୍ତି । ଯୁବ ଶିଳ୍ପପତିମାନେ ଆଖିବୁଜି ପିଇ ଚାଲିଥାନ୍ତି ସତେ ଯେମିତି ସ୍ୱର୍ଗର ଅମୃତ ସେମାନଙ୍କ ଆଗରେ । କ୍ରମେ କ୍ରମେ ସେମାନେ ଟଳଟଳ ହେବାକୁ ଆରମ୍ଭ କଲେ । ଟେବୁଲ ଉପରେ ଖାଦ୍ୟ ପରଶା ହେଲାବେଳକୁ କେତେକଙ୍କୁ ଖାଦ୍ୟପଦାର୍ଥ ଦିଶୁ ନ ଥାଏ । ସେମାନେ ଏଠିସେଠି ଅଣ୍ଡାଳି ହେଉଥାନ୍ତି । କିଏ କିଏ ମଦ ନିଶାରେ କହୁଥାନ୍ତି, "ଆରେ ଶଳା, ଖାଇବା ପଦାର୍ଥ ଟେବୁଲ ଉପରେ ନ ଦେଇ ଶଳା ଟେବୁଲ ତଳେ ଦେଇଗଲା ନା କଅଣ ? କେତେକ ମଦନିଶାରେ ତଳେ ବସିଯାଇ ଖାଦ୍ୟପଦାର୍ଥ କେଉଁଠି ଦିଆଯାଇଛି ଅଣ୍ଡାଳୁଥାନ୍ତି । ଦେବବାବୁଙ୍କ ଟେବୁଲ ଚାରିପଟେ ଯେଉଁମାନେ ବସିଥାନ୍ତି, ସେଥିଭିତରୁ ଦୁଇଜଣ ମଦନିଶାରେ ଟୁଳ ଟୁଳ ହୋଇ ଟେବୁଲ ଉପରେ ମୁଣ୍ଡଦେଇ ଶୋଇ ପଡ଼ିଲେଣି । ଖାଇବା ଅବସ୍ଥାରେ ସେମାନେ ନ ଥାନ୍ତି । ଅନ୍ୟଜଣକୁ ମଦନିଶା ଘାରିଥିଲେହେଁ ପୂରାପୂରି ଚେତାଶୂନ୍ୟ ହୋଇ ନ ଥାଏ । ସେ ବାଛି ବାଛି ଖାଦ୍ୟ ଖାଇବାରେ ଲାଗିଥାଏ । ବେଳେବେଳେ ନର୍ତ୍ତକୀଆଡ଼କୁ ଅନାଇ ମୋହିତ ହେଲାଭଳି ଅଙ୍ଗଭଙ୍ଗୀ ଦେଖାଉଥାଏ । ଦେବବାବୁ ଅନ୍ୟଆଡ଼କୁ ନ ଅନାଇ ନିଜ ଖାଇବାରେ ବ୍ୟସ୍ତଥାନ୍ତି । ନର୍ତ୍ତକୀର ଅର୍ଦ୍ଧଉଲଗ୍ନ ରୂପ ଦେଖି ତା ଆଡ଼କୁ ଅନାଇବାକୁ ଲାଜ ଲାଗୁଥାଏ ।

ଖାଉ ଖାଉ ଦେବବାବୁ ହଠାତ୍ ଶେଠ୍ ରାମଦାସଙ୍କ ଟେବୁଲ ଆଡ଼କୁ ଅନାଇଦେଲେ । ଦେଖିଲେ ଶେଠ୍‌ଙ୍କ ପାଖରେ ବସିଛି ସୁଶ୍ରୀ ଯୁବତୀଟିଏ । ଦେବବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ଭଲ ଭାବରେ ଲକ୍ଷ୍ୟ କଲେ, ଯୁବତୀଟି ଅନ୍ୟ କେହି ନୁହେଁ, ସେ ବାଟରେ ଯାହାକୁ ଭେଟିଥିଲେ, ଏ ହେଉଛି ସେଇ, ଗୀତାଦେବୀ ।

"ନିଜ ପାଖରେ ଖାଉଥିବା ନନ୍ଦକିଶୋର କାନ୍ଧରେ ହାତ ପକାଇ ପଚାରିଲେ, "ଏ କିଏ କିରେ ନନ୍ଦ ? ଶେଠ୍ ରାମଦାସଙ୍କ ପାଖରେ ସେହି ଯେଉଁ ଝିଅଟି ବସିଛି ସେ କିଏ ତୁ ଜାଣିଛୁ କିରେ ? ତୁ ଦେଖିପାରୁଛୁ ନା ମଦନିଶାରେ କିଛି ଦିଶୁନି ତୋତେ ?"

"ମୋତେ ସବୁ ଦିଶୁଛିରେ ଭାଇ ସବୁ ଦିଶୁଛି । ମୋତେ ସେ ଦି'ଟାଙ୍କ ଭଳି ଭାବ ନା । ସେମାନେ ଘରେ ନ ଶୋଇ ଏଠି ଆସି ଶୋଇଲେଣି ।"

"ସେ ଝିଅଟି କିଏ କିରେ ?"

"ଆରେ, ସେ ପରା ଶେଠ୍ ରାମଦାସଙ୍କ ଝିଅ ଗୀତା ! ସେ ଏବେ ଆମେରିକାରୁ ଇଞ୍ଜିନିଅରିଂ ପାସ୍ କରି ଫେରିଛି ।"

"ଆଁ, ଶେଠ୍ ରାମଦାସଙ୍କ ଝିଅ ? ବାଃ, ବଢ଼ିଆ ଝିଅଟେତରେ ?"

"ଆରେ ଭାଇ କହିବାକୁ ଅଛି ? ବାଃ, କି ଚେହେରା ଖଣ୍ଡେ ପାଇଛି ? ଦୁନିଆର ସବୁ ସୌନ୍ଦର୍ଯ୍ୟଯାକ ଯେମିତି ଠୁଳ ହୋଇଛି ତା'ରି ଠେଇଁ ।"

"ତୁ ଏଠି ଖାଉଥା, ମୁଁ ଶେଠ୍ ରାମଦାସଙ୍କ ପାଖରୁ ଟିକିଏ ଆସେ ।"

"କ'ଣ ଝିଅକୁ ଦେଖି ଚାଲିଲୁ କିରେ ?"

"ହେଦ୍, ତୋର ସବୁବେଳେ ସେହି କଥା । ସେ ଝିଅ ସହିତ ମୋର ଏଥିପୂର୍ବରୁ ସାକ୍ଷାତ ହୋଇଛିରେ ନନ୍ଦ ।"

"ହୋଇଛି ତ ପୁଣି ଯାଉଛୁ କାହିଁକି ? ମନ ଛାଡୁନି କିରେ ?"

"ରହ, ରହ, ଶେଠ୍‌ଙ୍କ ସହିତ ମୋର ଗୋଟିଏ ଜରୁରୀ କଥା ଅଛି । ସଙ୍ଗେ ସଙ୍ଗେ ଆସୁଛି ।"

"ଆରେ, ଜରୁରୀ କଥା କ'ଣ ଠିକ୍ ଏତିକିବେଳେ ମନେପଡ଼ିଲା । ଆରେ, ବାୟା, ଆଖିବୁଜି ଦୁଧ ପିଉଥା ।"

"କିଏ, ଦେବକିଷନ ? ଆସ, ଆସ, ମୁଁ ତ ବର୍ତ୍ତମାନ ତୁମକୁ ଖୋଜୁଥିଲି । ଇଏ ହେଉଛି ମୋ ଝିଅ ଗୀତା । ଏହା ସହିତ ପରିଚିତ ହୁଅ । ଦେବକିଷନଙ୍କୁ ଲକ୍ଷ୍ୟ କରି କହିଲେ, "ଇଏ ମା ଦେବକିଷନ, ମୋ ସାଙ୍ଗ ଶେଠ୍ ହରିକିଷନର ପୁଅ ।"

"ହଁ, ବାପା ଏହାଙ୍କ ସହିତ ମୋର ପରିଚୟ ହୋଇଯାଇଛି ଏଥିପୂର୍ବରୁ ।" ଦେବବାବୁଙ୍କୁ ନମସ୍କାର କରୁ କରୁ ଗୀତା କହିଲା ।

"କେମିତି ପରିଚୟ ହେଲା ମା ?"

"ମୁଁ ଏଠାକୁ ଆସିଲାବେଳେ ହାଇୱେରେ ଏହାଙ୍କ ଗାଡ଼ି ଖରାପ ହୋଇ ଯାଇଥିଲା ମଉସା ।" ଗୀତା କହିବା ପୂର୍ବରୁ ଦେବବାବୁ କହି ପକାଇଲେ । "ମୋ ଡ୍ରାଇଭର ଗାଡ଼ିଟିକୁ ସଜାଡ଼ି ଦେଲା । ନଚେତ୍ ଆଜି ବଡ଼ ହଇରାଣ ହୋଇଥାନ୍ତେ ଗୀତାଦେବୀ ।"

"ଆଁ, ତୋ ଗାଡ଼ି ଖରାପ ହୋଇ ଯାଇଥିଲା ମା ? ତୋତେ କେତେଥର କହିଛି, ଡ୍ରାଇଭର ନ ନେଇ ତୁ ଏକା କୁଆଡ଼େ ଯିବୁନି । ନିଛାଟିଆ ରାସ୍ତାରେ କିଛି ଖରାପ ହେଲେ କେତେ ହଇରାଣ ହେବୁ କହିଲୁ ?"

"ନାଇଁ, ଆଜ୍ଞା, ଆମେରିକାରେ ନିଜେ କାର୍ ଚଳାଇବା ଅଭ୍ୟାସ ଥିଲା ତ ? ସେହି ଅଭ୍ୟାସବଶତଃ କିଛି ନ ଭାବି ଗାଡ଼ି ନେଇ ବାହାରିପଡ଼ିଲେ । ସେ କ'ଣ ଜାଣିଥିଲେ ଗାଡ଼ି ବାଟରେ ଏମିତି ଖରାପ ହେବ ବୋଲି ।" ଦେବବାବୁ କହିଲେ ।

"ନା, ମା, ଇଏ ଭଲ କଥା ନୁହେଁ । ଦେବ ସିନା ହାବୁଡ଼ରେ ପଡ଼ିଗଲା, ହଇରାଣ ନ ହୋଇ ସୁବିଧାରେ ଚାଲି ଆସିଲୁ । ନଚେତ୍ ତୁ ସେଠି ଏକା ଠିଆ ହୋଇ କ'ଣ କରିଥାନ୍ତୁ କହିଲୁ ମା ?"

"ନାଇଁ, ବାପା, ଏଇଟା ତ ଆମେରିକାନ୍ ଗାଡ଼ି, ପୁଣି ଆମେରିକାରେ ମୁଁ ଚଳାଉଥିବା ଗାଡ଼ି ଭଳି । ଭାବିଲି ନେଇ ଚାଲିଯିବି । କିଛି ଅସୁବିଧା ହେବନି ।"

"ଯାହାହେଉ, ମୁଁ ଖୁସୀ ହେଲି, ତୁମ ଦୁହିଁଙ୍କର ଏଥିପୂର୍ବରୁ ସାକ୍ଷାତ ହୋଇଯାଇଛି ।" ଦେବବାବୁଙ୍କୁ ଆଡ଼କୁ ଅନାଇ କହିଲେ ।

"ଝିଅ ତ ବର୍ତ୍ତମାନ ଘରେ ଅଛି । ତୁମେ କେବେ ଆମ ଘରଆଡ଼କୁ ବୁଲି ଆସୁନ ଦେବ ? ତୁମେ ତ ଅନେକଦିନ ହେବ, ଆମ ଘରଆଡ଼େ ଆସିନ, ଏଠାକୁ ଆସିଲାବେଳେ ତୁମ ମାଉସୀ କହୁଥିଲେ, ଦେବଙ୍କୁ ଯଦି ଦେଖିବ, ତେବେ ତାକୁ ଆମ ଘରକୁ ଆସିବାକୁ ନିମନ୍ତ୍ରଣ କରିବ । ତୁମ ବାପା ସିନା ମୋ ସାଙ୍ଗ ଥିଲେ, ବେଳେବେଳେ ଆମ ଘରଆଡ଼େ ବୁଲି ଆସୁଥିଲେ । ହଁ, ତୁମ ମା କେମିତି ଅଛନ୍ତି ? ଦେହପା ଭଲ ଅଛି ତ ?"

"ହଁ, ମଉସା, ସେ ଭଲ ଅଛନ୍ତି, ବେଳେବେଳେ ଆପଣମାନଙ୍କ କଥା ମନେ ପକାନ୍ତି ।"

"ତୁମ ଘରଆଡ଼େ ମୁଁ ଯାଇପାରୁଛି କେତେବେଳେ ? ତୁମ ବାପାଙ୍କ ମୃତ୍ୟୁ ପରେ ମୁଁ ଆଉ ତୁମ ଘରଆଡ଼େ ବୋଧହୁଏ ଯାଇନି ।"

"ହେଉ, ଏହା ଭିତରେ ଆମ ଘରଆଡ଼େ ଆସ । ତୁମ ମାଉସୀ ମଧ୍ୟ ତୁମ କଥା କହୁଥିଲେ । ତୁମେ ଆସିଲେ ଭାରି ଖୁସୀ ହୁଅନ୍ତେ ସେ ।"

"ଆପଣ ନିଶ୍ଚୟ ଆସିବେ ଦେବବାବୁ । ମୃଗାକ୍ଷୀ ଦୁଇଟିକୁ ନଚାଇ ଅନୁରୋଧ କଲେ ରୀତାଦେବୀ ।

× × × × ×

"ମା, ଦେବବାବୁ ଆସିଛନ୍ତି ।"

"ଆଁ, ଦେବ ଆସିଛି ? କେଉଁଠି ଅଛି, ଡ୍ରଇଂରୁମ୍‌ରେ ? ଚାଲିଲୁ ମା, ମୁଁ ତାକୁ ଟିକେ ଦେଖେ । ଢେର୍‌ଦିନ ହେଲା ଦେଖିନି ତାକୁ ।" କହୁ କହୁ ପ୍ରଭାମୟୀଦେବୀ ଡ୍ରଇଂରୁମ୍ ଭିତରକୁ ପଶି ଆସିଲେ ।

ପ୍ରଭାମୟୀ ଦେବୀଙ୍କୁ ପଶି ଆସିବା ଦେଖି ଦେବବାବୁ ଉଠିପଡ଼ି ପ୍ରଣାମ କରି ତାଙ୍କ ଗୋଡ଼ଧୂଳି ନେଲେ ।

"ଥାଉ, ଥାଉ, ତୁ ବସ ବାପା । କେମିତି ଆଜି ଚାଲି ଆସିଲୁ ବାପ, ତୋତେ ଢେର୍‌ଦିନ ହେଲା ଦେଖିବି ଦେଖିବି ବୋଲି ଭାବୁଥିଲି । କିନ୍ତୁ ସୁବିଧା ଜୁଟୁଛି କେତେବେଳେ ? ଆଜି ଆସିଛୁ, ବେଶ୍ ଭଲ କରିଛୁ ବାପ, ଝିଅ ସହିତ ତୋର ପରିଚୟ ହେଲାଣି ନା ?"

ଏହି ସମୟରେ ଗୋଟିଏ ଟ୍ରେରେ ଚା' ଜଳଖିଆ ଧରି ଗୀତାଦେବୀ ଆସି ଡ୍ରଇଂରୁମ୍‌ରେ ପହଞ୍ଚିଗଲେ । ଟିପୟ ଉପରେ ଟ୍ରେ ଥୋଇ ଚା' ଗୋଳାଉ ଗୋଳାଉ କହିଲେ, "ମୋର ଏହାଙ୍କ ସହିତ କେମିତି ସାକ୍ଷାତ ହେଲା ଜାଣିଛୁ ମା ? ଦିନେ ମୁଁ ଏକା ଗାଡ଼ି ଚଳାଇ ବୋମ୍ବେ ଯାଉଥିଲି । ବାଟରେ ମୋ ଗାଡ଼ି ଖରାପ ହୋଇଗଲା । ସେହି ରାସ୍ତାରେ ଦେବବାବୁ ଯାଉଥିଲେ । ମୋତେ ଏକାଟିଆ ଦେଖି ଗାଡ଼ି ବନ୍ଦ କଲେ । ତାଙ୍କ ଡ୍ରାଇଭର ଦ୍ୱାରା ମୋ ଗାଡ଼ିକୁ ସଜାଡ଼ିଦେଲାରୁ ମୁଁ ବୋମ୍ବେ ଗଲି । ସେଦିନ ଦେବବାବୁଙ୍କ ସହିତ ଦେଖା ହୋଇ ନ ଥିଲେ ମୁଁ କେତେ ଯେ ହଇରାଣ ହୋଇଥାନ୍ତି, ତା'ର କଳନା ନାହିଁ, ମା ।"

"ବାଃ, ବଡ଼ ସୁଖର କଥା, ତୁମେ ଦୁହେଁ ଏଥିପୂର୍ବରୁ ପରସ୍ପର ସହିତ ପରିଚିତ ହୋଇଯାଇଛ । ଝିଅ ତ ସାତବର୍ଷ କାଳ ଆମେରିକାରେ ଥିଲା । ଏବେ ପାସ୍ କରି ଆସିଛି ।"

"ବାପାଙ୍କୁ ଫୋନ୍ କରିବି ମା, ସେ କହିଥିଲେ ଦେବବାବୁ ଆସିଲେ ସେ ଆସିବେ ।"

"ତୋ ବାପାଙ୍କ ଆସିବାବେଳତ ହୋଇଗଲାଣି ମା । ଫୋନ୍ କରିବୁ କାହିଁକି ? ତୁମେ ଦୁଇଜଣ କଥାବାର୍ତ୍ତା ହେଉଥାଅ, ମୁଁ ତେଣେ ବରାଦ କରେ ତୁମମାନଙ୍କ ରାତ୍ରିଭୋଜନ ପାଇଁ । ଦେବ ଏତେଦିନ ପରେ ଆମ ଘରକୁ ଆସିଛି । ନ ଖାଇ କ'ଣ ଏମିତି ଚାଲିଯିବ ?

ଯାଉଁ ଯାଉଁ ପଚାରିଲେ, "ତୁମ ମା କେମିତି ଅଛନ୍ତି ବାପ ? ତାଙ୍କ ଦେହପା ଭଲ ଅଛି ତ ? ଅନେକଦିନ ହେବ ତାଙ୍କ ସହିତ ଦେଖାହୋଇନି ମୋର ? ତୁମ ବାପା ଥିଲାବେଳେ ତୁମ ବାପାଙ୍କ ସହିତ ଯାହା ଆମ ଘରକୁ ବହୁଦିନ ତଳେ ଆସିଥିଲେ । ଦେଖ, ଚାଲିଯିବନି ବାପ, ଖାଇକରି ଯିବ । ତୁମେମାନେ କଥାବାର୍ତ୍ତା କର, ମୁଁ ଆସୁଛି ।" ଏତକ କହି ପ୍ରଭାମୟୀ ଦେବୀ ଘର ଭିତରକୁ ଚାଲିଗଲେ ।

ଡ୍ରଇଂରୁମ୍‌ରେ ବସୁ ବସୁ ଗୀତାଦେବୀ କହିଲେ, ‘‘ଚାଲ ବଗିଚାକୁ ଯିବା । ଏଠି ଭାରି ଝଫି ଲାଗୁଛି । ଉଦ୍ୟାନର ମୁକ୍ତ ପବନ ବେଶ୍ ଭଲ ଲାଗିବ ଆମକୁ । ଆମ ବଗିଚାରେ ସନ୍ଧ୍ୟାବେଳେ ବସିଲେ ଭାରି ଭଲ ଲାଗେ ।’’

ଦେବବାବୁ ଓ ଗୀତାଦେବୀ ଡ୍ରଇଂରୁମ୍‌ରୁ ବାହାରି ସମ୍ମୁଖସ୍ଥ ଉଦ୍ୟାନରେ ଯାଇ ଗୋଟିଏ ମାର୍ବଲ ବେଦୀ ଉପରେ ବସିଲେ । ସମ୍ମୁଖରେ ଏକ ବିରାଟ ମାର୍ବଲ କୁଣ୍ଡ, ସେଥିଭିତରେ ଜଳର ଏକ ଝରଣା, ଉପରକୁ ଉଠି ନାନା ରଙ୍ଗରେ ନୃତ୍ୟ କରି ଚାଲିଥାଏ । ଲାଲରଙ୍ଗର ଏକ ବଲ୍ ସେହି ଉତ୍‌ଥିତ ଝରଣାର ଶୀର୍ଷଦେଶରେ ଥାଇ ଏକ ଅପରୂପ ନୃତ୍ୟ ପରିବେଷଣ କରୁଥାଏ । ସେତେବେଳେ ସୂର୍ଯ୍ୟ ଅସ୍ତ ହେବା ଉପରେ । ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣରେ ଉଦ୍ୟାନର ପଶ୍ଚାଦ୍‌ଭାଗରେ ଥିବା ପ୍ରାସାଦରାଜି ସ୍ୱର୍ଣ୍ଣମଣ୍ଡିତ ମୁକୁଟ ପିନ୍ଧିଲାଭଳି ମନେ ହେଉଥାଏ ।

ସେଦିନ ଉଦ୍ୟାନର ସାନ୍ଧ୍ୟକାଳୀନ ସୌନ୍ଦର୍ଯ୍ୟ ଅତୀବ ମନାମତାଣିଆ ହୋଇଥାଏ । ସମ୍ମୁଖସ୍ଥ ବିରାଟ ମାର୍ବଲକୁଣ୍ଡଟି ସ୍ୱଚ୍ଛ ଜଳରେ ପୂର୍ଣ୍ଣ । ଅସଂଖ୍ୟ ପ୍ରକାର ବିଭିନ୍ନ ବର୍ଣ୍ଣର ପୁଷ୍ପସମ୍ଭାରରେ ଲୋଟି ପଡୁଛି । ଦିଶୁଛି ସତେ ଯେମିତି ଏକ ବିବିଧ ବର୍ଣ୍ଣର ସୁନ୍ଦର ଗାଲିଚା ବିଛା ହୋଇଛି ସେମାନଙ୍କ ସମ୍ମାନାର୍ଥେ । ଉଦ୍ୟାନର ଆରପାରିରୁ ବହି ଆସୁଥିବା ମୃଦୁମନ୍ଦ ସ୍ନିଗ୍ଧ ସମୀରଣ ଗୀତାର ଆଲୁଳାୟିତ ଚୂର୍ଣ୍ଣକୁନ୍ତଳ ସହିତ ଲୁଚୁକାଳି ଖେଳ ଆରମ୍ଭ କରି ଦେଇଥାଏ । ଉଦ୍ୟାନର ପୁଷ୍ପଗନ୍ଧବାହୀ ସାନ୍ଧ୍ୟ ସମୀରଣର ଅପୂର୍ବ ହିଲ୍ଲୋଳରେ ଦେବବାବୁଙ୍କ ମନ ଏକ ପ୍ରକାର ସ୍ୱର୍ଗୀୟ ଆନନ୍ଦରେ ଭରି ଉଠିଥାଏ ।

‘‘ଯାହାକୁହ, ଗୀତା ତୁମ ଉଦ୍ୟାନଟି ଅତୀବ ମନୋରମ । ସେଠି ସେହି ଲତାକୁଞ୍ଜଟି କେମିତି ବିବିଧବର୍ଣ୍ଣର ପୁଷ୍ପସମ୍ଭାରରେ ଭାଙ୍ଗିପଡୁଛି ଦେଖିପାରୁଛ ତ ଗୀତା ? ନିକଟସ୍ଥ ପାରଦ ପ୍ରଦୀପ ଆଲୋକରେ କେଡ଼େ ସୁନ୍ଦର ଦିଶୁଛି କହିଲ ? ଯେଉଁଆଡୁ ଚାହିଁଲେ କୁଞ୍ଜଟି ଅସଂଖ୍ୟ ପ୍ରକାର ପୁଷ୍ପସମ୍ଭାର ଟୋକି ଠିଆ ହେଲାଭଳି ଦିଶୁଛି, ସତେ ଯେମିତି ଆମକୁ ଆମନ୍ତ୍ରଣ କରୁଛି, ତାରି କ୍ରୋଡ଼ରେ ଏହି ସୁମଧୁର ଜ୍ୟୋସ୍ନାବିଧୌତ ସନ୍ଧ୍ୟାଟିକୁ ଉପଭୋଗ କରିବା ପାଇଁ ।’’

‘‘ଆପଣ ବଡ଼ ଭାବପ୍ରବଣ ହୋଇ ପଡୁଛନ୍ତି ଦେବବାବୁ । ମନେହେଉଛି ସତେ ଯେମିତି ଆଉକିଛି ସମୟ ପରେ ଆପଣଙ୍କ ମୁଖରୁ କବିତାର ଅବାରିତ ନିର୍ଝର ବହି ଆସିବ ।’’

‘‘ନାଇଁ, ନାଇଁ, ଗୀତାଦେବୀ, ସେ ଭୟ ତୁମେ ନ କରିପାର । ମୁଁ ଭାବୁକ ନୁହେଁ କି କବି ନୁହେଁ, ତେବେ ଏପରି ସୁନ୍ଦର ଉଦ୍ୟାନ ଭିତରେ ତୁମକୁ ଦେଖି ମୋ ମନ ଏକ ଅପୂର୍ବ ସ୍ୱର୍ଗୀୟ ଆନନ୍ଦରେ ଭରି ଉଠିଛି ।’’

"କିନ୍ତୁ କାହିଁକି ଆଜି ଉଦ୍ୟାନଟା ଯେତେ ଥଣ୍ଡା ଲାଗିବା କଥା ସେତେ ଥଣ୍ଡା ଲାଗୁନି ଦେବବାବୁ । ଆଜି ଟିକିଏ ବେଶି ଗରମ ପଡ଼ିଛି ବୋଧହୁଏ ? ଉଦ୍ୟାନରେ ପବନର ଗତି ଅନ୍ୟଦିନ ଭଳିଆ ବେଶି ନାହିଁ । ସେଥିପାଇଁ ସମ୍ଭବତଃ ଗରମ ବେଶି ଜଣାପଡୁଛି । ହେଇ ଦେଖୁନାହାନ୍ତି ଆପଣଙ୍କ ମୁହଁରେ କେମିତି ଝାଳ ଜକେଇ ଆସିଲାଣି । ଯାହାକୁହନ୍ତୁ ଦେବବାବୁ, ଭାରତରେ ଗରମ ଅତ୍ୟନ୍ତ ବେଶି । ମୁଁ ଏହି କେତେଦିନ ହେବ ଗରମରେ ସଢ଼ିଗଲିଣି ଜାଣ ।"

"ଆମେରିକାରେ ବୋଧହୁଏ ଗରମ ଏତେ ହୁଏନି ?" ପଚାରିଲେ ଦେବବାବୁ ।

"ମୁଁ ଯେଉଁ ଚିକାଗୋ ସହରରେ ରହୁଥିଲି, ସେଠି ଗରମଦିନ ପ୍ରାୟ ନାହିଁ କହିଲେ ଚଳେ । ଜୁଲାଇ, ଅଗଷ୍ଟ ମାସରେ ଯାହା କେଇଦିନ ଗରମ ପଡ଼େ । ବର୍ଷର ଛଅମାସ ତ ବରଫ ପଡ଼େ । ଏହି ଦୁଇମାସ ଯାହା ଗରମ ହୁଏ, ତାହା ଆମ ମାଘ, ଫାଲ୍‌ଗୁନ ଗରମ ଭଳି ।"

"କିନ୍ତୁ ତୁମ ଘରତ ଏଠି ଶୀତତାପ ନିୟନ୍ତ୍ରିତ, ତୁମକୁ ଗରମ ବାଧିଲା କୁଆଡୁ ?"

"ଏହି ଯିବାଆସିବା ବେଳେ, ଘରବାହାରେ, କୁଆଡ଼କୁ ବୁଲିଗଲେ, ସତେ ଯେମିତି ଗରମ ତୁମ ପଛେ ପଛେ ଗୋଡ଼ାଇଛି, ପାଖ ଛାଡ଼ିବାକୁ ନାହିଁ । ହେ, ଆପଣଙ୍କ ମୁହଁରେ କେତେ ଝାଳ ଦେବବାବୁ ? କହୁ କହୁ ନିଜ ପଣତକାନି ବଢ଼ାଇଦେଲେ ଗୀତାଦେବୀ ଝାଳ ପୋଛିବା ପାଇଁ ।"

ଦେବବାବୁ ସଙ୍ଗେ ସଙ୍ଗେ ପକେଟରୁ ରୁମାଲ କାଢ଼ି ମୁହଁ ଉପରେ ବିନ୍ଦୁ ବିନ୍ଦୁ ହୋଇ ଜମିଥିବା ଝାଳକୁ ପୋଛିବାକୁ ଲାଗିଲେ ।

ଗୀତାଦେବୀ କହିଲେ, "ନାଇଁ, ଦେବବାବୁ, ଚାଲନ୍ତୁ ଡ୍ରଇଂରୁମ୍‌କୁ ଯିବା । ଆପଣଙ୍କୁ ଏଠି ବଡ଼ ଗରମ ହେଉଛି । ମୋତେ ବି ଏଠି ବଡ଼ ଗରମ । ପବନ ମୋଟେ ନାହିଁ ।"

ଏତକ କହି ଉଭୟେ ଉଠିଲେ ଡ୍ରଇଂରୁମ୍ ଆଡ଼େ । ଯାଉ ଯାଉ କହିଲେ, "ଆପଣ ସେଇ ଡ୍ରଇଂରୁମ୍‌କୁ ଯାଆନ୍ତୁ ଦେବବାବୁ, ମୁଁ ଘରୁ ଟିକିଏ ଆସୁଛି ।" ଏତକ କହି ଗୀତାଦେବୀ ଚାଲିଗଲେ ଘର ଭିତରକୁ ।

ଦେବବାବୁ ଡ୍ରଇଂରୁମ୍ ଭିତରକୁ ପଶିଗଲାବେଳକୁ ଦେଖିଲେ ଦୁଆରର ବିପରୀତ କାନ୍ଥ ପାଖରେ ଏକ ବଡ଼ ରଙ୍ଗିନ୍ ଟେଲିଭିଜନ ପରଦା । ଟେଲିଭିଜନ ପରଦାରେ କେତେଗୁଡ଼ିଏ ନର୍ତ୍ତକୀ ନୃତ୍ୟ ପରିବେଷଣ କରୁଥାନ୍ତି । ଯୁବକଟିଏ ସେହି ପରଦା ସାମନାରେ ଠିଆ ହୋଇ ହାତକୁ ଏପାଖ ସେପାଖ କଲାଭଳି ଜଣା ପଡୁଥାଏ । ଦେବବାବୁ କୌତୂହଳୀ ହୋଇ ପରଦା ନିକଟକୁ ଚାଲିଗଲେ । ଯୁବକଟି ପରଦା

ଉପରେ ଚାଲିଥିବା ନୃତ୍ୟରେ ଏତେ ବିଭୋର ଯେ ଦେବବାବୁ ସେଠି ଯାଇ ଠିଆ ହେଲେଣି, ତା'ର ଖିଆଲ ନାହିଁ । ଦେବବାବୁ ଲକ୍ଷ୍ୟ କଲେ, କାନ୍ଥରେ ଏକ ବନ୍ଧେଇ ଫଟୋଭଳି ଝୁଲା ହୋଇଛି ଏକ ଟେଲିଭିଜନ ସେଟ୍ । ପରଦାଟି ସାଧାରଣ ଟେଲିଭିଜନ ପରଦାଠାରୁ ଢେର୍ ବଡ଼ । ବିଚିତ୍ର ଏହି ଟେଲିଭିଜନ ସେଟ୍‌ଟି । ଏହାର ମୋଟ ମୋଟେ ଦୁଇ ତିନିଇଞ୍ଚରୁ ଅଧିକ ନୁହେଁ । ଟେଲିଭିଜନ ଚାଲୁ ନ ଥିବାବେଳେ ଏହାକୁ କେହି ବଡ଼ ବନ୍ଧେଇ ଫଟୋ ଛଡ଼ା ଅନ୍ୟ କିଛି କହିବନି । ଏହା ପୁଣି ବିଚିତ୍ର, ଏହା ସହିତ କୌଣସି ବିଦ୍ୟୁତ୍ ତାର ସଂଯୁକ୍ତ ହୋଇନି । ମନକୁମନ ଚାଲିଛି । ବଡ଼ ବିଚିତ୍ର ଧରଣର ଏହି ସେଟ୍‌ଟି । ଏହା ସମ୍ଭବତଃ ତ୍ରିପରିସରଯୁକ୍ତ ଟେଲିଭିଜନ ସେଟ୍ ଭଳି ଜଣାପଡୁଥାଏ । ଚିତ୍ରଗୁଡ଼ିକ ଅନ୍ୟ ସେଟ୍ ଭଳି ପରଦା ଉପରେ ଅଭିନୟ ନ କରି ପରଦା ସାମନାରେ ସୃଷ୍ଟି ହୋଇଥିବା ଏକ ସମତଳ ଉପରେ ଅଭିନୟ କଲାଭଳି ଦିଶୁଥାନ୍ତି । ଛବିଗୁଡ଼ିକ ତ୍ରିପରିସରଯୁକ୍ତ ହୋଇଥିବାରୁ ମଣିଷଗୁଡ଼ାକ ଚିତ୍ରଭଳି ନ ଦିଶି ପ୍ରକୃତ ମଣିଷ ଭଳି ଦିଶୁଥାନ୍ତି । ପାଖରେ ଠିଆ ହୋଇ ଅନାଇଲେ ଜଣାପଡୁଥାଏ ସତେ ଯେମିତି କେତେଗୁଡ଼ିଏ ରକ୍ତମାଂସ ଶରୀରର ନୃତ୍ୟାଙ୍ଗନା ତୁମ ଆଗରେ ନୃତ୍ୟ ପରିବେଷଣରେ ବ୍ୟସ୍ତ । ଏଗୁଡ଼ିକ ଯେ କେବେ ଛବି ହୋଇ ପାରନ୍ତି, ସେମିତି ଧାରଣା ମନକୁ ମୋଟେ ଆସୁ ନ ଥାଏ । ସେଥିପାଇଁ ଯୁବକଟି ଏହି ତ୍ରିପରିସରଯୁକ୍ତ ଛବିଗୁଡ଼ିକୁ ପ୍ରକୃତ ନୃତ୍ୟରତା ଲଳନା ବୋଲି ଭାବି କୁଣ୍ଢାଇ ପକାଇବାକୁ ଚେଷ୍ଟା କରୁଥାଏ । କିନ୍ତୁ କ'ଣ ହେବ ସେମାନେ ଏହାଙ୍କ ହାତରେ ଧରା ନ ଦେଇ ଖସିଯାଇ ପୂର୍ବଭଳି ନାଚୁଥାନ୍ତି । ଯୁବକଟି ବିଚାରା ଖାଲି ଦୁଇହାତକୁ ଏପାଖ ସେପାଖ କରି ସେମାନଙ୍କୁ ଧରିବା ପ୍ରଚେଷ୍ଟାରୁ ବିରତ ହେଉ ନ ଥାଏ । ଯୁବକଟିର ଏ ଅବସ୍ଥା ଦେଖି ଯୁବକଟି କାଳେ ତାଙ୍କୁ ଦେଖିଲେ ଅପ୍ରସ୍ତୁତ ହୋଇପଡ଼ିବ, 'ଏହି ଭୟରେ ସେ ଧୀରେ ଧୀରେ ସେହି ଘରୁ ବାହାରିଯାଇ ବାରଣ୍ଡାରେ ଗୀତାକୁ ଅପେକ୍ଷା କରି ଠିଆ ହେଲେ । ନର୍ତ୍ତକୀମାନଙ୍କ ନାଚ ଦେଖି ଯୁବକଟି ପାଗଳ । ଯୁବକଟିର ଧାରଣା ସେ ନୃତ୍ୟଶୀଳା ନୃତ୍ୟାଙ୍ଗନାମାନଙ୍କୁ ହାତରେ ଧରି କୁଣ୍ଢାଇ ପକାଇବ । କିନ୍ତୁ ସେ କ'ଣ ଜାଣିଛି, ଏଗୁଡ଼ିକ ଖାଲି ଛାୟା, ରକ୍ତମାଂସ ଶରୀରର ମଣିଷ ନୁହେଁ । ତାହା ଜାଣିଥିଲେ ବିଚାରା କେତେବେଳୁ ଚେଷ୍ଟାରୁ ବିରତ ହୋଇ ସାରନ୍ତାଣି ।

ଏହି ସମୟରେ ଗୀତା ଆରପାଖ ଦୁଆର ଦେଇ ଘରୁ ବାହାରି ଆସିଲା । ଦେବବାବୁଙ୍କୁ ବାରଣ୍ଡାରେ ଠିଆ ହୋଇଥିବାର ଦେଖି, କହିଲା, ''ଇଏ କ'ଣ, ଆପଣ ଏଠି ଠିଆ ହୋଇଛନ୍ତି ଯେ ! ବୈଠକଖାନାକୁ କ'ଣ ଯାଇ ନାହାନ୍ତି

ଏ ପର୍ଯ୍ୟନ୍ତ ? ମୋର ବଡ଼ ଭୁଲ, ମୁଁ ଆପଣଙ୍କୁ ବୈଠକଖାନା ଭିତରେ ନ ବସାଇ ଘରକୁ ଚାଲିଗଲି ।'' କହୁ କହୁ ବଡ଼ ବ୍ୟସ୍ତ ହୋଇ ଦେବବାବୁଙ୍କ ହାତ ଧରି ଭିତରକୁ ନେଲାବେଳକୁ ଯୁବକଟି ତ୍ରିପରିସରଯୁକ୍ତ ଟେଲିଭିଜନ ସ୍କ୍ରିନ୍‌ରେ ନର୍ତ୍ତକୀଗୁଡ଼ାକୁ କୁଣ୍ଢାଇ ପକାଇବା ଚେଷ୍ଟାରୁ ବିରତ ହୋଇ ନ ଥାଏ । ଯୁବକଟି ଏଭଳି ଅଭିନୟ କରିବା ଦେଖି ଗୀତା ବଡ଼ ଲଜ୍ଜିତା ବୋଧ କରି ଯୁବକଟି ପାଖକୁ ଯାଇ କହିଲା, ''ହେଉ, ବସନ୍ତବାବୁ, ଏଥର ଆପଣ ଯାଆନ୍ତୁ । ଛବିଗୁଡ଼ିକୁ ଧରିବା ପାଇଁ ଅସଫଳ ଚେଷ୍ଟା କରନ୍ତୁ ନାହିଁ । ସେଗୁଡ଼ିକ କ'ଣ ମଣିଷ ଯେ ଆପଣଙ୍କୁ ଧରା ଦେବେ । ସେଗୁଡ଼ାକ ପରା କେବଳ ଛାୟା । ଛାଇ କ'ଣ କେବେ ଧରାଦିଏ ?

ଗୀତାଦେବୀ ଓ ତାଙ୍କ ସଙ୍ଗେ ଦେବବାବୁଙ୍କୁ ଦେଖି ଯୁବକଟି ବଡ଼ ଅପ୍ରସ୍ତୁତ ହୋଇପଡ଼ିଲା । ନିଜକୁ ଲଜ୍ଜିତ ମନେକରି ଆଖିପିଛୁଳାକେ ସେ ଘରୁ ପଳାଇଗଲା ।

ଗୀତା କହିଲା, ''ଏଇ ଜନ୍ତୁଟି ମୋ ମା'ଙ୍କର ନିକଟ ସମ୍ପର୍କୀୟ ଭାଇ ହେବ । ସେ ଗାଁରେ ରହନ୍ତି । ବାପାଙ୍କ କାରଖାନାରେ ଚାକିରି କରିବା ଉଦ୍ଦେଶ୍ୟରେ ସେ ଏଠି ଆସି ପହଞ୍ଚିଛନ୍ତି । କେଉଁ ନିପଟ ମୋଫସଲର ଲୋକ, ଟି.ଭି. ତ କେବେ ଦେଖି ନାହାନ୍ତି । ପୁଣି ତ୍ରିପରିସରଯୁକ୍ତ । ସେଥିରେ ଏହି ଛବିଗୁଡ଼ିକ ତାଙ୍କୁ ଛବିଭଳି ନ ଦିଶି ରକ୍ତମାଂସ ଶରୀରର ମଣିଷ ପରି ବୋଧ ହେଉଛି ।''

''ଯାହାକୁହ, ଟିଭିଟି ଅତି ଚମତ୍କାର ହୋଇଛି ଗୀତାଦେବୀ । ଏମିତି ଟିଭି ତ ଆମ ଦେଶରେ ତିଆରି ହୋଇନି ?''

''ନା, ମୁଁ ଏହାକୁ ଏବେ ଆମେରିକାରୁ ଆଣିଛି । ଆମେରିକାର ଆର.ସି.ଏ. ଓ ଜାପାନର ସୋନି କୋମ୍ପାନୀର ମିଳିତ ପ୍ରଚେଷ୍ଟାରେ ଏହା ତିଆରି ହୋଇଛି । ଏଥିରେ ସାଧାରଣ ସେଟ୍‌ଭଳି ପିକ୍‌ଚର ଟିଉବ୍ ନାହିଁ । ପିକ୍‌ଚର ଟିଉବ୍ ସ୍ଥାନରେ ଏଥିରେ ଅଛି ତରଳ ସ୍ଫଟିକ । ଏହାର ପରଦାଟି ତରଳ ସ୍ଫଟିକରୁ ତିଆରି । ସେଥିପାଇଁ ଏହାର ପରଦା ଏତେ ବଡ଼ ହେଲେହେଁ ସେଟ୍‌ର ମୋଟ ମାତ୍ର ଦୁଇ ତିନି ଇଞ୍ଚରୁ ଅଧିକ ନୁହେଁ । ଏଥିରେ ତ୍ରିପରିସର ପଦ୍ଧତିରେ ଅଲଗା ଅଲଗା ଫଟୋ ଉଠାଯାଇ ତରଳ ସ୍ଫଟିକ ପରଦା ଉପରେ ସମ୍ମିଳିତ କରାଯାଇ ପ୍ରଦର୍ଶନ କରାଯିବାରୁ ପରଦା ଉପରେ ଚିତ୍ରଗୁଡ଼ିକ ତ୍ରିପରିସର ଭଳି ଜଣାପଡ଼େ । ସାଧାରଣ ଟେଲିଭିଜନରେ ଚିତ୍ରଗୁଡ଼ିକ ପରଦା ଉପରେ ଥାଇ ଅଭିନୟ କଲାଭଳି ଦିଶୁଥିଲାବେଳେ ଏଥିରେ ଚିତ୍ରଗୁଡ଼ିକ ପରଦା ବାହାରେ ଥାଇ ଅଭିନୟ କଲାଭଳି ଦିଶୁଥାଏ । ସେଥିପାଇଁ ଛବିଗୁଡ଼ିକ ଜଣାପଡ଼େ ପ୍ରକୃତ ରକ୍ତମାଂସ ଶରୀର ଥିବା ମଣିଷ ଭଳି । ମୋଟେ ଛବି ଭଳି ବୋଧହୁଏନି ।''

''ହଁ, ଗୀତାଦେବୀ, ଛବିଗୁଡ଼ାକ ଏତେ ପ୍ରାକୃତିକ ରଙ୍ଗର ଯେ ଏହାକୁ ଦେଖିଲେ କେହି ଭାବିବ ନାହିଁ ଏମାନେ ଜୀବନ୍ତ ନୁହନ୍ତି ବୋଲି । ଏମାନେ ଯେ ପ୍ରକୃତରେ କେବଳ ଛାୟା, ଏହା ମୋତେ ଜଣାପଡୁନି । ସେଥିପାଇଁ ଆପଣଙ୍କର ସେଇ ଯୁବକଜଣକ ଚିତ୍ରଗୁଡ଼ିକୁ ରକ୍ତମାଂସର ମଣିଷ ବୋଲି ଭାବି ଧରି ପକାଇବାକୁ ଚେଷ୍ଟା କରୁଥିଲେ । ବିଚାରାକୁ ଜଣା ନାହିଁ ଏଗୁଡ଼ିକ ମାତ୍ର ଛାୟା । ରକ୍ତମାଂସର ଜୀବନ୍ତ ମଣିଷ ନୁହେଁ ।''

ହସିଲେ ଗୀତାଦେବୀ, ''ଲୋକଟାତ ନିପଟ ମଫସଲରୁ ଆସିଛି । ବିଜ୍ଞାନର ଏହି ନବତମ ଅବଦାନକୁ ସେ ବୁଝିପାରୁଛି କେଉଁଠି ?''

''ଯାହାହେଉ ଗୀତାଦେବୀ, ଆପଣଙ୍କ ଟେଲିଭିଜନ ସେଟ୍‌ଟି ବଡ଼ ଲୋଭନୀୟ ହୋଇଛି ।

''ଆପଣ ମୋତେ ଗୀତାଦେବୀ ନ କହି ଗୀତା ବୋଲି ଡାକିଲେ କ'ଣ ହେବନି ? ଚାରୋଟି ଅକ୍ଷର ଜାଗାରେ ଦୁଇଟି ଅକ୍ଷରରେ ତ କାମ ଚଳିଯିବ ।''

''ଆପଣ ମୋତେ ଆପଣ ନ କହି ତୁମେ କହିଲେ କ'ଣ କିଛି କ୍ଷତି ହେବ ? ପୁଣି ଦେବବାବୁ ସ୍ଥାନରେ ଦେବ । ସେହି ଚାରି ଅକ୍ଷରରୁ ଦୁଇ ଅକ୍ଷର ।''

ହେଉ, ହେଲା । ଏବେ ତାହା ହିଁ ହେବ । ଆପଣ ରାଜି ତ ? ଏକପାଖିଆ ହେଲେ ଚଳିବନି । ଉଭୟ ପକ୍ଷ ଏକ ସଙ୍ଗେ ରାଜି ହୋଇ ଆରମ୍ଭ କରିବା ଦରକାର ।

ଏହି ସମୟରେ ହଠାତ୍ ବୈଠକଖାନାର ଟେଲିଫୋନ୍ ଘଣ୍ଟି ବାଜି ଉଠିଲା । ଗୀତାଦେବୀ ଦୌଡ଼ିଯାଇ ଯନ୍ତ୍ର ପାଖରେ ଠିଆ ହୋଇ ଗୋଟିଏ ସୁଇଚ୍ ଟିପି ଦେଲେ । ସଙ୍ଗେ ସଙ୍ଗେ ଟେଲିଫୋନ୍‌ରେ ଥିବା ଟେଲିଭିଜନ ପରଦାଭଳି ଏକ ପରଦା ଉପରେ ଏକ ଉଜ୍ଜ୍ୱଳ ପ୍ରତିଚ୍ଛବି ଫୁଟି ଉଠିଲା । ସେଥିସଙ୍ଗେ ପରଦା ପାଖରେ ଥିବା ଆଲୋକବତିରୁ ଏକ ଉଜ୍ଜ୍ୱଳ ଆଲୋକ ଆସି ଗୀତାଦେବୀଙ୍କ ମୁହଁ ଉପରେ ପଡ଼ିଲା । ଚାହୁଁ ଚାହୁଁ ପରଦାରେ ଥିବା ପ୍ରତିଚ୍ଛବିଟି କଥା କହିବାକୁ ଆରମ୍ଭ କଲା । ଦେବବାବୁ ଲକ୍ଷ୍ୟକଲେ ଟେଲିଫୋନ୍‌ର ସେହି ଆଲୋକିତ ପରଦା ଉପରେ ଗୀତାର ବାପା ଶେଠ୍ ରାମଦାସଙ୍କ ଛବି । ଛବିଟି କଥା କହିବାକୁ ଆରମ୍ଭ କଲା । ସେ ପଚାରିଲେ, ''ମା ଗୀତା, ଦେବକିଷନ ଅଛି ନା ଚାଲିଗଲାଣି ? ମୁଁ ଯିବା ପର୍ଯ୍ୟନ୍ତ ତାକୁ ଅଟକାଇଥିବୁ ମା । ତା ସହିତ ଅନେକ କଥାବାର୍ତ୍ତା ଅଛି ।''

"ଆପଣଙ୍କ ଆସିବା ଆଉ କେତେ ଡେରିହେବ ବାପା ? ସେ ତ ଖାଲି ତରତର ହେଉଛନ୍ତି ଘରକୁ ଯିବା ପାଇଁ । ସେ ଏଠି ରାତିଖିଆ ଖାଇକି ଯିବେ ବୋଲି ମା' ଅଟକାଇଛି । ଆପଣ ଶୀଘ୍ର ଆସନ୍ତୁ ବାପା ।"

ହେଉ, ମା, ଟିକିଏ ଦେବକିଷନକୁ ଟେଲିଫୋନ୍ ପରଦା ପାଖକୁ ଡାକିଲୁ । ମୁଁ ତାକୁ କହେ ରହିବା ପାଇଁ ।"

ଦେବବାବୁ ଟେଲିଫୋନ୍ ପରଦା ପାଖକୁ ଯାଇ ରାମଦାସବାବୁଙ୍କୁ ନମସ୍କାର କଲାକ୍ଷଣି ରାମଦାସବାବୁଙ୍କ ଛବିଟି ପ୍ରତି ନମସ୍କାର ଜଣାଇବା । ଶେଠ୍ କହିଲେ, "ତୁମେ ଟିକିଏ ଅପେକ୍ଷାକର ଦେବ, ତୁମ ସହିତ କେତେକ ଜରୁରୀ କଥାବାର୍ତ୍ତା ଅଛି । ମୁଁ ଏଇ ସଙ୍ଗେ ସଙ୍ଗେ ଯାଉଛି । ଆଜି ଆମ ଘରେ ଡିନର ଖାଇ ଯିବ । ତୁମ ମାଉସୀ କ'ଣ ତୁମକୁ ଡିନର ଖାଇବା ପାଇଁ କହି ନାହାନ୍ତି ?"

"ହଁ, ବାପା, ମା କହିଛନ୍ତି ଯେ । ହେଲେ ସେ ଖାଲି ଯିବେ ଯିବେ ବୋଲି ହେଉଛନ୍ତି ।"

"ନା, ନା, ତା ହେବନି । ଆମଘରେ ସେ ଖାଇକରି ଯିବ । ଏଇ ମୁଁ ଯାଉଛି ।"

ସଙ୍ଗେ ସଙ୍ଗେ ପରଦାରୁ ଆଲୋକ ଲିଭିଗଲା । ପରଦା ସଙ୍ଗେ ସଙ୍ଗେ ସେ ଉଜ୍ଜ୍ୱଳ ଆଲୋକବତିଟି ମଧ୍ୟ ।

"ଇଏ, ତୁମ ଘରେ ଆଉ ଏକ ଚମତ୍କାର ଯନ୍ତ୍ର ରୀତା ।"

"ହଁ, ଇଏ ହେଉଛି ପିକ୍‌ଚର ଫୋନ୍ । କେତେକେ କହନ୍ତି ଭିଡିଓ ଫୋନ୍ । ଆମେରିକାରେ ଏହାର ପ୍ରଚଳନ ହେଲାଣି । ଆସିଲାବେଳେ ସେଥିରୁ ଗୋଟାଏ ଧରି ଆସିଥିଲି । ବାପା ଭାରି ଖୁସୀ ଏହି ଯନ୍ତ୍ରକୁ ଦେଖି । କେତେ ସୁବିଧା କହିଲ ? କଥାବାର୍ତ୍ତା ସଙ୍ଗେ ସଙ୍ଗେ ଆରପାଖ ଲୋକକୁ ଦେଖିପାରିଲ । ମନେହେବ ଶହ ଶହ ମାଇଲ ଦୂରର ଲୋକ ଯେମିତି ତୁମ ସାମନାରେ ଠିଆ ହୋଇ କଥା ହେଉଛି ।"

ହଠାତ୍ ଚମକିପଡ଼ି, "ଏ କ'ଣ ଦେବ, ଏଠି ପୁଣି ତୁମ ମୁହଁରେ ଟୋପା ଟୋପା ଝାଳ । ଆମ ଏୟାରକଣ୍ଡିସନ୍‌ର କାମ କରୁନି ନା କଅଣ ? ନାଇଁ ଥଣ୍ଡା ତ ଲାଗୁଛି । କିନ୍ତୁ ଝପିଂ ଲାଗୁଛି, ନୁହେଁ ? ସେଥିପାଇଁ ସମ୍ଭବତଃ ତୁମ ମୁହଁରେ ଝାଳ ।"

ରୀତା ଯାଇ ସଙ୍ଗେ ସଙ୍ଗେ ଏୟାରକଣ୍ଡିସନ୍‌ର ଯନ୍ତ୍ରର ଏକ ସୁଇଚ୍ ଟିପି ଦେଲା । ଘର ଭିତରେ ଚାହୁଁ ଚାହୁଁ ଏକ ମୃଦୁ ସମୀରଣ ଖେଳିଗଲା । ସେଥିସହିତ

ହେନାଫୁଲର ଏକ ମୃଦୁବାସନା । ମନେହେଲା, ସତେ ଯେମିତି ସେମାନେ ହେନାଫୁଲର ଏକ ଉଦ୍ୟାନରେ ବସିଛନ୍ତି । ହେନାଫୁଲର ବାସନା ମୃଦୁମନ୍ଦ ସମୀରଣରେ ଆସି ସେ ସ୍ଥାନକୁ ମହକାଇ ଦେଉଛି ।''

''ଇଏ କ'ଣ ହେଲା ଗୀତା ? ହଠାତ୍ ଘର ଭିତର କ'ଣ ଆଉ ଷ୍ଟଫି ଜଣାପଡୁନି । ହେନା ବାସନାର ମହକ କ'ଣ ଚାରିଆଡ଼େ ଖେଳିଗଲାଣି । ସେଥିସହିତ ଏକ ମୃଦୁ ସମୀରଣ ବି । ମନେହେଉଛି ଆମେ ଯେମିତି ହେନାଫୁଲ ବଗିଚାରେ ବସିଛୁ ଘର ଭିତରେ ନୁହେଁ । ତୁମେ କ'ଣ କଲ ଗୀତା ? ଏହା କୁହୁକ ନା ଆଉକିଛି ?''

''ନା, ନା, ଏହା କୁହୁକ ନୁହେଁ । ଇଏ ଏକ ନୂଆ ପ୍ରକାରର ଏୟାରକଣ୍ଡିସନ୍‌ର । ଘର ଭିତର ଷ୍ଟଫିନେସ୍‌କୁ ବାହାର କରିଦେଇ ଭରିଦେବ ପ୍ରାକୃତିକ ଉଦ୍ୟାନବାୟୁ । ବିଭିନ୍ନ ପୁଷ୍ପର ଗନ୍ଧରେ ଘର ଭରିଯିବ । ଖାଲି ଗୋଟିଏ ଫୁଲର ବାସନା ନୁହେଁ । ତୁମେ ଯେଉଁ ଫୁଲର ବାସନା ଚାହିଁବ, ସେହି ଫୁଲର ସୁଗନ୍ଧି ପାଇବ ଏ ଘରେ । ଗୋଲାପ, ମଲ୍ଲୀ, ଚମ୍ପା, ରଜନୀଗନ୍ଧା, ଯେଉଁ ଫୁଲର ସୁଗନ୍ଧି ଚାହିଁବ, ସେହି ସୁଇଚ୍‌କୁ ଟିପିଲେ ସେହି ଫୁଲର ମୃଦୁବାସନା ଘରେ ଖେଳିଯିବ । ଠିକ୍ ପ୍ରାକୃତିକ ପୁଷ୍ପଉଦ୍ୟାନ ଭଳି । ତୁମେ ଗନ୍ଧରୁ ବାରିପାରିବନି ତୁମେ ଉଦ୍ୟାନରେ ଅଛ କି ଘର ଭିତରେ ଅଛ ।''

ଯାହାକୁହ ଗୀତା, ଇଏ ଆଉ ଏକ ଚମତ୍କାରିତା । ତୁମକୁ ଧନ୍ୟବାଦ ଦେବା ପୂର୍ବରୁ ତୁମ ଚଏସ୍‌କୁ ଶତ ଧନ୍ୟବାଦ ଦେବି । ଯାହାକୁହ, ତୁମ ଚଏସ୍ ସୁପର୍ବ, ଅତ୍ୟାଧୁନିକ । ଯେ କେହି ଲୋକ ଦେଖିଲେ ତୁମକୁ ପ୍ରଶଂସା ନ କରି ରହି ପାରିବନି ।

''ଥାଉ, ଥାଉ, ମୋତେ ଆଉ ଏତେ ଟେକନି ।'' ମୁଖରେ କୃତ୍ରିମ ରାଗ ଫୁଟାଇ ଗୀତା କହିଲା ।

''କ'ଣଟାଏ କରି ପକାଇଲି ଯେ ? ସେ ଦେଶରେ ଥିଲି, ସେ ଦେଶର କେତୋଟି ଜିନିଷ ସଙ୍ଗରେ ଧରି ଆସିଲି । ଏଥିରେ ମୋର ବାହାଦୁରି କ'ଣ ଅଛି ?''

''ବାହାଦୁରି ଅଛି, ତୁମ ଚଏସ୍‌ର ଗୀତା । ତୁମ ଚଏସ୍ ଯାହାକୁହ ସୁପର୍ବ ।''

× × × × ×

ଦେବବାବୁଙ୍କ ଗାଡ଼ି ପୋର୍ଟିକୋରେ ଲାଗୁ ନ ଲାଗୁଣୁ ପଛେ ପଛେ ଗୀତାଦେବୀଙ୍କ ଗାଡ଼ି ଆସି ଲାଗିଗଲା । ଗୀତାଦେବୀଙ୍କ ଗାଡ଼ି ଦେଖି ଦେବବାବୁ ସଙ୍ଗେ ସଙ୍ଗେ

ଓହ୍ଲାଇପଡ଼ି କହିଲେ, "ହାଏ ଗୀତା, ତୁମେ ଆଜି ସଅଳ ଆସିବା ଦେଖି ଖୁସୀ ହେଲି ।"

ହଁ, କିଛ ସମୟ ତଳେ ତୁମକୁ ଫୋନ୍ କରିଥିଲି ମୁଁ ଆସୁଛି ବୋଲି । ତୁମ ସେକ୍ରେଟେରୀ ଫୋନ୍ ଧରିଲା । କହିଲା କ'ଣ ନା ତୁମେ କାରଖାନା ଭିତରକୁ ଯାଇଛ । ତୁମେ ବର୍ତ୍ତମାନ କାରଖାନାରୁ ଫେରୁଛ ନା ଆଉ କୁଆଡ଼େ ଯାଇଥିଲ ?

"ନାଇଁ, ଗୀତା, ମୁଁ କାରଖାନାରେ ଥିଲି । ବର୍ତ୍ତମାନ ଫେରୁଛି ।"

"ଆଁ, ଏତେ ସମୟ ଧରି ? କ'ଣ କିଛି ଅସୁବିଧା ହୋଇଛି ?"

"ନାଇଁ, ନାଇଁ, ସେମିତି କିଛି ନାହିଁ, ମାମୁଲି କାରଖାନା ଦେଖା । ଅନେକଦିନ ହେଲା ତ ଯାଇ ନ ଥିଲି ସେଆଡ଼େ ।"

"ତୁମେ ବୋଧହୁଏ ପୁଣି ଅଫିସକୁ ଯିବ ?"

"ନା, ଅଫିସକୁ ଯିବାର ଇଛା ଥିଲା । କିନ୍ତୁ ତୁମକୁ ଦେଖି ସେ ଇଛା ତ୍ୟାଗ କଲି । ତୁମେ ଯେତେବେଳେ ଆସିଗଲଣି, ଚାଲ ଘରକୁ ଯିବା । ମା'ତ ତୁମକୁ ଦେଖିବା ପାଇଁ ପାଗଳ । ଯେମିତିକି ସେ ତୁମକୁ ଦେଖିଲେ, ତା ନୟନ ସାର୍ଥକ ହେବ । ତୁମକୁ ଦେଖିଲେ ମା' ଯେ କେତେ ଖୁସୀ ହେବ ମୁଁ ଭାଷାରେ କହିପାରୁନି ଗୀତା ।" ମୋ ମା ତୁମକୁ ଦେଖିବାକୁ ପାଗଳ, ତୁମ ମା ମୋତେ ଦେଖିବାକୁ ପାଗଳ । କଥା କ'ଣ ?"

"କିଏ ଜାଣେ, ଭଗବାନଙ୍କୁ ଜଣା ।" ଈଷତ୍ ହସି ଉତ୍ତର ଦେଲା ଗୀତା ।

କଥା ହେଉ ହେଉ ଦେବବାବୁ ଗୀତାଦେବୀଙ୍କୁ ଧରି ଘରଆଡ଼େ ମୁହାଁଇଲେ । ଅଫିସ୍‌ଠାରୁ ଅଳ୍ପଦୂରରେ ତାଙ୍କ ପ୍ରାସାଦ । ପ୍ରାସାଦ ସାମନାରେ ସୁଶୋଭିତ ଉଦ୍ୟାନ । ନାନା ରଙ୍ଗର ପୁଷ୍ପରେ ଉଦ୍ୟାନଟି ହସି ଉଠୁଛି ।

ଉଦ୍ୟାନ ଭିତରେ ଯାଉଁ ଯାଉଁ ଗୀତାଦେବୀ କହିଲେ, "ତୁମ ଉଦ୍ୟାନଟିତ ବେଶ୍ ଭଲ ଭାବରେ ସଜା ହୋଇଛି ଦେବ । ଫୁଲଗଛଗୁଡ଼ିକ ଚଏସ୍ କାହାର ? ତୁମର ନା ମାଳୀର ।"

"ନା, ମୋ ମାଆଙ୍କର । ଫୁଲଗଛ, ଉଦ୍ୟାନ ପ୍ରତି ତାଙ୍କର ବଡ଼ ସଉକ୍ । ମୋର ଯେ ନାହିଁ, ତା' ନୁହେଁ । ଜାଗାଏ ଜାଗାଏ ମୋ ଚଏସ୍‌ର ଫୁଲଗଛ ବି ଲଗା ହୋଇଛି ।"

"ଆଉ ଗୋଟିଏ ତୁମର ଏଠି ଭଲ କଥା କ'ଣ ଦେଖୁଛି ଜାଣିଛ ଦେବ ?"

"କ'ଣ ?"

"ତୁମ ପରିଚାଳନା ଅଫିସ୍‌ଠାରୁ ତୁମ ଘର ବେଶୀ ଦୂର ନୁହେଁ । ଆମ ଘର ଆମ ପରିଚାଳନା ଅଫିସ୍‌ଠାରୁ କେତେ ଦୂର ?"

"ସେଥିପାଇଁ ତ ତୁମ ଘରେ ପିକ୍‌ଚରଫୋନ୍ ଲାଗିଛି । ଆମର ପାଖ ହୋଇଥିବାରୁ ପିକ୍‌ଚରଫୋନ୍ ଦରକାର ନାହିଁ ।"

"ପିକ୍‌ଚରଫୋନ୍ ବସାଇବା ପାଇଁ ଦୂରତାର କିଛି ଆବଶ୍ୟକତା ନାହିଁ ଦେବ । ଏ ଘରୁ ସେ ଘରକୁ ମଧ୍ୟ ପିକ୍‌ଚରଫୋନ୍ ବସିପାରେ ।"

ବୈଠକଖାନା ଘର ଭିତରକୁ ପଶୁ ପଶୁ ଦେବବାବୁ କହିଲେ, "ଦେଖ ଗୀତା, ତୁମ ଡ୍ରଇଂରୁମ୍ ଖାଲି ପାଶ୍ଚାତ୍ୟ ଜିନିଷରେ ଭରା । କିନ୍ତୁ ଏଠି ଆମର ସବୁ ଦେଶୀ ଜିନିଷ ।"

ବୈଠକଖାନା ଘର ଭିତରକୁ ପଶିଯାଇ ଚାରିଆଡ଼କୁ ଆଖିବୁଲାଇ ଆଣି ଗୀତା କହିଲା, "ଓଃ, କି ଚମତ୍କାର ତୁମ ବୈଠକଖାନା ଦେବ ? ଅସଂଖ୍ୟ ପ୍ରକାର କଳାକୃତିରେ ତୁମ ବୈଠକଖାନାଟି ହସି ଉଠୁଛି । ଓଃ, କି କି ମୂର୍ତ୍ତି, କି କି କାରୁକାର୍ଯ୍ୟ, କେତେ ରକମର ହାତ କାମ, କେତେ ତୈଳଚିତ୍ର, ଓଃ, ଯା'କୁହ ଅତି ଚମତ୍କାର ଦିଶୁଛି । ତୁମେ ମୋ ଟେଏସ୍‌କୁ ପରା କହୁଥିଲ ସୁପର୍ବ, ମୁଁ ତୁମ ଟେଏସ୍‌କୁ କ'ଣ କହିବି ଜାଣ ? ସୁପର୍ ସୁପର୍ବ । ବାସ୍ତବିକ୍ ତୁମେ କେତେ କଳା ଓ ସଂସ୍କୃତିପ୍ରେମୀ, ତାହା ତୁମର ଏହି ବୈଠକଖାନା ସଜାରୁ ଜଣାପଡୁଛି ।"

"ଥାଉ ଥାଉ, ମୋତେ ଏତେ ଟେକନି । ତୁମେ ଏଠି ବସ, ମୁଁ ମା'ଙ୍କୁ ଡାକିଆଣେ । ସେ ପରା ତୁମକୁ ଦେଖିବା ପାଇଁ ଦିନରାତି ପାଗଳ ହେଉଥିଲା ।"

"ଚାଲୁନ, ଆମେ ମା'ଙ୍କ ପାଖକୁ ଯିବା । ସିଏ ମୋ'ଠାକୁ ଆସିବେ କ'ଣ ?"

"ସେ ବର୍ତ୍ତମାନ ଠାକୁର ମନ୍ଦିରରେ ବସି ଗୀତା ପଢୁଥିବ କି ଭାଗବତ ପାରାୟଣ ଶୁଣୁଥିବ । ତୁମେ ସେଠିକି ଗଲେ ବୋର୍ ହୋଇଯିବ ଗୀତା । ତୁମେ ଏଠି ବସ, ମୁଁ ସଙ୍ଗେ ସଙ୍ଗେ ଡାକି ଆଣୁଛି ।"

କହୁଁ କହୁଁ ଦେବବାବୁଙ୍କ ମା' ଉମାଦେବୀ ଆସି ପହଞ୍ଚିଗଲେ । ମା'ଙ୍କୁ ଦେଖି ଗୀତା ତାଙ୍କ ଗୋଡ଼ଧୂଳି ନେବାକୁ ଗଲାବେଳକୁ ଉମାଦେବୀ ତାଙ୍କୁ କୁଣ୍ଢାଇ ପକାଇଲେ ।

"ତୋତେ ଢେର୍‌ଦିନ ପରେ ଆଜି ଦେଖୁଛି ଝିଅ । ମୁଁ ତୋତେ ଯେତେବେଳେ ଦେଖିଥିଲି, ତୁ ଛୋଟିଆଟିଏ ହୋଇଥିଲୁ । ଏହା ଭିତରେ ତୁ ଏଡୁଟିଏ ହେଲୁଣି ମା । ମୋର ବଡ଼ ଭାଗ୍ୟ, ଆଜି ତୋତେ ମୁଁ ଦେଖିପାରିଲି । ପୁଅ ପାଖରୁ ତୋ ପ୍ରଶଂସା ଶୁଣି ଶୁଣି ତୋତେ ଦେଖିବା ପାଇଁ ମୁଁ ପ୍ରକୃତରେ ପାଗଳ ହୋଇ ଉଠିଥିଲି ମା ।"

ଗୀତାକୁ ସୋଫାରେ ବସାଇ ଉମାଦେବୀ ଆୟାମାନଙ୍କୁ ଡାକ ପକାଇଲେ ଝିଅ ପାଇଁ ଚା' ଜଳଖିଆ ଡାଇନିଂରୁମ୍‌ରେ ସଜାଡ଼ିବା ପାଇଁ । ଦେବ ଗାଧୋଇ ଆସି ଚା' ଜଳଖିଆରେ ଯୋଗଦେବ ବୋଲି ସେମାନଙ୍କୁ ଜଣାଇଦେଲେ ।

ଆଦେଶ ଦେଇ ପାଖ ସୋଫାରେ ବସୁ ବସୁ ଉମାଦେବୀ ପଚାରିଲେ, "ତୋ ବାପା, ମା କେମିତି ଅଛନ୍ତି ଝିଅ ? ଦେହପା ଭଲ ଅଛି ତ ? ଢେର୍‌ଦିନ ହେଲା ମୁଁ ସେମାନଙ୍କୁ ଦେଖିନି । ତୋ ମଉସାଙ୍କ ଶୁଦ୍ଧିକାର୍ଯ୍ୟ ବେଳେ ସେମାନେ ଯାହା ଏଠାକୁ ଆସିଥିଲେ ।"

"ହଁ, ମାଉସୀ, ବାପା ମା ବେଶ୍ ଭଲ ଅଛନ୍ତି ।"

"ଦେବ ତୋତେ ମା ଯେତେ ପ୍ରଶଂସା କରେ, ତୁ ଶୁଣି ପାରିବୁନି । ସେ କହେ ତୋ ଭଳି ଝିଅ କୋଟିକରେ ଗୋଟିଏ ଅଛି କି ନାହିଁ ସନ୍ଦେହ । ଭଗବାନ.... କ'ଣ କହି ଆସୁଥିଲେ, ହଠାତ୍ କ'ଣ ଭାବି ରହିଗଲେ ଉମାଦେବୀ ।"

"କ'ଣ କହୁଥିଲ ମାଉସୀ, ହଠାତ୍ ଅଟକିଗଲ ଯେ ?"

"ନା, ଝିଅ କହୁଥିଲି ଭଗବାନ ତୋତେ କୋଟି ପରମାୟୁ ଦେଇଥାନ୍ତୁ ।"

"ନା, ମାଉସୀ, ଏ କଥାଟା ସେଠି ଖାପ୍ ଖାଇଲାନି । ଆପଣ ଆଉ କ'ଣ କହିବାକୁ ଚାହୁଁଥିଲେ । ଏ କଥା ହୋଇଥିଲେ ଆପଣ କହୁ କହୁ ଅଟକି ଯାଇଥାନ୍ତେ କାହିଁକି ?"

ହସିଲେ ଉମାଦେବୀ । "ମୁଁ ବୁଢ଼ୀଲୋକ, କହୁ କହୁ କ'ଣ କହି ପକାଇଲି, ତୁ ଏତେ ଧରିଲେ କ'ଣ ଚଳିବ ମା ?"

ଆୟା ଆସି ଖବର ଦେଲା, "ଡାଇନିଂରୁମ୍‌ରେ ସବୁ ଠିକ୍‌ଠାକ୍ ହୋଇଗଲାଣି ମା । ଦେବବାବୁ ଗାଧୋଇ ସାରିଲେଣି । ସେ ବର୍ତ୍ତମାନ ଆସିଯିବେ ।"

"ତୁ ଝିଅ ଏତେଦିନ ପରେ ଆମଘରକୁ ଆସିଛୁ । ଟିକିଏ ଚା' ଜଳଖିଆ ନ ଖାଇ କ'ଣ ଚାଲିଯିବୁ ମା ? ତୁ ଚା' ନ ଖାଇଲେ ମୋ ମନ ଭାରି କଷ୍ଟ ହେବ । ଦେବକୁ ତୁମ ଘରେ ଯେଉଁ ଆଦର, ତାକୁ ଡିନର ନ ଖୋଇ କ'ଣ ଛାଡ଼ିଛ ? ଏଠି ତୁ ଟିକିଏ ଚା' କେମିତି ନ ଖାଇବୁ ମା ?"

× × × × ×

ବୋମ୍ବେ ହେଙ୍ଗିଙ୍ଗ୍ ଗାର୍ଡ଼େନ୍‌ର ଏକ ଛୋଟ ବୁଦାମୂଳେ ଗୀତାଦେବୀ ଓ ଦେବବାବୁ କଥାବାର୍ତ୍ତାରେ ଲାଗି ଯାଇଥାନ୍ତି । କେତେବେଳୁ ଚାରିଆଡ଼େ ଅନ୍ଧାର ମାଡ଼ି ଆସିଲାଣି ସେମାନଙ୍କ ଖିଆଲ ନାହିଁ । ହେଙ୍ଗିଙ୍ଗ୍ ଗାର୍ଡ଼େନ୍‌ର ଅନ୍ୟ ଅଂଶ ସବୁ ପାରଦ

ପ୍ରଦୀପମାଳାରେ ଉଦ୍‌ଭାସିତ ହୋଇ ଉଠିଥିଲେହେଁ ସେହି ଅଂଶରେ ଆଲୋକର ତୀବ୍ରତା ସେତେ ନାହିଁ । ଦୁହେଁ ନାନା ପ୍ରକାରର କଥାବାର୍ତ୍ତାରେ ଲାଗି ଯାଇଥାନ୍ତି । କଥା ସରିବାକୁ ନାହିଁ । ପ୍ରତ୍ୟେକ ନିଜ ନିଜ ଅନୁଭୂତି ବର୍ଣ୍ଣନା କରିବାରେ ବ୍ୟସ୍ତ । କଥାବାର୍ତ୍ତାରେ ଆଦିଅନ୍ତ ନାହିଁ । କଥା ହେଉ ହେଉ ହଠାତ୍ ଦେବବାବୁ ନିଜ ଘଡ଼ିକୁ ଅନାଇଦେଇ ଚମକି ଉଠିଲେ, "ଆଁ, ଏ କ'ଣ ଗୀତା, ଆଠଟା ବାଜିଗଲାଣି ? ତୁମ ବାପା ମା ବଡ଼ ବ୍ୟସ୍ତ ହେଉଥିବେ ତୁମ ପାଇଁ । ସମୟଟା ଏତେଶୀଘ୍ର ଚାଲିଗଲା, ଆମେ କେମିତି ଜାଣି ପାରିଲେନି ।"

"ହଁ, ବେଳେବେଳେ ସେମିତି ଜଣାପଡ଼େ ଦେବ । ଏଥିରେ ବ୍ୟସ୍ତ ହେବାର କିଛି ନାହିଁ ।"

"ଆରେ, ଆଜି ଆଠଟାବେଳେ ଟେଲିଭିଜନରେ ପରା ଆମ ପ୍ରଧାନମନ୍ତ୍ରୀଙ୍କ ଭାଷଣ ଥିଲା । ସରକାରୀ କଳକାରଖାନାରେ ଲାଭ ନ ହୋଇ କ୍ଷତି କାହିଁକି ହେଉଛି, ତାକୁ ସୁଧାରିବା ପାଇଁ କ'ଣ ସେ ନୂଆ ଦିଗ୍‌ଦର୍ଶନ ଦେବେ ।"

"କେତେବେଳେ ଥିଲା ?"

"ଆଠଟା ପନ୍ଦର ମିନିଟ୍‌ରେ ।"

"ଓଃ, ଭାଷଣଟା ମିସ୍ ହୋଇଗଲା । ଆଃ, ପ୍ରଧାନମନ୍ତ୍ରୀଙ୍କ ମତ କ'ଣ ଶୁଣିଥାନ୍ତେ ।"

"ତୁମେ ବ୍ୟସ୍ତ ହୁଅ ନାହିଁ ଦେବ, ଆମେ ବର୍ତ୍ତମାନ ଶୁଣି ପାରିବା ।"

ଏତକ କହି ଗୀତାଦେବୀ ନିଜ ହେଣ୍ଡ୍‌ବେଗ୍‌ରୁ ଆଲୁମିନିୟମ୍ ପ୍ଲେଟ୍‌ଟିଏ ବାହାର କଲେ । ତାକୁ ନେଇ ନିକଟସ୍ଥ ପାରଦ ପ୍ରଦୀପ ତଳେ ଠିଆ ହେଲାବେଳକୁ ସେହି ପ୍ଲେଟ୍‌ର ଛୋଟ ପରଦା ଉପରେ ପ୍ରଧାନମନ୍ତ୍ରୀଙ୍କ ରଙ୍ଗିନ୍ ଚିତ୍ର ଫୁଟି ଉଠିଲା । ସଙ୍ଗେ ସଙ୍ଗେ ତାଙ୍କ ଭାଷଣ ଖୁବ୍ ଜୋରରେ ନ ହେଲେ ବି ବୁଝିପାରିଲା ଭଳି ସ୍ୱରରେ ଶୁଭିଲା । ପାରଦ ପ୍ରଦୀପରେ ଆଲୋକଠାରୁ ଦୂରେଇ ରହିଲେ କିଛି ଦିଶିଲାନି । ପ୍ରଧାନମନ୍ତ୍ରୀଙ୍କ ଭାଷଣ ଶୁଣିବା ପାଇଁ ଗୀତା ସହିତ ଦେବବାବୁ ସେହି ଆଲୋକ ପ୍ରଦୀପ ତଳେ ଠିଆ ହେଲେ । ଭାଷଣ ଶୁଣୁ ଶୁଣୁ ଦେବବାବୁ କହିଲେ, "ଏଥର ଆମ ଭାରତ ସରକାରଙ୍କର ଚେତା ହେଲା ଗୀତା, ଆମ ସରକାରୀ ଶିଳ୍ପସବୁରେ କ୍ଷତି ହେଉଛି କାହିଁକି ? ଶିଳ୍ପଗୁଡ଼ିକ ଅଚଳ ହୋଇ ବନ୍ଦ ହୋଇଯାଉଛି କାହିଁକି ? ବ୍ୟକ୍ତିଗତ ଅକ୍ତିଆରରେ ଥିବା ଶିଳ୍ପରେ ଲାଭ ହେଉଥିଲା ବେଳେ ସରକାରୀ ଶିଳ୍ପରେ କ୍ଷତି କାହିଁକି ହୁଅନ୍ତା ? ଭୁଲ ତଥା ଅଞ୍ଚ ପରିଚାଳନା ହିଁ ଏହାର ମୂଳରେ । ଶିଳ୍ପ ପାଇଁ ଉଦ୍ଦିଷ୍ଟ ମୂଳଧନରୁ କିଏ

କେତେ ପ୍ରକାରେ ନିଜ ନିଜ ଖର୍ଚ୍ଚରେ ଲଗାଇଦେଇ ଶିଳ୍ପକୁ ମୂଳରୁ ରୁଗ୍ଣ ଅବସ୍ଥାକୁ ନେଇ ଆସୁଛନ୍ତି । ଯାହାହେଉ ଭଲ ହେଲା ପ୍ରଧାନମନ୍ତ୍ରୀ ତାହା ସମସ୍ତଙ୍କୁ ଚେତାଇଦେଲେ । ତାଙ୍କର ଶେଷ କେଇପଦ କଥା ଶୁଣିଲ ତ ଗୀତା ? ଏବେ ଏଣିକି ଯେଉଁ କାରଖାନା କ୍ଷତିରେ ଚାଲିବ କାରଖାନାର କର୍ତ୍ତୃପକ୍ଷମାନେ ସେଥିପାଇଁ ଦାୟୀ ହେବେ । ସେମାନଙ୍କ ଓଜୋର ଆପତ୍ତି କିଛି ଶୁଣାଯିବ ନାହିଁ । ସରକାରୀସ୍ତରରେ ଯାହାକିଛି ଦୋଷତ୍ରୁଟି ଅଛି, ସେସବୁ ଦୂର କରାହେବ । କିଛିଦିନ ଦେଖିବେ ସେମାନେ । ତଥାପି ଯଦି ଲାଭ ନ ହେଲା, ତେବେ ବ୍ୟକ୍ତିଗତ ପରିଚାଳନାକୁ ଛାଡ଼ି ଦିଆଯିବ ।''

ପ୍ରଧାନମନ୍ତ୍ରୀଙ୍କ ଭାଷଣ ବଡ଼ ଚମତ୍କାର ହୋଇଛି ଗୀତା । ତା'ଠାରୁ ଚମତ୍କାର ହେଉଛି ତୁମର ଏହି ପକେଟ୍ ଟେଲିଭିଜନ ସେଟ୍ । ସୂତେ ମୋଟର ଏକ ଆଲୁମିନିୟମ୍ ପାତ ଭିତରେ ଟେଲିଭିଜନ ସେଟ୍ ମୁଁ କଳ୍ପନା କରିପାରୁନି ଗୀତା । ଏହାପାଇଁ ପୁଣି ବେଟେରୀ ଦରକାର ନାହିଁ, ଏହାର ସୁଇଚ୍ ନାହିଁ କି କଣ୍ଟ୍ରୋଲ ନାହିଁ କି ଏଣ୍ଟିନା ନାହିଁ । ପରଦାଟି ଛୋଟ ହେଲେହେଁ ବେଶ୍ ପରିଷ୍କାର ଶୁଭୁଛି ଓ ଦେଖି ହେଉଛି । ଚିତ୍ରଗୁଡ଼ିକ ସାଧାରଣ ଟେଲିଭିଜନ ଚିତ୍ର ଅପେକ୍ଷା ଛୋଟ ହେଲେ କ'ଣ ହେବ କମ୍ ସ୍ପଷ୍ଟ କି କମ୍ ଉଜ୍ଜ୍ୱଳ ନୁହେଁ । ଇଏ, ତୁମର ଆଉ ଏକ ସୁପର୍ବ ଟଏସ୍ ଗୀତା । ଏତିକିରେ ସରିଲା, ନା ଆହୁରି କିଛି ଅଛି । ମଝିରେ ମଝିରେ କ'ଣ ଗୋଟିଏ ଗୋଟିଏ ଏମିତି ବାହାରୁଥିବ ?

ହସିଲେ ଗୀତାଦେବୀ । ଇଏ ପରା, ଜାପାନରେ ପିଲାଙ୍କ ପାଇଁ ଏକ ଖେଳନା । ଏହା ଜାପାନ ତିଆରି । ଆମେରିକାରେ ଏହାର ବିକ୍ରୀ ସର୍ବାଧିକ । ଏହା ଚାଲୁଛି ଆଲୋକ କିରଣର ଶକ୍ତି ଦ୍ୱାରା । ଦିନବେଳେ ସୂର୍ଯ୍ୟକିରଣ ଓ ରାତିରେ ଯେକୌଣସି ବିଦ୍ୟୁତ୍ ପ୍ରଦୀପ ଏହାକୁ ଶକ୍ତି ଯୋଗାଇପାରୁଛି । ଏହାର ପରଦା ସେହି ତରଳ ସ୍ଫଟିକ । ଲୋକାଲ ଷ୍ଟେସନ ଖୁବ୍ ଶକ୍ତିଶାଳୀ ଥିବାରୁ ଏଣ୍ଟିନା ଦରକାର ନାହିଁ । ଏହା ମାତ୍ର ନିକଟସ୍ଥ ଲୋକାଲ ଷ୍ଟେସନର କାର୍ଯ୍ୟକ୍ରମ ଧରି ପାରିବ । ଟେଲିଭିଜନ ସେଟ୍ ଭଳି ଦୂର ପାଖ ସବୁ ଷ୍ଟେସନ ଏଥିରେ ଧରି ହେବନି । ଏହାର ଇଣ୍ଟିଗ୍ରେଟେଡ୍ ସାର୍କିଟ୍, ଏହି ଆଲୁମିନିୟମ୍ ପାତ ଭିତରେ ପୋତା ଯାଇଛି । ମିନି ସ୍ପିକର ମଧ୍ୟ ଏହି ଛୋଟ ଛୋଟ କଣା ତଳେ ସେହି ପାତରେ ପୋତା ଯାଇଛି । ଇଏ ମଧ୍ୟ ଖରାପ ହେବା ସମ୍ଭାବନା ନାହିଁ । ଯଦି କଦବା କେମିତି ଖରାପ ହୁଏ, ସଜାଡ଼ି ହେବନି, ଫୋପାଡ଼ି ଦେବାକୁ ପଡ଼ିବ ।

ଏହିଭଳି ଭାବରେ ଗୀତାଦେବୀ ଓ ଦେବବ୍ରତ ଧୀରେ ଧୀରେ ପରସ୍ପରର ନିକଟବର୍ତ୍ତୀ ହେବାକୁ ଲାଗିଲେ । ଉଭୟେ ପରସ୍ପରକୁ ଅଲକ୍ଷ୍ୟରେ ଅନୁଧ୍ୟାନ କରିବାକୁ

ଭୁଲି ନ ଥାନ୍ତି । ଉଭୟଙ୍କ ଆନ୍ତରିକ ଇଚ୍ଛା ଯେ ଗୋଟିଏ, କେହି କାହାରିକୁ ନ କହି ମନେ ମନେ ରଖିଥାନ୍ତି ।, ଗୀତାର ବାପା, ମା, ତେଣେ ଦେବବାବୁଙ୍କ ମା, ଉଭୟଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ସେମାନେ କିଭଳି ନିଜ ନିଜର ନିକଟସ୍ଥ ହେଉଛନ୍ତି, ଅଲକ୍ଷ୍ୟରେ ଥାଇ ଲକ୍ଷ୍ୟ କରୁଥାନ୍ତି ସେମାନେ । ଉଭୟେ ଯେ ପରସ୍ପରକୁ ଆନ୍ତରିକତା ସହ ଭଲ ପାଉଛନ୍ତି, ଏଥିରେ ସେମାନଙ୍କର ସନ୍ଦେହ ନ ଥାଏ ।

ଦିନେ ଶେଠ୍ ରାମଦାସ, ସ୍ତ୍ରୀ ପ୍ରଭାମୟୀ ଦେବୀଙ୍କୁ ଡାକି କହିଲେ, ''ଏଥର ଆଉ ଡେରି କାହିଁକି ପ୍ରଭାମୟୀ, ପ୍ରସ୍ତାବ ନେଇ ଉମାଦେବୀଙ୍କ ପାଖକୁ ଯିବା କଥା । ଦେବଭଳି କୋଉଁଟିଏ ପାଇବା ଆଜିକାଲି ଦୁନିଆରେ କଷ୍ଟକର । ଏଇ ଦେଖୁନ ଆମ ଘରର ପିଲାଏ କେମିତି ଛତରାମି କରି ବୁଲୁଛନ୍ତି । ମଦପିଆଠାରୁ କ୍ଲବ୍‌ରେ ଟୋକୀ ଧରି ନାଚିବା ପର୍ଯ୍ୟନ୍ତ, କେଉଁଥିରେ ସେମାନେ ବାଦ ପଡୁ ନାହାନ୍ତି । ଦେବ ପିଲାଟି ସେସବୁଠାରୁ ଢେର ଦୂରରେ । ଶିଳ୍ପପତି କ୍ଲବ୍‌ରେ ମୁଁ ତାକୁ ଦେଖିନି କ'ଣ ? ଅନ୍ୟମାନେ ମଦପିଇ ଗଡୁଥିଲା ବେଳେ ସେ କୋକାକୋଲା କି ଫାଣ୍ଟା ପିଇ ତା କାମ ବଢ଼ାଇଦିଏ । ଶିଳ୍ପ କାରଖାନା ପରିଚାଳନାରେ ବଡ଼ ଧୁରନ୍ଧର । ବାପ ଯେମିତି ଶିଳ୍ପ ବ୍ୟବସାୟରେ ଅନୀତି ପୂରାଏନି, ପୁଅ ଠିକ୍ ସେମିତି । ଦେବର ଦୋଷ ଭିତରେ ସେଇ ହେଲା ଗୋଟିଏ ବଡ଼ ଦୋଷ । ମିଛ ସତ କହି ସରକାରଙ୍କୁ ଠକିବନି କି ଶ୍ରମିକମାନଙ୍କ ଗଳା କାଟିବନି । ଶ୍ରମିକମାନେ ଯେମିତି ଅଧିକ ଦରମା ପାଆନ୍ତୁ, କି ବୋନସ ପାଆନ୍ତୁ, ସବୁବେଳେ ତାର ସେଇ ଇଚ୍ଛା । ସୁବ ଖରଚବରଚ ଯାଇ ଯେତିକି ବଳିଲା, ସେତିକିରେ ସେ ଖୁସୀ । ବାପ ଯେମିତି ଶ୍ରମିକମାନଙ୍କୁ ପାଖରେ ବସାଇ କଥାବାର୍ତ୍ତା କରେ ପୁଅ ଠିକ ସେମିତି । ଶ୍ରମିକ ହେଲେ ତା'ର ଜନତା ଜନାର୍ଦ୍ଦନ, ସେମାନଙ୍କ ପୂଜା ହିଁ ଭଗବତ୍ ପୂଜା ।''

''ଏହାକୁ କ'ଣ ତୁମେ ଦୋଷ ବୋଲି କହୁଛ ? ଏହା ଦେବ ପ୍ରକୃତି । ପିଲାଟା ଦେବକଳା ନେଇ ଜନ୍ମ ପାଇଛି । ତୁମମାନଙ୍କ ଭଳି ଅସୁର କଳା ନେଇ ନୁହେଁ । ପୁରାକାଳରେ ଯେଉଁ ଦେବ, ଅସୁର କଥା ପୁରାଣରେ ପଢୁ ନାହଁ, ସେମାନେ ହେଲେ ଏହି ପ୍ରକୃତିର । ସତରେ କ'ଣ ରାକ୍ଷସ ଥିଲେ ନା ଦେବତା ଥିଲେ ? ରାକ୍ଷସ ପ୍ରକୃତି ହିଁ ସେମାନଙ୍କୁ ରାକ୍ଷସ ବୋଲି ସୂଚାଉଥିଲା । ଦେବର ବିରାଟ ହୃଦୟ ନ ଥିଲେ ସେ ଶ୍ରମିକମାନଙ୍କୁ ପାଖରେ ବସାଇ ସେମାନଙ୍କୁ ଆଦର ଅଭ୍ୟର୍ଥନା କରନ୍ତା ନାହିଁ । ତୁମେ ତ ଏତେ ଶିଳ୍ପପତି ଅଛ, କାହାର ସେମିତି ହୃଦୟ ଅଛି କହିଲ ? ଗରିବ ଦୁଃଖରେ ଦୁଃଖୀ ହେବା, ଗରିବର

ଦୁଃଖ ଗୁହାରି ଶୁଣିବା, ସେମାନଙ୍କୁ ବିପଦରୁ ରକ୍ଷା କରିବା ବା ବିପଦବେଳେ ସାହା ହେବା ତୁମମାନଙ୍କ ଭିତରୁ କେତେଜଣ ଶିଳ୍ପପତି କରନ୍ତି ? ତୁମେ ଶ୍ରମିକମାନଙ୍କୁ ମାଟି ଗୋଡ଼ି ବୋଲି ଭାବ । ଏବେ ସେମାନଙ୍କ ଇଉନିୟନ ଅଛି ବୋଲି ଯାହା ଟିକିଏ ଡରୁଛ । ନ ଥିଲେ ତୁମେ ସେମାନଙ୍କୁ ପଚାରନ୍ତ ନାହିଁ । ଶ୍ରମିକମାନଙ୍କୁ ଶୋଷଣ କରିବା ବାଟ ତୁମ୍ଭମାନଙ୍କୁ ଜଣା । ତୁମମାନଙ୍କ ଭଳି ଠକାଠକି କରି ବ୍ୟବସାୟ କରିବା, ତା ବାପ ତ କରିନି, ସେ କେଉଁଠୁ କରିବ ? ବ୍ୟବସାୟରେ ତୁମ୍ଭେମାନେ ଯେଉଁ ଅସଂଖ୍ୟ ପାପ କରୁଛ, ତୁମ୍ଭମାନଙ୍କୁ କିଏ କ୍ଷମା ଦେବ, ତାହା ଦୟାମୟଙ୍କୁ ହିଁ ଜଣା ।''

''ଥାଉ, ଥାଉ, ପ୍ରଭାମୟୀ, ଆଉ ଏତେ ଧର୍ମ ଉପଦେଶ ଦିଅନି । ତୁମ ଧର୍ମ ଉପଦେଶ ଶୁଣି ଶୁଣି ଏ କାନ ଦି'ଟା ବଧିରା ପଡ଼ିଗଲାଣି । ତୁମ ପାଟିରେ ସବୁବେଳେ ଆମେ ଖାଲି ପାପ କରି ଚାଲିଛୁ । ଆମେ ଯଦି ଖାଲି ପାପ କରି ଚାଲିଛୁ, ତୀର୍ଥସ୍ଥାନମାନଙ୍କରେ ଧର୍ମଶାଳା ଗଢ଼ାଉଛି କିଏ, ଦେବମନ୍ଦିରମାନ ପ୍ରତିଷ୍ଠା କରୁଛି କିଏ ? ଦାତବ୍ୟ ଡାକ୍ତରଖାନା, କି ସ୍କୁଲ, କଲେଜ ସବୁ ବସାଉଛି କିଏ ? ଏଥିରେ ଲୋକେ ଉପକୃତ ହେଉଛନ୍ତି ନା ନାହିଁ ? ଇଏ ସବୁ କ'ଣ ପୁଣ୍ୟ ନୁହେଁ ? ଖାଲି ବ୍ରାହ୍ମଣ, ବୈଷ୍ଣବଙ୍କୁ ଡାକି ତୁମ ଭଳି ଦାନ ଖଇରାତ ଦେଲେ ତାହା ହେଲା ଧର୍ମ ।''

''ସେ ପାପ ଧନରୁ ଯେ କି ପୁଣ୍ୟ ହେବ ତାହା ଭଗବାନଙ୍କୁ ଜଣା । ଶ୍ରମିକଙ୍କ ତଣ୍ଟି କାଟିଲ, ତାକୁ ତା' ନ୍ୟାଯ୍ୟ ପ୍ରାପ୍ୟ ଦେଲନି, ତେଣେ ତା ପିଲାପିଲି ନ ଖାଇ ନ ପିଇ ମଲେ । ଏଣେ ତୁମେ କ'ଣ କଲ ନା ଧର୍ମଶାଳା ବନାଉଛ ? ଇଏ କ'ଣ କେବେ ପୁଣ୍ୟ ହେବ ?''

''ଥାଉ, ଥାଉ, ତୁମଠାରୁ ଆଉ ଏ ଉପଦେଶ ଶୁଣିବା ଦରକାର ନାହିଁ ? ଝିଅକୁ ପଚାର ଦେବବାବୁଙ୍କ ଘରକୁ ପ୍ରସ୍ତାବ ନେଇ ଯିବା କି କଅଣ ?''

''ଝିଅକୁ ଆଉ କ'ଣ ପଚାରିବି ? ମୁଁ ଜାଣିଛି, ଝିଅ ମନ କଥା । ସେ ଏଥିରେ ପୂରାପୂରି ରାଜି । ମୁଁ ଦେବ ଛଡ଼ା ଆଉ କାହାକୁ ଜୋଇଁ କରିବିନି ।''

''ମୋର ବି କ'ଣ ସେଇଆ ଇଚ୍ଛା ନୁହେଁ । ମୁଁ ବି ତ ସେଇଆ ଚାହେଁ ।''

''ଯଦି ଚାହଁ, ତେବେ ଦେବପ୍ରତିମ ପିଲାଟାର ଦୋଷ ସବୁ ଦେଖାଉଥିଲ କାହିଁକି ? ସିଏ ସବୁକାଳେ ଦୋଷ ? ଦୁନିଆରେ ଯିଏ ସବୁ ଭଲ କଥା, ଆଦର୍ଶ କଥା, ସିଏ ସବୁ ତୁମ ଆଖିକୁ ଦୋଷ ଭଳି ଜଣାପଡ଼ିବ । ତୁମ୍ଭେମାନେ ତ ରାକ୍ଷସ କଳା ନେଇ ଜନ୍ମ ପାଇଛ, ହରି ନାମ ତୁମ କାନକୁ ପାପ

ବୋଲି ଶୁଭିବ । ରାବଣର କ'ଣ ହେଲା, ହିରଣ୍ୟକଶିପୁର କ'ଣ ହେଲା ? ତୁମେସବୁ ତାଙ୍କର ବଂଶଧର । ପାପପୁଣ୍ୟ ବିଚାର କରିବା ଶକ୍ତି ତୁମମାନଙ୍କର ନାହିଁ । ତୁମେ ତ ଯାହା ଥିଲ, ନିଜ ପୁଅଟାକୁ ମଧ୍ୟ ଠିକ୍ ତୁମରି ଭଳି କରି ସାରିଲଣି । ସେ ବି କ'ଣ ଦେବକୁ ସମାଲୋଚନା କରୁନାହଁ କି ? ସିଏ ଆହୁରି କହୁଛି, "ଦେବ ହେଉଛି ଆମ ଶିଳ୍ପପତି ସମାଜର କଳଙ୍କ ।" ସେ ପୁଣି କହେ, "ବାପ ତ ଥୁବୁଡ଼ା, ପୁଅ ଭଲ ହେବ କେଉଁଠି ?"

ତୁମେ ଯାହା କୁହ, ହରିକିଷନର ବ୍ୟବସାୟ ରୀତି ମୋତେ ଭାରି ଭଲ ଲାଗେ । ତୁମେମାନେ ତାକୁ ବିଗାଡ଼ିବାକୁ କ'ଣ କମ୍ ଚେଷ୍ଟା କରିଛ, ମୁଁ କ'ଣ ଜାଣିନି । କିନ୍ତୁ, ସେ କ'ଣ ତୁମ ବାଟ କେବେ ଧରିଲା । ଶିଳ୍ପପତି କହିବ ତ ତାକୁ ହିଁ କହିବ । ସାରା ଦେଶରେ ସେ ଗୋଟିଏ । ତା'ରି ପୁଅ ତ ଦେବ ।

ତୁମେ ପାଗଳଙ୍କ ଭଳି କ'ଣ କହିଯାଉଛ, ପ୍ରଭାମୟୀ ! ଶିଳ୍ପ ବ୍ୟବସାୟ କାହାକୁ କୁହାଯାଏ, ତୁମେ ଜାଣିଛ ? ତୁମ ବଂଶରେ ତ କେହି ଶିଳ୍ପ ବ୍ୟବସାୟ କରି ନାହାନ୍ତି । ସରକାରଙ୍କ ଗୋଲାମି କରି କରି ତୁମ ବାପ ଅଜାଙ୍କ କାଳ କଟିଲା । କିଛି ନ ଜାଣି ଖାଲି ଭଡ଼ଭଡ଼ ହୋଇ ଏଣୁତେଣୁ ଗୁଡ଼ାଏ କ'ଣ କହି ଯାଉଛ । ଆମ ବାପ ଗୋସବାପ ପରା ତିନିପୁରୁଷରୁ ଆମର କଳକାରଖାନା ଚାଲିଛି । ବ୍ୟବସାୟ ବାଣିଜ୍ୟ ଆମ ରକ୍ତରେ ଅଛି । ବାଣିଜ୍ୟ ବ୍ୟବସାୟ ନୀତି କ'ଣ, ତୁମେ ମୋତେ ବତାଇବ ?

× × × × ×

ଦିନେ ସନ୍ଧ୍ୟାବେଳେ ଦେବବାବୁଙ୍କ ମା ନିଜ ଘରେ ହଠାତ୍ ଶେଠ୍ ରାମଦାସ ଓ ତାଙ୍କ ସ୍ତ୍ରୀଙ୍କୁ ଦେଖି ତାଟଙ୍ଗା । ସେମାନଙ୍କୁ ସେ କେମିତି ଆଦର ଅଭ୍ୟର୍ଥନା କରିବେ ଭାବି ପାରିଲେନି । ଏକେ ତ ସ୍ୱାମୀଙ୍କ ପୁରୁଣା ସାଙ୍ଗ, ତେଣେ ଦେଶର ଜଣେ ବଡ଼ ଶିଳ୍ପପତି । ତାଙ୍କୁ କେମିତି ଠିକ୍ ଭାବରେ ଆଦର ଅଭ୍ୟର୍ଥନା କରାଯିବ ଭାବି ଭାବି ବଡ଼ ବ୍ୟସ୍ତ ହୋଇପଡ଼ିଲେ ସେ । ସେମାନଙ୍କୁ ପାଛୋଟି ନେଇ ବୈଠକଖାନାରେ ବସାଉ ବସାଉ କହି ପକାଇଲେ, "ଆଜି ମୋର ବଡ଼ ଭାଗ୍ୟ, ଆପଣମାନଙ୍କ ଚରଣଧୂଳି ମୋ ଘରେ ପଡ଼ିଲା ।"

"ହଁ, ଉମାଦେବୀ, ଆମେ ଢେର୍ ଦିନ ହେଲା ତୁମ ଘରକୁ ଆସିବୁ ଆସିବୁ ହେଉଥିଲୁ । ତୁମେ ତ ଜାଣୁଥିବ, ଆଜିକାଲି ଆମମାନଙ୍କ ଦାୟିତ୍ୱ କେତେ ବଢ଼ି ଯାଇଛି । କଳକାରଖାନା ଛାଡ଼ି କ'ଣ କୁଆଡ଼େ ଯାଇ ହେଉଛି ? ଟିକିଏ ବି ଫୁରସତ ମିଳୁନି, କୁଆଡ଼େ ଯିବାକୁ । ଏଇ ଶିଳ୍ପ ମାଲିକଙ୍କ ଉପରେ ସରକାରଙ୍କର

ସବୁବେଳେ କଡ଼ାଦୃଷ୍ଟି, ଯେମିତିକି ଏମାନେ ଅସାମାଜିକ ବ୍ୟକ୍ତି, ସମାଜର ଏକ ନମ୍ବର ଶତ୍ରୁ । ଥରକୁଥର ତାଗିଦ୍, ଏ ହିସାବ ଦିଅ, ସେ ହିସାବ ଦିଅ, ସେ ରିପୋର୍ଟ ଦେଇନ, ସେ ପ୍ରୋଫର୍ମା ରହି ଯାଇଛି, ସରକାରଙ୍କଠାରେ ପହଞ୍ଚିନି, ଶୁଣି ଶୁଣି ଆମ ମୁଣ୍ଡସବୁ ବିଗିଡ଼ି ଗଲାଣି । ଦେବକୁ ଦେଖୁ ନ ଥିବ, ସେ କେମିତି ଆଜିକାଲି କେତେ ବ୍ୟସ୍ତ ରହୁଥିବ । ଆଜିକାଲି ସରକାର କ'ଣ ଆମକୁ ଶାନ୍ତିରେ ଟିକିଏ ନିଶ୍ୱାସ ମାରିବାକୁ ଦେଉଛନ୍ତି । ସରକାର ତ ଯାହା, ସେମାନଙ୍କ ଚାମ୍‌ଚାଙ୍କ ଉପଦ୍ରବ ଆହୁରି ଅଧିକ । ଏଥିରେ ବେଳ କେଉଁଠି ମିଳୁଛି ଯେ ମଣିଷ ଟିକିଏ ବାହାରକୁ ବାହାରି ବନ୍ଧୁବାନ୍ଧବ ସାଙ୍ଗସାଥିଙ୍କ ଘରକୁ ଯିବ ।''

''ଆଜି ମୁଁ ଭାରି ଖୁସୀ ଯେ ଆପଣମାନେ ଆମ ଘରକୁ ଆସିଛନ୍ତି ।''

''ଆସି ନ ଥାନ୍ତୁ କେମିତି ? ପୁଅ ଝିଅ ଦୁହେଁ ଯେତେବେଳେ ପରସ୍ପରକୁ ଏତେ ଭଲ ପାଉଛନ୍ତି, ସେମାନଙ୍କୁ ଛନ୍ଦାଛନ୍ଦି ନ କରିଦେବା କେମିତି ? ସିଏତ ଆମର ଏକ ଗୁରୁଦାୟିତ୍ୱ ।''

''ଆପଣ କେଉଁ କଥା କହୁଛନ୍ତି, ଦେବ ଓ ଗୀତାଙ୍କ କଥା ତ ? ମୁଁ ତ ସେଥିରେ ରାଜି । ଗୀତା ଭଳି ଝିଅଟେ ପାଇବା ଅତି ଭାଗ୍ୟରେ ଥିଲେ ମିଳେ । ପୁଅକୁ ତ ଦିନେ ପଚାରୁଥିଲି, ସିଏ ବି ତ ସେଥିରେ ରାଜି ।''

''ତା'ହେଲେ ଏହାକୁ ପକ୍‌କା ଜବାବ୍ ବୋଲି ଧରିନେବା ତ ?''

ହସିଲେ ଉମାଦେବୀ, ''ଏଥିରେ ସନ୍ଦେହ କରିବାର ତ କିଛି ନାହିଁ ।''

''ତା'ହେଲେ ଆମେ ଆଗେଇ ଯାଉଛୁ । ମୋର ତ ସିଏ ଗୋଟିଏ ବୋଲି ଝିଅ । ତା' ବିଭାଘରଟା ଟିକିଏ ଧୁମ୍‌ଧାମ୍‌ରେ କରିବାକୁ ପଡ଼ିବ । ପୁଣି ଆମ ଗୋଷ୍ଠୀରେ ଟିକିଏ ଜାକଜମକ ନ ହେଲେ କ'ଣ ଚଳିବ ? ଟିକିଏ କେଉଁଠି ଊଣା ହୋଇଗଲେ ଲୋକେ ତ ଅନାଇ ବସିଛନ୍ତି କେତେ କ'ଣ କହିବା ପାଇଁ ।''

''ହଁ, ଆପଣମାନଙ୍କର ଜାତକ ମିଳାମିଳି ନାହିଁ ତ ?''

''ସେ ପୁଣି ଗୋଳମାଳିଆ କଥା । ପୁଅ ଝିଅ ତ ରାଜି, ବାପା, ମା ତ ରାଜି । ଆଉ ଜାତକ ମିଳାଇ କ'ଣ ଲାଭ ? ସବୁ ଠିକ୍‌ଠାକ୍ ହୋଇସାରିଲା ପରେ ଯଦି ଜାତକ ନ ମିଳିଲା, ତେବେ ମନ ଭାରି ଖରାପ ହେବ । ଭଗବାନ ସାହା ଭରସା, ଏହି ବିଶ୍ୱାସରେ ଆଗେଇଯିବା ଉଚିତ୍ ।''

''ଆମର ମଧ୍ୟ ସେଥିରେ ରାଜି । ହେଉ, ଏଥର ଆମେ ଉଠୁଛୁ । ଜବାବ ତ ପକ୍‌କା ହୋଇଗଲା । ଆସନ୍ତା ଫାଲ୍‌ଗୁନ ମାସରେ ଭଲ ଲଗ୍ନ ଅଛି, ସେଥିରେ କରିଦେବା ଭଲ ।''

"ଆଁ, ଆପଣମାନେ ଉଠୁଛନ୍ତି କୁଆଡ଼େ ? ଆଜି ଏତେବଡ଼ ସିଦ୍ଧାନ୍ତଟାଏ ହେଲା, ଆପଣମାନେ ମୁହଁ ମିଠା ନ କରି ଚାଲିଯିବେ କୁଆଡ଼େ ?"

ଠିକ୍ ଏତିକିବେଳେ ଆୟାମାନେ ଡ୍ରଇଂରୁମ୍‌ର ଟିପୟ ଉପରେ ନାନା ପ୍ରକାର ମିଠାଇଥିବା ରୁପାଥାଳି ସବୁ ସଜାଇ ଦେଲେ ।

"ଆଁ, ଆଁ, ଏତେ ପ୍ରକାର କ'ଣ ସବୁ ଆଣୁଛନ୍ତି ଉମାଦେବୀ । ହେଉ, ଆପଣଙ୍କ କଥା ରହିଲା । ଏତକ କହି ଶେଠ୍ ରାମଦାସ ଓ ପ୍ରଭାମୟୀ ଦେବୀ ଗୋଟିଏ ଗୋଟିଏ ମିଠାଇ ପାଟିରେ ଦେଇ ଉଠିଲେ । ଏଥର ଆମେ ମୁହଁ ମିଠା କଲୁ ।" ଉଠୁ ଉଠୁ ପଚାରିଲେ, "କ'ଣ ଦେବ ଘରେ ନାହିଁ କି ? କାହିଁ ତାକୁ ତ ଆମେ ଦେଖୁନୁ ।"

ଠିକ୍ ଏତିକିବେଳେ ଦେବବାବୁ କାରଖାନାରୁ ଫେରି ଘରେ ଆସି ପହଞ୍ଚିଗଲେ । ଶେଠ୍ ରାମଦାସ ଓ ପ୍ରଭାମୟୀ ଦେବୀଙ୍କୁ ନମସ୍କାର ଜଣାଇ ଗୋଡ଼ଧୂଳି ନେଉ ନେଉ ଶେଠ୍ ରାମଦାସ କହିଲେ, "ହେଇ, ଦେବ ତ ଆସିଗଲାଣି । କ'ଣ ବାପ, ଏତେ ସମୟ ପର୍ଯ୍ୟନ୍ତ କ'ଣ ତୁମେ କାରଖାନାରେ ଥିଲ ?"

"ନାଇଁ, ଆମର କେତେଜଣ ଡିଷ୍ଟ୍ରିବ୍ୟୁଟର ଆସିଥିଲେ ଯେ ସେମାନଙ୍କ ସହିତ ଆଲୋଚନା ଚାଲିଥିଲା ।"

ଶେଠ୍ ରାମଦାସ ଓ ତାଙ୍କ ପତ୍ନୀଙ୍କୁ ବାଟୋଇ ଦେଇ ଫେରି ଆସୁ ଆସୁ ଉମାଦେବୀ ପୁଅକୁ ଅନାଇ କହିଲେ, "ଶେଠ୍ ରାମଦାସ କ'ଣ ପାଇଁ ଆସିଥିଲେ ଜାଣିଲୁ ତ ପୁଅ । ତୋ ବିବାହ ପ୍ରସ୍ତାବ ନେଇ ସେମାନେ ଆସିଥିଲେ । ଗୀତା ସହିତ ତୋ ବିଭାଘର ନିର୍ଧାର୍ଯ୍ୟ ହୋଇଗଲା । ଆସନ୍ତା ଫାଲ୍‌ଗୁନ ମାସରେ ଏହା ସମ୍ପନ୍ନ ହେବ ବୋଲି ମୁଁ ସେମାନଙ୍କୁ ଜବାବ ଦେଇଦେଲି ।"

ମା'ଙ୍କ କଥାରେ କିଛି ଉତ୍ତର ନ ଦେଇ ଦେବବାବୁ ଚୁପ୍ ରହିଲେ । ଆପତ୍ତି କରିବାର କ'ଣ ବା ଅଛି ? ଉଭୟେ ତ ବହୁଦିନ ଧରି ନିଜ ନିଜ ଭିତରେ ମିଶାମିଶି କରି ଏହା ହିଁ ଚାହୁଁଥିଲେ ।

× × × × ×

ମହା ଜାକଜମକରେ ଦେବବାବୁଙ୍କ ସହିତ ଗୀତାଦେବୀଙ୍କର ବିବାହକାର୍ଯ୍ୟ ସମ୍ପନ୍ନ ହୋଇଗଲା । ବିଭାଘରର ଚତୁର୍ଥୀ ଦିନ, ଚତୁର୍ଥୀ କାର୍ଯ୍ୟ ସମାପନାନ୍ତେ ବନ୍ଧୁବାନ୍ଧବ, ସାଙ୍ଗସାଥିମାନଙ୍କୁ ଭୁରି ଭୁରି ଖାଦ୍ୟପେୟରେ ଆପ୍ୟାୟିତ କରାଗଲା । ସମସ୍ତେ ଖାଇପିଇ ଚାଲିଯିବା ପରେ ପୁଅବୋହୂ ମା'ଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି କାର୍‌ରେ ବୋମ୍ବେ ଏୟାରପୋର୍ଟ ଅଭିମୁଖେ ରମାନା ହୋଇଗଲେ । ସେଠୁ ସେମାନେ

ଉଡ଼ାଜାହାଜ ଧରିବେ ମସୌରୀ । ମସୌରୀରେ ଦେବବାବୁଙ୍କ ନୂତନ ପ୍ରାସାଦରେ ପୁଅବୋହୂଙ୍କର ମଧୁରାତ୍ରି ବିତାଇବା ସ୍ଥିର ହୋଇଥାଏ । ଉମାଦେବୀ ସେଠାକାର କର୍ମଚାରୀମାନଙ୍କୁ ଡକାଇ କଡ଼ା ତାଗିଦ୍ କରି ପୂର୍ବଦିନ ପଠାଇ ଦେଇଥାନ୍ତି । ତାଙ୍କର ତାଗିଦ୍ ପୁଅବୋହୂଙ୍କର ସେଠି ରହିବାରେ ଯେମିତି ସାମାନ୍ୟତମ ଅସୁବିଧା ନ ହୁଏ ।

ତହିଁ ପରଦିନ । ଫାଲ୍‌ଗୁନ ମାସ ହେଲେହେଁ ମସୌରୀରେ ଶୀତର ପ୍ରକୋପ ଯାଇ ନ ଥାଏ । ଯଦିଚ ସେତେବେଳକୁ ମସୌରୀରେ ବରଫ ପଡୁ ନ ଥାଏ, ନିକଟସ୍ଥ ହିମାଳୟ ପର୍ବତର ଶିଖର ଦେଶରେ ପଡ଼ିଥିବା ବରଫ ଏକ ଶୁଭ୍ର କିରୀଟ ଭଳି ପ୍ରତୀୟମାନ ହେଉଥାଏ । ମନେ ହେଉଥାଏ, ଏହି ଶୁଭ୍ର ତୁଷାର କିରୀଟ ଯେମିତି ଆକାଶର ନୀଳରଙ୍ଗକୁ ଭେଦ କରି ଠିଆ ହୋଇଛି । ଦକ୍ଷିଣ-ପୂର୍ବ ପାର୍ଶ୍ୱର ଝରକା ଦେଇ ବାଳସୂର୍ଯ୍ୟଙ୍କର ସୁନେଲିକିରଣ ଦେବବାବୁଙ୍କ ଦୁଗ୍ଧଫେନନିଭ ଶଯ୍ୟା ଉପରେ ଝରି ପଡୁଥାଏ, ଠିକ୍ ଶାରଦୀୟ ପ୍ରଭାତର ମ୍ଳାନମୁଖୀ ରଜନୀଗନ୍ଧା କି ହେମନ୍ତ ନିଶାନ୍ତର ବୃନ୍ତଚ୍ୟୁତ ଶିଶିରମିଶ୍ରିତ ଦୂର୍ବାଦଳ ବିଲୁଣ୍ଠିତ ଶ୍ରୀଭ୍ରଷ୍ଟ ଶେଫାଳିକା ଭଳି । ଉଭୟେ ଗାଢ଼ ନିଦ୍ରାରେ ଅଭିଭୂତ । ଦେବବାବୁଙ୍କ ବକ୍ଷ ସହିତ ମିଶି ଯାଇଛି ଗୀତାଦେବୀଙ୍କର ତନୁପାତେଳୀ ତପ୍ତକାଞ୍ଚନବର୍ଣ୍ଣା କୋମଳାଙ୍ଗୀ ଶରୀରଟି । ଉଭୟଙ୍କ ମୁଖମଣ୍ଡଳରୁ ନିଦ୍ରା ଭାଙ୍ଗିବାର ସାମାନ୍ୟତମ ଲକ୍ଷଣ ପ୍ରକାଶ ପାଉ ନ ଥାଏ । ମୁଦ୍ରିତନୟନା ଗୀତାଦେବୀଙ୍କର ଅନିମୀଳିତ ଚକ୍ଷୁପଲ୍ଲବରୁ ଶାନ୍ତ ସୁଷୁପ୍ତିର ଅବାରିତ ବାରିରାଶି ସତେ ଯେମିତି ଝରି ପଡୁଛି । ଗୀତାଦେବୀଙ୍କର କ୍ଷୀଣମେଖଳା ତ୍ରସ୍ତବସନ ଯୋଗୁ ବେଶ୍ ପରିସ୍ଫୁଟ । କମ୍ରବକ୍ଷରୁ ଝୀନ ଉତ୍ତରୀୟ ଅଯତ୍ନ ଭାବରେ ତଳକୁ ଖସି ଆସିଛି । ଅନ୍ତର୍ବାସ ବକ୍ଷଚ୍ୟୁତ । ଅନାବୃତ ଉନ୍ନତ ବକ୍ଷ କୋରକରୁ ଝରିପଡୁଛି ବାଳସୂର୍ଯ୍ୟଙ୍କର ସୁନେଲି କିରଣର ଅଗଣିତ ପୁଷ୍ପରାଜି । ଲାକ୍ଷାରଞ୍ଜିତ ଚରଣ ଯୁଗଳର ମୁକ୍ତାଖଚିତ ରୌପ୍ୟ ମଞ୍ଜିରକୁ ଚୁମ୍ବନ କରୁଛି ପୀନୋନ୍ନତ ବକ୍ଷକୁ ଅନାବୃତ କରି ଖସି ଆସିଥିବା ଝୀନ ଉତ୍ତରୀୟ । କବରୀବନ୍ଧନ ବିମୁକ୍ତ କାଳିନ୍ଦୀକୃଷ୍ଣ କେଶଗୁଚ୍ଛ ଆବୃତ କରୁଛି ବକ୍ଷବନ୍ଧନୀ ବିଯୁକ୍ତ ପୀନୋନ୍ନତ ବକ୍ଷ ସୌନ୍ଦର୍ଯ୍ୟ ଯୁଗଳକୁ । ବିତ୍ରସ୍ତ ବସ୍ତ୍ରାଭରଣ ସମଗ୍ର ତନୁଟିକୁ ଆବୃତ କରି ରଖି ପାରିନି । ଗୀତା ଆହୁରି ଆକର୍ଷଣୀୟ ହୋଇ ଉଠିଛି ସେହି ଅନାବୃତ ବେଶରେ । ମନେ ହେଉଥାଏ, ସତେ ଯେମିତି ପ୍ରାକୃତିକ ସୌନ୍ଦର୍ଯ୍ୟର ଏକ ବିପଣୀ ଖୋଲି ଦେଇଛି ସେହି ଦୁଗ୍ଧଫେନନିଭ ଶଯ୍ୟା ଉପରେ ।

ହଠାତ୍ ବାହାରେ ଏକ ଶବ୍ଦରେ ଦେବବାବୁଙ୍କ ନିଦ ଭାଜିଗଲା । ସେ ଆଖି ଖୋଲି ଦେଖନ୍ତି ତ ଦିବାକର ଚକ୍ରବାଳଠାରୁ ଢେର୍ ଉପରକୁ ଉଠିଗଲେଣି ।

ତାଙ୍କ କୋଠରିର ସୁନେଲିକିରଣ ଧୀରେ ଧୀରେ ଶୁଭ୍ରକିରଣରେ ପରିଣତ ହେବାକୁ ବସିଛି । ବହୁତ ଡେରି ହୋଇଗଲାଣି ଭାବି ସେ ଗୀତାକୁ ଉଠାଇବା ପାଇଁ ହଲାଇ ଦେବାକୁ ଯାଉଥିଲେ, ହଠାତ୍ କ'ଣ ଭାବି ସେଥିରୁ ବିରତ ହେଲେ । ନା ବିଚାରୀ ଶୋଇଥାଉ । ପୂର୍ଣ୍ଣଭାବରେ ନିଦ ଭୋଗ ନ ହେଲେ ବଡ଼ ଅଶାନ୍ତି ଲାଗିବ ଦିନସାରା । ଦେବବାବୁ ଲକ୍ଷ୍ୟ କଲେ ଗୀତା ଶୋଇଛି ଏକ ଶାନ୍ତ କପୋତୀଟିଏ ଭଳି । ଶରୀରର ଲଜ୍ଜା ନିବାରଣ କରିବାକୁ ଚେଷ୍ଟା କରୁଛି ଅସୁମାରି ସ୍ୱର୍ଣ୍ଣପୁଷ୍ପ ଖଚିତ ରକ୍ତବର୍ଣ୍ଣର ବନାରସୀ ଶାଢ଼ିଟି । କିନ୍ତୁ ଶରୀରର ଅନ୍ତର୍ବାସ ସବୁ ଫିଟି ଯାଇଥିବାରୁ ସେ ନିଜର ଅକ୍ଷମତା ପ୍ରକାଶ କରୁଛି । ଦେବବାବୁ ଗୀତାକୁ ବହୁବାର ଦେଖିଛନ୍ତି ନିକଟରେ ଖୁବ୍ ନିକଟରେ, କିନ୍ତୁ ସେ ଆଜିଭଳି ତାଙ୍କୁ କେବେ ଏତେ ସୁନ୍ଦର ଦେଖି ନ ଥିଲେ । ଗୀତାର ସୌନ୍ଦର୍ଯ୍ୟକୁ ସେ ଯାହା କଳନା କରିଥିଲେ, ତା'ଠାରୁ ଢେର୍ ଅଧିକ ସୁନ୍ଦରୀ ଗୀତା । ସତେ ଯେମିତି ଦୁନିଆର ସବୁ ନାରୀ ସୌନ୍ଦର୍ଯ୍ୟ ଏକାଠି ଠୁଳ ହୋଇଛି ତା'ର ଏହି ଉନ୍ମୁକ୍ତ ଶରୀରରେ । ଶରୀରରେ ହୀରା ମୋତି ଖଚିତ ଅସଂଖ୍ୟ ପ୍ରକାର ସ୍ୱର୍ଣ୍ଣାଳଙ୍କାର ପାଦଠାରୁ ମସ୍ତିଷ୍କ ପର୍ଯ୍ୟନ୍ତ ଜଡ଼ାଇ ହୋଇ ରହିଛି । ମୁଖରେ ତାର ମିଳନ ମଧୁର ହାସ୍ୟର ଏକ ଅରୁଣାଭଛାୟା, ମୁଦ୍ରିତ ଲୋଳବିଲୋଳ ନୟନରେ ବିରହାବିଧୁରା ବଧୂର ଅବ୍ୟକ୍ତ ଭାଷା ଭଳି କେତେ ନୀରବ ଭାଷା, ଘନ କୃଷ୍ଣକେଶରେ ସଯତ୍ନ ଅଙ୍କିତ ସୀମନ୍ତିନୀରେଖା, ଆଉ କୁସୁମ କୋମଳ ତନୁଲତାରେ ଯୌବନର ତରଳ ଚାପ ସଙ୍ଗେ ମୁଦ୍ରିତ ଅଧରରେ ଶତସହସ୍ର ଅମୀମାଂସିତ ପ୍ରଶ୍ନଗୁଚ୍ଛର ଆବରଣରେ ସେ ଦିଶୁଥିଲା ଅତି ମନୋରମ, ଅତି ମନମତାଣିଆ । ତାର ପଦ୍ମଫୁଲ ପରି ଢଳଢଳ ମୁଖମଣ୍ଡଳରୁ ଝରି ପଡୁଥିବା ଅପରୂପ ଜ୍ୟୋତି ଦେଖି ମନେ ହେଉଥିଲା ସତେ ଯେମିତି ସ୍ୱର୍ଗରୁ ଓହ୍ଲାଇ ଆସିଛି ପୁରାଣବର୍ଣ୍ଣିତ ପରୀଟିଏ, ସୁନ୍ଦରୀ ଉର୍ବଶୀ କି ଅତି ସୁନ୍ଦରୀ ମେନକା ।

ନିଜକୁ ଆଉ ସମ୍ଭାଳି ପାରିଲେନି ଦେବବାବୁ । ଗୀତାର ସେହି ଆରକ୍ତ କପୋଳ ଉପରେ ଚୁମ୍ବନର ଏକ ରେଖା ଟାଣିଦେବାକୁ ପ୍ରବଳ ଇଚ୍ଛା ହେଉଥିଲେହେଁ ନିଜକୁ ଆୟତ୍ତ କରି ନିଦ୍ରିତା ଗୀତାର ମୁଖଆଡ଼କୁ ଆଗେଇ ଯାଉଥିବା ମୁଖଟିକୁ ଦୂରେଇ ଆଣିଲେ । ଗୀତାର ମୃଣାଳନିନ୍ଦିତ ବାହୁଯୁଗଳର ସ୍ୱର୍ଣ୍ଣକେୟୁରର ପଦ୍ମକଳିକାକୁ ଇତସ୍ତତଃ କରୁ କରୁ ଗୀତାର ସେହି ଅନାବୃତ ସୌନ୍ଦର୍ଯ୍ୟ ଆଗରେ ଆହୁରି ଦୁର୍ବଳ ହୋଇ ଯାଉଥିଲେ ସେ । ଦୂରେଇ ଆଣୁଥିବା ମୁଖକୁ ଆଉ ଦୂରେଇ ନେଇ ପାରିଲେନି । ହଠାତ୍ ଶୟନରତା ଗୀତାକୁ ଟାଣିଆଣି ନିଜ ବକ୍ଷ ସହିତ ଭିଡ଼ି ଧରି ସେହି ନିଦ୍ରିତା ଗୀତାର କମନୀୟ କପୋଳ ଉପରେ ଆଙ୍କିଦେଲେ ।

ମଧୁର ଚୁମ୍ବନର କେତେଗୋଟି ରକ୍ତିମ ଚିହ୍ନ । ଗୀତାର ନିଦ ହଠାତ୍ ଭାଙ୍ଗିଗଲା । ଦେଖିଲା ସେ ସ୍ୱାମୀଙ୍କ ବାହୁବନ୍ଧନ ଭିତରେ ପୂରାପୂରି ଆବଦ୍ଧା ।

"ଓଃ, କେଡ଼େ ବଡ଼ ସ୍ୱପ୍ନ ମୋର ତୁମେ ଭାଙ୍ଗିଦେଲ ଦେବ ?"

"ସ୍ୱପ୍ନ ? କି ସ୍ୱପ୍ନ ?"

"ଆମ ମଧୁରାତ୍ରିର ସ୍ୱପ୍ନ ।"

"କାଲି ରାତିରେ ତ ମଧୁରାତ୍ରି ବିତାଇଲ, ଆଉ ପୁଣି କି ସ୍ୱପ୍ନ ? କ'ଣ ଦ୍ୱିତୀୟ ମଧୁରାତ୍ରି ପାଇଁ ?"

"ମଧୁରାତ୍ରି ତ ଯାଇଛି, ତେବେ ମୋତେ ଏମିତି ଭାବରେ ଭିଡ଼ି ଧରିଛ କାହିଁକି ?" କ'ଣ ପୁଣି ଦ୍ୱିତୀୟ ମଧୁରାତ୍ରି ପାଇଁ ?

"ବର୍ତ୍ତମାନ ତ ରାତି ନାହିଁ ଗୀତା । ବର୍ତ୍ତମାନ ତ ପୂରା ଦିନ ।"

"ହେଉ, ମଧୁର ଦିନ ହେଉ, ମଧୁର ରାତ୍ରି ଯଦି ନ ହେଲା । ଯାହା କୁହ ତୁମେ ବଡ଼ ଦୁଷ୍ଟ ଦେବ ।"

"ମୁଁ ଦୁଷ୍ଟ ? ଦୁଷ୍ଟାମିର କି ଲକ୍ଷଣ ଦେଖିଲ ତୁମେ ?"

"ତୁମେ ମୋତେ ଯେମିତି ଭାବରେ ଧରି ରଖିଛ, ତା'କୁ ଆଉ କ'ଣ କୁହାଯିବ କହିଲ ?"

"ଆଁ, ଇଏ ଦୁଷ୍ଟାମି ? ଦେବବାବୁଙ୍କ ଆଲିଙ୍ଗନ ଆହୁରି ନିବିଡ଼ ହୋଇ ଆସିଲା । ଲକ୍ଷ୍ୟ କଲେ ଲୋହିତ ରାଗରଞ୍ଜିତ ସନ୍ଧ୍ୟାକାଶର ରଙ୍ଗଭଳି ଗୀତାର ଲଜ୍ଜା ନିମୀଳିତ ମୁଖମଣ୍ଡଳ ଆରକ୍ତ ହୋଇ ଉଠିଛି ଅତି ଆକର୍ଷଣୀୟ ଭଙ୍ଗୀରେ । ଧୀରେ ଧୀରେ ବାହୁବେଷ୍ଟନୀ ଆହୁରି କଠିନ ହୋଇ ଆସିଲା । ଚାହୁଁ ଚାହୁଁ ଦୁଇଟି ସ୍ଫୁରିତ ଅଧର ପରସ୍ପର ସହିତ ମିଳିତ ହେବା ଆଶାରେ ପୁଣି ପାଖେଇ ଆସିଲେ ।"

କିଛି ସମୟ ପରେ ଦେବବାବୁ ଥରଥର ଗଳାରେ ଡାକିଲେ, "ଗୀତା ?"

"ଉଁ", ଦେବବାବୁଙ୍କ ପ୍ରଶସ୍ତ ବକ୍ଷ ଭିତରେ ନିଜକୁ ପୂରାପୂରି ହଜାଇଦେଇ ଗୀତା ଦେଖୁଥିଲା ମଧୁରାତ୍ରିର ସେହି ସୁମଧୁର ସ୍ୱପ୍ନ । କେବଳ ଉଁ କହିବା ବ୍ୟତୀତ ଅନ୍ୟ କିଛି କହିବା ଅବସ୍ଥାରେ ସେ ନ ଥିଲା ସେତେବେଳେ ।

ଦେବବାବୁ କହିଲେ, "ଦୁର୍ବଳ ମନର ଏହି ଦୁର୍ବାର ମୁହୂର୍ତ୍ତଗୁଡ଼ିକ ସତେ କେତେ ସୁମଧୁର ଗୀତା । ମନ ହେଉଛି ଏହି ମୁହୂର୍ତ୍ତଗୁଡ଼ାକ ଆଉ ଅପସରି ନ ଯାଆନ୍ତା କି ? ଯାହାକୁହ ଗୀତା ଜୀବନରେ ଏଭଳି ମୁହୂର୍ତ୍ତ ଖୁବ୍ କମ୍

ସମୟ ପାଇଁ ଆସେ । ଏଭଳି ମୁହୂର୍ତ୍ତରେ ଜୀବନ ଯେତେ ରସମୟ ହୋଇଉଠେ, ସେଭଳି ରସମୟ ମୁହୂର୍ତ୍ତ ସାରା ଜୀବନରେ ଆଉ କେବେ ଆସେ କି ନାହିଁ ସନ୍ଦେହ ।''

ଧୀରେ ଧୀରେ ଗୀତାର ମୁଦ୍ରିତନୟନ ମେଲିଲା ଠିକ୍ ଅଙ୍ଗସ୍ପର୍ଶରେ ମୁଦ୍ରିତ ଲାଜକୁଳୀ ଲତାର ପତ୍ରସମୂହ କିଛି ସମୟ ପରେ ଧୀରେ ଧୀରେ ମେଲିଲା ଭଳି । ଦେବବାବୁଙ୍କ ବାହୁବନ୍ଧନ ଭିତରେ ପୂରାପୂରି ଆବଦ୍ଧ ଥିଲା ଗୀତାର ଅର୍ଦ୍ଧ ଅନାବୃତ ସ୍ନିଗ୍ଧ କଳେବର । ରକ୍ତଗୋଲାପର ଛିନ୍ନ ପାଖୁଡ଼ା ଭଳି ଗୀତାର ଲଜ୍ଜାରୁଣ କପୋଳ ଉପରେ ଆଙ୍କି ହୋଇ ଯାଇଥାଏ ଏକାଧିକ ମଧୁର ଚୁମ୍ବନର ସଂଖ୍ୟାତୀତ ସୁନେଲିଗାର । ସୁନ୍ଦରୀମୟୀ ଗୀତା ତା'ର ଅରୁଣ ରକ୍ତିମ ଅଧରରେ ଦରବିକଶିତ ହାସ୍ୟରେଖା ଖେଳାଇ, ବଙ୍କିମ ଭ୍ରୂଲତା ତଳେ ମଦଭରା ମୃଗାକ୍ଷୀ ଦୁଇଟିକୁ ନଚାଇ ଉତ୍ତର ଦେଲା, ''ମୋତେ ଟିକିଏ ଛାଡ଼ ଦେବ, ମୁଁ ମୋର ବିଦ୍ରସ୍ତ ବସ୍ତ୍ରଗୁଡ଼ିକୁ ଟିକିଏ ସଜାଡ଼ିନିଏ ।''

ଦେବବାବୁ ଲକ୍ଷ୍ୟ କଲେ, ଏହି କଥା କେଇପଦ କହିଲାବେଳେ ଲୋହିତ ରାଗରଞ୍ଜିତ ସନ୍ଧ୍ୟାକାଶର ରଙ୍ଗ ଭଳି ଗୀତାର ନିମୀଳିତ ମୁଖମଣ୍ଡଳ ଆରକ୍ତ ହୋଇ ଉଠିଥିଲା ଅତି ଆକର୍ଷଣୀୟ ଭଙ୍ଗୀରେ । ଝୀନଲୋହିତ ରେଶମବସ୍ତ୍ର ପରିହିତା, ତପ୍ତକାଞ୍ଚନବର୍ଣ୍ଣା, ନିରୁପମା କୋମଳାଙ୍ଗୀ, ମୁଖରେ ସଲ୍ଲଜ ମଧୁର ଚାହାଣି ସୁନେଲି ବାଳସୌରକିରଣବିଧୌତ ବଦନରେ ଆକର୍ଷଣୀୟ ଯୌବନ ରକ୍ତିମଆଭା, ମୁକ୍ତାନିନ୍ଦୀ ଦନ୍ତପନ୍ତି, ସାରା ତନୁଲତାରେ ତା'ର ସମସ୍ତ ଜୀବନ ଯୌବନ ବିଭବର ଢଳ ଢଳ ମନମତାଣିଆ ରୂପ ଦେବ ଆଗରେ ତାକୁ ଯେ କେଉଁ ଅଭିସାରିକା ରୂପରେ ଠିଆ କରାଇଥାଏ, ତାହା କବିର କଳ୍ପନା ବାହାରେ । ଦେବବାବୁଙ୍କର ମନେ ହେଉଥାଏ, ସତେ ଯେମିତି ବିଶ୍ୱବ୍ରହ୍ମାଣ୍ଡର ସବୁଯାକ ସୌନ୍ଦର୍ଯ୍ୟର ଅସରନ୍ତି ଭଣ୍ଡାର ଠୁଳ ହୋଇଛି ତାଙ୍କର ବାହୁବନ୍ଧନ ଭିତରେ ।

ନିଜକୁ ଆଉ ସମ୍ଭାଳି ପାରିଲେନି ଦେବବାବୁ । ଧୀରେ ଧୀରେ ତାଙ୍କର ବାହୁଯୁଗଳ ଅଲକ୍ଷ୍ୟରେ ତଳକୁ ଖସିଆସି ଗୀତାର କଟିଦେଶକୁ ଆବୃତ କଲା । ଦେବବାବୁଙ୍କର ପ୍ରଶସ୍ତ ବାହୁବନ୍ଧନ ଭିତରେ ଥାଇ ଗୀତା ଅନୁଭବ କରୁଥିଲା ଶତବୃଶ୍ଚିକର ସମ୍ମିଳିତ ଦଂଶନ । ଅନାଉ ଅନାଉ ଦେବବାବୁଙ୍କର ବାହୁବନ୍ଧନୀ ପୁଣି କଠିନ ହୋଇ ଆସିଲା । ଚାହୁଁ ଚାହୁଁ ଦୁଇଟି ସ୍ଫୁରିତ ଅଧର ପରସ୍ପର ସହିତ ମିଳିତ ହେବା ଆଶାରେ ପୁଣି ପାଖେଇ ଆସିଲେ ।

କିଛି ସମୟ ପରେ ଗୀତା ଆଖି ମେଲିଲା । ହଠାତ୍ ଚମକିପଡ଼ି, ''ଆଁ, କେତେବେଳ ହୋଇଗଲାଣି ଦେବ । ତୁମେ ଯେ ଏ ପର୍ଯ୍ୟନ୍ତ ଚା' ଖାଇନାହଁ ।

ଛାଡ଼ ମୋତେ, ଢେର୍ ଡେରି ହୋଇଗଲାଣି । ଆମେ ତ ଆଜି ପଳାଇଯିବା ନାହିଁ, ଏତେ ବିକଳ କାହିଁକି ? ମୁଁ ଢେର୍ ଦିନ ପରେ ମସୌରୀ ଆସିଛି । କେତେ କ'ଣ ଦେଖିବାର ଅଛି ଏଠାରେ ।''

''ଓଃ, କେତେବଡ଼ ସରାଗ ତୁମେ ମୋର ଭାଙ୍ଗିଦେଲ ଗୀତା ? ସ୍ୱପ୍ନ ରାଜ୍ୟରେ ବୁଲୁ ବୁଲୁ ହଠାତ୍ ବାସ୍ତବରାଜ୍ୟକୁ ଘେନି ଆସିଲେ କେତେ କଷ୍ଟ ହୁଏ, ତୁମେ ବୁଝିପାରିବନି ଗୀତା ।''

''ଥାଉ, ଥାଉ, ମୋର ବୁଝିବା ଦରକାର ନାହିଁ । ଟିକିଏ ଛାଡ଼ିଲ, ମୁଁ ମୋ ଲୁଗାପଟା ଟିକିଏ ସଜାଡ଼ିନିଏ ।''

''ତା'ପରେ ।''

''ତା'ପରେ ଆଉ କ'ଣ । ତା'ପରେ ପ୍ରାତଃକର୍ମ, ଖିଆପିଆ, ମସୌରୀ ବୁଲା ।''

''ବାସ୍, ଏତିକି ? ଆଉକିଛି ନାହିଁ ।''

''ଆଉ ଯାହାକିଛି, ସେସବୁ ତୁମର । ମୋ ପାଇଁ କିଛି ନାହିଁ । ଏ, ଚାକର ପୂଜାରୀମାନେ ତ କେତେବେଳୁ ଉଠି ଆମକୁ ଅପେକ୍ଷା କରିଥିବେ । ଆମେ ଏତେବେଳଯାଏ ଶୋଇବାଘରେ ପଡ଼ି ରହିଲେ, ସେମାନେ କ'ଣ ଭାବୁଥିବେ କୁହ ତ ? କେଡ଼େ ଲଜ୍ଜାକର କଥା କହିଲ ?''

ଲୁଗା ପିନ୍ଧୁ ପିନ୍ଧୁ ଗୀତା ଦେବବାବୁଙ୍କ ପାଖକୁ ଚାଲିଯାଇ, ନିଜ ପିଠି ଦେଖାଇଦେଇ କହିଲା, ''ଟିକିଏ ହୁକ୍‌ଟା ଲଗାଇଦେଲ ଦେବ । ନିଜେ ଲଗାଇଲେ ଡେରି ହେବ । ଦେଖ, ହୁକ୍ ଲଗାଇଲାବେଳେ ଯେମିତି ଫେର୍ ଦୁଷ୍ଟାମି ନ କର ।''

''ତୁମେ ମତେ କ'ଣ ଶାସନ କରିବାକୁ ମସୌରୀ ଆସିଛ ନା କଅଣ ସବୁବେଳେ ଖାଲି କହୁଛ, ତୁମେ ଦୁଷ୍ଟ, ଦୁଷ୍ଟାମି କରନି, ଫେର୍ ଏଇକ୍ଷଣି କହିଲଣି, ଦୁଷ୍ଟାମି ଯେମିତି ନ କର । ମୁଁ କି ଦୁଷ୍ଟାମି କରୁଛି ସବୁବେଳେ ତୁମଠାରେ ?'? ଏତକ କହି ଦେବବାବୁ ବକ୍ଷବନ୍ଧନୀର ହୁକ୍ ଲଗାଉ ଲଗାଉ ଗୀତାକୁ ଟାଣିନେଲେ ନିଜ ଛାତି ଆଡ଼କୁ ।

''ଦେଖିଲ, ମୋର ବାରମ୍ବାର ବାରଣ ସତ୍ତ୍ୱେ, ତୁମେ ପୁଣି ଦୁଷ୍ଟାମି କଲ । ତୁମକୁ ସମ୍ଭାଳି ହେବନି ଦେଖୁଛି । ହେଉ, ତା'ହେଲେ ଝରକା ସବୁ ବନ୍ଦ କରି ଘରକୁ ଅନ୍ଧାର କରିଦିଅ । ପୁଣି ହେଉ, ଆଉଥରେ ବାସର ରାତି ।''

''ଫେର୍ ଭୁଲ କଲ ତୁମେ, ବର୍ତ୍ତମାନ ରାତି ନାହିଁ । ବର୍ତ୍ତମାନ ଦିନ ।''

''ହେଉ ହେଲା, ବାସର ଦିନ ।'' ଗୀତାଦେବୀ କହିଲେ ।

''ହେଉ, ମୋର ସେଥିରେ ଆପତ୍ତି ନାହିଁ ଗୀତା ।''

''ଆଁ, ଆପତ୍ତି ନାହିଁ ? କେଡ଼େ ଅଲଜ୍ଜ ସତେ ତମେ ? କେତେଟା ବାଜିଲାଣି, ଟିକିଏ ଘଡ଼ିକୁ ଅନାଇଲ ।''

''ବେଶୀ ହୋଇନି । ମୋଟେ ନଅଟା ।''

''ଆଁ, ନଅଟା ବାଜିଲାଣି ? ଏତକ କହି ଗୀତା ଦେବବାବୁଙ୍କ ବାହୁବନ୍ଧନରୁ ମୁକୁଳି ଯାଇ ଦୁଆର ଖୋଲିବାକୁ ଚାଲିଗଲା ।''

## ଦୁଇ

''ଆରେ, ସାହେବ ଭିତରେ ଅଛନ୍ତି ?''

ହଠାତ୍ ମା'ଙ୍କୁ ଆଖି ସାମନାରେ ଦେଖି ଅଫିସ୍ ଦୁଆରମୁହଁରେ ବସି ଢୁଳାଉଥିବା ପିଅନଟି ଚମକିପଡ଼ି ଠିଆହୋଇ ନମସ୍କାର ଜଣାଇ କହିଲା, ''ହଁ, ଆଜ୍ଞା, ସାହେବ ଭିତରେ ଅଛନ୍ତି ।''

''ଆଉ କିଏ ଅଛନ୍ତି ?''

''ନାଇଁ, ଆଜ୍ଞା, ଆଉ କେହି ନାହାନ୍ତି । ପ୍ରାଇଭେଟ୍ ସେକ୍ରେଟେରୀ ଯାଇଥିଲେ । ବାହାରି ଆସିଲେଣି ।''

ଉତ୍ତର ଶୁଣିବାକ୍ଷଣି କବାଟକୁ ଠେଲିଦେଇ ଭିତରକୁ ପଶିଲେ ଗୀତାଦେବୀ ।

ସ୍ତ୍ରୀଙ୍କୁ ହଠାତ୍ ଏ ଅସମୟରେ ଦେଖି ଦେବବାବୁ ଚମକିପଡ଼ିଲେ । ଚେୟାରରୁ ଉଠିପଡ଼ି ପାଛୋଟି ନେବା ଆଶାରେ ଆଗେଇ ଆସୁ ଆସୁ କହିଲେ, ''ତୁମେ କ'ଣ ହଠାତ୍ ଅଫିସ୍‌କୁ ଚାଲି ଆସିଲ ଗୀତା ? କ'ଣ କିଛି ଜରୁରୀ କାମ...''

''ନାଇଁ, ନାଇଁ,'' ହସି ହସି ଉତ୍ତର ଦେଲେ ଗୀତାଦେବୀ । ଏମିତି ଚାଲି ଆସିଲି । ଆଜି ଏତେ ଡେରି ହୋଇଗଲାଣି । ତୁମେ ଲଞ୍ଚ୍ ଖାଇବା ପାଇଁ ଯାଇନାହଁ ଯେ । ଭାବିଲି କିଛି ଜରୁରି କାମ ପଡ଼ିଯାଇଛି ବୋଧେ । ଚାଲି ଆସିଲି ଡାକିବା ପାଇଁ । ମା, ମାଉସୀ ଚାଲିଗଲା ଦିନଠାରୁ ବଡ଼ ଏକାଟିଆ ଏକାଟିଆ ଲାଗୁଛି ମୋତେ ।

''ହଁ, ଗୀତା, ଲାଗୁଥିବ ନିଶ୍ଚୟ । ଆଜି ପୁଣି ମୋର ଯିବା ଢେର୍ ଡେରି ହୋଇଗଲାଣି । ମୁଁ ସେଥିପାଇଁ ବଡ଼ ଦୁଃଖିତ । ଅନ୍ୟମନସ୍କ ଭାବେ ''ହେଉ, ତେବେ ଚାଲ ଗୀତା ।'' ଘଡ଼ିକୁ ଅନାଇ ''ଢେର୍ ଡେରି ହୋଇଗଲାଣି ।''

"ଲଞ୍ଚ୍ ଖାଇସାରି ପୁଣି କ'ଣ ଅଫିସ୍‌କୁ ଫେରି ଆସିବ ତମେ ? ମୁଁ କ'ଣ କହୁଥିଲି କି ଢେର୍ ଦିନ ହେଲା, ଆମେ ବୋମ୍ବେ ଆଡ଼େ ବୁଲିଯାଇନାହୁଁ, ଆଜି ସେଆଡ଼େ ଟିକେ ଯାଆନ୍ତେନି ? ମୋ ସାଙ୍ଗ ଶେଠ୍ ରତନଦାସଙ୍କ ଝିଅ କେତେଥର ନିମନ୍ତ୍ରଣ କଲାଣି, ତା' ଘରକୁ ବୁଲିଯିବା ପାଇଁ । ଆଜି ଉପରଓଳି ତାଙ୍କ ଘରକୁ ଗଲେ କେମିତି ହୁଅନ୍ତା ?"

ମିଷ୍ଟର ଅଗ୍ରୱାଲ ଘରକୁ ଯିବାପାଇଁ ବାହାରୁଥିଲେ । ହଠାତ୍ କ'ଣ ଭାବି ପୁଣି ବସି ପଡ଼ିଲେ ।

ଗୀତାଦେବୀ ଚମକି ପଡ଼ିଲେ । "ଏ କ'ଣ, ହଠାତ୍ ଆସୁ ଆସୁ ବସି ପଡ଼ିଲ ଯେ ।"

"ହଁ, ଗୀତା, ତୁମକୁ ଏ ଯାଏଁ କହିନି । ବଡ଼ ଅସୁବିଧାରେ ପଡ଼ିଯାଇଛି ମୁଁ । ଯା' ପାଇଁ କି ଘରକୁ ଲଞ୍ଚ୍ ଖାଇବା ପାଇଁ ବର୍ତ୍ତମାନ ଯାଇପାରିବି କି ନା ସନ୍ଦେହ । କିଛି ସମୟତଳେ ମୁଁ ଗୋଟାଏ କେବଲ ଆମେରିକାକୁ ବୁକ୍ କରିଥିଲି । କେତେବେଳେ ଲାଇନ୍ ମିଳିଯିବ କହି ହେଉନି । ସେଥିପାଇଁ ମୋତେ ଅପେକ୍ଷା କରିବାକୁ ପଡ଼ିବ । ଏହା ଅତି ଜରୁରୀ ।"

"କେବଲ ପାଇଁ ତୁମର ରହିବା କ'ଣ ଦରକାର ? ତୁମ ସେକ୍ରେଟେରୀ ତ ଅଛି । ତୁମ ଅନୁପସ୍ଥିତିରେ ସେ କ'ଣ ଧରିନେଇ ପାରିବନି ? ଯାହା କଥାବାର୍ତ୍ତା ହେବ, ତୁମେ ଫେରି ଆସିଲେ ସେକ୍ରେଟେରୀ ପାଖରୁ ଜାଣିପାରିବ ।"

"ନା, ଗୀତା, ଏହା ସେମିତି ସାଧାରଣ କେବଲ ନୁହେଁ । ମୋର ଉପସ୍ଥିତି ଏକାନ୍ତ ଦରକାର । ତୁମେ ଜାଣିନ ଗୀତା, ଆମ ସାର କାରଖାନାରେ ଗୋଟିଏ ବଡ଼ ଅସୁବିଧା ହୋଇଯାଇଛି ଏହା ଭିତରେ । ଯାହାପାଇଁ କି ମୁଁ ମେସିନ୍ ସପ୍ଲାୟର ପାଖକୁ କେବଲ କରିଥିଲି । ଆମ ଆମୋନିଆ ସଂଶ୍ଳେଷଣ ମେସିନ୍‌ରେ କ'ଣ ଗୋଟାଏ ଗୋଳମାଳ ହୋଇଯାଇଛି, ଯାହାପାଇଁ କି ଆମ କେଟାଲିଷ୍ଟଚେମ୍ବର ଠିକ୍ ଭାବରେ କାମ କରୁନି । ପ୍ରଥମ ସାଇକ୍ଲରେ ଆମର ଯେଉଁ ଶତକଡ଼ା ଅଶୀଭାଗ ଆମୋନିଆ ହେବା କଥା, ତାହା ନ ହୋଇ ଢେର୍ କମ୍ ହେଉଛି । ଏହାଫଳରେ ଆମର ସାର ଉତ୍ପାଦନ କମି ଯାଉଛି । ଆମେ ଦେଶର ଅନ୍ୟ ସାର ଉତ୍ପାଦନକାରୀଙ୍କ ସହ ପ୍ରତିଯୋଗିତା କରିପାରୁନୁ । ସପ୍ଲାଏର କୋମ୍ପାନୀକୁ ଫୋନ୍ କରି କରି ଥକି ଗଲିଣି । ସେମାନଙ୍କ ଇଞ୍ଜିନିୟର ହେଡ୍‌ଅଫିସ୍‌ରୁ ଆସିବା କଥା । ହଠାତ୍ ସେ ଇଞ୍ଜିନିୟର ଅସୁସ୍ଥ ହୋଇ ନିଉୟର୍କର ଗେଟରମେନ୍ ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଛନ୍ତି । ସେ ଭଲ ହେଲେ ଯାଇ ଆସିବେ । ସେ ଆଗ ଅପେକ୍ଷା ଢେର୍ ସୁସ୍ଥ ହେଲେଣି । କେବଲ କରିଛି ତାଙ୍କରି ପାଖକୁ । ସେ ମୋତେ

ଆଜି ଡେଟ୍ ଦେବେ କେବେ ଆସିବେ । ସେଥିପାଇଁ ମୋତେ ଏଠି ଅପେକ୍ଷା କରିବାକୁ ପଡ଼ିବ ।''

''ମେସିନ୍ କେଉଁ କୋମ୍ପାନୀ ସପ୍ଲାଏ କରିଥିଲା ?''

''ପିଟସ୍‌ବର୍ଗର 'ହାନ୍‌ଫୋର୍ଡ ଇଞ୍ଜିନିୟରିଂ କରପୋରେସନ୍' । ସେମାନଙ୍କ ଚିକାଗୋ ଅଫିସ୍ ଟେଣ୍ଡର ଦେଇ ମେସିନ୍ ଯୋଗାଇଥିଲା ।''

''କାରଖାନା ଚଳାହେଲାବେଳେ ସେମାନଙ୍କ ଇଞ୍ଜିନିୟରମାନେ ତ ଆସିଥିବେ ? ସେମାନେ ତ ତୁମ ଇଞ୍ଜିନିୟରମାନଙ୍କୁ ଦେଖାଇ ଦେଇଥିବେ ଠିକ୍ ଭାବରେ ସଂଶ୍ଳେଷଣ ହେଉଛି କି ନାହିଁ । ସେତେବେଳେ ତ ପ୍ରଥମ ସାଇକ୍ଲିରେ ଶତକଡ଼ା ଅଶୀଭାଗ କନ୍‌ଭରସନ୍ ନିଶ୍ଚୟ ହୋଇଥିବ । ବର୍ତ୍ତମାନ କମିଗଲା କାହିଁକି ? ଉତ୍ପାଦନ କେତେଦିନ ହେଲା ଚାଲୁ ହେଲାଣି ଶୁଣେ ?''

''ଛଅମାସରୁ ଊର୍ଦ୍ଧ୍ୱ ହେବ ।''

''ଛଅ ମାସରୁ ଊର୍ଦ୍ଧ୍ୱ ହେବ ?'' ଗୀତାଦେବୀଙ୍କ ମୁହଁରେ ସନ୍ଦେହର ଘନଛାୟା ଖେଳିଗଲା । କେଟାଲିଷ୍ଟ ବିଷାକ୍ତ ହୋଇଯାଇ ନାହିଁ ତ ? କେଟାଲିଷ୍ଟ କେଉଁମାନେ ଯୋଗାଇଥିଲେ ? ସେହିମାନେ ନା ଆଉ କେହି ?

''ନା, ସେହିମାନେ ଯୋଗାଇଥିଲେ ।''

''କେଟାଲିଷ୍ଟ ତ ଏତେଶୀଘ୍ର ବିଷାକ୍ତ ହେବା କଥା ନୁହେଁ । ତୁମେ ଆମୋନିଆ ଗ୍ୟାସ୍ ଉତ୍ପାଦନ ପାଇଁ ମୂଳ ପଦାର୍ଥ ଭାବରେ କୋଇଲା ବ୍ୟବହାର କରୁଛ ନା ଅନ୍ୟ କିଛି ବ୍ୟବହାର କରୁଛ ?''

''ନା, କୋଇଲା ।''

''ମୂଳ ପଦାର୍ଥ କୋଇଲା ଆରମ୍ଭରୁ ଠିକ୍ ଭାବରେ ପରୀକ୍ଷା ହୋଇଛି ତ ?''

''ହଁ, ସେମାନଙ୍କ ସାମନାରେ ପୁଣି ଥରେ ପରୀକ୍ଷା ହୋଇଥିଲା । କୋଇଲାର ପ୍ରକୃତି ନେଇ ସେମାନେ ବେଶ୍ ସନ୍ତୋଷ ପ୍ରକାଶ କରିଥିଲେ । କେଉଁଠି ସେମାନେ ସେମାନଙ୍କ ଅସନ୍ତୋଷ ପ୍ରକାଶ କରି ନାହାନ୍ତି ତ ?''

''କୋଇଲା ଯୋଗାଣ ଦାୟିତ୍ୱରେ ଯେଉଁ ଇଞ୍ଜିନିଅର ଅଛନ୍ତି, ସେ ଠିକ୍ ଭାବରେ କୋଇଲାର ମାନ ତଦାରଖ କରୁଛନ୍ତି ତ ? କୋଇଲାର ମାନ ଏପାଖ ସେପାଖ ହେଲେ ଅସୁବିଧା । ସେମାନଙ୍କ ସ୍ପେସିଫିକେସନ୍ ଅନୁସାରେ କୋଇଲା ଠିକ୍ କାରଖାନାକୁ ଯୋଗାଯାଉଛି କି କ'ଣ ତଦାରଖ କରି ଦେଖିଛ ?''

''ହଁ, ଗୀତା ସେସବୁ ଠିକ୍ ଅଛି ।''

"ତେବେ ଉତ୍ପାଦନ କମିଯିବାର କାରଣ ? ତୁମ ଇଞ୍ଜିନିଅରମାନେ ସମ୍ଭବତଃ ସେମାନଙ୍କଠାରୁ ଦାୟିତ୍ୱ ନେଲାବେଳେ ଠିକ୍ ଭାବରେ ପରିଚାଳନା ରୀତି ଶିଖି ନେଇ ନାହାନ୍ତି । ଆଜିକାଲି ଏହି ମେସିନ୍‌ଗୁଡ଼ିକ ଏତେ ସୋଫିଷ୍ଟିକେଟେଡ୍ ହୋଇଗଲାଣି ଯେ ସାମାନ୍ୟ ଟିକିଏ ଏପାଖ ସେପାଖ ହେଲେ ସବୁ ଗୋଳମାଳ ହୋଇଯିବ । ତା ଛଡ଼ା ପିଟସ୍‌ବର୍ଗର ହାନ୍‌ଫୋର୍ଡ଼ ଇଞ୍ଜିନିଅରିଂ କରପୋରେସନ୍‌ର ମେସିନ୍ ଅତ୍ୟଧିକ ସୋଫିଷ୍ଟିକେଟେଡ୍ । କେଟାଲିଷ୍ଟ ଚେମ୍ବରରେ ଯଦି ସାମାନ୍ୟ ଟିକିଏ ଏପାଖ ସେପାଖ ହୋଇ ଯାଇଥାଏ, ତେବେ ଉତ୍ପାଦନ ଠିକ୍ ଭାବରେ ହେବନି । ହେଉ, ମୋତେ ଟିକିଏ ତୁମ କାରଖାନା ଦେଖାଇପାରିବ ଦେବ, ଦେଖିବି ମୁଁ ଯଦି କିଛି ତୁମକୁ ସାହାଯ୍ୟ କରିପାରେ ?"

"ତୁମେ ଦେଖିବ ? ତୁମେ ସାହାଯ୍ୟ କରିବ ? ତୁମେ କ'ଣ ଯେ କହୁଛ, ମୁଁ କିଛି ବୁଝିପାରୁନି ରୀତା ?"

ହସିଲେ ରୀତାଦେବୀ । "କ'ଣ ଏମିତି ଆଶ୍ଚର୍ଯ୍ୟ ହୋଇ ଯାଉଛ ଯେ ? ମୋ କଥାରେ ତୁମର ବିଶ୍ୱାସ ଆସୁନି ନା କଅଣ ?"

"ନା, ନା, ତୁମେ କ'ଣ ଯେ କହୁଛ, ମୁଁ ଠିକ୍ ଧରି ପାରୁନି ।"

"ମୁଁ ତୁମ ମେସିନ୍‌କୁ ଦେଖିବାକୁ ଚାହେଁ । ଯଦି ପାରେ, ତେବେ ସଜାଡ଼ିବାକୁ ଚେଷ୍ଟା କରିବି ।"

"ତୁମେ ଆମେରିକାନ୍ ମେସିନ୍‌କୁ ସଜାଡ଼ିବ ?" ଆଶ୍ଚର୍ଯ୍ୟତାରେ ଦେବବାବୁଙ୍କ ଦୁଇ ଆଖି ବିସ୍ତାରିତ ହୋଇଗଲା । ସେ ଭାବି ପାରିଲେନି ରୀତାଦେବୀ କ'ଣ ପ୍ରକୃତରେ କରିବାକୁ ଚାହୁଁଛନ୍ତି ।"

ହସିଲେ ରୀତାଦେବୀ ଏକ ସରଳିଆ ହସ । କହିଲେ "ମୁଁ ଯେ ଜଣେ କେମିକେଲ ଇଞ୍ଜିନିଅର, ତୁମେ ଭୁଲି ଯାଉଛ ବୋଧେ ? ଚିକାଗୋ ଆଇ.ଆଇ.ଟି.ରୁ ତୁମ ସ୍ତ୍ରୀ ଗୌରବର ସହ କେମିକେଲ ଇଞ୍ଜିନିଅରିଂରେ ମାଷ୍ଟର ଡିଗ୍ରୀ ହାସଲ କରିଛି ବୋଲି ତୁମର ବିଶ୍ୱାସ ଆସୁନି ନା କଅଣ ?"

"ମୁଁ ଜାଣିଛି ଯେ, ହେଲେ, ତୁମେ କ'ଣ ଏହାକୁ ଠିକ୍ କରି ପାରିବ ?"

ପୁଣି ହସିଲେ ରୀତାଦେବୀ, ଏକ ଦୁଷ୍ଟାମିର ହସ । "ତୁମ ସ୍ତ୍ରୀ ଉପରେ ତୁମର କ'ଣ ଏତକ ବିଶ୍ୱାସ ନାହିଁ ଦେବ ? ତା'ର କାର୍ଯ୍ୟ ଦକ୍ଷତାରେ ତୁମର ସନ୍ଦେହ ଅଛି ନିଶ୍ଚୟ ।"

"ନା, ନା, ରୀତା, ତୁମେ ଏତେ ଦୂରକୁ ଭାବି ଯାଅନି । ମୁଁ ଜାଣିଛି ତୁମେ ଜଣେ ଇଞ୍ଜିନିଅର । ହେଲେ ତୁମଠାରୁ ସାହାଯ୍ୟ ନେବା କଥା ମୋ

ଚିନ୍ତା ରାଜ୍ୟକୁ କେବେ ପଶି ନ ଥିଲା । ତାହା ହୋଇଥିଲେ, ମୁଁ ଆମେରିକାକୁ ଲେଖିବା ପୂର୍ବରୁ ତୁମ ସହିତ ନିଶ୍ଚୟ ପରାମର୍ଶ କରିଥାନ୍ତି । ତା ଛଡ଼ା ତୁମେ କାରଖାନାକୁ ଯାଇ ଶ୍ରମିକ ଓ ଇଞ୍ଜିନିଅରମାନଙ୍କ ଆଗରେ ମେସିନ୍‌କୁ ସଜାଡ଼ିବ, ମୁଁ ଧାରଣା କରି ପାରୁନି । କାରଖାନାର ଯେ ଖୋଦ୍ ମାଲିକାଣୀ, ସେ ଜଣେ ସାଧାରଣ ଇଞ୍ଜିନିଅର ଭଳି ମେସିନ୍ ସଜାଡ଼ିଲେ, ଏହା ଲୋକଙ୍କ ଆଖିକୁ କେମିତି ଦିଶିବ ମୁଁ ଧାରଣା କରିପାରୁନି ଗୀତା ।''

ହସିଲେ ଗୀତାଦେବୀ, ''ତୁମେ ଭାବୁଛ ତୁମ ସ୍ତ୍ରୀ ଓଢ଼ଣା ପକାଇ ଘର ଭିତରେ ବୋହୂ ହୋଇ ବସିଥାନ୍ତା । ବାହାରକୁ ଆସିଲେ କାଳେ କିଏ କିଛି କହି ପକାଇବ, ଯେ ଘରର ନୂଆବୋହୂଟା ଏତେଶୀଘ୍ର କ'ଣ ଘରୁ ପାଦ କାଢ଼ି ବାହାରକୁ ଚାଲି ଆସିଲା ?''

ହସିଲେ ଦେବକିଷନବାବୁ, କହିଲେ ''ନା, ନା, ଗୀତା, ମୁଁ ତୁମ ସମ୍ବନ୍ଧରେ ସେଭଳି କିଛି ଭାବିନି । ତୁମେ ଅଯଥା ଏତେଗୁଡ଼ାଏ କ'ଣ କହି ଚାଲିଛ ।''

ଗୀତାଦେବୀ ଈଷତ୍ ଗମ୍ଭୀର ହୋଇଯାଇ କହିଲେ, ''ମୁଁ ଯେତେବେଳେ ଇଞ୍ଜିନିଅରିଂ ପାସ୍ କରିଛି, ମେସିନ୍ ସଜାଡ଼ିବାକୁ ଲଜ୍ଜାକର ବୋଲି କାହିଁକି ଭାବୁଛ ? ବିବାହ ପୂର୍ବରୁ ବାପାଙ୍କ କାରଖାନାରେ କିଛି ଅସୁବିଧା ହେଲେ ସେ ତ ମୋତେ ଡାକନ୍ତି । ମୁଁ ଶ୍ରମିକ ଓ ଇଞ୍ଜିନିଅରମାନଙ୍କ ଉପସ୍ଥିତିରେ କାରଖାନାର ଯନ୍ତ୍ର ଖୋଲି ସଜାଡ଼ିଦିଏ ।''

''ହଁ ଯେ, ହେଲେ—''

''ହଁ ଯେ, ହଁ ଯେ କ'ଣ ହଉଛ, ଚାଲିଲ, ଦେଖିବା, କେଉଁ ସାର କାରଖାନାରେ ତୁମର— ?''

ଏତକ କହୁ କହୁ ଗୀତାଦେବୀ ସ୍ୱାମୀଙ୍କୁ ଧରି ଗାଡ଼ି ପାଖକୁ ଚାଲିଆସିଲେ । ଦେବବାବୁଙ୍କ ଗାଡ଼ି ଆମୋନିଆ ସାର କାରଖାନା ଅଭିମୁଖେ ଛୁଟି ଚାଲିଲା । ଗାଡ଼ିରେ ଗଲାବେଳେ ଦେବବାବୁ ତାଙ୍କ ଶିଳ୍ପନଗରୀର ପ୍ରଧାନ ରାସ୍ତାର ଦୁଇ ପାଖରେ ଥିବା କାରଖାନାଗୁଡ଼ିକୁ ଅନାଉ ଥାଆନ୍ତି, ପୁଣି ଥରେ ନିଜ ନବବିବାହିତା ପତ୍ନୀଙ୍କୁ ଅନାଉ ଥାଆନ୍ତି । ମନେ ମନେ ଭାବୁଥାନ୍ତି କେଉଁ କାମକୁ ତାଙ୍କର ଇଂଲଣ୍ଡ, ଜର୍ମାନୀ ଫେରନ୍ତା ପୁରୁଖା ପୁରୁଖା ଇଞ୍ଜିନିଅରମାନେ ପାରିଲେନି, ତାକୁ କ'ଣ ଏହି ତନୁପାତେଳୀ ଝିଅଟି ସଜାଡ଼ିଦେଇ ପାରିବ ? ଲୋକେ କ'ଣ ଭାବିବେ ସତେ ? ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ କାମ ପାଇଁ ଏଡ଼ିକି ଛୋଟିଆ ଝିଅଟିକୁ ନେଇ ସେଠି ଠିଆ କରାଇଦେବା କେଡ଼େ ଦୁଃସାହସ ନ ହେବ ସତେ ? ଏତେ ବଡ଼ ଶିଳ୍ପ ସାମ୍ରାଜ୍ୟର ଯେ ଖୋଦ୍ ମାଲିକାଣୀ ସେ ନିଜେ ଜଣେ ସାଧାରଣ

ଶ୍ରମିକ ଭଳି ଯନ୍ତ୍ର ସଜାଡ଼ି ବସିଲେ ଲୋକେ କ'ଣ କୁହାକୁହି ନ ହେବେ ସତେ ?

ଏମିତି ଭାବୁ ଭାବୁ ଗାଡ଼ି ଆମୋନିଆ ସାର କାରଖାନା ଗେଟ୍ ପାର୍ ହୋଇ ପୋର୍ଟିକୋରେ ଯାଇ ଠିଆ ହେଲାଣି, ତାଙ୍କର ଖିଆଲ ନାହିଁ । ଦେବବାବୁଙ୍କୁ ଆସିବା ଦେଖି କାରଖାନାର ଅଫିସରମାନେ ଗାଡ଼ି ପାଖକୁ ଦୌଡ଼ି ଆସିଲେ । ମାଲିକଙ୍କ ସଙ୍ଗେ ମାଲିକାଣୀଙ୍କୁ ଦେଖି ସମସ୍ତେ ତାଟଙ୍ଗା । ମାଲିକାଣୀ ସମ୍ଭବତଃ କାରଖାନା ବୁଲିବାକୁ ଆସିଛନ୍ତି ବୋଲି ସମସ୍ତେ ଧରି ନେଲେ । କାରଖାନାର ଅଫିସର, ଇଞ୍ଜିନିଅରମାନେ ଉଭୟଙ୍କୁ ପାଛୋଟି ନେଇ ଏୟାରକଣ୍ଡିସନଡ୍ ଅଫିସ୍ କକ୍ଷରେ ବସାଇଲେ । ବସୁ ବସୁ ଦେବବାବୁ ଚିଫ୍ ଇଞ୍ଜିନିଅରଙ୍କ ଆଡ଼କୁ ଅନାଇ ପଚାରିଲେ, "ଆମ କେଟାଲିଷ୍ଟ ଚେମ୍ବରରେ କିଛି ଉନ୍ନତି ହେଲା ନା ନାହିଁ ?"

"ନାଇଁ ସାର୍ ସେମିତି ଅଛି, କିଛି ଉନ୍ନତି ହୋଇନି ଏ ପର୍ଯ୍ୟନ୍ତ । ଉତ୍ପାଦନ ମାତ୍ରା ସେହି ନିମ୍ନସ୍ତରରେ ହିଁ ରହିଛି ।"

"ଅସୁବିଧାଟା ଠିକ୍ କେଉଁଠି ହୋଇଛି, ଆପଣମାନେ ଠାବ କରି ପାରିଛନ୍ତି କି ?" ଗୀତାଦେବୀ ପଚାରିଲେ ।

"ହଁ, ଆଜ୍ଞା । ଆମର ଧାରଣା ରିଆକ୍‌ସନ୍ ଚେମ୍ବରରେ କିଛି ଗୋଳମାଳ ଘଟିଛି, ଯାହାପାଇଁ କି ଏହି ଅସୁବିଧା ।"

ଗୀତାଦେବୀ ଦେବବାବୁଙ୍କୁ ଲକ୍ଷ୍ୟ କରି କହିଲେ, "ଚାଲିଲ ଦେଖିବା, ତୁମ ଫ୍ଲୋ-ଚାର୍ଟ କଂପ୍ୟୁଟରରେ କ'ଣ ନିର୍ଦ୍ଦେଶ ଆସୁଛି ।"

ଗୀତାଦେବୀଙ୍କୁ ଧରି ଦେବବାବୁ କଂପ୍ୟୁଟର କକ୍ଷ ଆଡ଼େ ମୁହାଁଇଲେ । ତାଙ୍କ ପଛେ ପଛେ ସବୁ ଅଫିସର ଓ ଇଞ୍ଜିନିଅରମାନେ ସେହିଆଡ଼େ ଚାଲିଥାନ୍ତି । ରୁମ୍ ଭିତରକୁ ପଶୁ ପଶୁ ଗୀତାଦେବୀ ଆଶ୍ଚର୍ଯ୍ୟ ହୋଇ ଚିଫ୍ ଇଞ୍ଜିନିଅର ମିଷ୍ଟର ଚତୁର୍ବେଦୀଙ୍କୁ ପଚାରିଲେ, "ଇଏ କ'ଣ ମିଷ୍ଟର ଚତୁର୍ବେଦୀ, କଂପ୍ୟୁଟର ରୁମ୍‌ର ଏୟାର କଣ୍ଡିସନିଙ୍ଗ୍ ଯନ୍ତ୍ର ଠିକ୍ ରୂପେ କାମ କରୁନାହିଁ ନା କଅଣ ? ଏ ଘର କଅଣ ଟିକିଏ ଗରମ ଜଣାପଡୁଛି ?"

"ନାଇଁ ମେଡେମ୍, କିଛି ସମୟ ତଳେ ଏହି ରୁମ୍‌ରେ ବିଦ୍ୟୁତ୍ ଲାଇନ୍ ନ ଥିଲା । କାରଖାନାର ଏହି ଅଂଶରେ ଲାଇନ୍ ଫେଲ୍ କରିଥିଲା । ଏଇ ଅଳ୍ପ କିଛି ସମୟ ହେଲା ଲାଇନ୍ ଆସିଛି । ସେଥିପାଇଁ ଘର ଟିକିଏ ଗରମ ଜଣାପଡୁଛି ।"

"ଏହି କଂପ୍ୟୁଟର ରୁମ୍ ପାଇଁ ବିଦ୍ୟୁତ୍‌ଶକ୍ତିର କିଛି ବିକଳ୍ପ ବ୍ୟବସ୍ଥା କ'ଣ ରଖି ନାହାନ୍ତି ଆପଣ ?"

"ନାଇଁ ମେଡେମ୍, କିଛି ନାହିଁ ।"

"ଆପଣ ଜଣେ ଏଡ଼େ ବଡ଼ ପୁରୁଖା ଇଞ୍ଜିନିଅର ହୋଇ ଏମିତି କ'ଣ ଭୁଲ କରୁଛନ୍ତି ମିଷ୍ଟର ଚତୁର୍ବେଦୀ ? ଆପଣ କ'ଣ ଜାଣି ନାହାନ୍ତି, ଆପଣ ଯେଉଁ କୋମ୍ପାନୀର ଏହି ଫ୍ଲୋ-ଚାର୍ଟ କଂପ୍ୟୁଟର ଖରିଦ କରିଛନ୍ତି, ଏୟାର କଣ୍ଡିସନିଙ୍ଗ୍ ଅଭାବରେ ସେ ଯନ୍ତ୍ରର କାର୍ଯ୍ୟଦକ୍ଷତା କମିଯାଏ । ଆପଣ ସାଧାରଣ ବିଦ୍ୟୁତ୍‌ଶକ୍ତି ଉପରେ ନିର୍ଭର ନ କରି ଏହି ରୁମ୍ ପାଇଁ ଅନ୍ୟ ଡାୟୋନେମୋ ରଖି ପାରିଥାନ୍ତେ । ଏହି ରୁମ୍‌ରେ ଲାଇନ୍ ଫେଲ୍ କଲେ ସଙ୍ଗେ ସଙ୍ଗେ ମନକୁମନ ବିକଳ୍ପ ଡାଇନେମୋଟି ଚାଲିବାକୁ ଆରମ୍ଭ କରନ୍ତା, ଫଳରେ ଏୟାରକଣ୍ଡିସନିଙ୍ଗ୍ ମୋଟେ ବାଧାପ୍ରାପ୍ତ ହୁଅନ୍ତାନି ।"

"ହଁ, ଆଜ୍ଞା, ସେଇଆ କରିବାକୁ ପଡ଼ିବ । ମୁଁ ସେ ଆଡ଼କୁ ଦୃଷ୍ଟି ଦେଇ ନାହିଁ ।"

"ଆଜିକାଲି କଂପ୍ୟୁଟରଗୁଡ଼ାକ ଏତେ ସୋଫିଷ୍ଟିକେଟେଡ୍ ହୋଇଗଲାଣି ଯେ ଆମେ ଟିକିଏ ଗରମ ସହିନେବା ସିନା, କିନ୍ତୁ ଯନ୍ତ୍ର ମୋଟେ ସହି ପାରିବନି । ନିର୍ଦ୍ଦିଷ୍ଟ ତାପକ୍ରମଠାରୁ ଟିକିଏ ଏପାଖ ସେପାଖ ହେଲେ ଯନ୍ତ୍ରର କାର୍ଯ୍ୟଦକ୍ଷତା ସଙ୍ଗେ ସଙ୍ଗେ କମି ଆସିବ ।" ରୀତାଦେବୀ କହିଲେ ।

ରୀତାଦେବୀଙ୍କ କଥାବାର୍ତ୍ତା ଶୁଣି ଦେବବାବୁ ଏକରକମ ତାଟଙ୍ଗା । ଏଡ଼ିକି ଅଳ୍ପ ବୟସର ଝିଅଟିଏ, କଥାରେ ଯାହା କହନ୍ତି ନାବାଳିକି ଫିଟିଛି କି ନାହିଁ ସନ୍ଦେହ, ପୁରୁଖା ପୁରୁଖା ଇଞ୍ଜିନିଅରମାନଙ୍କ ଭୁଲ ସବୁ ଦେଖାଇ ଦେଇପାରୁଛି । ଭାବୁ ଭାବୁ ତାଙ୍କ ମନରେ ଅଳ୍ପ କେଇଦିନ ତଳର ମଧୁଶଯ୍ୟା ରାତ୍ରିର ଘଟଣାସବୁ ସ୍ମୃତିପଟରେ ଭାସି ଉଠିଲା । ସେହିଦିନ ରାତ୍ରିରେ ଯେତେବେଳେ ଦେବବାବୁ ମଧୁଶଯ୍ୟା କୋଠରିକୁ ପଶି ଆସିଲେ, ମୁହଁରେ ଓଢ଼ଣା ପକାଇ ରକ୍ତବର୍ଣ୍ଣର ବନାରସୀ ଶାଢ଼ି ପିନ୍ଧି ପଲଙ୍କ ଉପରେ ଅପେକ୍ଷା କରିଥିଲା ତାଙ୍କର ଏହି ସ୍ତ୍ରୀ ରୀତା । ହାତ, ବେକ, ମୁହଁ ଚାରିଆଡ଼େ ମଣିମୁକ୍ତାଖଚିତ ଅସଂଖ୍ୟ ସ୍ୱର୍ଣ୍ଣ ଅଳଙ୍କାରରେ ସଜ୍ଜିତ ହୋଇ ଦିଶୁଥିଲା ସ୍ୱର୍ଗରୁ ଓହ୍ଲାଇ ଆସିଥିବା ଏକ ପରୀ ଭଳି । କେଡ଼େ ସରଳା, ଶାନ୍ତ, ସୌମ୍ୟ ଦିଶୁଥିଲା ସତେ ସେଦିନ । ବାସରରାତ୍ରିର ଶଯ୍ୟାଶାୟିନୀ ସେହି ଶାନ୍ତ ସରଳା ଝିଅଟି କ'ଣ ଏଇ ? ଏତେ ଦକ୍ଷତାର ସହିତ କାରଖାନା ଇଞ୍ଜିନିଅରମାନଙ୍କ ସହ କଥାବାର୍ତ୍ତା କରିପାରୁଛି ଏକ ପୁରୁଖା ଇଞ୍ଜିନିଅର ଭଳି ।

ଦେବବାବୁ ଯେତେବେଳେ ରୀତାଦେବୀଙ୍କୁ କେନ୍ଦ୍ର କରି ଏହିସବୁ କଥା ଭାବି ଚାଲିଥାନ୍ତି, ଠିକ୍ ସେହି ସମୟରେ ରୀତାଦେବୀ ଫ୍ଲୋ-ଚାର୍ଟ କଂପ୍ୟୁଟରକୁ ଏପାଖ ସେପାଖ ମୋଡ଼ାମୋଡ଼ି କରି ପରୀକ୍ଷା ଚଳାଇଥାନ୍ତି । ଜାଣିବାକୁ ଚେଷ୍ଟା କରୁଥାନ୍ତି,

ଠିକ୍ କେଉଁଠି ତ୍ରୁଟି ରହି ଯାଇଛି । ସବୁ ପରୀକ୍ଷାନିରୀକ୍ଷା କରି ସାରିବାପରେ କହିଲେ, "ହଁ, ଆପଣମାନଙ୍କ ଅନୁମାନ ହିଁ ଠିକ୍ । କେଟାଲିଷ୍ଟ ଚେମ୍ବରରେ କିଛି ତ୍ରୁଟି ରହିଯାଇଛି ବୋଧେ । ହେଉ, ଏଥର ଖୋଲାଯାଉ, କେଟାଲିଷ୍ଟ ଚେମ୍ବର । ଚାଲନ୍ତୁ, କେଟାଲିଷ୍ଟ ଚେମ୍ବର ପାଖକୁ ।" ଚିଫ୍ଇଞ୍ଜିନିଅର ମିଷ୍ଟର ଚତୁର୍ବେଦୀଙ୍କୁ ଲକ୍ଷ୍ୟ କରି କହିଲେ ଗୀତାଦେବୀ ।

"ହାଁ, ହାଁ, ଆପଣ କ'ଣ ଖୋଲିବେ କହୁଛନ୍ତି ମେଡେମ୍ ? ଏହା ପରା କୋମ୍ପାନୀ ସିଲ୍ ।"

ହସିଲେ ଗୀତାଦେବୀ, "ମୁଁ ଜାଣିଛି ମିଷ୍ଟର ଚତୁର୍ବେଦୀ । କୋମ୍ପାନୀ ଇଞ୍ଜିନିଅର ଛଡ଼ା ଅନ୍ୟମାନେ ଏହି ସିଲ୍‌କୁ ଭାଙ୍ଗି ଯନ୍ତ୍ରକୁ ଖୋଲିବା ମନା । ତେବେ ଯେଉଁମାନେ କୋମ୍ପାନୀ କନ୍‌ସଲଟାଣ୍ଟ୍ ସେମାନେ ଏହାକୁ ଖୋଲି ପାରିବେ । ଏହି କୋମ୍ପାନୀର କନ୍‌ସଲଟାନ୍‌ସି ମୋ ପାଖରେ ଅଛି ବୋଲି ମୋର ଧାରଣା । ତେଣୁ ମୁଁ ଖୋଲିଲେ କିଛି ଅସୁବିଧା ହେବନି । ଆପଣମାନେ ସିନା ଖୋଲିଲେ ଅସୁବିଧା ହେବ, ମୁଁ ଖୋଲିଲେ କିଛି ନାହିଁ ।"

"କିନ୍ତୁ ଆପଣ କ'ଣ ଏହି ପୋଷାକରେ କେଟାଲିଷ୍ଟ ଚେମ୍ବର ପାଖକୁ ଯିବେ ମେଡେମ୍ ? ଏହି ଦାମିକା ଲୁଗାପଟା ସବୁ କଳା ତେଲ ଚିକିଟା ଲାଗି ନଷ୍ଟ ହୋଇଯିବନି ? ତାଛଡ଼ା ଆପଣଙ୍କ ଦେହ ମୁହଁସବୁ କଳା ଚିଟିକିଟିଆ ହୋଇଯିବ ।"

ହସିଲେ ଗୀତାଦେବୀ, କହିଲେ, "ମୁଁ କ'ଣ ତାହା ଜାଣିନି ମିଷ୍ଟର ଚତୁର୍ବେଦୀ ? ମୁଁ ଯେତେବେଳେ ସଜାଡ଼ିବାକୁ ବାହାରିଛି, ଜାଣିଛି ଦେହ ମୁହଁରେ କଳା, ତେଲଚିକିଟା ଲାଗିଯିବ । ତା'ପରେ ଗାଧୋଇ ପଡ଼ିଲେ ସେ ସବୁ କ'ଣ ସଫା ହୋଇଯିବନି ? ତା ପାଇଁ ଏତେ ଚିନ୍ତା କାହିଁକି ? ଆଗ ଯନ୍ତ୍ର ସଜଡ଼ା ଯାଉ । ଏହାରି ପାଇଁ କେତେ ଅସୁବିଧା ହେଉଛି, ଆପଣ ଅନୁଭବ କରୁଛନ୍ତି ତ ? ଆପଣଙ୍କ ଏଠି ତଉଲିଆ ଅଛି ତ ? ଗୋଟାଏ ଦୁଇଟା ତଉଲିଆ, କିଛି ଛିଣ୍ଡା କନା ଆଣନ୍ତୁ, କାମ ଚଳିଯିବ । ଫେକ୍ଟ୍ରି-ଟ୍ରେନିଂ ବେଳେ ମୁଁ ଏହି କୋମ୍ପାନୀର ରିଆକ୍‌ସନ କୋଠରି, କେଟାଲିଷ୍ଟ ଚେମ୍ବର ଆଦି କେତେଥର ଖୋଲିଛି । ତେଣୁ ଖୋଲିବାରେ କିଛି ଅସୁବିଧା ହେବନି । ମୋତେ ସେସବୁ ଭଲ ଭାବରେ ଜଣା ।

ମୁଣ୍ଡରେ, କାନ୍ଧରେ ତଉଲିଆ ପକାଇ, ହାତରେ ରେଞ୍ଚ୍ ଆଦି ଯନ୍ତ୍ର ଧରି ଗୀତାଦେବୀ ଯେତେବେଳେ ରିଆକ୍‌ସନ୍ କୋଠରିଆଡ଼କୁ ଆଗେଇଲେ, ଦେବବାବୁ ଓ ତାଙ୍କ ଇଞ୍ଜିନିଅର ଓ ଅଫିସରମାନେ ଦେଖି ତାଟଙ୍ଗା । ଏଡ଼ିକି ଅଳ୍ପ ବୟସର ଝିଅଟିଏ, କି ଶିକ୍ଷା ନ ପାଇଛି ସତେ ଆମେରିକାରୁ ? ସାଧାରଣ ଶ୍ରମିକ ଭଳି ରେଞ୍ଚ୍, କଇଁଚି ଆଦି ଧରି ଯାଉଛି ଯନ୍ତ୍ରଠାକୁ ସଜାଡ଼ିବା ପାଇଁ, ଯେଉଁ

ସ୍ଥାନକୁ ଯିବା ପାଇଁ ସାଧାରଣ ଶ୍ରମିକମାନେ ମଧ୍ୟ କୁଣ୍ଠାବୋଧ କରନ୍ତି, କ'ଣ ନା ଦେହ ମୁହଁରେ ତେଲ ଚିକିଟା ଲାଗିଯିବ, ସହଜରେ ଛାଡ଼ିବନି । ଟିକିଏ ବି ଘୃଣା ନାହିଁ କି ବିକାର ନାହିଁ । ବାସ୍ତବିକ୍ ସେ ଦେଶର ଶିକ୍ଷାର ମହତ୍ତ୍ୱ କେତେ ?

ଦେବବାବୁ ଓ ଇଞ୍ଜିନିଅରମାନେ ବାହାରେ ଅପେକ୍ଷା କରି ରହିଲେ । କାହାରି ସାହାଯ୍ୟ ନ ନେଇ ଗୀତାଦେବୀ କେଟାଲିଷ୍ଟ ଚେମ୍ବର ଖୋଲି ପରୀକ୍ଷା କରିବାରେ ଲାଗିଗଲେ । କେଟାଲିଷ୍ଟ ଚେମ୍ବରରେ ସଜଡ଼ାସଜଡ଼ି କରି ବାହାରି ଆସିଲାବେଳକୁ ସନ୍ଧ୍ୟା ହେବା ଉପରେ । ବାହାରି ଆସୁ ଆସୁ ମିଷ୍ଟର ଚତୁର୍ବେଦୀଙ୍କୁ ଲକ୍ଷ୍ୟ କରି କହିଲେ, ''ଏଥର ଆପଣ ଚଳାନ୍ତୁ, ଠିକ୍ ଭାବରେ କାମ ଦେବ, ଆଉକିଛି ଅସୁବିଧା ହେବନି । କେଟାଲିଷ୍ଟ ଚେମ୍ବରରେ ଗୋଟାଏ ଜାଗାରେ ଜାମ୍ ହୋଇ ଯାଇଥିଲା । ସେଥିପାଇଁ ଏହି ଅସୁବିଧା ହେଉଥିଲା । ମୁଁ ଠିକ୍ ଭାବରେ ସଜାଡ଼ି ଦେଇଛି, ବିଶ୍ୱାସ କନ୍‌ଭରସନ୍ ଏଥର ଠିକ୍ ରୂପେ ଚାଲିବ ।''

କୋଠରିରୁ ବାହାରିଲାବେଳକୁ ଗୀତାଦେବୀ ଆଉ ଗୀତାଦେବୀ ଭଳି ଦିଶୁ ନ ଥାନ୍ତି । ଗୋରା ତକତକ ଦେହରେ କଳା, ତେଲଚିକିଟା ସବୁ ଲାଗି ସେ ପୂରାପୂରି କାଳିଆ ଦିଶୁଥାନ୍ତି । ଲୁଗାପଟାରେ କଳା, ତେଲଚିକିଟା ସବୁ ଲାଗି ତଳଶ୍ରେଣୀର ଅପରିଷ୍କାର ଅପରିଚ୍ଛନ୍ନା ସ୍ତ୍ରୀ ଭଳି ଦିଶୁଥାନ୍ତି ।

ଗୀତାଦେବୀଙ୍କୁ ଏଭଳି ଅବସ୍ଥାରେ ଦେଖି ଦେବବାବୁ ତାଙ୍କୁ ଚିହ୍ନି ପାରିଲେନି । ଏଠି କେଉଁଠି ଧୂଆଧୋଇ ହେବେ ଚାରିଆଡ଼କୁ ଅନାଇ ଦେବବାବୁଙ୍କୁ ଲକ୍ଷ୍ୟ କରି କହିଲେ, ''ଚାଲ, ଘରକୁ ଯିବା, ଘରେ ଧୂଆଧୋଇ ହେବି । ନ ଗୋଧୋଇଲେ ଏସବୁ ସଫା ହୋଇପାରିବନି ।''

ଏତକ କହି ଦେବବାବୁଙ୍କ ହାତ ଧରି କାର୍ ପାଖକୁ ଚାଲିଲେ । ଯାଉ ଯାଉ ହଠାତ୍ ହାତ ଛାଡ଼ିଦେଇ ଦୁଃଖ କରି କହିଲେ, ''ଏଁ, ଏଁ, ମୁଁ ତୁମ ହାତ କ'ଣ ଧରିଛି ? ତୁମ ହାତରେ କାଳିଆ ତେଲଚିକିଟା ଲାଗିଗଲା ଯେ । ଏତକ କହି ନିଜ ହାତ କାଢ଼ିଆଣି ନିଜ ପଣତକାନିରେ ଦେବବାବୁଙ୍କ ହାତରୁ ସେହି ତେଲ ଚିକିଟାକୁ ପୋଛିବାକୁ ଲାଗିଲେ । ପୋଛୁ ପୋଛୁ କହିଲେ, ''ମୋ ହାତଧରି ଯିବାକୁ ତୁମକୁ କ'ଣ ଘୃଣା ଲାଗୁନି ? ମୁଁ କେତେ ଅପରିଷ୍କାର ହୋଇଛି କୁହ ତ ? ତୁମେ ମୋଠାରୁ ଦୂରେଇ ଚାଲ ।''

ଏଇ କଥା କେଇପଦରେ ଦେବବାବୁ ଗୀତାଦେବୀଙ୍କ ପାଖରୁ ଦୂରେଇଯିବେ କ'ଣ ଆହୁରି ପାଖକୁ ଲାଗି ଆସି କାନ୍ଧରେ ହାତ ପକେଇଦେଲେ ।

"ହାଁ, ହାଁ, ଏ କ'ଣ କରୁଛ ? ତୁମ ସୁଟ୍ ନଷ୍ଟ ହୋଇଯିବ ଯେ ? ମୋତେ ଛୁଅଁନି ତୁମେ ।"

ଗାଡ଼ିରେ ପଶୁ ପଶୁ ଗୀତାଦେବୀ କହିଲେ, "ତୁମେ ଆଗସିଟ୍‌ରେ ଡ୍ରାଇଭିଂ କର, ମୁଁ ପଛରେ ବସୁଛି । ମୁଁ ଆଗରେ ବସିଲେ ତୁମ ସିଟ୍ ସହିତ ମୋ ଦେହ ଲାଗିଗଲେ, ତୁମ ସୁଟ୍ ନଷ୍ଟ ହୋଇଯିବ ।"

"ନା, ନା, ଗୀତା, ତୁମେ ଆଗସିଟ୍‌ରେ ବସ । କଳା ଲାଗିଲେ ଲାଗୁ । ଆମେ ତ ବର୍ତ୍ତମାନ ଗାଧୋଇବା । ଚିନ୍ତା କାହିଁକି ?"

ଗାଡ଼ିରେ ଯାଉ ଯାଉ ଗୀତାଦେବୀ କହିଲେ, "ମୋତେ ଏଭଳି ଅବସ୍ଥାରେ ଘୃଣା କରୁନାହଁ ? ମୁଁ କେତେ ଅପରିଚ୍ଛନିଆ ହୋଇଛି କହିଲ ? ମୋ ପାଖରେ ବସି ଯିବାକୁ କ'ଣ ତୁମକୁ ଘୃଣା ଲାଗୁନି ? ମୋତେ ଯିଏ ଦେଖିବ, ସିଏ ଘୃଣା କରିବ !"

ଦେବବାବୁଙ୍କ ବାମହାତ ଧୀରେ ଧୀରେ ଗୀତାଦେବୀଙ୍କ କାନ୍ଧ ବେଷ୍ଟନ କଲା । ଗାଡ଼ି ଚଳାଉ ଚଳାଉ ସେ ଗୀତାଦେବୀଙ୍କ କାନ୍ଧରେ ଈଷତ୍ ଚାପ ପ୍ରଦାନ କରି କହିଲେ, "ତୁମେ ଆଜି ମୋତେ ଯେତେ ସୁନ୍ଦର ଦିଶୁଛ, ଭାଷାରେ ବର୍ଣ୍ଣନା କରି ହେବନି ଗୀତା । ବାସରରାତିରେ ତୁମେ ମୋତେ ଯେଡ଼େ ସୁନ୍ଦର ଦିଶୁଥିଲ, ତା'ଠାରୁ ଢେର୍ ଅଧିକ ସୁନ୍ଦର ବର୍ତ୍ତମାନ ଦିଶୁଛ । ତୁମ ଭଳି ସ୍ତ୍ରୀ ପାଇ ମୁଁ ଧନ୍ୟ । ତୁମ କାର୍ଯ୍ୟଦକ୍ଷତା ଦେଖି ମୁଁ ଆଜି ଏତେ ବିଭୋର ହୋଇପଡ଼ିଛି ଯେ ତାହା ବର୍ଣ୍ଣନା କରିବାକୁ ଭାଷା ପାଉନି ।" ଏତକ କହି ସେ ଗୀତାଦେବୀଙ୍କୁ ନିଜଆଡ଼କୁ ଏତେ ଜୋର୍‌ରେ ଭିଡ଼ି ନେଲେ ଯେ ଗୀତାଦେବୀ ଚିତ୍କାର କରି ଉଠିଲେ, "ହାଁ, ହାଁ, ଏ କ'ଣ କରୁଛ ? ତୁମ ସୁଟ୍, ତୁମ ଦେହସବୁ କଳାକୋଟଟ ହୋଇଯିବ ମୋ ଦେହରେ ଲାଗି ।"

ସେତେବେଳକୁ ଗାଡ଼ିର ବେଗ ଢେର୍ କମି ଆସିଲାଣି । ଗାଡ଼ିର ବେଗକୁ ଆହୁରି କମାଇଦେଇ ଗୀତାଦେବୀଙ୍କୁ ନିଜ ମୁହଁପାଖକୁ ଭିଡ଼ି ଆଣି ତାଙ୍କ ମୁହଁରେ ମଧୁର ଚୁମ୍ବନର ଏକ କାଳିଆ ଦାଗ ଆଙ୍କିଦେଲେ ।

"ଏଁ, ଏଁ ମୋ ମୁହଁ ସହିତ ମୁହଁ ଲଗାଅନି ଦେବ । ମୋ ମୁହଁରେ ପରା କଳା ତେଲଚିକିଟା ସବୁ ଲାଗିଛି । ମୋ ଗାଲରେ ମୁହଁ କେମିତି ଲଗାଇଲ ସତେ ? ମୁଁ ତୁମକୁ କେମିତି ଘୃଣାଲାଗୁନି ଏ ଅବସ୍ଥାରେ ?"

"ତୁମେ ଘୃଣା ଲାଗିବ ? ଏତକ କହୁ କହୁ ଆଉ ଏକ ଗାଢ଼ ଚୁମ୍ବନର ରେଖା ତାଙ୍କ କପୋଳ ଉପରେ ଆଙ୍କିଦେଲେ ଦେବବାବୁ ।

"ଥାଉ, ଥାଉ, ଘରକୁ ଚାଲ । ମୁଁ ଗାଧୋଇସାରି ସଫାସୁତୁରା ହୋଇଯାଏ, ତୁମେ ଯେତେ ଚୁମ୍ବନ ଦେବ, ମୋର ସେଥିରେ ଆପତ୍ତି ରହିବ ନାହିଁ । ଜାଣ ଫେର୍‌ ଦ୍ୱିତୀୟ ବାସର ରାତି ।"

ଗୀତାଦେବୀ ଓ ଦେବବାବୁ ଚାଲିଗଲା ପରେ, ସେଠାରେ ଉପସ୍ଥିତ ଇଞ୍ଜିନିଅର ଓ ଅଫିସରମାନଙ୍କ ଭିତରେ ଗୀତାଦେବୀଙ୍କୁ ନେଇ କେତେ କ'ଣ ଆଲୋଚନା ପଡ଼ିଗଲା ।

"ଆରେ ବାବା, ଭାରି କଡ଼ା ମାଲିକାଣୀ । ଆମ ମାଲିକଙ୍କର ଠିକ୍‌ ଓଲଟା । ଏଡ଼ିକି ଛୋଟ ଝିଅଟେ, କି କଡ଼ା ତାଗିଦ୍‌, କି କଡ଼ା କଥାବାର୍ତ୍ତା ?"

"କିନ୍ତୁ ଯାହାକହ, କାମ ଜାଣିଛନ୍ତି । ଦେଖିଲ, ଦୁଇମାସ ହେଲା, ଆମେ ଆମେରିକାନ୍‌ ଇଞ୍ଜିନିଅରଙ୍କୁ ଅନାଇ ବସିଛେ । ଏ ହଠାତ୍‌ ଆଜି ଆସିଲେ, ସଜାଡ଼ି ଦେଇ ଚାଲିଗଲେ ।"

"ଚାରିଆଡ଼କୁ ଭାରି ଆଖି । ଆମର ଯଦି କେଉଁଠି କିଛି ଭୁଲ୍‌ଭଟକା ରହି ଯାଉଛି, ସାହେବଙ୍କ ଆଖିକୁ ଦିଶୁ ନ ଦିଶୁ, ତାଙ୍କ ଆଖିକୁ ଜଳଜଳ ଦିଶିଯାଉଛି । ଏୟାରକଣ୍ଡିସନିଙ୍ଗ୍‌ ନେଇ ସେ ଯେଉଁ ତାଗିଦ୍‌ ଦେଲେ, ତାହା ଠିକ୍‌ । ଆଜିକାଲି କଂପ୍ୟୁଟରଗୁଡ଼ାକ ଏତେ ସୋଫିଷ୍ଟିକେଟେଡ୍‌ ହେଲାଣି ଯେ ମୋର ସେଆଡ଼କୁ ଦୃଷ୍ଟି ଦେବା ଉଚିତ୍‌ ଥିଲା ।" ଚତୁର୍ବେଦୀ ନିଜ ଦୋଷ ସ୍ୱୀକାର କରୁ କରୁ କହିଲେ ।

"ଆରେ ବାବା ଆମ ମାଲିକାଣୀ ଖାଲି ଇଞ୍ଜିନିଅର ନୁହନ୍ତି, ଇଞ୍ଜିନିୟରିଂ ପାସ୍‌ ପରେ ହାରଭର୍ଡ୍‌ ବିଶ୍ୱବିଦ୍ୟାଳୟରୁ ଶିଳ୍ପ ପରିଚାଳନା ନେଇ ଏମ୍‌.ବି.ଏ. ଡିଗ୍ରୀ ମଧ୍ୟ ହାସଲ କରିଛନ୍ତି । ଆମ ମାଲିକାଣୀଙ୍କ ହାତକୁ ଯଦି ଶାସନ ପରିଚାଳନା କେବେ ଯାଏ ନା, ତେବେ ସେ ଆମ ସମସ୍ତଙ୍କ ଦୋଷତ୍ରୁଟି ବାହାର କରି ସାବାଡ଼ କରିଦେବେ । ଆମେ ମାଲିକଙ୍କୁ ଯାହା ଠକାଠକି କରି ଚଳାଇ ନେଉଥିଲେ, ସେସବୁ ତାଙ୍କ ପାଖରେ ଆଉ ପଟିବ ନାହିଁ" ଆଉଜଣେ ଅଫିସର କହିଲେ ।

ଆମେରିକାରୁ ପାସ୍‌ କରି ଆସି ସେ ତାଙ୍କ ବାପାଙ୍କ କାରଖାନାରେ ପରା ବେଳେବେଳେ ମେସିନ୍‌ ସବୁ ଅସଜ ହେଉଥିଲେ ସଜାଡ଼ି ଦେଉଥିଲେ । ତାଙ୍କ ବାପାଙ୍କର ଯେତେ କାରଖାନା ଅଛି ସେ ପାସ୍‌ କରି ନିଜେ ଆସିଲାଦିନରୁ ଆମେରିକାରୁ ଆଉ କ'ଣ ଇଞ୍ଜିନିଅର ଆସୁଛନ୍ତି ସଜାଡ଼ିବା ପାଇଁ ? ସେ ପରା ନିଜେ ସେସବୁ ସଜାଡ଼ି ଦେଉଛନ୍ତି ।

"ଖାଲି କ'ଣ ସେତିକି ? ତାଙ୍କ ମାମୁଁ, ଦାଦା, ପିଉସୀପୁଅ ଭାଇଙ୍କ କାରଖାନାରେ ସେ ଅନରାରୀ କନ୍‌ସଲ୍‌ଟାଣ୍ଟ । ମୁଁ ଶୁଣିଛି ସେ ଆମେରିକାରେ ଇଞ୍ଜିନିଅରିଂ ପଢ଼ିଲାବେଳେ କ୍ଲାସ୍‌ରେ କାଳେ ସବୁବେଳେ ଫାଷ୍ଟ୍ ହେଉଥିଲେ ।"

"ଯାହାହେଉ, ଆମ ମାଲିକଙ୍କ ବଡ଼ ଭାଗ୍ୟ । ତାଙ୍କ କପାଳକୁ ଏତେବଡ଼ ଯୋଗ୍ୟା ସ୍ତ୍ରୀଟିଏ ମିଳିଗଲେ । ଏସବୁ ଭାଗ୍ୟରେ ନ ଥିଲେ ସହଜରେ ମିଳେନି ।"

× × × × ×

"ହ୍ୟାଲୋ, ମିଷ୍ଟର ହାନସ୍‌ଫିଲଡ୍ ।" କହୁ କହୁ ହାଣ୍ଡସେକ୍ ପାଇଁ ହାତ ବଢ଼ାଇଦେଲେ ଗୀତାଦେବୀ ।

ହାଣ୍ଡସେକ୍ କରୁ କରୁ ହାନସ୍‌ଫିଲଡ୍ କହିଲେ, "ତୁମକୁ ଦେଖି ଖୁବ୍ ଖୁସୀ ହେଲି ଗୀତାଦେବୀ । ତୁମେ ସଜାଡ଼ି ଦେଲଣି, ମୋତେ ପୁଣି ଡାକିବା କ'ଣ ଦରକାର ଥିଲା ?"

"ନା, ନା, ତୁମେ ଆସିଛ, ଭଲ କରିଛ ଜେମସ୍ । ଦେଖା ହୋଇଗଲା । ଢେର୍ ଦିନ ପରେ, ନୁହେଁ ?"

"ହଁ, ଚାରି ପାଞ୍ଚବର୍ଷ ହୋଇଯିବ ।"

"ଆଁ, ଏହା ଭିତରେ ଏତେଦିନ କଟିଗଲାଣି ? କାଲି ପରି ଲାଗୁଛି ।"

"ହଁ, ପାସ୍ କରି ଆମେସବୁ ତ ଚାକିରି କରିଗଲୁ । ତୁମେ ତ ହାରଭର୍ଡ୍ ଚାଲି ଆସିଲ ଏମ୍.ବି.ଏ. କରିବା ପାଇଁ । ସେଠୁ ଭାରତ ଫେରିଲ ବୋଧହୁଏ ।"

"ହଁ, ତା'ପରେ ବିଭାଘର । ବିଭାଘର ପରେ ଏଠାକୁ ଆସିଲି । ଆଉ ତୁମ୍ଭମାନଙ୍କ ହାଲଚାଲ କ'ଣ ? ଆମର ସାଙ୍ଗସାଥିମାନେ କିଏ କେଉଁଠି ଅଛନ୍ତି, ଜାଣି ହେଉନି । ତୁମେ ଜାଣିଥିବ ନିଶ୍ଚୟ ?"

"ନା, ସେମାନଙ୍କ ସହିତ ଆଉ ଦେଖାହେଉଛି କେଉଁଠି ? ଯିଏ ଯେଉଁ ଧନ୍ଦାରେ ବ୍ୟସ୍ତ । ଆମେରିକା ଭଳି ଏଡ଼େ ବିସ୍ତୀର୍ଣ୍ଣ ଦେଶରେ କିଏ କେଉଁଠି ଅଛି, ଜାଣିବା କଷ୍ଟକର । ବେଳବି କାହିଁ, କିଏ କେଉଁଠି ଅଛି ଖବର ନେବାକୁ ? ଟୁର୍ ବେଳେ କେବେକେବେ ପୁରୁଣା ସାଙ୍ଗମାନଙ୍କ ସହିତ ହଠାତ୍ ଦେଖା ହୋଇଯାଏ । ସେମାନଙ୍କଠାରୁ ଅନ୍ୟମାନଙ୍କ ବିଷୟରେ ଯାହାକିଛି ଖବର ମିଳେ । ସେ ବି ପୁଣି ବର୍ଷେ ଦୁଇବର୍ଷ ତଳର । ଏବେ ଏହା ଭିତରେ କାହା ସହିତ ମୋର ଦେଖା ହୋଇନି ।"

"ହଁ, ଜେମସ୍, ଡେଲିଭରୀବେଳେ କୋମ୍ପାନୀ ତରଫରୁ କିଏ ଇଞ୍ଜିନିଅର ଆସିଥିଲା ?"

"କାହିଁକି ? ମୁଁ ତ ଆସିଥିଲି ।"

"ତୁମେ ୱାର୍କିଂପ୍ରୋସେସ୍ ଦେଖାଇଲାବେଳେ ଆମ ଇଞ୍ଜିନିଅରମାନେ ତୁମଠାରୁ ଠିକ୍ ଭାବରେ ସବୁ ବୁଝି ନେଇ ନ ଥିଲେ ନା କ'ଣ ? ତା' ନ ହୋଇଥିଲେ ଏହି ସାମାନ୍ୟ ତ୍ରୁଟି ପାଇଁ କାରଖାନାଟା ଏତେଦିନ ଧରି କ୍ଷତିରେ ଚାଲୁ ନ ଥାନ୍ତା ।"

"ତୁମେ ଯେଉଁ ତ୍ରୁଟି କଥା କହୁଛ, ମୁଁ ତାକୁ ଦେଖି ସାରିଲିଣି । ତୁମେ ସକାଡ଼ି ଆସିଲା ପରେ ମୁଁ ପୁଣି ଥରେ ତାକୁ ପରୀକ୍ଷା କଲି । ତୁମ ଇଞ୍ଜିନିଅରମାନଙ୍କୁ ଏଥର ଭଲ ଭାବରେ ବୁଝାଇ ଦେଇଛି, ଆଉ ଅସୁବିଧା ହେବନି ଭବିଷ୍ୟତରେ ।"

"ତୁମେ ବର୍ତ୍ତମାନ କେଉଁଠି ରହୁଛ ଜେମସ୍ ? ଆମ ଗେଷ୍ଟହାଉସ୍‌ରେ ତ ?"

"ହଁ, ସେଇଠି । ଗତଥର ବି ତ ସେଠି ଥିଲି । କାହିଁକି ?

"ଖାଇବା ପିଇବାରେ ତୁମର ଅସୁବିଧା ହେଉଥିବ ନିଶ୍ଚୟ ? ସେଠି ତ ଆମ ଭାରତୀୟ ରନ୍ଧା ।"

"ଭାରତକୁ ଆସି ଆସି ମୁଁ ପୂରାପୂରି ଭାରତୀୟ ହୋଇଗଲିଣି ଗୀତାଦେବୀ । ମୋ ଦେହରେ ଭାରତୀୟ ଖାଦ୍ୟ ବେଶ୍ ଚଳିଗଲାଣି । ପ୍ରଥମରୁ ପ୍ରଥମରୁ ଟିକିଏ ଅସୁବିଧା ହେଉଥିଲା । ତୁମର ତେଲ, ହଳଦି, ମସଲା ମୋତେ କେମିତି କେମିତି ଲାଗୁଥିଲା । ଏବେ ଏଣିକି ସେସବୁ ମୋ ଦେହରେ ବେଶ୍ ଚଳିଗଲାଣି, ଆଉ ଅସୁବିଧା ଲାଗୁନି ।"

"ହେଉ, ବିଶେଷ ଧନ୍ୟବାଦ ଗୀତାଦେବୀ । ମୁଁ ଏବେ ଆସୁଛି । ମୁଁ ଖୁବ୍ ଖୁସୀ, ଯାହାହେଉ, ତୁମ ସହିତ ଦେଖା ହୋଇଗଲା । ମୋତେ କାଲି ସକାଳେ ଫ୍ଲାଇଟ୍ ଧରିବାକୁ ପଡ଼ିବ ।"

"କୁଆଡ଼େ, ଆମେରିକା ?"

"ନାଇଁ, ବାଗ୍‌ଦାଦ୍ । ସେଠାରେ ମୋତେ ଗୋଟିଏ କାରଖାନା ଦେଖିବାକୁ ପଡ଼ିବ । ଆମ କୋମ୍ପାନୀ ସେଠି ଗୋଟାଏ କାରଖାନା ତିଆରିର ଦାୟିତ୍ୱ ନେଇଛି ।"

"କି, କାରଖାନା ?"

"କୃତ୍ରିମ ସିଲ୍‌କ କାରଖାନା ।"

"ହେଉ, ତୁମକୁ ନିମନ୍ତ୍ରଣ ରହିଲା ଜେମସ୍ । ଆଜି ସନ୍ଧ୍ୟାରେ ଆମ ଘରେ ଡିନର୍ । ଏ ଡିନର୍ ଭାରତୀୟ ରୀତିରେ ନ ହୋଇ ପୂରାପୂରି ତୁମ ଆମେରିକାନ୍ ରୀତିରେ ହେବ । ଆଜି ଖାଇବାରେ ତୁମର ସନ୍ତୋଷ ଆସିବ ନିଶ୍ଚୟ ।"

ମିଷ୍ଟର ହାନସ୍‌ଫିଲଡ୍ ଉଠୁ ଉଠୁ ମିଷ୍ଟର ଅଗ୍ରୱାଲ ପହଞ୍ଚିଗଲେ । ମିଷ୍ଟର ଅଗ୍ରୱାଲଙ୍କୁ ଲକ୍ଷ୍ୟ କରି ହାନସ୍‌ଫିଲଡ୍ କହିଲେ, "ଆପଣ ବଡ଼ ଭାଗ୍ୟବାନ ମିଷ୍ଟର ଅଗ୍ରୱାଲ । ଆପଣ ଗୀତାଦେବୀଙ୍କୁ ସ୍ତ୍ରୀ ଭାବରେ ପାଇ ପାରିଛନ୍ତି । ଆପଣ ଜାଣନ୍ତି, ସେ ଥିଲେ, ଆମ କଲେଜରେ ଏକ ମଣି । ତାଙ୍କ ଭଳି ମେଧାବୀ ଛାତ୍ରୀ ସାରା ଆମେରିକାରେ ବିରଳ । ସେ ସବୁବେଳେ କ୍ଲାସ୍‌ରେ କ'ଣ, ପରୀକ୍ଷାରେ କ'ଣ ଆମ ସମସ୍ତଙ୍କ ଆଗରେ । ସେ ଆମ ଇଞ୍ଜିନିଅରିଂ କଲେଜରେ ଯେଉଁ ବ୍ରିଲିଆଣ୍ଟ୍ ରେକର୍ଡ଼ ରଖି ଦେଇ ଆସିଛନ୍ତି, ସେ ରେକର୍ଡ଼କୁ ଭାଙ୍ଗିବା କଷ୍ଟ । ଏଥର ଆପଣଙ୍କର କିଛି ଅସୁବିଧା ହେଲେ ଆମେରିକାକୁ ଲେଖିବା ଆଉ ଦରକାର ନାହିଁ । ଗୀତାଦେବୀ ଆମେରିକାର ବହୁ ବଡ଼ ବଡ଼ କୋମ୍ପାନୀର କନ୍‌ସଲଟାନ୍‌ସି ପାଇଛନ୍ତି । ସେସବୁ ବଳବତ୍ତର ରହିଛି ଏ ପର୍ଯ୍ୟନ୍ତ । ତେଣୁ ତାଙ୍କ ପକ୍ଷରେ ସଜାଡ଼ିବା ମୋଟେ କଷ୍ଟକର ହେବନି । ଖାଲି ଆପଣଙ୍କ କୋମ୍ପାନୀ କାହିଁକି, ଅନ୍ୟ ବହୁ କୋମ୍ପାନୀ ଏବେ ତାଙ୍କଠାରୁ ସାହାଯ୍ୟ ନେଇପାରିବେ ।"

× × × × ×

ଗୀତାଦେବୀ ସ୍ୱାମୀଙ୍କ ଅଫିସ୍ କକ୍ଷ ଭିତରକୁ ପଶି ଆସିଲାବେଳକୁ ଦେବକିଷନବାବୁ କୃତ୍ରିମ ସିଲ୍‌କ କାରଖାନାର ମେନେଜରଙ୍କୁ ଡାକି କାରଖାନାର ଉତ୍ପାଦନ ହ୍ରାସ, ତେଣେ ଚାହିଦାର ହ୍ରାସ କଥା ପଚାରି ବୁଝୁଥାନ୍ତି । ସେଲସ୍ ମେନେଜରଙ୍କୁ ମଧ ଆଲୋଚନାରେ ଭାଗ ନେବା ପାଇଁ ଡକା ଯାଇଥାଏ । ଦେବବାବୁଙ୍କର ପ୍ରଧାନ ଚିନ୍ତା ଚାହିଦା ହ୍ରାସ ପାଇଲେ ବ୍ୟବସାୟ ଚାଲିବ କେମିତି ? କିଛିବର୍ଷ ତଳେ ତାଙ୍କ କୃତ୍ରିମ ସିଲ୍‌କର ଚାହିଦା ତ ଢେର୍ ଉଚ୍ଚରେ ଥିଲା । ଏହି କେତେ ବର୍ଷ ଭିତରେ ହଠାତ୍ ଏଭଳି ହ୍ରାସ ପାଇଗଲା କେମିତି ? ମେନେଜରଦ୍ୱୟ ଯେଉଁ କାରଣ ଦର୍ଶାଉଥାନ୍ତି, ତାହା କେତେଦୂର ଯୁକ୍ତିଯୁକ୍ତ ଦେବବାବୁ ଠିକ୍ କରିପାରୁ ନ ଥାନ୍ତି ।

ଗୀତାଦେବୀଙ୍କୁ ଅଫିସ୍ କକ୍ଷ ଭିତରକୁ ପଶି ଆସିବା ଦେଖି ଦେବବାବୁ ଅତ୍ୟନ୍ତ ଆନନ୍ଦିତ ହୋଇ କହି ପକାଇଲେ, "ଠିକ୍ ସମୟରେ ତୁମେ ଆସିଯାଇଛ ଗୀତା । ତୁମର ଆବଶ୍ୟକତା ମୁଁ ଏଇକ୍ଷଣି ଉପଲବ୍ଧି କରୁଥିଲି ଏଠି । ତୁମକୁ ତ ବର୍ତ୍ତମାନ ଡକାଇ ପଠାଇଥାନ୍ତି ।"

"କାହିଁକି, ହଠାତ୍ କ'ଣ ହେଲା କି ?"

"ତୁମେ ଜାଣିଛ କି ନା ଜାଣିନି ଗୀତା, ଆମ କୃତ୍ରିମ ସିଲ୍‌କ କାରଖାନାରେ ଏକ ଅସୁବିଧା ହୋଇଯାଇଛି । ବଜାରରେ ଆମ କୃତ୍ରିମ ସିଲ୍‌କର କାଟ୍‌ତି କମି ଯାଇଛି ।"

''କମିବାର କାରଣ ?''

''ସେଲ୍‌ସ ମେନେଜର କହିପାରୁ ନାହାନ୍ତି ।''

''ତା'ହେଲେ ସେଲ୍‌ସ ମେନେଜର ଅଛନ୍ତି କାହିଁକି ? ସେ ଯଦି ନ କହି ପାରିବେ କାଟ୍‌ତି କମିବାର କାରଣ, ସେ କାରଖାନାରୁ ଶୀଘ୍ର ବିଦା ହୋଇଯିବା ଉଚିତ । ତାଙ୍କର ଏନାଲିସିସ୍ ଏଠାରେ ନିତାନ୍ତ ଦରକାର । ସେଲ୍‌ସ ମେନେଜର ଯଦି ବିକ୍ରୟର ଉନ୍ନତି କରି ନ ପାରନ୍ତି, ଏଣେ ବିକ୍ରୟ ହ୍ରାସର କାରଣ ଦେଖାଇ ନ ପାରନ୍ତି, ତେବେ ସେ ଚାକିରି ଛାଡ଼ିଦେଇ ଚାଲିଯିବା ଉଚିତ୍ ।''

ସେଲ୍‌ସ ମେନେଜରଙ୍କ ଆଡ଼କୁ ଲକ୍ଷ୍ୟକରି, ''କ'ଣ କହୁଛନ୍ତି ମିଷ୍ଟର ଅହମ୍ମଦ । ଆମ ସିଲ୍‌କର କାଟତି କମିଯିବାର କାରଣ କିଛି ତ ଥିବ ? ଆପଣ କ'ଣ ଭାବୁଛନ୍ତି ?''

''ମୁଁ ଆଜ୍ଞା କିଛି ଭାବିପାରୁନି । ଛଅମାସ ତଳେ ଆମ ଜିନିଷର ଚାହିଦା ସବା ଉପରେ ଥିଲା । ଆମ ତଳକୁ ଥିଲା ଗୋଆଲିୟର ରେୟନ୍ । ତା' ତଳକୁ ଥିଲା ଆଲେମ୍ବିକ୍ ରେୟନ୍ ।''

''କିନ୍ତୁ ବର୍ତ୍ତମାନ ?''

''ଆମର ସ୍ଥାନ ସେମାନଙ୍କ ତଳେ ।''

''କାହିଁକି ? ଦାମ୍ କ'ଣ ଆମର ବେଶୀ ?''

''ନା, ତିନୋଟିଯାକର ଦାମ୍ ପାଖାପାଖି ।''

''ଆମର ଯେଉଁମାନେ ବଡ଼ ବଡ଼ ଡିଷ୍ଟ୍ରିବ୍ୟୁଟର, ସେମାନେ କ'ଣ କହୁଛନ୍ତି ? ଆମର ହୋଲସେଲ୍ ଏଜେଣ୍ଟମାନେ କ'ଣ ମତ ଦେଉଛନ୍ତି ? ଆମ ଜିନିଷର କାଟ୍‌ତି କାହିଁକି କମିଗଲା, ସେମାନଙ୍କୁ ପଚାରିଛ ?''

''ସେମାନେ କହୁଛନ୍ତି, ଆମ ସିଲ୍‌କର ମାନ ହ୍ରାସ ପାଇଛି । ସୁପରଷ୍ଟାର୍ ରବର ଟାୟାର କୋମ୍ପାନୀ ଯେ କି ଆମର ଜଣେ ବଡ଼ ଖରିଦଦାର ଥିଲା, ସେ ଏବେ ତା'ର ଅର୍ଡ଼ର କେନ୍‌ସେଲ କରିଛି, କ'ଣ ନା ଆମ ସୂତାର ଟାଣ ଭଲ ନୁହେଁ ।''

''ତୁମେ କ'ଣ ଭାବୁଛ, ପ୍ରକୃତରେ ଆମ ଜିନିଷର ଗୁଣ ଭଲ ନାହିଁ ? ତୁମର ଏନାଲିସିସ୍ କ'ଣ ଆମକୁ ବୁଝାଅ ।''

ସେଲ୍‌ସ ମେନେଜର କିଛି ଉତ୍ତର ନ ଦେଇ ଚୁପ୍ ରହିଲେ ।

''ଆପଣ କ'ଣ କହୁଛନ୍ତି ମିଷ୍ଟର ସାରିନ୍ ? ସେଲ୍‌ସ ମେନେଜର ଯାହା କହୁଛନ୍ତି, ତାହା କ'ଣ ଠିକ୍ ? ଆମ ଜିନିଷର ମାନ ହ୍ରାସ ପାଇଛି ?''

''ମୁଁ ଆଜ୍ଞା ତାହା ଭାବୁନି ।''

''ଆପଣ କେତେ କ୍ୱାଲିଟିର କୃତ୍ରିମ ସିଲ୍‌କ ତିଆରି କରନ୍ତି ଶୁଣେ ?''

''ମାତ୍ର ଗୋଟିଏ କ୍ୱାଲିଟିର ।''

''ଆଁ, ଗୋଟିଏ କ୍ୱାଲିଟିର ?'' ଆଶ୍ଚର୍ଯ୍ୟ ହୋଇଗଲେ ଗୀତାଦେବୀ ।'' ରବର ଟାୟାର କୋମ୍ପାନୀ ଯେଉଁ ରେୟନ ଚାହୁଁଛି, ଲୁଗାକଳମାନେ ଯେଉଁ ରେୟନ ଚାହୁଁଛନ୍ତି, ଜାଲ ବୁଣାଳିମାନେ ଯେଉଁ ରେୟନ ଚାହୁଁଛନ୍ତି, ସିଲ୍‌କ ଲୁଗା କୋମ୍ପାନୀମାନେ ଯେଉଁ ରେୟନ ଚାହୁଁଛନ୍ତି, ସବୁର ଷ୍ଟକ୍ କ'ଣ ଗୋଟିଏ ?

''ହଁ, ଆଜ୍ଞା ।''

''ଆପଣ ଖୁବ୍ ଭଲ ବ୍ୟବସାୟ କରିବେ ମିଷ୍ଟର ସାଗିନ୍ । ଆପଣ କୋମ୍ପାନୀକୁ ବୁଡ଼ାଇଦେବେ ଦେଖୁଛି । ଏ ତିନି ପ୍ରକାର ଗ୍ରାହକଙ୍କ ରେୟନ ଚାହିଦା ଏକା ପ୍ରକାର ହେବା ଉଚିତ ନୁହେଁ । ଆପଣ କ'ଣ ଏତକ ଜାଣି ନାହାନ୍ତି ? ମିଷ୍ଟର ଅହମ୍ମଦ ଯାହା କହୁଛନ୍ତି, ତାହା ଯଦି ଠିକ୍ ହୁଏ, ତେବେ ଆମ ଜିନିଷର ମାନ ହ୍ରାସ ପାଇବାର କାରଣ ?''

ମିଷ୍ଟର ଅହମ୍ମଦ ଯାହା କହୁଛନ୍ତି, ମୁଁ ତାହା ଭାବୁନି । ଆମ ଜିନିଷର ମାନ ଏତେ ନ୍ୟୂନ ନୁହେଁ, ଯାହାପାଇଁ କି ରବର ଟାୟାର କୋମ୍ପାନୀ ଏହାକୁ କିଣିବାକୁ ଅନିଚ୍ଛୁକ ।''

''ହେଉ, ତା'ହେଲେ ଚାଲିଲେ, ଆପଣଙ୍କ ଫେକ୍‌ଟରୀକୁ । ଦେଖିବା ଆପଣଙ୍କ ସୂତାର ମାନ କେମିତି ?''

ସ୍ୱାମୀଙ୍କ ଆଡ଼କୁ ଅନାଇ, ''ଇଏତ ବଡ଼ ଗୁରୁତର ଅବସ୍ଥା । କ'ଣ କହୁଛ, ଯିବା ଦେଖିବା ପାଇଁ ?''

''ହଁ, ହଁ, ନ ଗଲେ କେମିତି ହେବ ?''

କାରଖାନାରେ ପହଞ୍ଚି ଗୀତାଦେବୀ କାରଖାନାରେ ତିଆରି ହୋଇଥିବା କୃତ୍ରିମ ସିଲ୍‌କସୂତାକୁ ମଗାଇଲେ । ସୂତାକୁ ଦେଖି ପରୀକ୍ଷା କରୁ କରୁ କହିଲେ, ''ଆଁ, ଏ ସୂତା ତ ଅତି ନିକୃଷ୍ଟ ଧରଣର । ଆପଣମାନେ ଏମିତି ସୂତା ତିଆରି କରି ବଜାରରେ ପ୍ରତିଯୋଗିତା କରିବେ ? ଏହି କ'ଣ ଗୋଟିଏ ମାନର ସୂତା, ନା ଅନ୍ୟମାନର ଅଛି ?''

''ନାଇଁ ଆଜ୍ଞା, ଏଇ ଗୋଟିଏ ମାନର ।''

''ଆପଣମାନେ ବିଭିନ୍ନ ମାନର ସୂତା ତିଆରି କରୁ ନାହାନ୍ତି କାହିଁକି ?''

ଏମିତି ତ ମୂଳରୁ ଚାଲି ଆସିଛି । ଏହି ଧରଣର ସୂତା କେବଳ ରବର ଟାୟାର କୋମ୍ପାନୀମାନେ ଖରିଦ କରନ୍ତି । ଲୁଗାକଳ କି ସିଲ୍‌କଶାଢ଼ି କାରଖାନା ଏହାକୁ ନିଅନ୍ତିନି ।''

''ଆପଣମାନେ କେଉଁ ପଦ୍ଧତିରେ ଏହି ସିଲ୍‌କ ସୂତା ତିଆରି କରୁଛନ୍ତି ଶୁଣେ ?''

''ଏମୋନିଆ ପଦ୍ଧତି ।''

ହସିଲେ ଗୀତାଦେବୀ । ''ଏହି ପଦ୍ଧତି ବର୍ତ୍ତମାନ ସାରା ପୃଥିବୀରେ ପ୍ରାୟ କେଉଁଠି ଚାଲୁନି । ଆପଣମାନେ ଏସିଟେଟ୍ ପଦ୍ଧତି କି ଭିସ୍‌କସ୍ ପଦ୍ଧତି ବ୍ୟବହାର କରୁ ନାହାନ୍ତି କାହିଁକି ?''

''ଭିସ୍‌କସ୍ ପଦ୍ଧତି ପାଇଁ ଆମର ଗୋଟିଏ ଛୋଟିଆ ଇଉନିଟ୍ ଅଛି । ତାହାର ଉତ୍ପାଦନ କ୍ଷମତା ଖୁବ୍ କମ୍ ।''

ଆପଣମାନେ ସେସବୁ ପଦ୍ଧତି ଛାଡ଼ନ୍ତୁ । ବର୍ତ୍ତମାନ ପାଇଁ ଏସିଟେଟ୍ ପଦ୍ଧତି ଗ୍ରହଣ କରନ୍ତୁ । ସେହି ପଦ୍ଧତିରେ ଆପଣ ସବୁ ପ୍ରକାର ଗ୍ରାହକଙ୍କ ପାଇଁ ଆବଶ୍ୟକୀୟ ସୂତା ତିଆରି କରିପାରିବେ । ଆପଣଙ୍କ ଇଞ୍ଜିନିଅରମାନଙ୍କର ସେଥିରେ ଟ୍ରେନିଂ ଅଛି ତ ? ଡାକିଲେ ଆପଣଙ୍କର ପ୍ରଡ଼କ୍‌ସନ୍ ଇଞ୍ଜିନିଅରଙ୍କୁ ।''

ପ୍ରଡ଼କ୍‌ସନ୍ ଇଞ୍ଜିନିଅର ଆସିଗଲାରୁ ଗୀତାଦେବୀ ପଚାରିଲେ, ''ଆପଣ କେଉଁଠୁ ପାସ୍ କରିଛନ୍ତି ?''

''ଅହମ୍ମଦାବାଦ ଟେକ୍‌ସଟାଇଲ ଇଞ୍ଜିନିଅରିଂ କଲେଜରୁ ।''

''ଆପଣ ଏଠି ଏସିଟେଟ୍ ପଦ୍ଧତି ଅନୁସରଣ କରୁ ନାହାନ୍ତି କାହିଁକି ?''

''ଆମର କଞ୍ଚାମାଲ ଅଛି ଏମୋନିଆ ପଦ୍ଧତି ପାଇଁ ।''

''ସେ କଞ୍ଚାମାଲ କ'ଣ ଏସିଟେଟ୍ ପଦ୍ଧତିରେ ଲାଗିବ ନାହିଁ ?''

''ହଁ, ଲାଗିବ ।''

''ତେବେ– ? ଆପଣମାନଙ୍କ ଜିନିଷର ମାନ ଦିନକୁଦିନ କମି ଯାଉଛି । ଆପଣମାନେ କ'ଣ କେହି ଚିନ୍ତା କରୁ ନାହାନ୍ତି ? ଆଜିକାଲି ହେଲା ପ୍ରତିଯୋଗିତା ଯୁଗ । ସେଥିରେ ଆପଣମାନେ ଏତେ ନିଷ୍କ୍ରିୟ ହେଲେ ଏହି କାରଖାନା କ'ଣ ଚାଲି ପାରିବ ? ଆପଣମାନେ ଗୋଟିଏ କଥା ଭୁଲି ଯାଉଛନ୍ତି, ଆଜିକାଲି ହେଲା ଏସିଟେଟ୍ ସିଲ୍‌କର ଯୁଗ । ଆପଣମାନେ ସେହି ପଦ୍ଧତି ଅନୁସରଣ ନ କଲେ ବଜାରରେ ପ୍ରତିଯୋଗିତା କରିବେ କିପରି ? ଆପଣଙ୍କର ଏସିଟେଟ୍‌ରେ ଟ୍ରେନିଂ ଅଛି ?''

"ହଁ, ଆଜ୍ଞା ।"

"କୌଣସି ଆମେରିକାନ୍ କାରଖାନାରେ ?"

"ନା, ଇଂଲଣ୍ଡର ଏକ ବ୍ରିଟିଶ୍ କାରଖାନାରେ ।"

"କେଉଁ କାରଖାନା ?"

"ଇମ୍ପେରିଆଲ ରେୟନ କୋମ୍ପାନୀ, ହାମିଲଟନ୍ ।"

"ସେଠି ତ ଢେର୍ ଦିନ ପର୍ଯ୍ୟନ୍ତ ଏସିଟେଟ୍ ପଦ୍ଧତି ଆରମ୍ଭ ହୋଇ ନ ଥିଲା । ସେଠି ତ ମୂଳରୁ ଭିସ୍‌କୋସ୍ ପଦ୍ଧତି ହିଁ ଥିଲା । ଏହି ଦୁଇ ତିନିବର୍ଷ ତଳେ ଆରମ୍ଭ ହୋଇଥିବ ?"

"ହଁ, ଆଜ୍ଞା, ଏହି ତିନିବର୍ଷ ହେଲା ଆରମ୍ଭ ହୋଇଛି । ଏହା ଯେତେବେଳେ ଆରମ୍ଭ ହେଲା, ମୁଁ ସେତିକିବେଳେ ସେଠି ଟ୍ରେନିଂ ନେଉଥିଲି ।"

"ଆପଣମାନେ ଟ୍ରେନିଂ ନେଲାବେଳେ କିଛି ଶିଖନ୍ତି, ନା କୋମ୍ପାନୀ ପଇସାରେ ଫୂର୍ତ୍ତି କରି, ଚାରିଆଡ଼ ଦେଖାଚାହାଁ କରି ଫେରି ଆସନ୍ତି ?"

ସ୍ୱାମୀଙ୍କୁ ଅନାଇ ଗୀତାଦେବୀ କହିଲେ, "ଆମର ଏବେ ଏଠି ଏସିଟେଟ୍ ପଦ୍ଧତି ଆରମ୍ଭ କରାଯାଉ । ଏମୋନିଆ ପ୍ରୋସେସ୍‌ରେ କଲେ ଜିନିଷର ମାନ ସେତେ ଭଲ ହେବନି । ସୂତାର ମାନ ଭଲ ନ ହେଲେ ଆମେ ପ୍ରତିଯୋଗିତାରେ ଠିଆ ହେବା କେମିତି ? କ'ଣ କହୁଛ ତମେ ?"

"ହଁ, ହଁ, ତୁମ କଥାରେ ମୁଁ ପୂରାପୂରି ରାଜି । ଯେଉଁଥିରେ ଜିନିଷର ମାନ ଭଲ ହେବ, ଆମ ଜିନିଷର କାଟ୍‌ତି ବଜାରରେ ବଢ଼ିବ, ସେହି ପଦ୍ଧତି ଆମର ଅନୁସରଣ କରିବା ଉଚିତ ।"

"ଏସିଟେଟ୍ ପଦ୍ଧତି ପାଇଁ ଆମେରିକାର ଜେମସ୍ ଇଞ୍ଜିନିୟରିଂ ୱାର୍କସ୍‌ରୁ ଯନ୍ତ୍ରପାଇଁ ଅର୍ଡ଼ର କରିଦେଲେ ଚଳିବ । ମୁଁ ଜାଣେ, ସେହି କୋମ୍ପାନୀର ଯନ୍ତ୍ରପାତି ଖୁବ୍ ଉନ୍ନତଧରଣର । ଆମର ଜଣେ ଯୁବ ଇଞ୍ଜିନିଅରକୁ ସେଠାରେ ଟ୍ରେନିଂ ପାଇଁ ପଠାଇ ଦେବା । ମୁଁ ସେ କୋମ୍ପାନୀକୁ ଚିଠି ଲେଖି ଦେଉଛି । କିଛି ଅସୁବିଧା ହେବନି ।"

ମେନେଜରଙ୍କ ଆଡ଼କୁ ଅନାଇ, "ଆପଣ କୋଟେସନ୍ ଆଦି ମଗାଇ ନିଅନ୍ତୁ । ଶୀଘ୍ର ଯେମିତି ଅର୍ଡ଼ର ଦିଆଯାଏ, ଦେଖିବେ ।"

"ହଁ, ଆପଣମାନଙ୍କର କଞ୍ଚାମାଲ ଟିକିଏ ଦେଖିବା, ଯେଉଁଥିରୁ ବର୍ତ୍ତମାନ ରେୟନ ତିଆରି ହେଉଛି ।"

ସେଠାରୁ ଉଠି ସମସ୍ତେ କଞ୍ଚାମାଲ ୟାର୍ଡ଼କୁ ଗଲେ । ଗୀତାଦେବୀ ସେଠି ଜମା ହୋଇଥିବା କାଠ, ବାଉଁଶ, ତୃଣଆଦି କଞ୍ଚାମାଲକୁ ପରୀକ୍ଷାନିରୀକ୍ଷା କଲେ । ପରୀକ୍ଷା କରିସାରି କହିଲେ, ''ଇଏତ ଅତି ନିକୃଷ୍ଟ ଧରଣର କଞ୍ଚାମାଲ । ଏହି କଞ୍ଚାମାଲରୁ କଦାପି ଉତ୍କୃଷ୍ଟ ଧରଣର ରେୟନ ତିଆରି ହୋଇପାରିବନି । ଏହି ନିକୃଷ୍ଟ ଧରଣର କଞ୍ଚାମାଲ ପାଇଁ ରେୟନର ମାନ ଏତେ କମିଯାଉଛି । ଏତେ ନିକୃଷ୍ଟ ଧରଣର କଞ୍ଚାମାଲକୁ କାରଖାନା ପାଇଁ ପାସ୍ କଲା କିଏ ? କଞ୍ଚାମାଲ ମେନେଜରଙ୍କୁ ଡାକିଲେ ।''

କଞ୍ଚାମାଲ ମେନେଜର ଡରି ଡରି ଆସି ଠିଆ ହେଲେ ।

ଗୀତାଦେବୀ ପଚାରିଲେ, ''କ'ଣ ଆପଣ ଏହିଭଳି କଞ୍ଚାମାଲ କାରଖାନାକୁ ଆଣୁଛନ୍ତି ? ଏଥରୁ ଯେଉଁ ସୂତା ତିଆରି ହେବ, ସେହି ସୂତାର ମାନ କ'ଣ ଠିକ୍ ରହିବ ? ଏତେ ନିକୃଷ୍ଟ ଧରଣର କଞ୍ଚାମାଲ ତ ଏଥିପାଇଁ ବ୍ୟବହୃତ ହେବାକଥା ନୁହେଁ । ଏହା ନିକୃଷ୍ଟ ଧରଣର କାଗଜ ପାଇଁ ବି ଉପଯୋଗୀ ନୁହେଁ । ଆପଣ କେମିତି ଏହାକୁ ସିଲ୍କ କାରଖାନା ପାଇଁ ଅଣାଇଲେ ? ଏହିଭଳି କଞ୍ଚାମାଲ କ'ଣ ଆଗରୁ ଆସୁଥିଲା ?''

''ନାଇଁ ଆଜ୍ଞା । ଆଗେ ଭଲ କଞ୍ଚାମାଲ ମିଳୁଥିଲା । ଏବେ ଆଉ ମିଳୁନି । ଦିନକୁଦିନ ଭଲ କଞ୍ଚାମାଲର ଅଭାବ ବଢ଼ିବାରେ ଲାଗିଛି । ଏବେ ଏଇ ଧରଣର ହିଁ ଆସୁଛି ।''

''ସାରା ଦେଶରେ କ'ଣ ଭଲ କଞ୍ଚାମାଲ ସବୁ ସରିଗଲା ? ଅନ୍ୟ କାରଖାନାମାନେ ପାଉଛନ୍ତି କେମିତି ? ଆମରିବେଳକୁ ମିଳିବାକୁ ନାଇଁ ।''

ସ୍ୱାମୀଙ୍କଆଡ଼କୁ ଅନାଇ, ''ଏଥିରେ କିଛି ଗୋଳମାଳ ଥିଲାଭଳି ମୋତେ ଜଣାପଡୁଛି । ଏଥିରେ ଏମାନେ ସମସ୍ତେ ଜଡ଼ିତ । ସମସ୍ତଙ୍କ ସଲାସୁତରରେ ଅଳ୍ପ ମୂଲ୍ୟର କଞ୍ଚାମାଲ କାରଖାନାକୁ ଅଣାଯାଉଛି ।''

ମେନେଜରଙ୍କୁ ଅନାଇ, ''ଦେଖ, ଏହି କଞ୍ଚାମାଲରେ ରେୟନ ପ୍ରସ୍ତୁତ କରନି । ବଜାରରେ ଖାଲି କମ୍ପାନୀର ବଦନାମ ହେବ । ଯାହା ତ ବଦନାମ ହେଲାଣି, ଆଉ ଅଧିକ ବଢ଼ିବାକୁ ଦିଅନି । ଏହି କଞ୍ଚାମାଲ ସବୁକୁ କାଗଜକଳକୁ ପଠାଇଦିଅ । ନିକୃଷ୍ଟ ଧରଣର କାଗଜ ତିଆରିରେ ଏହା ଲାଗୁ । ଅର୍ଡ଼ର ଦେଇ ଭଲ କଞ୍ଚାମାଲ ମଗାଅ । ଯଦି ନ ପାରୁଛ, ଚାକିରିରୁ ଇସ୍ତଫା ଦେଇ ଚାଲିଯାଅ । ଭଲ କଞ୍ଚାମାଲ ଆସିଲା ପର୍ଯ୍ୟନ୍ତ ଉତ୍ପାଦନକୁ ବନ୍ଦ ରଖ ।'' ସ୍ୱାମୀଙ୍କଆଡ଼କୁ ଅନାଇଁ, ''ସାତଦିନ ଭିତରେ ଯଦି ଭଲ କଞ୍ଚାମାଲ ନ ଆସୁଛି, ତେବେ କଞ୍ଚାମାଲ

ମେନେଜରଙ୍କୁ ବରଖାସ୍ତ କର । ପ୍ରଡ଼କ୍ସନ୍ ଇଞ୍ଜିନିଅର, ସେଲସ୍ ମେନେଜର, ଜେନେରାଲ ମେନେଜରମାନଙ୍କ ବଢ଼ା ଦରମା ବନ୍ଦ କର । ଏହି ସମସ୍ତଙ୍କ ଅବହେଳା ଯୋଗୁ କୋମ୍ପାନୀର କ୍ଷତି ତଥା ବଦନାମ ହେଉଛି । ଏହା ସେମାନଙ୍କୁ ପ୍ରଥମ ୱାରନିଙ୍ଗ୍ । ଏଭଳି ଯଦି ପୁନର୍ବାର ହୁଏ, ତେବେ ଚାକିରିରୁ ବିଦାୟ ।''

ଦେବବାବୁ ସବୁ ଶୁଣି ଯାଉଥାନ୍ତି । ସ୍ତ୍ରୀଙ୍କ କାର୍ଯ୍ୟଦକ୍ଷତା ଦେଖି ସେ ଅବାକ୍ । ମାଲିକାଣୀଙ୍କ କଡ଼ା ତାଗିଦ୍‌ରେ ସାରା ଅଫିସ୍ ଥରହର । ଯାହାଯାହା ସେ ନିର୍ଦ୍ଦେଶ ଦେଲେ, ସେସବୁ ଯେମିତି ଅତିଶୀଘ୍ର ହୁଏ, ତଦ୍‌ବିର କରିବା ପାଇଁ ମେନେଜରଙ୍କୁ କହିଦେଇ ସ୍ୱାମୀଙ୍କୁ ଧରି ଘର ଅଭିମୁଖେ ବାହାରିଗଲେ ।

କାର୍‌ରେ ଯାଉ ଯାଉ ଦେବବାବୁ ସ୍ତ୍ରୀଙ୍କୁ ଲକ୍ଷ୍ୟକରି କହିଲେ, ''ବାସ୍ତବିକ୍ ଧନ୍ୟ ତୁମେ ଗୀତା । କି କୁଇକ୍ ଡିସିସନ୍ ତୁମର ? ତୁମେ ଆଜି ଅଧଘଣ୍ଟାକ ଭିତରେ ଯେଉଁସବୁ ଡିସିସନ୍ ନେଲ, ମୁଁ ଦେଖି ତାଟଙ୍ଗା । ତୁମେ ଏତେ ଅଳ୍ପ ବୟସର ହୋଇ ମଧ୍ୟ ଏତେ କାର୍ଯ୍ୟଦକ୍ଷତା କେମିତି ଅର୍ଜନ କରିପାରିଲ ମୁଁ ତାହାହିଁ ଭାବୁଛି ? କାରଖାନାର ସବୁ ବିଷୟ ଟିକିନିଖି କେମିତି ତୁମକୁ ଜଳଜଳ ଦିଶୁଛି । କେଉଁଠି କାହାର ଗଲ୍‌ତି, ତୁମେ କେମିତି ଚଟ୍ କରି ଧରି ପକାଉଛ ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ସେମାନେ ମୋତେ ଯେଉଁ କାରଣ ଦେଖାଉଛନ୍ତି, ମୁଁ ସେସବୁ ମାନି ନେଉଛି । ତୁମେ ତ ଯୁକ୍ତି ଦେଖାଇ ସେ ସବୁକୁ କାଟି ଦେଉଛ । ସମ୍ଭବତଃ ତୁମର ଇଞ୍ଜିନିଅରିଂ ଜ୍ଞାନ ତୁମର କାର୍ଯ୍ୟଦକ୍ଷତା ବଢ଼ାଇ ଦେଇଛି ।''

''ଥାଉ, ଥାଉ, ଏତେ ତାରିଫ୍ କରନି । କ'ଣ ଯେ ଟିକିଏ କରିଦେଲି, ତା ପାଇଁ ଏତେ ତାରିଫ୍ ? ହସି ହସି ଗୀତାଦେବୀ କହିଲେ । ଇଞ୍ଜିନିଅରିଂ ଜ୍ଞାନ ଥିଲେ କଳକାରଖାନା ଚଳାଇବା ଖୁବ୍ ସୁବିଧାଜନକ ହୁଏ । ଇଞ୍ଜିନିୟର ଓ ମେନେଜରମାନଙ୍କ ଭୁଲ୍‌ଭଟକା ସହଜରେ ଧରି ହୁଏ । ସେମାନେ ଭୁଲ୍‌ଭଟକା ପାଇଁ ଏଣୁତେଣୁ କୈଫିୟତ ଦେଇ ଖସିଯାଇ ପାରନ୍ତିନି ।''

''ମୁଁ ସେଥିପାଇଁ ଭାବୁଛି ଗୀତା, ଆମ ପୁଅକୁ ଆମେ ଇଞ୍ଜିନିଅରିଂ ପଢ଼ାଇବା । ସେଥିସହିତ ବିଜିନେସ୍ ଆଡ଼ମିଷ୍ଟ୍ରେସନ୍ । ତୁମେ ଯାହା ପଢ଼ିଛ ଠିକ୍ ସେଇଆ । ତା'ହେଲେ ସେ ତା ବାପ ଅପେକ୍ଷା ଅଧିକ ଦକ୍ଷ ଶିଳ୍ପପତି ହୋଇପାରିବ ।''

''ଥାଉ ଥାଉ, ଥାଉ ଏତେ କୁହନି ।''

× × × × ×

''ମୁଁ ଏହି କେତଦିନ ଭିତରେ ତୁମର ଭିନ୍ନ ଭିନ୍ନ କାରଖାନା ବୁଲି ଯାହା ଦେଖିଲିଣି, ସେଥିରୁ ମୋତେ ଜଣାପଡୁଛି, ତୁମର ଇଞ୍ଜିନିଅର ଓ ଅନ୍ୟାନ୍ୟ ଅଫିସରମାନେ

ମୋଟେ ଦକ୍ଷ ନୁହନ୍ତି । ଦୁଇ ଚାରୋଟି କାରଖାନାକୁ ଛାଡ଼ିଦେଲେ ଅନ୍ୟ କାରଖାନାଗୁଡ଼ିକର ଇଞ୍ଜିନିଅର କି ଅଫିସରମାନେ ମୋଟେ କାମିକା ନୁହନ୍ତି । ସେମାନଙ୍କ ଭିତରୁ ଅନେକେ ଦୁର୍ନୀତିଗ୍ରସ୍ତ ଓ ଅଳସୁଆ । କାରଖାନା ଉପରେ ଯେତେ ଦୃଷ୍ଟି ଦିଆଯିବା କଥା ସେମାନେ ଦେଉ ନାହାନ୍ତି । ସେସବୁ କାରଖାନାରେ ଯାହା ଲାଭ ହେବା କଥା ହୋଇପାରୁନି, କେବଳ ସେମାନଙ୍କ କର୍ତ୍ତବ୍ୟନିଷ୍ଠା ନାହିଁ ବୋଲି ।''

ଡିନର୍ ଟେବୁଲ ଉପରେ ସ୍ୱାମୀଙ୍କ ପ୍ଲେଟ୍ ଓ ନିଜ ପ୍ଲେଟ୍ ଉପରକୁ ଖାଦ୍ୟ ବାଢ଼ୁ ବାଢ଼ୁ ଗୀତାଦେବୀ କହିଲେ, ''ତା'ମାନେ ମୁଁ କହୁନି, ଏଥିରେ ତୁମର କିଛି ଦୋଷ ଅଛି । ତୁମର ଏତେଗୁଡ଼ିଏ କାରଖାନା, ସବୁ କାରଖାନାର ଅଫିସରମାନେ ଠିକ୍ ରୂପେ କାମ ନ କଲେ, ତୁମେ କ'ଣ କରିବ ? ଅଫିସରମାନଙ୍କୁ ଯଦି କଡ଼ା ଶାସନରେ ରଖା ନ ଯାଏ, ତେବେ ତୁମ କାରଖାନାରେ ଉତ୍ପାଦନ ତଥା ଲାଭ ଆଶାଜନକ ହେବନି । ଆଜିକାଲି ହେଲା ପ୍ରତିଯୋଗିତାର ଯୁଗ । ପ୍ରତିଯୋଗିତାରେ ଯଦି ବଳୀୟାନ ନ ହେବ, ତେବେ ବ୍ୟବସାୟରେ ଉଧେଇ ପାରିବ କେଉଁଠୁ ?''

ଖାଉ ଖାଉ ଗୀତାଦେବୀ କହିଲେ, ''ତୁମ ଇଞ୍ଜିନିଅରମାନେ ନିହାତି ଅଳସୁଆ । କିଛି ଗୋଟାଏ ନୂଆ କଥା କରିବାକୁ ସର୍ବଦା ପଶ୍ଚାତ୍‌ପଦ । ନୂଆ ନୂଆ ଅନୁଭୂତି ଲାଭ କରିବା ପାଇଁ କୋମ୍ପାନୀ ଅର୍ଥରେ ବିଦେଶ ଯାଉଛନ୍ତି, କିଛି ଶିଖାଶିଖି ତ ଦୂରର କଥା, ଖାଲି ହୋଟେଲମାନଙ୍କରେ ଆଡ୍‌ଡା କରି ଦର୍ଶନୀୟ ସ୍ଥାନମାନ ଦେଖି ଘର ପାଇଁ ଜିନିଷପତ୍ର କିଣାକିଣି କରି ଫେରି ଆସୁଛନ୍ତି । ଫେରି ଆସି ନିଜ କାରଖାନାର ଉନ୍ନତି ଦିଗରେ କିଛି ଚେଷ୍ଟା ନାହିଁ । ସେ କ୍ଷେତ୍ରରେ ଖାଲି କୋମ୍ପାନୀ ଅର୍ଥ ବରବାଦ ହେବା ହିଁ ସାର ହୋଇଛି । ତୁମ ସେଲସ୍ ମେନେଜରମାନେ ନିଜ ନିଜ ସେକ୍ରେଟେରୀଙ୍କୁ ଧରି ଲମ୍ବା ଲମ୍ବା ଟୁର୍ ପକାଉଛନ୍ତି, କ'ଣ ନା ସେଲସ୍ ପ୍ରମୋସନ କରିବେ । ପ୍ରକୃତରେ କିଛି ହେଉନି, ବରଂ ସେଲସ୍ କମି ଯାଉଛି । ସେମାନେ ହୋଟେଲମାନଙ୍କରେ ମଦ ଓ ଜୁଆରେ ମଜି ରହୁଛନ୍ତି, କୋମ୍ପାନୀ ପାଇଁ କିଛି କରୁ ନାହାନ୍ତି । ଯେଉଁଠାକୁ ସେଲସ୍ ମେନେଜର ଗଲେ ଭଲ କାମ ଦେବ, ସେଠି ଜେନେରାଲ ମେନେଜରମାନେ ଉପରେ ପଡ଼ି ଫୂର୍ତ୍ତି କରିବା ପାଇଁ ଯାଉଛନ୍ତି । ମେନେଜରମାନେ ଯଦି କାରଖାନାରୁ ଏତେ ସମୟ ଅନୁପସ୍ଥିତ ରହନ୍ତି, ତେବେ ତଳ ଅଫିସରମାନେ କ'ଣ ଠିକ୍ ରୂପେ କାମ କରିବେ ? ମୁଁ କେତେକ କାରଖାନାର ଅଫିସର ଓ ଇଞ୍ଜିନିଅରମାନଙ୍କର ଟୁର୍ ଡାଏରି ଦେଖି ଏହା ଜାଣିପାରିଛି । ସେମାନଙ୍କୁ ଯଦି କଡ଼ା ଶାସନ କରା

ନ ଯାଏ, ଧମକଚମକ ଦିଆ ନ ଯାଏ, ଦୋଷ ପାଇଁ ଦଣ୍ଡ ଦିଆ ନ ଯାଏ, ସେମାନେ ତୁମର ସରଳତା ଓ ଦୟାର ସୁବିଧା ନେଇ କାରଖାନାଗୁଡ଼ିକୁ କ୍ଷତିଆଡ଼କୁ ଟାଣି ନେଇଯିବେ ।''

''ସେଥିପାଇଁ ତୁମେ କ'ଣ ବିଚାର କରୁଛ ଶୁଣେ ?''

''ବିଚାର କରିବା ମୋ ଦାୟିତ୍ୱ ନୁହେଁ । ଏହା ତୁମ ଦାୟିତ୍ୱ । ତୁମେ କାରଖାନାଗୁଡ଼ିକର ଚଳାଚଳ ନେଇ ଗୁପ୍ତ ଅନୁସନ୍ଧାନ କରିବାକୁ କହିଥିଲ । ମୁଁ ସେତକ କରି ସବୁ କହିଦେଲି । ଏଥିର ବିଧାନ କ'ଣ କରିବ ତୁମେ ଜାଣ ।''

''ହେଲେ, ଅର୍ଦ୍ଧାଙ୍ଗିନୀ ଭାବରେ ତୁମର ତ କିଛି ପରାମର୍ଶ ଦେବାର ଅଧିକାର ଅଛି ।''

ହସିଲେ ଗୀତାଦେବୀ, ''ଏହାର ପ୍ରତିକାର ତୁମକୁ କ'ଣ ଜଣାନାହିଁ ଯେ ମୁଁ କହିବି ।''

''ହେଲେ, ତୁମ ମୁହଁରୁ ଶୁଣେ । କ'ଣ ପ୍ରତିକାର କରିବାକୁ ହେବ ମୁଁ କରିବି । ତୁମେତ ଏକ ବିରାଟ ଶିଳ୍ପପତି ବଂଶରୁ ଆସିଛ, ତୁମେ କ'ଣ ନିଦାନ ଦେଉଛ ଶୁଣେ ।''

''ଏହାର ଏକମାତ୍ର ବ୍ୟବସ୍ଥା କଡ଼ା ଶାସନ । ଅଫିସରମାନଙ୍କ ଦୋଷ ପାଇଁ ଉପଯୁକ୍ତ ଦଣ୍ଡବିଧାନ । ଦାୟିତ୍ୱହୀନ ଇଞ୍ଜିନିଅର ଓ ଅଫିସରମାନଙ୍କୁ କାର୍ଯ୍ୟରୁ ବିତାଡ଼ନ । ଦକ୍ଷ ଓ ସଚ୍ଚୋଟ ଅଫିସରମାନଙ୍କର ପଦୋନ୍ନତି, ପ୍ରଶଂସା ଓ ନାନାବିଧ ପୁରସ୍କାର ପ୍ରଦାନ ।

ତା'ଛଡ଼ା ନିଜ ଜିନିଷର କାଟ୍‌ତି ବଢ଼ାଇବା ପାଇଁ ଭଲ ଭଲ ବିଜ୍ଞାପନ । ରେଡ଼ିଓ, ଟେଲିଭିଜନ, ଖବରକାଗଜ, ପ୍ରାଚୀରପତ୍ର ସବୁଆଡ଼େ ଜିନିଷର ପ୍ରଚାର ଓ କୋମ୍ପାନୀର ପ୍ରଚାର । ଜିନିଷର ଦାମ୍ ରଖିଲାବେଳେ କେତେକ କାରସାଦି । ଯେଉଁମାନେ ବଡ଼ ବଡ଼ ଗରାଖ, ସେମାନଙ୍କୁ ହାତରେ ରଖିବା ପାଇଁ ନାନା ପ୍ରକାର ଚେଷ୍ଟା । ଡିଷ୍ଟ୍ରିବ୍ୟୁଟରମାନଙ୍କୁ ନାନା ପ୍ରକାର ସୁବିଧା ଓ ରିହାତି ଦେବାପାଇଁ ନାନା ପ୍ରକାର ବ୍ୟବସ୍ଥା । ଏସବୁ ହେଲା ମେନେଜରମାନଙ୍କ କାମ । ତେବେ ସେମାନଙ୍କୁ ଏସବୁ ପାଇଁ ଖର୍ଚ୍ଚ କରିବାବେଳେ କେତେକ ସ୍ୱାଧୀନତା ଦିଆଯିବା ଉଚିତ୍ । ତୁମର ଲାଭର ପରିମାଣ ନ ବଢ଼ାଇଲେ, ସେମାନେ ଉତ୍ପାଦିତ ଦ୍ରବ୍ୟର ବିକ୍ରୟ ପ୍ରସାର ପାଇଁ ଅଧିକ ଖରଚ କରି ପାରିବେନି । ସେମାନଙ୍କୁ ଏମିତି କେତେ ଖରଚ କରିବାକୁ ଦେବା ଉଚିତ୍, ଯା'ର ହିସାବକିତାବ ହିସାବଖାତାରେ ନ ରହିଲେ ଚଳିବ ।''

''ତା' ଯଦି ହୁଏ, ସେମାନେ ଯଦି ଆବଶ୍ୟକୀୟ ଖରଚରେ ନ ଲଗାଇ ନିଜ ଖରଚରେ ଲଗାଇ ଦେଲେ ?''

''ବିକ୍ରୟର ପ୍ରସାରରୁ ତାହା ଧରା ପଡ଼ିଯିବ । ସେମାନେ ମିଛ ହିସାବଦେଇ ଖସିଯାଇ ପାରିବେନି । ଯେଉଁ ପରିମାଣରେ ଅର୍ଥ ବିକ୍ରୟର ପ୍ରସାର ପାଇଁ କରାଗଲା, ସେହି ଅନୁସାରେ ବିକ୍ରୟର ବୃଦ୍ଧି ନ ହେଲେ, ସେମାନେ ଧରା ପଡ଼ିଯିବେ । ମିଛ କହି ଖସିଯାଇ ପାରିବେନି । ଖରଚ କରିଥିବା ଟଙ୍କା ସେମାନଙ୍କ ଦରମାରୁ କଟାଯିବ ।''

ହସିଲେ ମିଷ୍ଟର ଅଗ୍ରୱାଲ । ''ତୁମେ ତୁମ ବାପ ଦାଦାଙ୍କ ଶାସନ ନୀତି ଏଠି ଚଳାଇବା ପାଇଁ ମୋତେ ପରାମର୍ଶ ଦେଉଛ । ସେମାନଙ୍କ କାରଖାନାରେ ଯେଉଁ ଦୋନମ୍ବରୀ ନୀତି ଅନୁସୃତ ହେଉଛି, ତୁମେ ଶେଷରେ ଏଠି ତାହା ଚଳାଇବାକୁ ଚାହୁଁଛ ନା କଅଣ ?''

''ନା ନା, ତା ମୁଁ କହୁନି । ତୁମେ ମୋତେ ଭୁଲ୍ ବୁଝନି । ଯେଉଁଟା ଶିଳ୍ପନୀତି, ତାହା ହିଁ ମୁଁ କହୁଛି ଓ ତାହା ମଧ୍ୟ ହେବା ଉଚିତ ।''

''ସାଧାରଣ ଶିଳ୍ପପତିମାନଙ୍କ ଶିଳ୍ପନୀତିଠାରୁ ମୋ ଶିଳ୍ପନୀତି ଅଲଗା ଗୀତା । ଶ୍ରମିକମାନଙ୍କୁ ଶୋଷଣ କରିବା ସେମାନଙ୍କ ଶିଳ୍ପନୀତି । ମୋ ନୀତି ଠିକ୍ ତାହାର ଓଲଟା । ମୁଁ ଭାବେ, ମୁଁ ଏକା ଏହିସବୁ କାରଖାନାର ମାଲିକ ନୁହଁ । ଶ୍ରମିକ, ଅଫିସର, ଇଞ୍ଜିନିଅର ସମସ୍ତେ କାରଖାନାର ମାଲିକ । ତେଣୁ ମୋ ଭଳି ସେମାନେ ସମସ୍ତେ କାରଖାନାରେ ହେଉଥିବା ଲାଭର ସମପରିମାଣ ଅଂଶୀଦାର । ସେମାନଙ୍କୁ ସାମାନ୍ୟ ଲୋକ ଦେଖାଣିଆ ବୋନସ ଦେଇ ଲାଭର ବଡ଼ ଭାଗ ସେମାନଙ୍କ ଅଜାଣତରେ ମୋର ମାରିନେବା ଉଚିତ ନୁହେଁ । ତା'ଛଡ଼ା ଶ୍ରମିକ, ତଥା ସରକାରଙ୍କୁ ଠକାଇବା ପାଇଁ ସେମାନେ ଯେମିତି ଦୁଇ ତିନି ପ୍ରକାର ଖାତା କରି ଅଧିକ ଲାଭ ମାରି ନିଅନ୍ତି, ମୁଁ ତା'ର ବିରୋଧୀ । ଆମ ଦେଶରେ ଯେଉଁ କଳାଧନ ପୁଞ୍ଜିଭୂତ ହେଉଛି, ତାର ଏକ ବଡ଼ ଅଂଶ ଏହି ଅସାଧୁ ଶିଳ୍ପପତିମାନଙ୍କ ଦ୍ୱାରା ହିଁ ହେଉଛି । ମୁଁ ଦେଶର ସେହି କଳାଧନର ମାଲିକ ହେବାକୁ ଚାହେଁନି । ନ୍ୟାୟରେ ମୋର ଯେତିକି ଲାଭ ହେଉଛି, ସେତିକି ମୋର ଯଥେଷ୍ଟ । ଶ୍ରମିକ, ଇଞ୍ଜିନିଅର, ଅଫିସରମାନଙ୍କ ପରିଶ୍ରମ ହେତୁ ମୋର ଲାଭ । ତେଣୁ ସେମାନଙ୍କୁ ଲାଭର ଏକ ଅଂଶୀଦାର ନ କରିବି କାହିଁକି ?''

''ଅନ୍ୟ ଶିଳ୍ପପତିମାନେ କ'ଣ ତାହା କରୁ ନାହାନ୍ତି ? ସେମାନେ ତ ବୋନସ ଦେଉଛନ୍ତି । ସେମାନେ ବି ତ ଶ୍ରମିକ କଲ୍ୟାଣ ନିମନ୍ତେ କେତେ ପ୍ରକାର ଖରଚ କରୁଛନ୍ତି, ସେମାନଙ୍କ ପାଇଁ ଭଲ ଭଲ ଘରଦ୍ୱାର, ସ୍କୁଲ, ଡାକ୍ତରଖାନା ଆଦି ତ ତିଆରି କରୁଛନ୍ତି ।''

"ହଁ, କରୁଛନ୍ତି ଯେ ହେଲେ ସେସବୁ ସେମାନଙ୍କ ଲାଭ ତୁଳନାରେ ଢେର୍ କମ୍ । ଦୁଇ ତିନିଟା ହିସାବରେ ଲାଭର ଖାତା ତିଆରି କରି ଉପରକୁ ଏମିତି ସଚ୍ଚୋଟ ଦେଖାଉଛନ୍ତି ଯେମିତିକି ଲାଭର ସବୁଠାରୁ ବଡ଼ ଅଂଶ ଯାଉଛି ଶ୍ରମିକ କଲ୍ୟାଣ ନିମନ୍ତେ, ଏକ କ୍ଷୁଦ୍ର ଅଂଶ ରହୁଛି ମାଲିକମାନଙ୍କ ପାଇଁ । କିନ୍ତୁ ପ୍ରକୃତ ହିସାବଖାତା ଦେଖିଲେ କେତେ ଯେ ସେମାନଙ୍କର ଲାଭ, ତା'ର କଳନା ନାହିଁ । ସେ ଲାଭର ଟେର୍ ନା ଶ୍ରମିକମାନେ ପାଉଛନ୍ତି ନା ସରକାର ପାଉଛନ୍ତି । ସମସ୍ତଙ୍କୁ ଭକୁଆ ବନାଇ ସେମାନେ ସାରା ଦେଶକୁ ଶୋଷି ଚାଲିଛନ୍ତି ।"

"ଶିଳ୍ପପତିମାନଙ୍କର ଦୁଇ ଚାରିଟା ହିସାବଖାତାର ମଧ୍ୟ ମୁଁ ବିରୋଧୀ । ସରକାର ତଥା ଶ୍ରମିକମାନଙ୍କୁ ଠକିବା ଅତ୍ୟନ୍ତ ଅନ୍ୟାୟ । ମୁଁ ମଧ୍ୟ ଏହାର ବିରୋଧ କରେ ।" ଗୀତାଦେବୀ କହିଲେ ।

"ତା'ହେଲେ ତ ବେଶ୍ । ଆଉ ଅସୁବିଧା କେଉଁଠି ? ଆମ ଅଫିସରମାନଙ୍କ କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ଯାହା କହିଲ, ମୁଁ ସେ ଆଡ଼କୁ ଦୃଷ୍ଟି ଦେବି । ଆମ କାରଖାନାରେ ସେମାନଙ୍କୁ ଯେତେ ସୁବିଧା ଓ ସୁଯୋଗ ଦିଆଯାଉଛି, ଅନ୍ୟ କାରଖାନାରେ ତା'ର କାଣିଚାଏ ବି ନାହିଁ । ମୋର ବିଶ୍ୱାସ, ସେମାନଙ୍କୁ ଏଇ କଥା ଚେତାଇଦେଲେ ସେମାନେ ନିଜ ନିଜ କାର୍ଯ୍ୟରେ ଅଧିକ ମନଧ୍ୟାନ ଦେଇ କାମ କରିବେ । କାରଣ ସେମାନେ ଜାଣନ୍ତି ଲାଭରେ ସେମାନଙ୍କ ଅଂଶ ରହିଛି ।"

"ଖାଲି ସେତିକି କଲେ ଚଳିବନି । ସେମାନଙ୍କ କାର୍ଯ୍ୟ ତଥା ଦକ୍ଷତା ଉପରେ କଡ଼ା ଦୃଷ୍ଟି ନ ଦେଲେ, ଦୋଷ ପାଇଁ ଉପଯୁକ୍ତ ଦଣ୍ଡ ନ ଦେଲେ, ସେମାନଙ୍କୁ ଯେତେ ସୁବିଧା ସୁଯୋଗ ଦେଲେ ବି କାମ ହେବନି । ତୁମ ଇଞ୍ଜିନିଅରମାନଙ୍କ କାମରେ ବହୁତ ଭୁଲଭଟକା ମୋ ଆଖିରେ ପଡ଼ିବାରୁ ମୁଁ ସେମାନଙ୍କ ସମ୍ବନ୍ଧରେ ଟିକିନିଖି ଖବର ନେଲି, ଯାହାକୁ ତୁମେ କେବେ ନିଅନି । ତା ଛଡ଼ା ରିପୋର୍ଟରୁ ଯାହା ଦେଖୁଛି, ସେମାନେ ଟୁର୍‌ରେ ଯିବା ପୂର୍ବରୁ ଓ ଆସିବା ପରେ କାରଖାନାର ଉତ୍ପାଦନ କି ବିକ୍ରୟରେ କିଛି ପାର୍ଥକ୍ୟ ହେବାକୁ ନାହିଁ ।"

"ସେସବୁ ପ୍ରତି ମୁଁ ଅଧିକ ଦୃଷ୍ଟି ଦିଏନି ଗୀତା । ମୁଁ ଜାଣୁଛି ଯେତେଦିନ ପର୍ଯ୍ୟନ୍ତ ମୋ କାରଖାନାରେ ଲାଭ ହେଉଛି, ବଜାରରେ ମୋ ଜିନିଷର ଚାହିଦା ବେଶ୍ ଉଚ୍ଚରେ ଅଛି, ମୋ ଇଞ୍ଜିନିଅର ତଥା ଅଫିସରମାନେ ଠିକ୍ କାମ କରୁଛନ୍ତି ବୋଲି ମୋର ଧାରଣା ।"

"ସେହି ଧାରଣା ହିଁ ତୁମର ଭୁଲ । ତୁମେ ତୁମ ଶିଳ୍ପ ସାମ୍ରାଜ୍ୟରେ ଯେତିକି ମୂଳଧନ ଖଟାଇଛ, ତା' ତୁଳନାରେ ତୁମର ଲାଭାଂଶ ଖୁବ୍ କମ୍ । ଏତିକି ଅଳ୍ପ ଲାଭାଂଶରେ ଶିଳ୍ପର ସମୃଦ୍ଧି ବା ଉତ୍ତରୋତ୍ତର ଉନ୍ନତି ସମ୍ଭବପର ନୁହେଁ ।

ଅନ୍ୟ ଶିଳ୍ପପତିମାନଙ୍କୁ ଦେଖ । ସେମାନଙ୍କ ଲାଭାଂଶ କେମିତି ଅଧିକ, ତଦାରଖ କର, ଦେଖିବ ତୁମେ ସେମାନଙ୍କଠାରୁ କେତେ ତଳେ ।''

''ତୁମକୁ ପରା କହିଲି ଗୀତା, ମୋ ଲାଭାଂଶର ପରିମାଣ ଏତେ କମ୍ କାହିଁକି ? ପୃଥିବୀର ଯେକୌଣସି ଶିଳ୍ପପତି କଥା କୁହ, ସେ ଯଦି ଠିକ୍ ମୋ ରୀତିରେ ସଚ୍ଚୋଟ ବ୍ୟବସାୟ କରେ, ତେବେ ଏହାଠାରୁ ଅଧିକ ଲାଭାଂଶ ପାଇବନି । ଲାଭର ପରିମାଣ ବଢ଼ାଇବାକୁ ହେଲେ ଅସାଧୁ ଉପାୟ ସବୁ ଅବଲମ୍ବନ କରିବାକୁ ପଡ଼ିବ, ଯାହା ମୁଁ ଚାହେଁନି । ତୁମେ ନିଜେ ବିଶ୍ଳେଷଣ କରି ଦେଖୁନାହଁ, ମୋର ଜିନିଷର କାଟ୍‌ତି ଏତେ ଅଧିକ ଥାଇମଧ୍ୟ ଲାଭ ପରିମାଣ ଏତେ କମ୍ କାହିଁକି ?''

କିନ୍ତୁ ଗୋଟିଏ କଥାକୁ ତୁମେ ଆଲୋଚନାକୁ ନେଉ ନାହଁ । ତାହା ହେଉଛି, ତୁମର କେତୋଟି କାରଖାନା କ୍ରମାଗତ କ୍ଷତିରେ ଚାଲୁଛି । ସେମାନେ ଲାଭ ନ ଦେଇ କ୍ଷତି ସମତୁଲ କରି ଯଦି ଉତ୍ପାଦନ କରନ୍ତେ, ତେବେ ତୁମର ଲାଭ ଆହୁରି ବଢ଼ିଯାନ୍ତା ।''

''ହଁ, ତା ଠିକ୍ । ସେହି କେତୋଟି ରୁଗ୍ଣ ଶିଳ୍ପକୁ କେମିତି ସଜାଡ଼ିବି, ସେହି ମୋର ଚିନ୍ତା ।''

''ମୁଁ ତୁମର ହିସାବକିତାବ ଦେଖି ଭାବୁଛି, ଏତିକି ଲାଭରେ କି କାରଖାନା ଚାଲିବ ? ବରଂ କାରଖାନା ସବୁକୁ ବିକିଦେଇ ଟଙ୍କାତକ ବେଙ୍କରେ ରଖିଦେଲେ ଅଧିକ ସୁଧ ମିଳିବ । ଏତେ ଧନ୍ଦି ହୋଇ ବ୍ୟବସାୟ କରି ଲାଭ କଅଣ ? ସେମିତିରେ ତ ଘରେ ବସି ଟଙ୍କା ମିଳିବ ।''

ହସିଲେ ଦେବବାବୁ, ''ତୁମ ମୁହଁରେ ଏ କଥା ଶୋଭାପାଏନି ଗୀତା । ମୁଁ ଏତେଗୁଡ଼ାଏ କାରଖାନା କରିଛି କ'ଣ ଖାଲି ଲାଭ ପାଇବି ବୋଲି ? ମୋ ଲାଭ ସହିତ ଅନ୍ୟମାନେ ଲାଭ ପାଇ ମଧ୍ୟ ଉପକୃତ ହୁଅନ୍ତୁ, ତାହା ହିଁ ମୋର ଇଚ୍ଛା । ଦେଶ ଓ ଜାତିର ଉପକାରରେ ମୁଁ କେମିତି ଲାଗିପାରିବି, ତାହା ହିଁ ମୋର କର୍ତ୍ତବ୍ୟ । ବହୁତଗୁଡ଼ିଏ ଲୋକଙ୍କୁ କାମଧନ୍ଦା ଯୋଗାଇବା, ସେମାନଙ୍କୁ ଅର୍ଥ ଉପାର୍ଜନରେ ସୁବିଧା ଦେବା, ସେମାନେ କେମିତି ସୁଖରେ ଜୀବନଯାପନ କରିବେ, ତାହା ହିଁ ମୋର ଇଚ୍ଛା । ଏତେଗୁଡ଼ିଏ ଭଲ କାମ ଥାଉଁ ଥାଉଁ ଅନ୍ୟାୟ କରି ସେମାନଙ୍କ ପ୍ରାପ୍ୟ କମ୍ କରିଦେଇ ମୁଁ ଅଧିକ ନେଇଯିବି କାହିଁକି ? ମୋର ଯେତିକି ଲାଭାଂଶ ମିଳୁଛି, ସେତିକି ତ ମୋର ପରିବାର ପାଇଁ ଯଥେଷ୍ଟ । ସେଥିରେ ବି ତ ଶିଳ୍ପ ପ୍ରସାରଣ ଯାହା ହେବାକଥା ଚାଲିଛି । ମୋ ଶିଳ୍ପ ନଗରୀର ହଜାର ହଜାର ପରିବାର ମୋ ଭଳି କିପରି

ସୁଖରେ ଚଳନ୍ତୁ, ଏହା ହିଁ ତ ମୋ ଇଚ୍ଛା । ତେଣୁ ସେମାନଙ୍କୁ ଠକି ମୁଁ ଅଧିକ ଲାଭ ନେବାର ପ୍ରଶ୍ନ ଉଠୁଛି କେଉଁଠି ?''

× × × × ×

''ତୁମ ଟେରେଲିନ୍ କାରଖାନା, ସାଂଶ୍ଲେଷିକ ରଙ୍ଗ କାରଖାନା, ପେଣ୍ଟ୍ କାରଖାନା, ବନସ୍ପତି କାରଖାନା ଗତ କେତେବର୍ଷ ଧରି କ୍ଷତିରେ ଚାଲୁଛି । ଏହିସବୁ କ୍ଷତି ପାଇଁ କାଗଜପତ୍ରରୁ ଯାହା ଦେଖୁଛି, କାରଖାନାର ଅଫିସରମାନେ ହିଁ ଦାୟୀ । ସେସବୁ କାରଖାନାର ଇଞ୍ଜିନିଅର, ମେନେଜର ଓ ଅଫିସରମାନେ ଠିକ୍ ଭାବରେ ନିଜ ନିଜ କର୍ତ୍ତବ୍ୟ ସମ୍ପାଦନରେ ଅବହେଳା କରିଥିବାରୁ ଆଜି ଏହି ଅବସ୍ଥା ହୋଇଛି । ସେମାନଙ୍କୁ କାର୍ଯ୍ୟରୁ ବାହାର ନ କଲେ, କାରଖାନାର ଉତ୍ପାଦନ ଠିକ୍ ବାଟକୁ ଆସିପାରିବ ନାହିଁ ।''

''ସେଠୁ କାହାକୁ ବାହାର କରିବି କହିଲ ? ରଙ୍ଗ କାରଖାନାର ମେନେଜର ତ ମୋ ମାଉସୀପୁଅ ଭାଇ । ଟେର୍‌ଲିନ୍ କାରଖାନାର ଚିଫ୍ ଇଞ୍ଜିନିଅର ତ ମୋ ମାମୁଁଙ୍କ ପୁତୁରା । ବନସ୍ପତି କାରଖାନାର ଚିଫ୍ ଇଞ୍ଜିନିଅର ମୋ ଦାଦାଙ୍କ ପୁଅ ।''

''ନିଜର ଲୋକମାନଙ୍କୁ ରଖି ଯଦି କ୍ଷତି ହେଲା, ସେମାନେ କିଛି ତଦବିର କଲେନି, ତେବେ ସେମାନଙ୍କୁ ସେସବୁ ସ୍ଥାନରେ ରଖି ଲାଭ କଅଣ ? ବ୍ୟବସାୟରେ ଲାଭ କ୍ଷତି ବଡ଼, ପାରିବାରିକ ସମ୍ପର୍କ ବଡ଼ ନୁହେଁ ।''

''ତା' ଠିକ୍ ଯେ, ହେଲେ—''

''ସେମାନେ ତ ଏତେ ଅପାରଗ, ତେଣେ ମଧ୍ୟ ଅସାଧୁ ପ୍ରକୃତିର । ସେମାନେ ଆମ ପ୍ରତିଯୋଗୀମାନଙ୍କ ପ୍ରରୋଚନାରେ ପଡ଼ି ଆମ ଜିନିଷର ମାନ ଜାଣିଶୁଣି ଖରାପ କରି ଦେଉଛନ୍ତି । ଫଳରେ ସେସବୁ ଜିନିଷର ଆଶାଜନକ କାଟ୍‌ତି ହେଉନି । ମୁଁ ଉତ୍ପାଦିତ ଜିନିଷଗୁଡ଼ିକୁ ପରୀକ୍ଷା କରି ଦେଖି ସାରିଲିଣି ।''

''ତୁମେ ଯାହା ସନ୍ଦେହ କରୁଛ ଗୀତା, ମୁଁ ଭାବୁଛି ସେମାନେ ସମ୍ଭବତଃ ତାହା ନୁହନ୍ତି । ସେମାନେ ତ ସେମିତି ଭଳି ଜଣାପଡ଼ନ୍ତିନି ।''

ହସିଲେ ଗୀତାଦେବୀ, କହିଲେ, ''ତୁମେ ଯେତେ ସରଳ ମୁଁ ଦେଖୁଛି, ଏତେ ସରଳ ହେଲେ କାରଖାନା ଚଳାଇ ହେବନି । ମୁଁ ଭିତିରି ଭାବରେ ସେମାନଙ୍କ ସମ୍ବନ୍ଧରେ ଯେଉଁ ତଥ୍ୟସବୁ ସଂଗ୍ରହ କରିଛି, ସେଥିରୁ ମୁଁ ତୁମକୁ ଏହା କହୁଛି । ଏସବୁ କିଛି ମୋର ମନଗଢ଼ା କଥା ନୁହେଁ । ତୁମର ଯଦି ବିଶ୍ୱାସ ହେଉନି, ଏହି ଗୁପ୍ତ ରିପୋର୍ଟଗୁଡ଼ିକୁ ଦେଖିପାର ।''

"ତୁମ ଭିତିରି ତଥ୍ୟ ସଂଗ୍ରହ ହୁଏତ ଭୁଲ ହୋଇପାରେ ଗୀତା ?"

"ନା, ନା, ତାହା କଦାପି ନୁହେଁ । ମୁଁ ଅଲଗା ଅଲଗା ଭାବରେ ତଥ୍ୟ ସଂଗ୍ରହ କରି ଆମ କଂପ୍ୟୁଟରକୁ ଯୋଗାଇଥିଲି । କଂପ୍ୟୁଟର ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରି ରିପୋର୍ଟ ଦେଇଛି । ଆଗ ସେମାନଙ୍କୁ ଚାକିରିରୁ ବାହାର କର ।"

"ତୁମେ ଆଉକିଛି ବାଟ ଯଦି ଅଛି, କୁହ ଗୀତା, ସେମାନଙ୍କୁ ଚାକିରିରୁ ବାହାର କରିବା କଥା କୁହନି ।"

"କାରଖାନା ଯଦି କ୍ଷତିରେ ଚାଲେ, ତେବେ ତୁମେ କେତେଦିନ ସେହି କ୍ଷତି ସହିବ ଶୁଣେ ?"

"ଅନ୍ୟ କାରଖାନାରୁ ତ ଲାଭ ହେଉଛି । ଏହି କାରଖାନାରୁ କ୍ଷତି ହେଲେ କ'ଣ ହେଲା ? ଚଳିଯିବା, କିଛି ଅସୁବିଧା ହେବନି ।"

"ତୁମେ ଜଣେ ଶିଳ୍ପପତି ଭଳି କଥା କହୁନାହଁ । ଛୋଟକାଟର ପାଇକାରୀ ବ୍ୟବସାୟୀମାନେ ଯେମିତି କହନ୍ତି, ସେମିତି କହୁଛ ?"

ଦିନକୁଦିନ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଶିଳ୍ପ କାରଖାନା ନେଇ ନାନାପ୍ରକାର ଯୁକ୍ତିତର୍କ, ଆଲୋଚନା-ସମାଲୋଚନା ବଢ଼ି ବଢ଼ି ଚାଲିଲା । ଖାଇଲାବେଳେ, ବସିଲାବେଳେ ଶିଳ୍ପ କାରଖାନା ନେଇ ଅସଂଖ୍ୟ ପ୍ରକାର ଯୁକ୍ତିତର୍କ । ସ୍ୱାମୀଙ୍କ ଶିଳ୍ପନୀତି ସହିତ ସ୍ତ୍ରୀଙ୍କ ଶିଳ୍ପନୀତି ମୋଟେ ପଟୁନି । ସ୍ତ୍ରୀ ତ ଶିଳ୍ପବିଜ୍ଞାନ ଓ ଶିଳ୍ପ ପରିଚାଳନାରେ ଉଚ୍ଚଶିକ୍ଷିତା, ପୁଣି ଭାରତର ଜଣେ ବଡ଼ ଶିଳ୍ପପତିଙ୍କ ଦୁଲାଳୀ । ବାପ, ଦାଦାଙ୍କ ଶିଳ୍ପନୀତି ତାଙ୍କ ଦିହେ ମୁଣ୍ଡିହେ ମିଶିଯାଇଛି । ସେ ଜାଣନ୍ତି ବାପଦାଦାଙ୍କ ନୀତି ହିଁ ଠିକ୍, ଅନ୍ୟ ନୀତିସବୁ ଭୁଲ । ଶିଳ୍ପ ଅଭିବୃଦ୍ଧି ବା ବିକାଶ ପାଇଁ ଅନ୍ୟ ନୀତି ମୋଟେ ଉପଯୋଗୀ ନୁହେଁ । ସେ ଯେତେବେଳେ ଦେଖୁଛନ୍ତି ସ୍ୱାମୀଙ୍କ ନୀତି ବାପା ଦାଦାଙ୍କ ନୀତିଠାରୁ ଅଲଗା, ସେ ଭାବୁଛନ୍ତି ତାଙ୍କ ସ୍ୱାମୀ ଶିଳ୍ପ ପରିଚାଳନା ନେଇ ଠିକ୍ ବାଟରେ ଯାଉ ନାହାନ୍ତି । କିନ୍ତୁ ସ୍ୱାମୀ ତାଙ୍କ ନୀତିରେ ଅଟଳ । ସ୍ତ୍ରୀ ଶିଳ୍ପଗୁଡ଼ିକୁ ଗୋଟିଏ ବାଟରେ ନେବାକୁ ଚାହୁଁଥିଲାବେଳେ ସ୍ୱାମୀ ଅନ୍ୟବାଟରେ ନେବାକୁ ଚାହୁଛନ୍ତି । ସ୍ତ୍ରୀଙ୍କ କଥା ନୀତି କ୍ଷେତ୍ରରେ କେଉଁଠି ରହୁ ନ ଥିବାରୁ ସେ ବଡ଼ ଉଦ୍‌ବିଗ୍ନ । ସେ ନିଜେ ଅପମାନିତ ମନେ କରୁଛନ୍ତି, କାରଣ ନିଜ ଉଚ୍ଚ ଶିକ୍ଷାଗତ ଯୋଗ୍ୟତାର ମୂଲ୍ୟ କିଛି ରହୁନି । ଶ୍ରମିକମାନଙ୍କୁ ଯାହା ସୁବିଧା ଦିଆଯିବା କଥା, ଅନ୍ୟ ଶିଳ୍ପପତିମାନେ ଯାହା ଦେଉଛନ୍ତି, ତା'ଠାରୁ ଅଧିକ ସ୍ୱାମୀଙ୍କ କାରଖାନାରେ ଦିଆଯାଉଥିବାରୁ ସେ ବଡ଼ ଅସନ୍ତୁଷ୍ଟ । ଏହାର ଏକ ଖରାପ ପ୍ରଭାବ ଅନ୍ୟ ଶିଳ୍ପପତିମାନଙ୍କ ଉପରେ ପଡୁଥିବାରୁ ଅନ୍ୟ ଶିଳ୍ପପତିମାନେ

ମିଷ୍ଟର ଅଗ୍ରୱାଲଙ୍କ ଉପରେ ରାଗି କରି ନିଅଁା । ଏକଥା ସ୍ତ୍ରୀ ଗୀତାଦେବୀ ସ୍ୱାମୀଙ୍କୁ ବାରମ୍ବାର ଚେତାଉଥିଲେ ମଧ୍ୟ ସ୍ୱାମୀଙ୍କ ଉପରେ ଏହାର କିଛି ପ୍ରଭାବ ପଡୁନି ।

ଦିନେ ଖୁବ୍ ପ୍ରବଳ ଯୁକ୍ତିତର୍କ ହେବାରୁ ମିଷ୍ଟର ଅଗ୍ରୱାଲ ସ୍ତ୍ରୀଙ୍କୁ ତୀବ୍ର ଭାଷାରେ ଭର୍ତ୍ସନା କରି ସବୁଦିନ ପାଇଁ ତାଙ୍କୁ ଘରେ ବସାଇଦେଲେ । କୌଣସି କଳକାରଖାନା କଥା ବୁଝାବୁଝି ନ କରିବା ପାଇଁ ନିର୍ଦ୍ଦେଶ ଦେଲେ । କୌଣସି କାରଖାନାରୁ ତାଙ୍କଠାକୁ ଯେମିତି କୌଣସି ଫାଇଲପତ୍ର ନ ଆସେ, ସେଥିପାଇଁ କଡ଼ା କଟକଣା ଜାରି କରିଦେଲେ ।

ଗୀତାଦେବୀଙ୍କୁ ଏହା ଏକ ବଡ଼ ଅପମାନ ଭଳି ବୋଧ ହେଲା । ସେ ତ ପ୍ରଥମରୁ ଘରେ ଥିଲେ । ନିଜର ଯୋଗ୍ୟତା ଥିବାରୁ ସେ ସ୍ୱାମୀଙ୍କ ଅନୁରୋଧରେ କଳକାରଖାନାର ହାନିଲାଭ ବୁଝିଲେ । ବୁଝୁ ବୁଝୁ ସ୍ୱାମୀଙ୍କ ଶିଳ୍ପନୀତିକୁ ଠିକ୍ ଭାବେ ଉପଲବ୍ଧି ନ କରି ତାଙ୍କ ନୀତିକୁ ସମାଲୋଚନା କଲେ, ଫଳରେ ସ୍ୱାମୀଙ୍କ ସହିତ ମତଭେଦ ହେଲା । ଶିଳ୍ପସଂକ୍ରାନ୍ତ ପରିଚାଳନା ନେଇ ମତ ପାର୍ଥକ୍ୟ ଏତେ ବଢ଼ି ବଢ଼ି ଚାଲିଲା ଯେ ଉଭୟଙ୍କ ମଧ୍ୟରେ ସ୍ୱାମୀ-ସ୍ତ୍ରୀ ସମ୍ପର୍କ ମଧ୍ୟ ରହିଲାନି । ଯେଉଁ ସ୍ତ୍ରୀଙ୍କୁ ଘଡ଼ିଏ ନ ଦେଖିଲେ ସ୍ୱାମୀ ପାଗଳ ହୋଇ ଯାଉଥିଲେ, ସେହି ସ୍ତ୍ରୀଙ୍କୁ ସେ ଆଉ ଆଡ଼ଆଖିରେ ଅନାଇଲେ ବି ନାହିଁ । ତାଙ୍କ ମନରେ ବଡ଼ କ୍ଷୋଭ, ସ୍ତ୍ରୀ ଶିଳ୍ପ ପରିଚାଳନାରେ ଉଚ୍ଚଶିକ୍ଷା ଲାଭ କରିଥିବାରୁ, ସେ ତାଙ୍କୁ ବେଖାତିର କରୁଛି । ଦିନକୁଦିନ ଏମିତି ହେଲା ଯେ ଉଭୟଙ୍କ ଭିତରେ ଦେଖାସାକ୍ଷାତ, କଥାବାର୍ତ୍ତା ଖୁବ୍ କମ୍ ହେବାକୁ ଲାଗିଲା । ଖାଇଲାବେଳେ ଯାହା ସାଙ୍ଗ ହୋଇ ଖାଉଥିଲେ, ଗତ କେତେଦିନ ହେଲା ତା ବି ନାହିଁ । ମିଷ୍ଟର ଅଗ୍ରୱାଲ ଅଧିକାଂଶ ସମୟରେ ଅଫିସ୍‌କୁ ଖାଦ୍ୟ ମଗାଇ ନେଇ ଖାଉଛନ୍ତି । ନିଜ ନିଜ ମଧ୍ୟରେ ଏଭଳି ମନୋମାଳିନ୍ୟ ଦେଖି ଗୀତାଦେବୀ ବଡ଼ ବ୍ୟଥିତ ହୋଇପଡ଼ିଲେ । ସ୍ୱାମୀଙ୍କୁ ଭଲ ଉପଦେଶ ଦେଲାବେଳକୁ ରଖିବା ତ ଦୂରର କଥା, ଏହାକୁ ନିଜ ପରିଚାଳନା ଉପରେ ସ୍ତ୍ରୀଙ୍କର ହସ୍ତକ୍ଷେପ ବୋଲି ମନେ କରୁଛନ୍ତି । ବିଭାଘର ଗୋଟିଏ ବର୍ଷ ନ ପୂରୁଣୁ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଏଭଳି ମତଭେଦ ଏକ ବଡ଼ ସମସ୍ୟା ହୋଇ ସେମାନଙ୍କ ଆଗରେ ଠିଆ ହେଲା । ସ୍ୱାମୀଙ୍କ ମନରେ ସ୍ତ୍ରୀଙ୍କ ପ୍ରତି ଯେଉଁ ଭୁଲ ଧାରଣା ଜାତ ହୋଇଛି, ତାକୁ ଦୂର କରିବାକୁ ଯେତେ ଚେଷ୍ଟା କଲେହେଁ, ତା ଦୂର ହେବା ପରିବର୍ତ୍ତରେ ବଢ଼ିବାକୁ ଲାଗିଲା । ଅବସ୍ଥା ଏମିତି ହେଲା ଯେ ଏଭଳି ଅଶାନ୍ତ ମନ ନେଇ ଏକାଟିଆ କେତେଦିନ ଆଉ ରହି ପାରିବେ ? ବେଳେବେଳେ ସ୍ୱାମୀଙ୍କ ପୂର୍ବ ସ୍ନେହ, ସୋହାଗ

କଥା ମନେପକାଇ କାନ୍ଦି ପକାନ୍ତି । କି ପାଠ ପଢ଼ିଥିଲେ କେଜାଣି କେଉଁ ମୁହୂର୍ତ୍ତରେ ସ୍ୱାମୀଙ୍କୁ ସାହାଯ୍ୟ କରିବା ପାଇଁ ବାହାରି ଆସିଥିଲେ କେଜାଣି, ଆଜି ସେହି ଶିକ୍ଷାଗତ ଯୋଗ୍ୟତା ତାଙ୍କ ପାରିବାରିକ ଜୀବନରେ ଏକ ଶତ୍ରୁ ଭାବରେ ଠିଆ ହେଲା । ଏହି ମାନସିକ ଅଶାନ୍ତିର କେମିତି ଅବସାନ ଘଟିବ, କି ଉପାୟ କଲେ ସେ ପୂର୍ବ ମାନସିକ ଶାନ୍ତି ଫେରିପାଇବେ, ଦିନରାତି ଚିନ୍ତା କରିବାକୁ ଲାଗିଲେ । ଶେଷରେ ଦିନେ ଠିକ୍ କଲେ ସ୍ୱାମୀଙ୍କଠାରୁ ଅଲଗା ହେବାଛଡ଼ା ଅନ୍ୟ ଉପାୟ ନାହିଁ । ସେ ସ୍ୱାମୀଙ୍କ ପାଖରେ ରହିବାହେତୁ ନିଜେ ଅଶାନ୍ତି ପାଉଛନ୍ତି, ସ୍ୱାମୀ ମଧ୍ୟ ଶାନ୍ତି ପାଇପାରୁ ନାହାନ୍ତି । ସେ ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ ନିଜ ପିତାଙ୍କ ଘରକୁ ଚାଲିଯିବା ଉଚିତ୍ ବୋଲି ଭାବିଲେ । ଦିନେ ଅସନ୍ଦିଗ୍ଧା ମନରେ ସ୍ୱାମୀଙ୍କୁ ଏହି ଛାଡ଼ପତ୍ର କଥାର ଇଙ୍ଗିତ ଦେଲେ । ମିଷ୍ଟର ଅଗ୍ରୱାଲ ନ ଶୁଣିଲା ଭଳି ବାଆଁରେଇ ଦେଇ ଚାଲିଗଲେ ।

ଆଉଦିନେ ମିଷ୍ଟର ଅଗ୍ରୱାଲ ଶିଳ୍ପ କାରଖାନା ବୁଲି ବୁଲି କ୍ଳାନ୍ତ ହୋଇ ଫେରିଆସି ଘରେ ପଶୁଛନ୍ତି କି ନାହିଁ, ଗୀତାଦେବୀ କେଉଁଠିଥିଲେ ହଠାତ୍ ଚାଲି ଆସି ସେହି ଛାଡ଼ପତ୍ର କଥା ପୁଣି ଉଠାଇଲେ । ମିଷ୍ଟର ଅଗ୍ରୱାଲ ବିରକ୍ତ ହୋଇ କହିଦେଲେ, "ତୁମେ ଯଦି ଚାହୁଁଛ, ତେବେ ଓକିଲଙ୍କୁ ଡାକି ଏହା କେମିତି ହୋଇପାରିବ, ସେ ଦିଗରେ ପରାମର୍ଶ କର ।"

ଦିନେ କୋମ୍ପାନୀଙ୍କ ଓକିଲ ମିଷ୍ଟର ଲେଖି ଡକାହୋଇ ଗୀତାଦେବୀଙ୍କ ପାଖକୁ ଆସିଲେ । କେଉଁ ପରିସ୍ଥିତିରେ ଏହି ଛାଡ଼ପତ୍ର କାର୍ଯ୍ୟକାରୀ ହୋଇପାରିବ, ତହିଁର ବିଧିସବୁ ଗୀତାଦେବୀ ଓକିଲଙ୍କଠାରୁ ଶୁଣିଲେ । ସେଥିଭିତରୁ କେଉଁଟା ନିଜ ପାଇଁ ପ୍ରଯୁଜ୍ୟ ହେବ, ସ୍ୱାମୀଙ୍କ ସହିତ ଆଲୋଚନା କରିବା ପାଇଁ ଠିକ୍ କଲେ । ସ୍ତ୍ରୀଙ୍କ ସମାଲୋଚନା ପରେ ମିଷ୍ଟର ଅଗ୍ରୱାଲ ନିଜ ଶିଳ୍ପ କାରଖାନା ନେଇ ଅଧିକ ବ୍ୟସ୍ତ । ଗୀତାଦେବୀଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କରିବାକୁ ବେଳ କାହିଁ ? ଦିନେ ଗୀତାଦେବୀ ବାଧ୍ୟକଲାରୁ ଛାଡ଼ପତ୍ର ଆଲୋଚନା କରିବା ପାଇଁ ବସିଲେ । ଓକିଲଙ୍କ ପରାମର୍ଶ ପଢ଼ୁଁ ପଢ଼ୁଁ କହିଲେ, "ଦେଖ ଗୀତା, ମୁଁ ଏହି ରିପୋର୍ଟରୁ ଯାହା ଜାଣୁଛି, ଦୁଇଟି କାରଣ ଯୋଗୁ ଆମ ଭିତରେ ଛାଡ଼ପତ୍ର କାର୍ଯ୍ୟକାରୀ ହୋଇପାରେ । ଅନ୍ୟ କାରଣ ସବୁ ଆମଠି ଘଟିବ ନାହିଁ । ଗୋଟିଏ କାରଣ ହେଉଛି ମୁଁ ଜଣେ ମଦଖୋର, ମାତାଲ ଓ ତୁମକୁ ଘରେ ମଦଖାଇ ବାରମ୍ବାର ବାଡ଼ାଏ, ଏହାକୁ ପ୍ରମାଣ କରିବାକୁ ହେବ । ତୁମେ ମୋ ମାଡ଼ଯୋଗୁ ଖଣ୍ଡିଆଖାବରା ହୋଇ କୋର୍ଟର ଆଶ୍ରୟ ନେଲେ ଛାଡ଼ପତ୍ର ମିଳିପାରେ ।

ଦ୍ୱିତୀୟ କାରଣଟି ହେଉଛି, ମୁଁ ଜଣେ ଅସଦ୍‌ଚରିତ୍ର ଲୋକ । ନିଜ ସ୍ତ୍ରୀର ଅଜାଣତରେ ଅନ୍ୟ ଯୁବତୀମାନଙ୍କ ସହିତ ସମ୍ପର୍କ ରଖିଛି, ଏହାକୁ କୋର୍ଟରେ ପ୍ରମାଣ କରିପାରିଲେ ଛାଡ଼ପତ୍ର ମିଳିପାରେ ।

ଏଥିଭିତରୁ କେଉଁଟା ତୁମେ ଚାହଁ, କହିଲ, ସେହି ଅନୁସାରେ କାର୍ଯ୍ୟ କରିବା ?''

''ମୁଁ ତ ମଦ ଖାଏନି, ମାତାଲ ହେବା ପ୍ରଶ୍ନ ଉଠୁନି । ତେଣୁ ତୁମକୁ ବାଡ଼େଇବା ପ୍ରଶ୍ନ ଉଠି ନ ପାରେ ।''

ଦ୍ୱିତୀୟ ଉପାୟଟି —

''ନା, ତା ହୋଇପାରିବନି ।'' ଗୀତାଦେବୀ କହିଲେ, ''ତୁମେ ତ ଅସଦ୍‌ଚରିତ୍ର ନୁହଁ, ତେଣୁ ତୁମକୁ ଅସଦ୍‌ଚରିତ୍ର ବୋଲି ପ୍ରମାଣ କରିହେବନି ।''

''ତେବେ ?''

''ତୁମେ ମୋତେ ଦିନେ ଖୁବ୍ ବାଡ଼ାଅ । ମୁଁ ସେ ବାଡ଼େଇବା କଷ୍ଟ ସହ୍ୟ କରିବାକୁ ପ୍ରସ୍ତୁତ ଅଛି । ସେସବୁ ଡାକ୍ତରଙ୍କୁ ଦେଖାଇ ଡାକ୍ତରଙ୍କ ରିପୋର୍ଟ ଉପରେ ଛାଡ଼ପତ୍ର ମିଳିପାରିବ ।''

''ତା, କେମିତି ହେବ ଗୀତା ? ମୁଁ କଦାପି ତୁମକୁ ବାଡ଼େଇ ପାରିବିନି । ତୁମକୁ ବାଡ଼େଇବା ପାଇଁ ମୋ ହାତ କେବେ ଯିବନି ।''

''ମୋତେ ନ ବାଡ଼େଇଲେ କେମିତି ହେବ ?''

''ଦେଖ ଗୀତା, ଆମ ଭିତରେ ଛାଡ଼ପତ୍ର ପାଇଁ ଦ୍ୱିତୀୟ ଉପାୟଟି ଏକମାତ୍ର ବାଟ ।''

''ତା'ମାନେ, ତୁମେ ପ୍ରମାଣ କରିବାକୁ ଚାହଁ, ତୁମେ ଅସଦ୍‌ଚରିତ୍ର । ସେହି ପ୍ରମାଣ ବଳରେ ମୁଁ ତୁମଠାରୁ ଛାଡ଼ପତ୍ର ନେବି । ମୁଁ କଦାପି ଏଥିରେ ଏକମତ ହୋଇ ପାରିବିନି । କାରଣ ମୁଁ ଜାଣେ ତୁମ ଚରିତ୍ର ଖୁବ୍ ଭଲ ।'' ପ୍ରଥମ ଉପାୟଟି ପାଇଁ ମୁଁ ରାଜି ।

''ତା କେମିତି ହେବ ଗୀତା ? ମୁଁ ତୁମକୁ କଦାପି ବାଡ଼େଇ ପାରିବିନି । ତୁମ ଉପରକୁ ମୋ ହାତ କେମିତି ଉଠିବ କହିଲ ?''

''ତୁମେ ନିଜକୁ ଅସଦ୍ ଚରିତ୍ର ବୋଲି ପ୍ରମାଣ କଲେ ଏହି ଅନ୍ୟାୟକୁ ମୁଁ କେମିତି ଗ୍ରହଣ କରିବି କହିଲ ?''

''ପୁରୁଷମାନଙ୍କ ଚରିତ୍ରରେ କ'ଣ କିଛି ଠିକ୍‌ଠିକଣା ଅଛି । ଆମଭଳି ଧନୀ ପରିବାରରେ ଅସଦ୍‌ଚରିତ୍ର ହେବା ତ ଏକ ସୌଖୀନ । ଏଥିରେ ମୋ ସମ୍ମାନରେ

ତ କିଛି ଆଞ୍ଚ ଆସିବନି । ସ୍ତ୍ରୀମାନଙ୍କ ଚରିତ୍ର ହୋଇଥିଲେ ଅଲଗା କଥା । ସ୍ତ୍ରୀମାନଙ୍କ ଚରିତ୍ରରେ ଆଞ୍ଚ ଆସିଲେ ବଡ଼ ଗୋଳମାଳିଆ କଥା । ପୁରୁଷମାନଙ୍କ ଚରିତ୍ରରେ ଆଞ୍ଚ ଆସିଲେ କିଛି ଯାଏ ଆସେନି ।''

ମୁଁ ଭଲ ଭାବରେ ଜାଣେ ତୁମ ଚରିତ୍ର ଅତି ପବିତ୍ର । ସେଭଳି ପରିସ୍ଥିତିରେ ତୁମେ ଅସଦ୍‌ଚରିତ୍ର ବୋଲି ପ୍ରମାଣ କଲେ ମୁଁ ମାନିବି କେମିତି କହିଲ ? ମୁଁ ଭଲ ଭାବରେ ଜାଣିଛି, ଏଭଳି କୌଣସି ପରିସ୍ଥିତି ସୃଷ୍ଟି ହୋଇ ପାରିବନି, ଯେଉଁଥିରେ ତୁମ ଚରିତ୍ର ଉପରେ ମୋର କେବେ ସନ୍ଦେହଜାତ ହେବ ।''

''ତୁମେ ବିଚାରକର ଗୀତା, ଏ ଉପାୟଟା ଛଡ଼ା ଅନ୍ୟ ଉପାୟ ଆମ ପାଖରେ କିଛି ନାହିଁ । ତୁମେ ମୋ ପ୍ରସ୍ତାବରେ ରାଜି ହୁଅ ।''

ବହୁ ଆଲୋଚନା ଓ ପ୍ରତ୍ୟାଲୋଚନା ପରେ ଉଭୟଙ୍କ ମଧ୍ୟରେ ସିଦ୍ଧାନ୍ତ ହେଲା ଯେ ମିଷ୍ଟର ଅଗ୍ରୱାଲ ନିଜ ଶିଳ୍ପନଗରୀ ନିକଟବର୍ତ୍ତୀ ଆଭିଜାତ୍ୟଭରା ହୋଟେଲ ନୀଳକମଳରେ ଗୋଟିଏ ରାତି ପାଇଁ ବୋମ୍ବେର ଏକ କଲଗାର୍ଲ ସହିତ ରାତ୍ରିଯାପନ କରିବେ । ଗୀତାଦେବୀଙ୍କ ଇନ୍‌କ୍ୟୁଆରୀରେ ହୋଟେଲ ମାଲିକ ମିଷ୍ଟର ଅଗ୍ରୱାଲ ସେଠି ରହୁଛନ୍ତି ବୋଲି କହିବେ । ଗୀତାଦେବୀ ନିଜେ ହୋଟେଲକୁ ଯାଇ ସ୍ୱାମୀଙ୍କ ସହିତ କଲଗାର୍ଲ ଗୋଟିଏ କୋଠରିରେ ଅବସ୍ଥାନ କରୁଥିବା ଦେଖି ଛାଡ଼ପତ୍ର ପାଇଁ କୋର୍ଟରେ କେଶ୍ ଡାଏର କରିବେ ।

ଯେଉଁଦିନ ରାତିରେ ଏହି ଘଟଣା ଘଟିବ ବୋଲି ସ୍ଥିର ହୋଇଥାଏ, ସେଦିନ ରାତିରେ ଗୀତାଦେବୀଙ୍କୁ ନିଦ ନାହିଁ । ସ୍ୱାମୀ ତାଙ୍କର କେତେବଡ଼ ଅପମାନଟାକୁ ନିଜ ଉପରକୁ ନେଇଯାଇ ନାହାନ୍ତି ସତେ ! ମୋତେ ଦୁଇପାହାର ପକାଇଥିଲେ ତ କଥା ଛିଡ଼ି ଯାଇଥାନ୍ତା । ମୋତେ କଷ୍ଟ ହେବ ବୋଲି ସେ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ନିଜ ଚରିତ୍ରସଂହାରକୁ ଆଦରି ନେଲେ । କେତେବଡ଼ ସ୍ୱାର୍ଥତ୍ୟାଗ ସେ ନ କଲେ ମୋ ପାଇଁ ? ସ୍ୱାମୀ ତାଙ୍କୁ ଏବେବି କେତେ ଭଲ ପାଉଛନ୍ତି ? ମୋ ସାମାନ୍ୟ କଷ୍ଟକୁ ସେ ସହ୍ୟ କରିପାରୁ ନାହାନ୍ତି ।

ପରମୁହୂର୍ତ୍ତରେ ଭାବିଲେ, ''ମୁଁ ପ୍ରକୃତରେ କେଡ଼େ ପାଷଣ୍ଡୀ, ଦେବପ୍ରତିମ ସ୍ୱାମୀଙ୍କୁ ଛାଡ଼ପତ୍ର ଦେବାପାଇଁ ତାଙ୍କ ସୁନାମକୁ ବଳି ଦେବାପାଇଁ ପଛାଇଲିନି । ମୋ ଭଳି ସ୍ୱାର୍ଥପର ସାରା ଦୁନିଆରେ କେହି ନ ଥିବ ? ଏହିକଥା ଭାବୁ ଭାବୁ ତାଙ୍କ କାନପାଖରେ ପ୍ରତିଧ୍ୱନିତ ହେଲା ''ଗୀତା ଅତ୍ୟନ୍ତ ସ୍ୱାର୍ଥପର, ଗୀତା ଅତ୍ୟନ୍ତ ସ୍ୱାର୍ଥପର । ନିଜର ଗର୍ବ, ଦାମ୍ଭିକତାକୁ ବଜାୟ ରଖିବା ପାଇଁ ନିଜ ଦେବପ୍ରତିମ ସ୍ୱାମୀଙ୍କୁ କେଡ଼େ ହୀନସ୍ତରକୁ ଠେଲି ନ ଦେଲା ସତେ ! ଖାସ୍

ତା'ରି ପାଇଁ ତା' ସ୍ୱାମୀ କେତେବଡ଼ ଦୁର୍ନାମକୁ ମୁଣ୍ଡାଇବାକୁ ଆଗଭର ହୋଇ ବାହାରି ନ ଆସିଲେ ?''

ରାତି ଯେତିକି ଅଧିକ ହେଉଥାଏ, ନିଜକୁ ସେ ସେତେ ଦୋଷୀ ମଣି ବିଛଣାରେ ଛଟପଟ ହେଉଥାନ୍ତି । ନିଜର ଗର୍ବ, ଅହଙ୍କାରର ବଶବର୍ତ୍ତୀ ହୋଇ ନିଜ ଦେବପ୍ରତିମ ସ୍ୱାମୀଙ୍କୁ କି ହତାଦର କରି ନାହାନ୍ତି ସେ ? ତା' ଭଳି ଦୋଷୀ ସାରା ଦୁନିଆରେ କେହି ନ ଥିବ । ହିନ୍ଦୁଧର୍ମରେ ନାରୀର ଯେଉଁ ସର୍ବଶ୍ରେଷ୍ଠ ଭୂଷଣ ପତିସେବା, ତାହା ତ ତା' ପାଖରେ ନାହିଁ । ଓଲଟି ଦେବପ୍ରତିମ ସ୍ୱାମୀଙ୍କୁ ସେ କି ହତାଦର କରିନାହିଁ, ଏହି କେତେଦିନ ଧରି ? ତା'ଭଳି ପାଷଣ୍ଡୀ ସାରା ଦୁନିଆରେ କେହି ନ ଥିବ । ଗୀତାଦେବୀ ଏହିଭଳି ଭାବି ଚାଲିଛନ୍ତି, ଆଖିକୁ ମୋଟେ ନିଦ ନାହିଁ । ହଠାତ୍ ଫୋନ୍ ବାଜି ଉଠିଲା । ଫୋନ୍ ବାଜି ଉଠିବାକ୍ଷଣି ତାଙ୍କ ହଲକ ଶୁଖିଗଲା । ପୂର୍ବ ନିର୍ଦ୍ଧାରିତ ସ୍ଥାନରୁ ଯେ ଫୋନ୍ ଆସିଛି, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ତେବେ ଫୋନ୍ ଧରିବେ କି କଅଣ ଠିକ୍ କରି ପାରିଲେନି । କିଛି ସମୟ ଭାବି ଠିକ୍ କଲେ, ନା, ଫୋନ୍ ନ ଧରିଲେ କଥା ଖରାପ ହେବ । ମେନେଜର ତାଙ୍କୁ ଖରାପ ଭାବିବେ । ଫୋନ୍ ଧରିଲାରୁ ଫୋନ୍‌ରେ କଥା କହୁଥିଲେ ନୀଳକମଲ ହୋଟେଲର ମାଲିକ ମିଷ୍ଟର ସିଂହ । ମିଷ୍ଟର ଅଗ୍ରୱାଲ ତାଙ୍କ ହୋଟେଲରେ ସେଦିନ ରାତି ପାଇଁ ଦଶନମ୍ବର କୋଠରିରେ ରହୁଛନ୍ତି । ସେ ଘରକୁ ଫେରିବେନି । ଆଜି ରାତିକ ପାଇଁ ସେ ସେଠି ଅବସ୍ଥାନ କରିବେ । ତାଙ୍କ ସହିତ ସେହି ରୁମ୍‌ରେ ରହୁଛନ୍ତି ମିସ୍ ଡୋରଜି ସେହଗ୍ୟାଲ, ବୋମ୍ବେ ନଗରୀର ସୁପ୍ରସିଦ୍ଧ କଲଗାର୍ଲ ।''

ଫୋନ୍ ଥୋଇଦେଇ ଗୀତାଦେବୀ ଚିନ୍ତା କଲେ ସେ ଯିବେ କି ନାହିଁ । କଲଗାର୍ଲ ସହ ରାତ୍ରିଟିଏ କଟାଇଲେ ବି ତାଙ୍କ ସ୍ୱାମୀ ଯେ ନିଷ୍କଳଙ୍କ ଏଥିରେ ତାଙ୍କର ସନ୍ଦେହ ନ ଥାଏ । ସେ ଯେତେବେଳେ କଥା ଦେଇଛନ୍ତି, ନିଶ୍ଚୟ ଯିବାକୁ ପଡ଼ିବ । ଏହି କଥାଟାକୁ ଅନ୍ୟମାନେ ଯେମିତି ନ ଜାଣିବେ, ସେ ଚୁପ୍ କରି ଘରୁ ନିଜେ ଗାଡ଼ି ଚଳାଇ ହୋଟେଲ ଅଭିମୁଖେ ବାହାରିଗଲେ । ହୋଟେଲରେ ପହଞ୍ଚି ଦଶନମ୍ବର ରୁମ୍‌ର ଠିକଣା ନେଇ ରୁମ୍‌ଆଡ଼େ ଆଗେଇଲେ । ଦଶନମ୍ବର ରୁମ୍‌ର କଲିଂବେଲ୍ ଚିପିଛନ୍ତି କି ନାହିଁ, ଦୁଆର ଖୋଲିଲା । ଅନିନ୍ଦ୍ୟ ସୁନ୍ଦରୀ ଝିଅଟିଏ ହସ ହସ ମୁହଁରେ ରୁମ୍‌ରୁ ବାହାରିଗଲା । ମିଷ୍ଟର ଅଗ୍ରୱାଲ ବିଛଣା ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ସକାଳର ଖବରକାଗଜ ଓଲଟାଉ ଥିଲେ । ଗୀତାଦେବୀଙ୍କୁ ଦେଖି ଉଠିପଡ଼ି କହିଲେ, ''ଆସ, ଆସ, ଗୀତା । ବହୁତ

କଷ୍ଟ ହୋଇଥିବ ତୁମକୁ ଏ ଅସମୟରେ ଏଠାକୁ ଆସିବା ପାଇଁ । ଦେଖିଲ ତ, ଏଥର ଛାଡ଼ପତ୍ର ପାଇଁ ଆଉକିଛି ଅସୁବିଧା ହେବନି ।''

ଗୀତାଦେବୀ ଘର ଭିତରକୁ ପଶିଯାଇ ହଠାତ୍ ସ୍ୱାମୀଙ୍କ ଗୋଡ଼ ଧରି ପକାଇ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । କାନ୍ଦୁ କାନ୍ଦୁ କହୁଥାନ୍ତି, ''ମୋର ଦୋଷ ହୋଇଛି, ମୋତେ କ୍ଷମା କର । ମୁଁ ମୋ ଶିକ୍ଷାର ଗର୍ବରେ ଗର୍ବିତ ହୋଇ ତୁମ ପ୍ରତି ବଡ଼ ଅନ୍ୟାୟ କରିଛି । ମୁଁ ଆଜି ଉପଲବ୍ଧି କରୁଛି, ତୁମେ କେତେ ମହାନ୍ ଓ ମୁଁ କେତେ ହୀନ । ମୁଁ ତୁମ ଗୋଡ଼ଧରି ପ୍ରତିଜ୍ଞା କରୁଛି, ଆଉ କେବେ ତୁମ ଶିଳ୍ପନୀତିକୁ ସମାଲୋଚନା କରିବିନି । ମୋତେ କ୍ଷମାଦିଅ ଏଥର ।''

ଗୀତାଦେବୀଙ୍କୁ ଗୋଡ଼ତଳୁ ଉଠାଇ ନେଉ ନେଉ ଦେବବାବୁ କହିଲେ, ''ତୁମେ ଏ କ'ଣ କରୁଛ ଗୀତା । ତୁମେ ଏତେଦିନ ଧରି ଯାହା ପାଇବାକୁ ଇଚ୍ଛା କରୁଥିଲ, ତାହା ତ ଆଜି ମିଳିଯାଇଛି ।''

''ମୋତେ ଆଉ ଅଧିକ ଲଜ୍ଜା ଦିଅନି । ମୁଁ ତୁମ ଗୋଡ଼ ଧରୁଛି । ମୁଁ ଏବେ ମୋ ଭୁଲ ବୁଝିପାରିଛି । ଏମିତି ଭୁଲ ଆଉ କେବେ କରିବିନି । ଆଉ କେବେ ତୁମ ଉପରେ ମୋ ମତକୁ ଜାହିର କରିବାକୁ ଚେଷ୍ଟା କରିବିନି ।''

ହାତ ଧରିପକାଇ, ''କୁହ, ମୋତେ କ୍ଷମା କଲ ତ ? ମୁଁ ମୋ ଭୁଲ ପାଇଁ ଅତ୍ୟନ୍ତ ଅନୁତପ୍ତ । ମୋର ଜିଦ୍‌ଖୋର୍ ପ୍ରକୃତିଯୋଗୁ ମୁଁ ତମକୁ କି ଦଣ୍ଡ ନ ଦେଲି ସତେ ? ଆସ, ଏଥର ଘରକୁ ଯିବା ।'' ଅନ୍ୟମାନେ ବିଛଣାରୁ ଉଠିବା ପୂର୍ବରୁ ଆମେ ଘରେ ପହଞ୍ଚିବା । ସେତେବେଳ ପର୍ଯ୍ୟନ୍ତ ଗୀତାଦେବୀଙ୍କ ଆଖିରୁ ଲୋତକ ସ୍ରୋତ ଝରି ଚାଲିଥାଏ ।

ଘରକୁ ଯିବାପାଇଁ ବାହାରିବା ପୂର୍ବରୁ ଦେବବାବୁ ଗତରାତ୍ରିର ବିଲ୍ ଆଣିବା ପାଇଁ ଫୋନ୍‌ରେ କହିଦେଲେ । ଜଣେ ବୟ ଥାଳିଆରେ ଗତରାତ୍ରିର ବିଲ୍ ଧରି ଆସି ପହଞ୍ଚିଗଲା । ଦୁଇଟି ଥାଳିଆରେ ଦୁଇଟି ଅଲଗା ଅଲଗା ବିଲ୍ ଆସିଥାଏ । ଦୁଇଟି ଅଲଗା ଅଲଗା ବିଲ୍ ଦେଖି ଗୀତାଦେବୀ ବିସ୍ମିତ ହୋଇ ହୋଟେଲବୟ ଆଡ଼କୁ ଅନାଇଲେ ।

ହୋଟେଲବୟ ଗୀତାଦେବୀଙ୍କ ସଂଶୟ ଦୂର କରିବା ପାଇଁ କହିଲା, ''ଏ ହେଉଛି ଦଶନମ୍ବର ରୁମ୍‌ର ବିଲ୍, ଖୋଦ୍ ସାହେବଙ୍କର । ଏ ବିଲ୍‌ଟି ହେଉଛି ମିସ୍ ଡୋରିଜି ସେହଗ୍ୟାଲଙ୍କର ୩୫ ନମ୍ବର ରୁମ୍‌ର ବିଲ୍ । ଗତରାତ୍ରିରେ ମିସ୍ ଡୋରିଜି ୩୫ ନମ୍ବର ରୁମ୍‌ରେ ଥିଲେ । ଆପଣଙ୍କୁ ଫୋନ୍ କରି ସାରିବାପରେ

ଭୋରବେଳକୁ ସାହେବଙ୍କ ଡକାରେ ସେ ଦଶନମ୍ବର ରୁମ୍‌କୁ ଆସିଥିଲେ । ମିସ୍ ଡୋଗ୍‌ଜି ଏହି ରୁମ୍‌କୁ ପଶିବାର ଠିକ୍ ପରେ ପରେ ଆପଣ କଲିଂବେଲ୍ ଟିପିଲେ । କଲିଂବେଲ୍ ବାଜିବା ସଙ୍ଗେ ସଙ୍ଗେ ସେ ତ ଏହି ରୁମ୍‌ରୁ ବାହାରିଗଲେ । ସାହେବଙ୍କ ସହିତ ତାଙ୍କର କଥାବାର୍ତ୍ତା ହୋଇଛି କି ନାହିଁ ସନ୍ଦେହ ।

ଗୀତାଦେବୀ ସ୍ୱାମୀଙ୍କଆଡ଼କୁ ଅନାଇଲେ । ଦେବବାବୁ ବିଲ୍ ଚୁକାଇଦେଇ ତରତର ହୋଇ ଉଠିପଡ଼ି କହିଲେ, ‘‘ଛାଡ଼ ସେ କଥା ଗୀତା । ଚାଲ ଯିବା ।’’

ବାହାରେ ଦେବବାବୁଙ୍କ ଗାଡ଼ି ଅପେକ୍ଷା କରିଥାଏ । ଦେବବାବୁଙ୍କ ଡ୍ରାଇଭର ପୋର୍ଟିକୋରେ ଗାଡ଼ି ଆଣି ଠିଆ କରି ଦେଇଥାଏ । ଗୀତାଦେବୀ ଓ ଦେବବାବୁ ଗାଡ଼ିରେ ବସିଲେ । ଗାଡ଼ି ଘରକୁ ଯିବା ପରିବର୍ତ୍ତରେ ସାନ୍ତାକ୍ରୁଜ୍ ବିମାନଘାଟି ଆଡ଼େ ମୁହାଁଇଲା ।

ଗୀତାଦେବୀ ହଠାତ୍ କହି ଉଠିଲେ, ‘‘ଆମେ କ’ଣ ଘରକୁ ଯାଉନାହାନ୍ତି କି ?’’

‘‘ନା, ଗୀତା ।’’

‘‘ତେବେ, କେଉଁଠି ?’’

‘‘କାଶ୍ମୀର ଭେଲି ।’’

‘‘ଆଁ, କାଶ୍ମୀରଭେଲି ? କାହିଁ, ମୋତେ ତ କିଛି କହି ନାହଁ ।’’

‘‘ତୁମେ ମୋ ସହିତ କେତେବେଳେ କଥା ହେଉଥିଲ ଯେ କହିଥାନ୍ତି ।’’

‘‘ହଠାତ୍ କାଶ୍ମୀରଭେଲି ପାଇଁ ପ୍ରୋଗ୍ରାମ୍ କଲ କାହିଁକି ? ଏହା କ’ଣ ଆଗରୁ ହୋଇଥିଲା ?’’

‘‘ତୁମର ମନେଥିବ ଗୀତା, ଆମେ ଯେତେବେଳେ ମସୌରୀରେ ମଧୁରାତ୍ରି ବିତାଉଥିଲେ, ତୁମେ ଥରେ କହିଥିଲ ନା, ଦ୍ୱିତୀୟ ମଧୁରାତ୍ରି କେବେ ହେବ ?’’ ଶ୍ରୀନଗରରେ ଆମର ଆଜି ଦ୍ୱିତୀୟ ମଧୁରାତ୍ରି ହେବ ଗୀତା । ଏତେଦିନର ବିଚ୍ଛେଦ ପରେ, ଏ ହେବ ଏକ ମଧୁରମିଳନ । ଏ ମିଳନ ପାଇଁ ଆମ ଘର ଏକ ଉପଯୁକ୍ତ ସ୍ଥାନ ନୁହେଁ । ଏଥିପାଇଁ କାଶ୍ମୀର ଉପତ୍ୟକା ହିଁ ଉପଯୁକ୍ତ ସ୍ଥାନ ।’’

‘‘ଆମର ତ ଆଜି ଛାଡ଼ପତ୍ର ହେବାର ଥିଲା । ଛାଡ଼ପତ୍ର ହୋଇଥିଲେ, ଆଜି ମଧୁର ମିଳନ ହୋଇଥାନ୍ତା, କାହା ସହିତ ? ମୁଁ ତ ତୁମ ସହିତ ନ ଥାନ୍ତି । କ’ଣ ସେହି ଡୋଗ୍‌ଜି ସେହଗ୍ୟାଲ ?’’ ମୁହଁରେ ଦୁଷ୍ଟାମିର ହସ ଖେଳାଇ ଗୀତାଦେବୀ ପଚାରିଲେ ।

"ହଁ, ତୋର୍‌କି ସେହଗ୍ୟାଲ ?" ଗୀତାଦେବୀଙ୍କ ଗାଲ ଚିପି ଦେଉ ଦେଉ ଦେବବାବୁ କହିଲେ ।

"ତୁମର ଦୁଷ୍ଟାମି ପୁଣି ବାହାରିଲାଣି ଦେଖୁଛି ? ଏତେଦିନକାଳ ଏହି ଦୁଷ୍ଟାମିକୁ କେଉଁଠି ଲୁଚାଇ ରଖିଥିଲ ଶୁଣେ ?"

"ଯାହାକୁହ ଗୀତା, ମୋତେ କାହିଁକି ତୁମର ଏହିଭଳି ଦୁଷ୍ଟାମି ଖୁବ୍ ଭଲ ଲାଗେ ।"

"ମୋ ପ୍ରକୃତ ଦୁଷ୍ଟାମି ଦେଖିଲ ତ ? ତୁମକୁ ଆଣି କେଉଁ ଅପନ୍ତରାରେ ପକାଇଦେଲି । ମୋ ଦ୍ୱାରା କଥାଟା ଏତେଦୂରକୁ ଚାଲିଯିବ ବୋଲି ମୁଁ ଆଶା କରି ନ ଥିଲି । ମୁଁ ବର୍ତ୍ତମାନ ଭାବୁଛି ମୁଁ ଏ ସବୁର ମୂଳ କେମିତି ହେଲି ? ତୁମଭଳି ଦେବପ୍ରତିମ ସ୍ୱାମୀଙ୍କୁ ମୁଁ କି ହୀନପ୍ରକୃତିର ବୋଲି ପରିଚିତ କରିବାକୁ ପଛାଇଲିନି ।"

"ଛାଡ଼, ସେକଥା ଗୀତା । ଗତସ୍ୟ ଶୋଚନାନାସ୍ତି । ବର୍ତ୍ତମାନ ଆମେ କାଶ୍ମୀର ଯାଉଛେ, ତୁମେ ଏଥିରେ ଖୁସୀ ତ ?"

"କିନ୍ତୁ, ମୁଁ ତ ସଙ୍ଗରେ କିଛି ଲୁଗାପଟା ଆଣିନି । ଏମିତି ଖଣ୍ଡିଏ ଶାଢ଼ିରେ କ'ଣ କାଶ୍ମୀର ଯିବାକଥା ? ପୋଷାକପତ୍ର, ଅନ୍ୟ କେତେ ଜିନିଷ ସଙ୍ଗରେ ଆଣିଥାନ୍ତି । ନ ହେଲେ ସେଠି ଚଳାଚଳିରେ ଅସୁବିଧା ହେବନି ?"

"ସେସବୁ ଅଣାଯାଇଛି ଗୀତା । କାଶ୍ମୀରରେ ପହଞ୍ଚିଲେ ତୁମେ ବଳେ ଦେଖିବନି, ତୁମେ ଦରକାର କରୁଥିବା ସବୁ ଜିନିଷ କେମିତି ଆମ ସହିତ ଆସିଛି । ଲୁଗାପଟା, ଗହଣାଗାଣ୍ଠି ଠାରୁ ପ୍ରସାଧନ ସାମଗ୍ରୀ ପର୍ଯ୍ୟନ୍ତ ସବୁକିଛି ଅଛି । ଶ୍ରୀନଗରର ହୋଟେଲ ଓବ୍‌ରୋଇରେ ଆମ ରହିବା ପାଇଁ ସୁଟ୍ ରିଜର୍ଭ ହୋଇଯାଇଛି ।"

"ଏତେ କାମ କେମିତି ମୋ ଅଜାଣତରେ ହେଲା ମୁଁ ଭାବିପାରୁନି । ତୁମେ କ'ଣ ଜାଣିଥିଲ ଆମର ଛାଡ଼ପତ୍ର କାର୍ଯ୍ୟକାରୀ ନ ହୋଇ ଆମର ପୁଣି ମିଳନ ହେବ ?"

"ହଁ, ଗୀତା, ମୁଁ ଆଗରୁ ତାହା ଜାଣିଥିଲି । ଆମ ଭିତରେ ସମାଲୋଚନା, ବଚସା ଲାଗି ରହିଥିଲେହେଁ ତୁମେ ମୋତେ ପୂର୍ବଭଳି ଭଲ ପାଉଥିଲ ଓ ମୁଁ ମଧ୍ୟ ତୁମକୁ ଭଲ ପାଉଥିଲି ଏହା ମୁଁ ଜାଣିଥିଲି । ଆମ ଭିତରେ କଥାବାର୍ତ୍ତା ହେଉ ନ ଥିବାରୁ ତୁମେ ଅସ୍ଥିର ହୋଇ ଛାଡ଼ପତ୍ର କଥା ଉଠାଇଥିଲ । ଏମିତି ଏକ ଅଭିନୟ କରାଗଲେ, ତୁମେ ତୁମ ଭୁଲ ବୁଝିପାରିବ ବୋଲି ମୁଁ ଜାଣି ଜାଣି ଏହି ଅଭିନୟର ଯୋଗାଡ଼ କଲି ।"

"ତା'ହେଲେ ଏସବୁ ଅଭିନୟ, କେଉଁଟି ସତ ନୁହେଁ ? ତୁମେ ଏଡ଼େ ସୁନ୍ଦର ଅଭିନୟ କରିପାର ମୁଁ ଦେଖି ଆଶ୍ଚର୍ଯ୍ୟ ହେଉଛି । ଶିଳ୍ପ ବ୍ୟବସାୟ ଛାଡ଼ି ଚଳଚ୍ଚିତ୍ରକୁ ଗଲେ ତ ସେଠି ଖୁବ୍ ସୁନାମ ଅର୍ଜନ କରିପାରନ୍ତ । ସେଠାକୁ କେମିତି ଯାଉନାହଁ ମୁଁ ତାହା ହିଁ ଆଶ୍ଚର୍ଯ୍ୟ ହେଉଛି ।"

"ତୁମ ଭଳି ଅଭିନେତ୍ରୀ ମିଳିଲେ ଚଳଚ୍ଚିତ୍ର ଅଭିନେତା ହେବାକୁ କିଏ ଯେ ମନ ନ କରିବ, ମୁଁ ଭାବିପାରୁନି ଗୀତା ।"

"ଚଳଚ୍ଚିତ୍ରରେ କ'ଣ ଗୋଟିଏ ଅଭିନେତ୍ରୀରେ ଆଶା ପୂରଣ ହୁଏ । ସେଠି ତ ଶହ ଶହ ଅଭିନେତ୍ରୀ, ଯାହାକୁ ଯିଏ ।"

ହଠାତ୍ ଗାଡ଼ି ସାନ୍ତାକ୍ରୁଜ ଉଡ଼ାଜାହାଜ ଘାଟି ଭିତରକୁ ପଶି ଆସିଲା । କିଛି ସମୟରେ ପୋର୍ଟିକୋରେ ଯାଇ ଠିଆ ହେଲା । ଦେବବାବୁ ଓ ଗୀତାଦେବୀ ଗାଡ଼ିରୁ ଓହ୍ଲାଇବାକୁ ପ୍ରସ୍ତୁତ ହେଲେ ।

ଉଡ଼ାଜାହାଜ ଘାଟିଆଡ଼କୁ ଯାଉ ଯାଉ କହିଲେ, "କାହିଁ, ଆମ ଜିନିଷପତ୍ର ତ ଆମ ସାଙ୍ଗରେ ଆସି ନାହିଁ ?"

"ବ୍ୟସ୍ତ ହୁଅନି ଗୀତା ସବୁ ଆସିଛି । ଠିକ୍ ସମୟରେ ପାଇପାରିବ ।"

## ତିନି

ଶ୍ରୀନଗର ଉଡ଼ାଜାହାଜ ଘାଟିରେ ଇଣ୍ଡିଆନ୍ ଏୟାରଲାଇନ୍ସର ଏୟାରବସ୍ ଉଡ଼ାଜାହାଜ ପହଞ୍ଚିଲାବେଳକୁ ପ୍ରାୟ ଦିନ ଗୋଟାଏ । ଗୀତାଦେବୀ ଓ ଦେବକିଷନ ବାବୁ ଉଡ଼ାଜାହାଜରୁ ଓହ୍ଲାଇ ଲାଉଞ୍ଜରେ ପହଞ୍ଚିଲାବେଳକୁ ସେମାନଙ୍କୁ ପାଛୋଟି ନେବା ପାଇଁ ଦେବବାବୁଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ମିସ୍ ପ୍ରୀତମ୍ ସିଂହ ଓ କେନ୍ଦ୍ରୀୟ ଅଫିସ୍‌ର ବଡ଼ ବଡ଼ ଅଫିସରମାନେ ପହଞ୍ଚି ଯାଇଥିଲେ । ସେମାନଙ୍କୁ ସବୁ ନମସ୍କାର କରିବା ଦେଖି ଗୀତାଦେବୀ ଆଶ୍ଚର୍ଯ୍ୟ ହୋଇଗଲେ । ନିଜ ଶିଳ୍ପ ନଗରୀର ଏତେଗୁଡ଼ାଏ ଲୋକଙ୍କୁ ଦେଖି ଗୀତାଦେବୀ ଭାବି ପାରିଲେନି, ଏମାନେ ସବୁ ଏଠାକୁ ଆସିଛନ୍ତି କାହିଁକି ? ଦେବବାବୁ ତାଙ୍କୁ ଯେ ଘେନି ଆସିଥିଲେ କାଶ୍ମୀର ବୁଲିବାପାଇଁ, ଏହା କ'ଣ ତା'ହେଲେ ଠିକ୍ ନୁହେଁ ? ନିଜ ଶିଳ୍ପନଗରୀର ଏତେଗୁଡ଼ିଏ ଲୋକଙ୍କୁ ସାମନାରେ ଏକତ୍ରିତ ହୋଇଥିବା ଦେଖି ଗୀତାଦେବୀ ଆଶ୍ଚର୍ଯ୍ୟ ହୋଇ ଦେବବାବୁଙ୍କ ଆଡ଼କୁ ଅନାଇଲେ । ଗୀତାଦେବୀଙ୍କୁ ବିସ୍ମୟ ବିସ୍ଫାରିତ ନୟନରେ ଅନାଇବା ଦେଖି ଦେବବାବୁ କହିଲେ, "ତୁମେ ଜାଣିନ ଗୀତା,

ଏଠି ଆମ ଡିଷ୍ଟ୍ରିବ୍ୟୁଟରମାନଙ୍କର ଏକ କନ୍‌ଫରେନ୍‌ସ ହେବାର ଅଛି । ସାରା ଭାରତରୁ ଆମ ଡିଷ୍ଟ୍ରିବ୍ୟୁଟରମାନେ ପହଞ୍ଚିଗଲେଣି । ସେହି କନ୍‌ଫରେନ୍‌ସର ତଦ୍‌ବିର ପାଇଁ ଏମାନେ ସବୁ ଏଠାକୁ ଆସିଛନ୍ତି । ଦୁଇଦିନ କନ୍‌ଫରେନ୍‌ସ ହେବ । ହୋଟେଲ ଓବ୍‌ରୋଇରେ କନ୍‌ଫରେନ୍‌ସ ହେବା ଠିକ୍ ହୋଇଛି । ଆମର ମଧ୍ୟ ସେଠି ରହିବା ପାଇଁ ରୁମ୍ ରିଜର୍ଭ ହୋଇଛି ।''

ଏହି ସମୟରେ ପ୍ରାଇଭେଟ୍ ସେକ୍ରେଟେରୀ ପ୍ରୀତମ୍ ଆସି ଖବର ଦେଲା, ''ସାର୍, ଗାଡ଼ିରେ ସବୁ ଜିନିଷପତ୍ର ଥୁଆଗଲାଣି । ଆଉ ଏଠି ଅପେକ୍ଷା କରି ଲାଭ କଅଣ ?''

ଗୀତାଦେବୀଙ୍କୁ ଅନାଇ, ''ମେଡେମ୍, ବର୍ତ୍ତମାନ ହୋଟେଲକୁ ଯିବା ? ଆଉ ଡେରି କାହିଁକି ?''

ଦେବବାବୁ କହିଲେ, ''ହଁ, ଗୀତା, ଚାଲ ହୋଟେଲକୁ ଯିବା । ତୁମେ ଡେର୍‌ବେଳୁ ଏହି ଉଡ଼ାଜାହାଜରେ ବସି ବସି ବିରକ୍ତ ହୋଇଯିବଣି, ସେଠାକୁ ଗଲେ ଟିକିଏ ବିଶ୍ରାମ କରିବ ।''

ବାଟରେ ଯାଉ ଯାଉ ଗୀତାଦେବୀ କାଶ୍ମୀରର ଅପରୂପ ସୌନ୍ଦର୍ଯ୍ୟ ଦେଖି ମୋହିତ ହୋଇ ପଡୁଥାନ୍ତି । କାଶ୍ମୀରର ସୌନ୍ଦର୍ଯ୍ୟ କଥା ସେ କେବଳ ପଢ଼ିଥିଲେ, କେବେ ସ୍ୱଚକ୍ଷୁରେ ଦେଖି ନ ଥିଲେ । ଆଜି ଚକ୍ଷୁ କର୍ଣ୍ଣର ବିବାଦଭଞ୍ଜନ ଦେଖି ବଡ଼ ଆତ୍ମହରା ହୋଇପଡ଼ିଲେ । କଥାରେ ଅଛି, ଭୂସ୍ୱର୍ଗ କାଶ୍ମୀର । ସ୍ୱର୍ଗର ସବୁ ସୌନ୍ଦର୍ଯ୍ୟ ଯେମିତି ଏକତ୍ରିତ ହୋଇଛି ଏଠି । ସେଦିନର ପାଗ ବେଶ୍ ପରିଷ୍କାର ଥାଏ । ଚାରିଆଡ଼େ ଅସଂଖ୍ୟ ପ୍ରକାର ପୁଷ୍ପବୃକ୍ଷ ପୁଷ୍ପସମ୍ଭାର ତୋଳି ସେମାନଙ୍କୁ ସ୍ୱାଗତ ଜଣାଉଥାନ୍ତି । ହୋଟେଲରେ ପହଞ୍ଚିଲାବେଳକୁ ବାମପାଖରେ ଶ୍ରୀନଗରର ଗୌରବ ସୁପ୍ରସିଦ୍ଧ ଡାଲ୍ ହ୍ରଦ ପଡ଼ିଲା । ଡାଲ୍ ହ୍ରଦର ସୌନ୍ଦର୍ଯ୍ୟ ଓ ସେଥିରେ ଅସଂଖ୍ୟ ପ୍ରକାର ସାକାରା ଦେଖି ମୋହିତ ହୋଇପଡ଼ିଲେ ଗୀତାଦେବୀ । କେତେଲୋକ ଏହି ସୁସଜ୍ଜିତ ସାକାରାରେ ବସି ଡାଲ୍ ହ୍ରଦରେ ନୌକାବିହାର କରୁଥାନ୍ତି ।

''ଏହାଠାରୁ ଆହୁରି ସୌନ୍ଦର୍ଯ୍ୟପୂର୍ଣ୍ଣ ସ୍ଥାନ କାଶ୍ମୀରରେ ଅଛି ଗୀତା । ତୁମେ ଏତିକି ଦେଖି ମୋହିତ ହୋଇଯାଉଛ କଅଣ ?''

''ତୁମେ କାଶ୍ମୀର ଆସିଲାବେଳେ ମୋତେ କ'ଣ କହି କାଶ୍ମୀର ଆଣିଥିଲ ? ଅଥଚ ଏଠି ଦେଖିଲାବେଳକୁ ଏତେଗୁଡ଼ାଏ ଲୋକ, ଏକ କନ୍‌ଫରେନ୍‌ସର ପୁଣି ଆୟୋଜନ । ଆମେ ପରା କାଶ୍ମୀର ବୁଲିବା ପାଇଁ ଆସିଥିଲେ ? ଏହି କନ୍‌ଫରେନ୍‌ସ

ଆଟେଣ୍ଡ କରିବାକୁ କ'ଣ ଚିତ୍ତବିନୋଦନ କହନ୍ତି ? ମୋତେ ସେଇକଥା ମୂଳରୁ କହିଥିଲେ ମୁଁ ଆସି ନ ଥାନ୍ତି ।''

''ନା, ନା ଗୀତା, ତୁମେ ରାଗିଯାଅନି । ଏହି କନ୍‌ଫରେନ୍‌ସ ହେବ ମାତ୍ର ଦୁଇଦିନ, ଆଜି ଓ ଆସନ୍ତାକାଲି । କାଲି ସନ୍ଧ୍ୟାରୁ ଏମାନେ ସମସ୍ତେ ଏଠୁ ଚାଲିଯିବେ । ଖାଲି ଆମେ ରହିବା । ସେମାନଙ୍କ ଯିବାପରେ ଆମେ ଏଠି ରହିବା ଆହୁରି ଛଅଦିନ । ତା'ରି ଭିତରେ ଆମେ କାଶ୍ମୀରର ସବୁକିଛି ଦର୍ଶନୀୟ ସ୍ଥାନ ବୁଲି ଦେଖିପାରିବା । ଏଠି ଏତେ ଦର୍ଶନୀୟ ସ୍ଥାନ ଅଛି, ଯେ ମଣିଷ ସେସବୁ ଦେଖିଲେ ନିଜ ଖିଆପିଆ କଥା ଭୁଲିଯିବ । ମୋର ଜଣେ ସାଙ୍ଗ ଏଠି ଗୋଟିଏ ଅତ୍ୟାଧୁନିକ ଶୀତତାପ ନିୟନ୍ତ୍ରିତ ବୋଟ୍ ହାଉସ୍‌ର ଉଦ୍‌ଘାଟନ କରିବାକୁ ଆମକୁ ଅନୁରୋଧ କରିଛି । ଉଦ୍‌ଘାଟନ ପରେ ଆମେ ସେହି ବୋଟ୍ ହାଉସ୍‌ରେ ରହିବା ତିନି ଚାରିଦିନ । ଆମେ ହେବା ତା' ବୋଟ୍ ହାଉସ୍‌ର ସର୍ବପ୍ରଥମ ଅତିଥି ।''

ଏମିତି ଭାବରେ କଥାବାର୍ତ୍ତା ହେଉ ହେଉ କେତେବେଳୁ କାର୍ ଆସି ହୋଟେଲ ଓବ୍‌ରୋଇର ପୋର୍ଟିକୋରେ ଲାଗିଲାଣି, ଗୀତାଦେବୀଙ୍କୁ କି ଦେବବାବୁଙ୍କୁ ଜଣା ନାହିଁ । ମିସ୍ ପ୍ରୀତମ୍ ସିଂହ କାର୍‌ର ଦୁଆରଖୋଲି ଠିଆ ହେଲାବେଳକୁ ସେମାନଙ୍କ ଖିଆଲ ପଶିଲା । ପ୍ରୀତମ୍‌କୁ ଦୁଆରଖୋଲି ଠିଆହେବା ଦେଖି ଗୀତାଦେବୀ ଓହ୍ଲାଉ ଓହ୍ଲାଉ କହିଲେ, ''ତୁମେ କେବେଠାରୁ ଆସିଲଣି ପ୍ରୀତମ୍ ?''

''କାଲି ମୁଁ ଓ ଆମ ଅଫିସ୍‌ଷ୍ଟାଫ୍ ସବୁ ଏଠି ଆସି ପହଞ୍ଚିଲୁ ।''

''ତୁମେସବୁ କେଉଁଠି ଅଛ ?''

''ଆମେସବୁ ହୋଟେଲ ଗ୍ରାଣ୍ଡପ୍ରିକ୍‌ସରେ ଅଛୁ । ଏଠାରୁ ବେଶି ଦୂର ନୁହେଁ ।''

''ଏଥିପୂର୍ବରୁ ତୁମେ କେବେ କାଶ୍ମୀର ଆସିଥିଲ ପ୍ରୀତମ୍ ?''

''ନାଇଁ, ମେଡେମ୍, ଏହା ମୋର ପ୍ରଥମ ।''

''ତୁମେ ଏଠି କେତେଦିନ ରହିବ ଶୁଣେ ।''

''ନାଇଁ ମେଡେମ୍, ଆମେସବୁ ପହରିଦିନ ସକାଳୁ କାଶ୍ମୀର ଛାଡ଼ିବୁ । କାଲି କନ୍‌ଫରେନ୍‌ସ ସରିଗଲେ, ଆମେ ଆଉ ଅଧିକ ଦିନ ରହିବୁ କାହିଁକି ?''

ହୋଟେଲର ବିରାଟ ସୁଟ୍ ଦେଖି ଗୀତାଦେବୀ ଖୁସି ହୋଇଗଲେ । ସୁଟ୍‌ଟି ଠିକ୍ ଡାଲ୍ ହ୍ରଦଆଡ଼କୁ ମୁହାଁଇଥାଏ । ଶୟନକକ୍ଷର ଝରକାଦେଇ ଅନାଇଲେ ଡାଲ୍ ହ୍ରଦ ଓ ତା ଆଖପାଖର ଉଦ୍ୟାନସବୁ ବେଶ୍ ପରିଷ୍କାର ଦିଶୁଥାଏ । ଡ୍ରଇଂରୁମ୍‌ର ସାଜସଜ୍ଜା ବେଶ୍ ଉଚ୍ଚଧରଣର, ପାଶ୍ଚାତ୍ୟଷ୍ଟାଇଲରେ କରାହୋଇଛି ।

ପାଞ୍ଚଟାବେଳକୁ କନ୍‌ଫରେନ୍‌ସ ଆରମ୍ଭ । ହୋଟେଲ ଓବ୍‌ରୋଇର ବିରାଟ କନ୍‌ଫରେନ୍‌ସ ହଲ୍ ଏଥିପାଇଁ ନିଆଯାଇଛି ।

କନ୍‌ଫରେନ୍‌ସର ଶେଷ ଦିନ । ଗୀତାଦେବୀ ବିଛଣାରେ ଶୋଇ କ'ଣ ଏକ ମେଗାଜିନ୍ ଓଲଟାଉଥିଲେ । ଏହି କନ୍‌ଫରେନ୍‌ସ କ'ଣ ପାଇଁ ଡକାଯାଇଛି ଗୀତାଦେବୀ ଜାଣି ନ ଥାନ୍ତି । ଜାଣିବାକୁ ଭାରି ମନ ହେଉଥାଏ । ପରମୁହୂର୍ତ୍ତରେ ମନେ ପଡ଼ିଯାଉଥାଏ, ସ୍ୱାମୀଙ୍କ ଶାସନରେ ସେ ଆଙ୍ଗୁଳି ପୂରାଇବେ କାହିଁକି ? ସେ ଯାହା କରୁଛନ୍ତି, କରନ୍ତୁ, ସେଥିରେ ତାଙ୍କର ଯାଏ କେତେ ଆସେ କେତେ ? ସେ ତ ସ୍ୱାମୀଙ୍କ ସହିତ କନ୍‌ଫରେନ୍‌ସରେ ଯୋଗ ଦେବାପାଇଁ ଆସି ନାହାନ୍ତି । ସେ ଆସିଛନ୍ତି, ଚିତ୍ତବିନୋଦନ ପାଇଁ । ଏଠି କନ୍‌ଫରେନ୍‌ସରେ କ'ଣ ହେଲା, କ'ଣ ନ ହେଲା, ଜାଣିବା ତାଙ୍କର କ'ଣ ଦରକାର ? ପରମୁହୂର୍ତ୍ତରେ ମନ ହେଉଥାଏ, ଏଠି କେଉଁ ବିଷୟରେ କନ୍‌ଫରେନ୍‌ସ ଚାଲିଛି, ଟିକିଏ ଜାଣିବେ ନାହିଁ କେମିତି ?

ସ୍ୱାମୀ ଯେତେବେଳେ ତାଙ୍କୁ କନ୍‌ଫରେନ୍‌ସ ବିଷୟରେ କିଛି କହୁ ନାହାନ୍ତି, କନ୍‌ଫରେନ୍‌ସକୁ ଡାକୁ ନାହାନ୍ତି, ସେ ଜାଣିବା ପାଇଁ ଏତେ ଆଗ୍ରହ ଦେଖାଇବେ କାହିଁକି ?

ଏହିଭଳି ମାନସିକ ଦ୍ୱନ୍ଦ୍ୱ ଭିତରେ ଗୀତାଦେବୀ କ'ଣ କରିବେ, କ'ଣ ନ କରିବେ ଠିକ୍ କରି ନ ପାରି ସୁଇଚ୍ ଟିପିଲେ । ବୟ ଆସି ସଲାମ ଦେଲା । ବୟ ହାତରେ ପ୍ରୀତମ୍‌କୁ କନ୍‌ଫରେନ୍‌ସ ହଲରୁ ଡକାଇ ପଠାଇଲେ ।

ପ୍ରୀତମ୍ ଆସିଲାରୁ ତାକୁ ବସିବା ପାଇଁ କହି କନ୍‌ଫରେନ୍‌ସ ବିଷୟରେ ପଚାରିଲେ ।

ଗୀତାଦେବୀ କନ୍‌ଫରେନ୍‌ସ ବିଷୟରେ କିଛି ନ ଜାଣିବା ଦେଖି ପ୍ରୀତମ୍ ଆଶ୍ଚର୍ଯ୍ୟ ହେଲା । କହିଲା, ''ଆମ ଡିଷ୍ଟ୍ରିବ୍ୟୁଟରମାନଙ୍କୁ ଏକ ପ୍ରକାର ବୋନସ ଦେବାର ଘୋଷଣା ସାର୍ ଆଜି କରିବେ । ବର୍ତ୍ତମାନ ଆମ ସେଲ୍‌ସ ନେଇ ସୁବିଧା ଅସୁବିଧା ଉପରେ ଆଲୋଚନା ଚାଲିଛି । ଆମ ଉତ୍ପାଦିତ ଜିନିଷର ବାହାରକୁ ରପ୍ତାନୀ ନେଇ କ'ଣ କ'ଣ କରି ହେବ, ବାହାରେ ଏହାର କାଟତି କେମିତି ବଢ଼ିବ, ତା ଉପରେ ଆଲୋଚନା ଚାଲିଥିଲା, ସରିଗଲାଣି ।''

''ଡିଷ୍ଟ୍ରିବ୍ୟୁଟରମାନଙ୍କୁ ଯେଉଁ ନୂଆ ପ୍ରକାର ବୋନସ ଦେବା କଥା ତୁମ ସାର୍ କହୁଛନ୍ତି, ଅନ୍ୟ ଶିଳ୍ପ ମାଲିକମାନେ କ'ଣ ସେମିତି ଦେବାକୁ ଆରମ୍ଭ କଲେଣି ?''

''ନାଇଁ, ମେଡ଼େମ୍ । ସାର୍ କହୁଛନ୍ତି, ଏହା କଲେ ଗୋଟାଏ ନୂଆ କଥା ହେବ । ସେଲ୍‌ସ ବଢ଼ିବ । ଅନ୍ୟ ଶିଳ୍ପପତିମାନେ ବଳେ ସେହିଭଳି ବୋନସ ଦେବାକୁ ବାଧ ହେବେ ।''

ଆଉ ଅଧିକ କିଛି ନ ପଚାରି ପ୍ରୀତମ୍‌କୁ ବିଦା କରିଦେଲେ ଗୀତାଦେବୀ । ମନେ ମନେ ଭାବିଲେ ଏଭଳି ପଦକ୍ଷେପ ଶିଳ୍ପ ଅଭିବୃଦ୍ଧି ପାଇଁ ଭଲ ହେବ କି ଖରାପ ହେବ, ଭଲ ଭାବରେ ବିଚାର ନ କରି ତରବରିଆ ଭାବରେ କରିଦେବା ଉଚିତ୍ ନୁହେଁ । ପରମୁହୂର୍ତ୍ତରେ ଭାବୁଥାନ୍ତି, ସ୍ୱାମୀ ଯେତେବେଳେ ଏଭଳି ଏକ ନୂଆ କଥା କରିବାକୁ ଯାଉଛନ୍ତି, ନିଶ୍ଚୟ ସେ ଏହାର ସବୁଦିଗରୁ ଆଲୋଚନାକୁ ନେଇ ବିଚାର କରିଥିବେ । ତା'ର ଏ ବିଷୟରେ ଚିନ୍ତା କରିବା ଦରକାର ନାହିଁ ।

× × × × ×

"ଦେଖ ଗୀତା, ଆଜି ସନ୍ଧ୍ୟାରେ ବୋଟ୍ ହାଉସ୍‌ର ଉଦ୍‌ଘାଟନ ଉତ୍ସବ ହେବ । ଏହି ଉଦ୍‌ଘାଟନ କରିବ ତମେ । ଆମେ ଆଜି ସନ୍ଧ୍ୟାରୁ ସେହି ବୋଟ୍ ହାଉସ୍‌ରେ ରହିବା । ଏହା ଏକ ଅତ୍ୟାଧୁନିକ ବୋଟ୍ ହାଉସ୍ । ଏହି ହୋଟେଲର ସାଜସଜ୍ଜା ଯାହା ଦେଖୁଛ, ତା'ଠାରୁ ଆହୁରି ଅଧିକ ସାଜସଜ୍ଜା ଓ ଆଡ଼ମ୍ବର ସେଠି ପାଇବ । ସେଥିରେ ଯେଉଁ ସୁଟ୍ ରହିଛି, ଏହାଠାରୁ ଆହୁରି ପ୍ରଶସ୍ତ । ସେହି ବୋଟ୍ ହାଉସ୍‌ରେ ଖାଇବା, ପିଇବା ଆଦିର ସବୁ ବନ୍ଦୋବସ୍ତ ରହିଛି । କିଛି ଅସୁବିଧା ହେବନି । କାଶ୍ମୀର ଆସିଲେ ବୋଟ୍ ହାଉସ୍ ଅନୁଭୂତି, ଏକ ବଡ଼ ଅନୁଭୂତି ହେବ ଗୀତା । ଏହା କେତେବେଳେ ହ୍ରଦକୂଳରେ ତ କେତେବେଳେ ହ୍ରଦ ଭିତରେ । କେତେବେଳେ ଏହା ହ୍ରଦରେ ପଇଁତରା ମାରି ବୁଲିବ । ବଡ଼ ଖୁସୀ ଲାଗିବ ଏହି ବୋଟ୍ ହାଉସ୍‌ରେ ରହିଲେ ଗୀତା ।

ହଁ, ଆଉ ଗୋଟିଏ କଥା । ତୁମେ ପ୍ରସ୍ତୁତ ହୋଇପଡ଼ ଗୀତା, ଆମେ ଆଜି ସକାଳବେଳା, ଡାଲହ୍ରଦର ଚାରିପାଖରେ ଥିବା ମୋଗଲ ଉଦ୍ୟାନ ସବୁ ବୁଲିବାକୁ ଯିବା । କାଶ୍ମୀର ଉଦ୍ୟାନଗୁଡ଼ିକ ଖୁବ୍ ପ୍ରସିଦ୍ଧ ଗୀତା । ଏଭଳି ସୁନ୍ଦରଂ ସୁନ୍ଦର ଉଦ୍ୟାନ ଅନ୍ୟ କେଉଁ ସହରରେ ପାଇବ ନାହିଁ । ଏଗୁଡ଼ିକ ମୋଗଲ ବାଦଶାହାଙ୍କ ଅମଳରୁ ପ୍ରତିଷ୍ଠିତ ହୋଇ ଆସିଛି । ମୋଗଲ ରାଜତ୍ୱ ସମୟରେ ଯୁବରାଜମାନେ ବିବାହ ହୋଇସାରିଲେ ନବବିବାହିତା ସ୍ତ୍ରୀଙ୍କୁ ଧରି ଏଠାରେ ଆନନ୍ଦ ଉପଭୋଗ କରିବା ପାଇଁ ଚାଲି ଆସନ୍ତି । ସେହିସବୁ ମୋଗଲ ଉଦ୍ୟାନ ଭିତରୁ ହରବାନ୍‌ସ ଉଦ୍ୟାନ, ଶାଲିମାର ଉଦ୍ୟାନ, ନିଶାତ ଉଦ୍ୟାନ, ଚଷମାସାହି ଉଦ୍ୟାନ, ପରୀମହଲ ଉଦ୍ୟାନ ଆଦି ପାଞ୍ଚୋଟି ଖୁବ୍ ପ୍ରସିଦ୍ଧ । କାଶ୍ମୀରର ଯେଉଁ ସୁପ୍ରସିଦ୍ଧ ମୋଗଲ ଉଦ୍ୟାନ କଥା ଲୋକେ କହନ୍ତି, ତାହା ଏହି ପାଞ୍ଚୋଟିକୁ ହିଁ ବୁଝାଏ । ଏଗୁଡ଼ିକର ପୁଷ୍ପସମ୍ଭାର ଦେଖିଲେ ଯେ କେହି ଲୋକ ଆଶ୍ଚର୍ଯ୍ୟ ନ ହୋଇ ରହିପାରିବେନି । ଏଗୁଡ଼ିକର ଅତ୍ୟଧିକ ସୌନ୍ଦର୍ଯ୍ୟ ହେତୁ, ବହୁ ଚଳଚ୍ଚିତ୍ର ନିର୍ମାତା

ଚଳଚ୍ଚିତ୍ର ନିର୍ମାଣ ପାଇଁ ନିଜ ନିଜ ଅଭିନେତା, ଅଭିନେତ୍ରୀଙ୍କୁ ଧରି ଏଠାକୁ ଚାଲି ଆସନ୍ତି । ଏଠାକାର ଉଦ୍ୟାନ, ହ୍ରଦ, ନଦ-ନଦୀ, ପାହାଡ଼-ପର୍ବତ, ବଣ-ଜଙ୍ଗଲ ସବୁଥିରେ କିଛି ନା କିଛି ସୌନ୍ଦର୍ଯ୍ୟ ଭରି ରହିଛି । ଚଳଚ୍ଚିତ୍ର ପ୍ରସ୍ତୁତି ପାଇଁ ଏକ ପ୍ରକୃଷ୍ଟ କ୍ଷେତ୍ର । ପହେଲଗାଁ, ଗୁଲମାର୍ଗ ଆଦି କେତେକ ଦର୍ଶନୀୟ ସ୍ଥାନର ପାହାଡ଼ ଉପରେ ବରଫର ଉପସ୍ଥିତି ହେତୁ ପାହାଡ଼ଗୁଡ଼ିକ ଶୁଭ୍ର କିରୀଟ ଧାରଣ କଲାଭଳି ଦିଶେ । ସେସବୁ ସ୍ଥାନର ସୌନ୍ଦର୍ଯ୍ୟ ଦେଖିଲେ ମଣିଷ ପାଗଳ ହୋଇଯିବ ଗୀତା । ଆଉ ଡେରି କର ନାହିଁ, ସଅଳ ସଅଳ ବାହାରିପଡ଼ିଲେ ମଧ୍ୟାହ୍ନଭୋଜନ ବେଳକୁ ଫେରି ଆସିପାରିବା ।

× × × × ×

‘‘ଶିଳ୍ପ ନଗରୀରୁ ଏତେଗୁଡ଼ିଏ ଲୋକ ଆସିଥିଲେ, ସମସ୍ତଙ୍କୁ କ’ଣ ବିଦା କରିଦେଲ ? ଜଣେ ଦି’ଜଣକୁ ରଖିଲ ନାହିଁ । ବଡ଼ ଏକୁଟିଆ ଏକୁଟିଆ ଲାଗିବ । ପ୍ରୀତମ୍‌କୁ ରଖି ନେଇଥିଲେ, ସେ ଆମ ସହିତ ବୁଲାବୁଲି କରି ଆମ ସହିତ ଫେରିଥାନ୍ତା ।’’

‘‘ସେମାନେ ନିଜ ନିଜ କାର୍ଯ୍ୟର ଦାୟିତ୍ୱ ଛାଡ଼ି ଏଠି ବୁଲିବେ କେମିତି ? ପ୍ରୀତମ୍‌ର କେତେ ଦାୟିତ୍ୱ ସେଠି, ତୁମେ କ’ଣ ଜାଣିନ ? ପୁଣି ମୁଁ ସେଠି ନାହିଁ । ମୋ ଅନୁପସ୍ଥିତିରେ ତା’ ଦାୟିତ୍ୱ କେତେ ବଢ଼ିଯିବ ତୁମେ କ’ଣ ଭାବିପାରୁନ ? ତାକୁ ଏଠି ଅଟକାଇ ନେଲେ ତେଣେ ବିଭ୍ରାଟ ହୋଇଯିବ ଗୀତା । ମୋ ଅନୁପସ୍ଥିତିରେ ସେ ଅନେକ କାମ ଚଳାଇ ନେଇପାରିବ । ଦରକାର ପଡ଼ିଲେ ମୋ ସହିତ ଫୋନ୍‌ରେ ସମ୍ପର୍କ ସ୍ଥାପନ କରି ସେଠାକାର ଅବସ୍ଥା ସମ୍ପର୍କରେ ମୋତେ ଜଣାଇପାରିବ କି ମୋ ପରାମର୍ଶ ନେଇପାରିବ ।’’

‘‘ତା’ହେଲେ ଡୋରଜି ସେହଗ୍ୟାଲକୁ ନେଇ ଆସିଥିଲେ ତ ଭଲ ହୋଇଥାନ୍ତା । କାଶ୍ମୀରର ଅପରୂପ ସୌନ୍ଦର୍ଯ୍ୟ ସହିତ ତା’ର ମନମତାଣିଆ ସୌନ୍ଦର୍ଯ୍ୟ ବେଶ୍ ଖାପ୍ ଖାଇଥାନ୍ତା ଏଠି ।’’

‘‘କିନ୍ତୁ ତା’ର ଉପସ୍ଥିତିକୁ ତୁମେ କ’ଣ ସହ୍ୟ କରିପାରିଥାନ୍ତ ଗୀତା ?’’

‘‘ହୋଟେଲରେ ତା’ର ଉପସ୍ଥିତି ତ ସହ୍ୟ କରିପାରିଲି । ଏଠି ପାରି ନ ଥାନ୍ତି କାହିଁକି ?’’

‘‘ତୁମେ ଏଠି ଡୋରଜି ପାଇଁ ଏତେ ବ୍ୟସ୍ତ ହେଉଛ କାହିଁକି ? କାଶ୍ମୀର ଲଳନାମାନେ ଡୋରଜି ଅପେକ୍ଷା ଢେର୍ ଅଧିକ ସୁନ୍ଦରୀ । ତୁମେ ଚାହିଁଲେ ସଙ୍ଗେ ସଙ୍ଗେ ମିଳିଯିବେ ।’’

"ମୁଁ ଚାହୁଁନି । ତୁମ ପାଇଁ ଦରକାର ।"

"ମୋର ତ ଦରକାର ନାହିଁ । ତୁମେ ଥାଉଁ ଥାଉଁ ମୋର ଆଉ ଦରକାର କ'ଣ ? ତୁମେ ଯେତେବେଳେ ଅଛ, ତୁମ ସୌନ୍ଦର୍ଯ୍ୟ ତୁଳନାରେ କୌଣସି କାଶ୍ମୀର ଲଳନା ଯେ ଠିଆ ହୋଇପାରିବ, ଏ ବିଶ୍ୱାସ ମୋର ନାହିଁ । ତୁମେ ଯେତେବେଳେ ନ ଥିଲ, ସେତେବେଳେ ଅବା ଏ କଥା ଚିନ୍ତା କରିଥିଲେ କିଛି ହୋଇଥାନ୍ତା ।"

"ହଁ, ଇଛା ଅଛି ତା'ହେଲେ ?" ଦୁଷ୍ଟାମିର ହସଖେଳାଇ ଉତ୍ତରଦେଲେ ଗୀତାଦେବୀ ।

× × × × ×

ସବୁ ଉଦ୍ୟାନ ବୁଲାବୁଲି କରି ଫେରି ଆସିଲାବେଳକୁ ଦିନ ଦି'ଟା । ଏକ ସଙ୍ଗେ ଏତେଗୁଡ଼ିଏ ଉଦ୍ୟାନ ବୁଲାବୁଲି କରି ଗୀତାଦେବୀ ଓ ଦେବବାବୁ ଥକି ପଡ଼ିଥାନ୍ତି । ସେମାନେ ମଧ୍ୟାହ୍ନଭୋଜନ ସାରିଲାବେଳକୁ ଏତେ ଅବଶ ହୋଇ ପଡ଼ିଥାନ୍ତି ଯେ ଆଉ ବାହାରକୁ ଅନ୍ୟତ୍ର ବୁଲିଯିବା ଅବସ୍ଥାରେ ନ ଥାନ୍ତି । ସେଦିନ ସନ୍ଧ୍ୟାବେଳେ ଡାଲହ୍ରଦରେ ବନ୍ଧୁ ଅର୍ଜୁନ ସିଂହଙ୍କ ବୋଟ୍ ହାଉସ୍‌ର ଉଦ୍‌ଘାଟନ ଉତ୍ସବ । ଉଦ୍‌ଘାଟନ ଯେହେତୁ ଗୀତାଦେବୀଙ୍କ ଦ୍ୱାରା ହେବ, ଠିକ୍ ସମୟରେ ସେମାନଙ୍କୁ ସେଠାରେ ପହଞ୍ଚିବାକୁ ପଡ଼ିବ ।

ଖାଇସାରି ଦେବବାବୁ ସେଦିନର ଚିଠିଗୁଡ଼ାକ ଓଲଟାଉଥାନ୍ତି, ଗୀତାଦେବୀ ତାଙ୍କ ପାଖରେ ବସୁ ବସୁ ତାଙ୍କ କ୍ରୋଡ଼ରେ ମୁଣ୍ଡଦେଇ କେତେବେଳୁ ଶୋଇଗଲେଣି ତାଙ୍କ ଖିଆଲ ନାହିଁ । ଉଦ୍ୟାନ ଭିତରେ ଏତେବାଟ ଚାଲି ଚାଲି ବିଚାରୀ ଥକିପଡ଼ି ଶୋଇପଡ଼ିଛି ଭାବି, ତାଙ୍କ ଶୟନରେ ବ୍ୟାଘାତ ସୃଷ୍ଟି ନ କରି ତକିଆରେ ତାଙ୍କ ମୁଣ୍ଡଦେଇ ଶୁଆଇଦେଲେ । ଶୁଆଇ ଦେଉ ଦେଉ ଦେବବାବୁଙ୍କର ମନେ ପଡ଼ିଗଲା ଦୁଇବର୍ଷ ତଳର ତାଙ୍କ ମସୌରୀ ପ୍ରାସାଦରେ ସେହି ବାସର ରାତିର କଥା । ସେଦିନର ଗୀତା ଓ ଆଜିର ଗୀତା ମଧ୍ୟରେ ଦୁଇଟି ବସନ୍ତ ବିତି ଯାଇଥିଲେ ହେଁ ଗୀତାର ସୌନ୍ଦର୍ଯ୍ୟ ଭିତରେ କୌଣସି ପାର୍ଥକ୍ୟ ସୂଚିତ ହେଉନି । ଜଣାପଡୁନି, ଇଏ ସେଦିନର ଗୀତା ନୁହେଁ ବୋଲି ।

ମନେ ମନେ ଭାବୁଥାନ୍ତି, "ଏହି ଛଅମାସ ଧରି ଗୀତାକୁ ସେ କେତେ କଷ୍ଟ ଦେଇ ନାହାନ୍ତି ସତେ । ଗୀତା ତାଙ୍କୁ ତ କେବେ ହତାଦର କରି ନାହିଁ, ଶିଳ୍ପ କାରଖାନାର ଉନ୍ନତି ପାଇଁ ସେ ବହୁ ଭଲ ପରାମର୍ଶ ଦେଇଛି । ନିଜ ଅଫିସରମାନଙ୍କ ଭୁଲଭଟକା, ଗଲତି, ତାଙ୍କ ଦୃଷ୍ଟିକୁ ଆଣିପାରିଛି । ପ୍ରତ୍ୟେକ

କାରଖାନାର ଆୟ, ବ୍ୟୟ, ହିସାବକିତାବ ସେ ଟିକିନିଖି ପରୀକ୍ଷା କରି ଅଫିସରମାନଙ୍କ ବହୁ ଗଳତି, ଭୁଲଭଟକା ଧରି ପାରିଛି, ଯାହାକି ମୁଁ ପାରି ନ ଥାନ୍ତି । ଏହା ସ୍ପଷ୍ଟ ଯେ ଗୀତା ମୋ ଅପେକ୍ଷା ଯଥେଷ୍ଟ ଦକ୍ଷ । ସେ ଶିଳ୍ପ କାରଖାନାକୁ ମୋ ଅପେକ୍ଷା ଅଧିକ ଭଲ ଚଳାଇ ପାରିବ । ଏତେବଡ଼ ଦକ୍ଷ ସ୍ତ୍ରୀ ଥାଉ ଥାଉ ସେ ତାଙ୍କୁ ଏତେ ଅବହେଳା କରି ଆସିଲେ କାହିଁକି ଏତେଦିନ ଧରି ? ସ୍ତ୍ରୀଙ୍କ ସୁପରାମର୍ଶକୁ ନିଜ ସ୍ୱାଧୀନ ପରିଚାଳନା ଉପରେ ହସ୍ତକ୍ଷେପ ବୋଲି ଭୁଲ ବୁଝି ନାନା କଟୁକ୍ତିଦ୍ୱାରା ଗୀତାର ମନକୁ ଭାଙ୍ଗିଦେବା ତାଙ୍କର କ'ଣ ଏକ ଅକ୍ଷମଣୀୟ ଅପରାଧ ନୁହେଁ ? ଗୀତା ତାଙ୍କୁ ଛାଡ଼ପତ୍ର ଦେବାକୁ ରାଜି ହୋଇଥିଲେହେଁ ସେ ତ କେବେ ତାଙ୍କୁ ଭଲ ପାଇବାରେ ଊଣା କରି ନ ଥିଲା । ତାଙ୍କର ଭୁଲ ଧାରଣା ଯେ ଗୀତା ତାଙ୍କ ବାପଦାଦାଙ୍କ ଶିଳ୍ପନୀତି ତାଙ୍କ ଉପରେ ଜାହିର କରିବାକୁ ଚାହୁଁଛି, ଯାହାପାଇଁ କି ସେ ଗୀତା ଉପରେ ଅସନ୍ତୋଷ ହୋଇ ତା ପ୍ରତି କଠୋର ବ୍ୟବହାର କରିଗଲେ । କିନ୍ତୁ ପ୍ରକୃତରେ ଗୀତାର ମନ ଭିତରେ ସେପରି କିଛି ତ ନ ଥିଲା । ସେ ତାଙ୍କ ପ୍ରତି କେବେ ହତାଦର ଦେଖାଇନି କି ତାଙ୍କ ଶିଳ୍ପ ପରିଚାଳନାକୁ ବେଖାତିର କରିନି । ଏହା ତାଙ୍କର ଏକ ବିରାଟ ଭୁଲ ବୁଝାମଣା । ଏହି ଭୁଲ ବୁଝାମଣା ପାଇଁ ସେ ବିଗତ ଛଅମାସ ଧରି ଗୀତାଠାରୁ ଦୂରେଇଯାଇ କେତେ କଷ୍ଟ ପାଉ ନ ଥିଲେ ସତେ ? ଆଜି ତାଙ୍କର ବଡ଼ ସୌଭାଗ୍ୟ ସେ ଗୀତା ଭଳି ଏକ ସୁଯୋଗ୍ୟା ସ୍ତ୍ରୀକୁ ଫେରି ପାଇଛନ୍ତି । ଉଭୟଙ୍କର ଏହି ମନୋମାଳିନ୍ୟ ପାଇଁ ସେ ପୂରାମାତ୍ରାରେ ଦାୟୀ । ହଁ, ହଁ, ସେ ନିଜେ ପୂରାମାତ୍ରାରେ ଦାୟୀ । ବିଚାରୀଟିକୁ ସେ କେତେ କଷ୍ଟ ଦେଇ ନାହାନ୍ତି, ଏହି କେତେଦିନ ଧରି । ଏଭଳି ଭାବୁ ଭାବୁ ତାଙ୍କର ଗୀତା ପ୍ରତି ଏତେ ସୋହାଗ ବଢ଼ିଗଲା, ଯେ ସେ ନିଜ ମୁହଁକୁ ଗୀତାର ମୁଦ୍ରିତ ଆନନ ପାଖକୁ ଧୀରେ ଧୀରେ ନେଇ ଗୀତାର ସେହି ଆରକ୍ତ କପୋଳ ଉପରେ ଆଙ୍କିଦେଲେ ଏକ ମଧୁର ଚୁମ୍ବନର ସୁନେଲି ରେଖା । ଏହି ମଧୁର ଚୁମ୍ବନର ସ୍ପର୍ଶରେ ଗୀତାର ନିଦ ହଠାତ୍ ଭାଜିଗଲା । ସେ ଉଠିପଡ଼ି କହିଲା, ''ଦ୍ୱିତୀୟ ମଧୁରାତ୍ରି ବୋଧହୁଏ ବିତିଯାଇନି ଏପର୍ଯ୍ୟନ୍ତ ?'' ତା ନ ହୋଇଥିଲେ, ଏ ଦିନ ଦି'ପହରେ...

''ତୁମେ ମୋତେ ଏଭଳି ଏକ ଚୁମ୍ବନର ଉପହାର ଦେଇ ନ ଥାନ୍ତ । ଏଇଥା ନା ଆଉ କିଛି ।''

''ଉପରଓଳି ପରା କ'ଣ 'ଆଜି ତୁମର ପ୍ରୋଗ୍ରାମ୍ ଥିଲା ? କାହିଁ ବାହାରିବାର ଉପକ୍ରମ ତ ନାହିଁ ଦେଖୁଛି । କ'ଣ ହେଲା କି ?''

"ନାଇଁ, ଗୀତା ମୁଁ ବଡ଼ କ୍ଲାନ୍ତ ହୋଇପଡ଼ିଛି । ସନ୍ଧ୍ୟାବେଳେ ଆଜି ପୁଣି ଉଦ୍‌ଘାଟନ ଉତ୍ସବ ଅଛି । ଆଉ କୁଆଡ଼େ ବର୍ତ୍ତମାନ ଯିବାନି । ମୁଁ ଟିକିଏ ଆଜି ବିଶ୍ରାମ କରେ ।" ଏତକ କହି ସେ ଗୀତାଦେବୀଙ୍କ କୋଳରେ ମୁଣ୍ଡ ଦେଇ ପଲଙ୍କ ଉପରେ ଲମ୍ବ ହୋଇ ଶୋଇଗଲେ ।

× × × × ×

ଗୀତାଦେବୀ ଓ ଦେବବାବୁ ତାଲହ୍ରଦର କୂଳଠାରେ ପହଞ୍ଚିଲାବେଳକୁ ଲୋକାରଣ୍ୟ । କୂଳ ନିକଟରେ ରହିଛି ଏକ ବିରାଟ ଅତ୍ୟାଧୁନିକ ବୋଟ୍ ହାଉସ୍ । ଅସଂଖ୍ୟ ପ୍ରକାର ଆଲୋକବତିରେ ବୋଟ୍ ହାଉସ୍‌ଟି ହସି ଉଠୁଛି । ବୋଟ୍ ହାଉସ୍‌ର ଭିନ୍ନ ଭିନ୍ନ କକ୍ଷ ବିଭିନ୍ନ ବର୍ଣ୍ଣର ଆଲୋକମାଳାରେ ଉଦ୍‌ଭାସିତ । ନିକଟରେ ଆଉ କୌଣସି ବୋଟ୍ ହାଉସ୍ ନାହିଁ । ବୋଟ୍ ହାଉସ୍‌ଗୁଡ଼ିକ ଶତାଧିକ ସଂଖ୍ୟାରେ ହ୍ରଦର ଆରପାଖରେ ଅପେକ୍ଷା କରି ରହିଛନ୍ତି, ଏହି ନବାଗତ ବୋଟ୍ ହାଉସ୍‌ଟିକୁ ସ୍ୱାଗତ କରିବା ପାଇଁ ।

ଗୀତାଦେବୀ ଓ ଦେବବାବୁ ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ଦେବବାବୁଙ୍କ ସାଙ୍ଗ ଅର୍ଜୁନ ସିଂହ ସେଠି ପହଞ୍ଚିଗଲେ । ସେ ହେଉଛନ୍ତି ଏହି ଅତ୍ୟାଧୁନିକ ନୂଆ ହୋଇ ଆରମ୍ଭ ହେଉଥିବା ବୋଟ୍ ହାଉସ୍‌ର ମାଲିକ । ଗୀତାଦେବୀଙ୍କୁ ଗାଡ଼ିରୁ ଓହ୍ଲାଇବା ଦେଖି କହିଲେ, "ମୋତେ କ୍ଷମା କରିବେ ଆଜ୍ଞା, ଆପଣମାନଙ୍କୁ ମୁଁ ଆଜି ବହୁତ କଷ୍ଟ ଦେଲି ।

ଦେବବାବୁ ହସି ହସି କହିଲେ, "ନାଇଁ, ନାଇଁ, ଏଥିରେ କଷ୍ଟ ହେବାର କ'ଣ ଅଛି ? ଆମର ବଡ଼ ସୌଭାଗ୍ୟ ଆମେ ଆପଣଙ୍କର ଏତେ ବଡ଼ ଉଦ୍‌ଘାଟନ ଉତ୍ସବରେ ଯୋଗଦେଇ ପାରିଲୁ । ବାଃ, ଆପଣଙ୍କ ବୋଟ୍ ହାଉସ୍ ତ ବଡ଼ ଚମତ୍କାର ଦିଶୁଛି । ବାହାରୁ ଯାହା ଜଣାଯାଉଛି, ଏହାର ଭିତର ମଧ୍ୟ ଆହୁରି ଚମତ୍କାର ହୋଇଥିବ ?"

"ଆପଣମାନଙ୍କ ପାଦ ଆଜି ଏଠି ପଡ଼ିଲା, ଏହା ମୋର ବଡ଼ ସୌଭାଗ୍ୟ । ଆପଣମାନଙ୍କ ଭଳି ଲୋକଙ୍କୁ ସହଜରେ ପାଇବା କ'ଣ ଆମ ପକ୍ଷରେ ସମ୍ଭବ ?" ଏତକ କହି ଅର୍ଜୁନ ସିଂହ, ଦେବବାବୁ ଓ ଗୀତାଦେବୀଙ୍କୁ ସଭାସ୍ଥଳକୁ ପାଛୋଟି ନେଲେ । ସେତେବେଳକୁ ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସି ସେଠି ଆସନ ଗ୍ରହଣ କରି ସାରିଲେଣି ।

ସଭାସ୍ଥଳରେ ପହଞ୍ଚିବାବେଳକୁ ସ୍ଥାନଟି ଦର୍ଶକ ତଥା ନିମନ୍ତ୍ରିତ ବ୍ୟକ୍ତିଙ୍କ ଦ୍ୱାରା ଭରପୂର । ସଭାରେ ବସୁ ନ ବସୁଣୁ ଗୀତାଦେବୀଙ୍କୁ ଅନୁରୋଧ କରାଗଲା ନାଲି ରିବନ କାଟି ବୋଟ୍ ହାଉସ୍‌ର ଉଦ୍‌ଘାଟନ କରିବା ପାଇଁ । ସାହାନାଇ

ବାଦନରେ ସଭାମଞ୍ଚ କମ୍ପି ଉଠିଲା । ଗୀତାଦେବୀ ନାଲି ରିବନ କାଟି ସାରିଲାବେଳକୁ ତାଙ୍କ ଉପରେ ପୁଷ୍ପବୃଷ୍ଟି ହେଲା । ସେମାନଙ୍କ ସଙ୍ଗେ ନିମନ୍ତ୍ରିତ ବ୍ୟକ୍ତି ଓ ବିଶିଷ୍ଟ ଲୋକମାନଙ୍କୁ ବୋଟ୍ ହାଉସ୍ ଭିତରକୁ ନିଆଗଲା । ବୋଟ୍ ହାଉସ୍‌ର ବିରାଟ ଡ୍ରଇଂରୁମ୍‌ରେ ସମସ୍ତେ ସୁସଜ୍ଜିତ ବହୁମୂଲ୍ୟ କାଶ୍ମିରୀ ଗାଲିଚା ଉପରେ ବସିଲେ । ଗୀତାଦେବୀ ଓ ଦେବବାବୁଙ୍କ ପାଇଁ ସୁସଜ୍ଜିତ ନିର୍ଦ୍ଦିଷ୍ଟ ସ୍ଥାନ ରଖାଯାଇଥିଲା । ସେମାନେ ସମସ୍ତେ ବସି ସାରିଲାପରେ ଆରମ୍ଭ ହେଲା ନର୍ତ୍ତକୀମାନଙ୍କ ନୃତ୍ୟ ପରିବେଷଣ । ନର୍ତ୍ତକୀମାନେ କୌଣସି ନାଟ୍ୟ ବ୍ୟବସାୟୀ ସଂସ୍ଥାର ସଭ୍ୟା ନୁହନ୍ତି, ସେମାନେ ନିକଟସ୍ଥ ବିଦ୍ୟାନିଧି ନୃତ୍ୟ ନିକେତନର ନୃତ୍ୟ ଶିକ୍ଷାର୍ଥିନୀ । ବାହାର ଦର୍ଶକମାନଙ୍କୁ ନୃତ୍ୟଦେଖାରୁ ବଞ୍ଚିତ ନ କରିବା ପାଇଁ ସଭାମଣ୍ଡପରେ କ୍ଲୋଜଡ୍ ସାର୍କିଟ୍ ଟେଲିଭିଜନ ସାହାଯ୍ୟରେ ଭିତରର ନୃତ୍ୟ ସଭାସ୍ଥଳରେ ବସିଥିବା ଦର୍ଶକମାନଙ୍କୁ ପ୍ରଦର୍ଶିତ ହେଉଥାଏ । ସମସ୍ତଙ୍କୁ ତ ବୋଟ୍ ହାଉସ୍ ଭିତରକୁ ନେବା ସମ୍ଭବ ନୁହେଁ । ତେଣୁ ସେମାନଙ୍କ ଉପଭୋଗ ପାଇଁ ମିଷ୍ଟର ଅର୍ଜୁନ ସିଂହ ଏହି ବ୍ୟବସ୍ଥା କରିଥାନ୍ତି । ନାଚ, ଗୀତ, ମେଲୋଡ଼ି ଆଦିର ଗୋଟିକ ପରେ ଗୋଟିଏ ବ୍ୟବସ୍ଥା ସେ ଦିନର ସନ୍ଧ୍ୟାକୁ ଆନନ୍ଦ ମୁଖରିତ କରି ତୋଳିଥାଏ ।

ନାଚ, ଗୀତ ଆଦି ସରୁ ସରୁ ରାତି ନଅଟା । ରାତି ନଅଟା ପରେ ବୋଟ୍ ହାଉସ୍‌ର ଛାତ ଉପରେ ରାତ୍ରିଭୋଜନର ବ୍ୟବସ୍ଥା । ଶ୍ରୀନଗରର ମୋଗଲ ଉଦ୍ୟାନ ଭଳି ରାତ୍ରିଭୋଜନର ବ୍ୟବସ୍ଥା ପୂରାପୂରି ମୋଗଲ ଷ୍ଟାଇଲରେ କରାହୋଇଥାଏ । ଖାଦ୍ୟପେୟର ସୁବ୍ୟବସ୍ଥା ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ବେଶ୍ ଆନନ୍ଦିତ କରିଥାଏ । ସମସ୍ତେ ଖାଇପିଇ ବାହାରିଲାବେଳକୁ ଗୀତାଦେବୀ ଓ ଦେବବାବୁଙ୍କୁ ଅନୁରୋଧ, ସେମାନେ ସେଠାରେ ଦୁଇ ଚାରିଦିନ ଅବସ୍ଥାନ କରିବା ପାଇଁ । ଦେବବାବୁ ତ ଆଗରୁ ସମ୍ମତି ଦେଇଥିଲେ, ବୋଟ୍ ହାଉସ୍‌ର ସାଜସଜ୍ଜା ଦେଖି ଗୀତାଦେବୀ ଏତେ ବିହ୍ୱଳିତ ହୋଇ ପଡ଼ିଥାନ୍ତି ଯେ ସେ ସ୍ଥାନ ଛାଡ଼ି ଯିବାକୁ ତାଙ୍କର ମନ ହେଉ ନ ଥାଏ । ଅତିଥିମାନେ ରାତ୍ରିଭୋଜନ ପରେ ବିଦାୟ ନେଲାରୁ ଅର୍ଜୁନ ସିଂହଙ୍କ ଆଦେଶରେ ବୋଟ୍ ହାଉସ୍‌କୁ କୂଳରୁ ହ୍ରଦ ମଧ୍ୟକୁ ନିଆଗଲା । ହ୍ରଦ ମଧ୍ୟରେ ଥିବା ନେହେରୁ ଉଦ୍ୟାନଠାରୁ କିଛି ଦୂରରେ ହ୍ରଦ ଭିତରେ ରଖି ଦିଆଗଲା । ବୋଟ୍ ହାଉସ୍‌ର ମାଲିକ ଅର୍ଜୁନ ସିଂହ ବୋଟ୍ ହାଉସ୍‌ର ଶୟନକକ୍ଷ, ଟଏଲେଟ୍, ରୋଷଘର ଆଦି ବୁଲାଇ ଦେବବାବୁ ଓ ଗୀତାଦେବୀଙ୍କୁ ପରିଚିତ କରାଇଦେଲେ । ସବୁଆଡ଼େ ବହୁମୂଲ୍ୟ କାଶ୍ମୀର ଗାଲିଚା ପଡ଼ିବା ତଥା ଘରଗୁଡ଼ିକର କାନ୍ଥରେ ଚିତ୍ରକଳାର ଅପୂର୍ବ ପ୍ରୟୋଗ ଦେଖି ସ୍ୱାମୀ-ସ୍ତ୍ରୀ ଦୁହେଁ ମୋହିତ ହୋଇ ପଡ଼ିଥାନ୍ତି । ଦେବବାବୁ ଓ ଗୀତାଦେବୀଙ୍କର ଯତ୍ନ ନେବା

ପାଇଁ ଚାକର ଚାକରାଣୀମାନଙ୍କୁ ମୁତୟନ କରି ଓ ସେମାନଙ୍କୁ ନାନାପ୍ରକାର ଉପଦେଶ ଦେଇ ମିଷ୍ଟର ଅର୍ଜୁନ ସିଂହ ଦେବବାବୁ ଓ ଗୀତାଦେବୀଙ୍କଠାରୁ ବିଦାୟ ନେଲେ । ଅର୍ଜୁନ ସିଂହ ବିଦା ହେବାପୂର୍ବରୁ ପ୍ରତିଦିନ ସନ୍ଧ୍ୟାରେ ସେଠି ନୃତ୍ୟଗୀତର ଆସର କଥା ଓ ଅନ୍ୟାନ୍ୟ ବନ୍ଦୋବସ୍ତ କଥା କହି ଦେଇଗଲେ ।

ସେହି ବୋଟ୍ ହାଉସ୍‌ରେ ରହି ଗୀତାଦେବୀ ଓ ଦେବବାବୁ କାଶ୍ମୀରର ଯେତେ ପ୍ରକାର ଦର୍ଶନୀୟ ସ୍ଥାନ ଥିଲା, ସେସବୁ ଗୋଟିକ ପରେ ଗୋଟିଏ ବୁଲି ଦେଖିଲେ । ଡାଲହ୍ରଦଠାରୁ ଅଳ୍ପଦୂରରେ ଥିବା ନାଗିନ୍ ହ୍ରଦ, ଡାଲହ୍ରଦ କୂଳରେ ଥିବା ପାହାଡ଼ ଉପରେ ଶଙ୍କରାଚାର୍ଯ୍ୟ ମନ୍ଦିର, ପହେଲଗାଁ, ଗୁଲମାର୍ଗ, ସୋନମାର୍ଗ, କୁକରନାଗ୍, ଭେରିନାଗ୍ ଆଦି ବହୁ ଦର୍ଶନୀୟ ସ୍ଥାନ ଗୋଟାକ ପରେ ଗୋଟାଏ ଦେଖି ଚାଲିଲେ । ଗୁଲମାର୍ଗ ଓ ପହେଲଗାଁର ଦୃଶ୍ୟ ଗୀତାଦେବୀଙ୍କୁ ଏତେ ମୁଗ୍ଧ କଲା ଯେ ସେ ସେହି ସ୍ଥାନର ସୌନ୍ଦର୍ଯ୍ୟ କେବେ ଭୁଲିପାରିବେ ନାହିଁ ବୋଲି କହିଲେ । ଚାରିଆଡ଼େ ଉତ୍ତୁଙ୍ଗ ପାହାଡ଼ରାଜି, ପାହାଡ଼ ଉପରେ ବରଫରାଶି ପାହାଡ଼ର ଶୁଭ୍ର ମୁକୁଟ ଭଳି ପ୍ରତୀୟମାନ ହେଉଥାଏ । ଭେରିନାଗର ସେହି ଦ୍ରୁତଗାମୀ ଝରଣା, ଯେଉଁ ଝରଣାରୁ କାଶ୍ମୀର ଉପତ୍ୟକାର ସର୍ବପ୍ରଧାନ ନଦୀ ଝେଲମର ଉତ୍ପତ୍ତି ହୋଇଛି, ଦେଖିଲେ ମନ ଆନନ୍ଦରେ ବିଭୋର ହୋଇଯାଏ । ପ୍ରକୃତିରାଣୀ କି ଅପରୂପ ସୌନ୍ଦର୍ଯ୍ୟଭଣ୍ଡାର ନେଇ ସେଠି ଠିଆ ନ ହୋଇଛି ସତେ ! ଏହି ଧରାପୃଷ୍ଠରେ ଏତେ ସୁନ୍ଦର ସୁନ୍ଦର ସ୍ଥାନ ଯେ ଥାଇପାରେ, ଗୀତାଦେବୀ କେବେ କଳ୍ପନା କରି ନ ଥିଲେ । ଦିନସାରା ଏହିସବୁ ଦର୍ଶନୀୟ ସ୍ଥାନ ଦେଖି ବୋଟ୍ ହାଉସ୍‌କୁ ଫେରି ଆସିଲାବେଳକୁ ବୋଟ୍ ହାଉସ୍‌ରେ ନର୍ତ୍ତକୀମାନଙ୍କର ସାନ୍ଧ୍ୟକାଳୀନ ନାଚ ଗାନ ମନକୁ ଆନନ୍ଦରେ କେତେ ଯେ ବିଭୋର କରି ପକାଏ, ତା'ର ବର୍ଣ୍ଣନା ସହଜରେ କରି ହେବନି । ପ୍ରତିଦିନ ସନ୍ଧ୍ୟାରେ ସୁନ୍ଦରୀ ନର୍ତ୍ତକୀମାନଙ୍କର ଅପରୂପ ନୃତ୍ୟର ଝଙ୍କାର ଡାଲହ୍ରଦର ସେହି ଏକାଞ୍ଚନ ସ୍ଥାନଟିକୁ ମୁଖରିତ କରି ପକାଏ । ଅସଂଖ୍ୟ ପ୍ରକାର ଆଲୋକସଜ୍ଜା ଭିତରେ ନର୍ତ୍ତକୀମାନଙ୍କର ମନମତାଣିଆ ନାଚ ଓ ଗୀତ ସେମାନଙ୍କୁ ଯେ କେଉଁ କୁହୁକପୁରୀକୁ ଘେନିଯାଏ ଗୀତାଦେବୀ କଳ୍ପନା କରିପାରନ୍ତିନି । ସେ ବେଳେବେଳେ ଭାବନ୍ତି, ଏତେ ସୁନ୍ଦର ବୋଟ୍ ହାଉସ୍‌ରେ ଏଭଳି ଆନନ୍ଦ ଉପଭୋଗର ବ୍ୟବସ୍ଥା କାଶ୍ମୀର ଭ୍ରମଣରେ ଆସୁଥିବା ଲୋକମାନଙ୍କୁ ଯେ କି ଆନନ୍ଦ ଦେଉଥିବ, କଳନା କରି ହେବନି । କାଶ୍ମୀର ରମଣୀମାନେ ଏକେ ତ ସୁନ୍ଦରୀ, ସେଥିରେ ନୃତ୍ୟ ପାଇଁ ଚାକଚକ୍ୟମୟ ପୋଷାକରେ ସେମାନେ ଦିଶୁଥାନ୍ତି ସ୍ୱର୍ଗର ଅପ୍‌ସରା ଭଳି, ସ୍ୱର୍ଗରୁ ଓହ୍ଲାଇ ଆସିଛନ୍ତି, ଏହି ଭୂସ୍ୱର୍ଗ କାଶ୍ମୀରକୁ ଦର୍ଶକମାନଙ୍କୁ ସ୍ୱର୍ଗସୁଖର ସ୍ୱାଦ ଦେବା ପାଇଁ ।

କାଶ୍ମୀରରେ ରହିବା ଶେଷ ଦିନ । ତହିଁ ପରଦିନ ସକାଳ ଫ୍ଲାଇଟ୍‌ରେ ସେମାନେ କାଶ୍ମୀର ଛାଡ଼ିବେ ଦିଲ୍ଲୀ ଅଭିମୁଖେ । ଦିଲ୍ଲୀରୁ ବୋମ୍ବେ ।

ସେଦିନ ସନ୍ଧ୍ୟାବେଳେ ବୋଟ୍ ହାଉସ୍‌ର ଡ୍ରଇଂରୁମ୍‌ରେ ଚା' ଖାଉ ଖାଉ ଦେବବାବୁ ପଚାରିଲେ, ''ତୁମର କାଶ୍ମୀର ଦେଖା ପୂରା ହେଲା ତ ଗୀତା ? ନା, ଆଉକିଛି ଦେଖିବାର ବାସନା ବାକି ରହିଗଲା ।'' ଆମେ କାଲି ସକାଳୁ ଏଠୁ ବିଦା ହୋଇଯିବା ତ ?

''ନା, ନା, ଆଉ ବେଶିଦିନ ରହିବା ଉଚିତ ନୁହେଁ । ତେଣେ ତୁମକୁ ଅନ୍ୟମାନେ ଅନାଇ ବସିଥିବେ । ଶିଳ୍ପନଗରୀରୁ ଯେତେଦିନ ଅନୁପସ୍ଥିତ ରହିବା କଥା ଥିଲା, ତା'ଠାରୁ ଅଧିକ ରହିଲେ ଖରାପ ହେବ । ଯେତିକି କାଶ୍ମୀର ଦେଖା ହେଲା, ସେତିକି ଥାଉ । ପରେ ଆଉ କେବେ ଆସିଲେ ଚଳିବ । ଶୀତଦିନ ଆସିଲେ ବରଫାବୃତ କାଶ୍ମୀର ଦେଖିବାର ସୁଯୋଗ ମିଳିବ । ବରଫରେ କେତେ ପ୍ରକାର ଖେଳ, ସ୍କିଇଙ୍ଗ୍, ସ୍କେଟିଙ୍ଗ୍ ଦେଖିବାକୁ ଭାରି ମଜା ଲାଗିବ । ଆମେରିକାରେ ସେସବୁ ଖେଳ ମୋତେ ଭାରି ଭଲ ଲାଗୁଥିଲା ।''

''ହେଉ, ହେଲା, ଆଉଥରେ ଆସିବା ଶୀତଦିନକୁ । ତୁମ ଆମେରିକା ଅନୁଭୂତିର ପୁନରାବୃତ୍ତି ନ ହେଲେ ସନ୍ତୋଷ ଆସୁନି ବୋଧେ ?''

## ଚାରି

''ଆଜି କୁଆଡ଼େ ବାହାରୁଛ ଶୁଣେ ? ଗତ ଦୁଇଦିନ ହେଲା ତୁମକୁ ପରା ଜ୍ୱର । କିଛି ଖାଇ ନାହଁ । ଦେହ ପୂରାପୂରି ଶୁଖିଲା ଦିଶୁଛି । ଏଥିରେ ବାହାରୁଛ କୁଆଡ଼େ ?''

''ମୁଁ କୁଆଡ଼େ ଯାଉନି ଗୀତା । ଆର ରୁମ୍‌କୁ ଯାଉଛି । ଗୁଡ଼ାଏ ଫାଇଲ ଜମା ହୋଇଯିବଣି । ସେଗୁଡ଼ିକୁ ତ ଡିସ୍‌ପୋଜ୍ କରିବାକୁ ପଡ଼ିବ । ଜ୍ୱର ହେଲା ବୋଲି ସେଗୁଡ଼ାକୁ ନ ଦେଖିଲେ କ'ଣ ଚଳିବ ? ତେବେ କାଲି ଅପେକ୍ଷା ଆଜି ଟିକିଏ ଭଲ ଲାଗୁଛି । ଯାଏଁ, କେତେଟା ଫାଇଲ ଦେଖି ଦିଏ ।''

''ନା, ଫାଇଲ ଦେଖା ଆଜି ହେବନି । ଡାକ୍ତର ମନା କରି ଯାଇଛନ୍ତି ତୁମକୁ ବିଛଣାରୁ ଉଠିବା ପାଇଁ । ତୁମେ ଆଜି ବିଛଣାରେ ଶୋଇ ରହ ।'' ଡାକ୍ତରଙ୍କ ଆଦେଶ ପୂରାପୂରି ବେଡ୍‌ରେଷ୍ଟ ।

"ଫାଇଲ ନ ଦେଖିଲେ କାରଖାନା ସବୁ ଅଚଳ ହୋଇଯିବ ଗୀତା । ଫାଇଲ ଉପରେ ମୋ ମତାମତ ନ ଦେଖିଲେ ସେମାନେ କ'ଣ କେବେ ଆଗେଇବେ ? ଭିନ୍ନ ଭିନ୍ନ ଫାଇଲରେ ମୋ ସିଦ୍ଧାନ୍ତ ନ ଜାଣିଲେ ସେମାନେ ଦ୍ୱନ୍ଦରେ ପଡ଼ିଯିବେ ଗୀତା ।"

"ଯାହାହେଲେ ବି, ତୁମେ ବିଛଣାରୁ ମୋଟେ ଉଠନି । ଦେହ ଆଉ ଟିକିଏ ଭଲ ହୋଇଯାଉ, ଉଠିବ । ତୁମର ବର୍ତ୍ତମାନ ପୂର୍ଣ୍ଣ ବିଶ୍ରାମ ଦରକାର । ବିଛଣାରେ ପୂରାପୂରି ଶୋଇ ନ ରହିଲେହେଁ ପୂର୍ଣ୍ଣ ବିଶ୍ରାମ ହୁଏନି । ଡାକ୍ତର ସକାଳେ ଗଲାବେଳେ ପରା କହି ଯାଇଥିଲେ ପୂର୍ଣ୍ଣ ବିଶ୍ରାମ ପାଇଁ ।"

"ହଁ, ଗୀତା, ହେଲେ ଜରୁରୀ ଫାଇଲ ନ ଦେଖିଲେ ସବୁ ଗୋଳମାଳ ହୋଇଯିବ ଯେ ?"

"ତୁମେ ଯଦି ଫାଇଲ ଦେଖିବାକୁ ଏଡ଼େ ବ୍ୟଗ୍ର, ବିଛଣାରେ ଶୋଇରୁହ, ମୁଁ ତୁମଠାକୁ ଜରୁରୀ ଫାଇଲ ସବୁ ମଗାଇ ଦେଉଛି । ଏହି ଔଷଧଟା ଖାଇ ଦେଇସାର, ତା'ପରେ ଫାଇଲ ଦେଖିବ ।"

ଗୀତାଦେବୀ ସ୍ୱାମୀଙ୍କୁ ଔଷଧ ଖୁଆଇ ସାରିଛନ୍ତି କି ନାହିଁ, ଚପରାସୀ ଆସି ଖବର ଦେଲା, "ମା, ସାହେବଙ୍କୁ ଦେଖା କରିବା ପାଇଁ ସିମେଣ୍ଟ କାରଖାନାର ମେନେଜର ଆସିଛନ୍ତି । ସେ ବାହାର ଡ୍ରଇଂରୁମ୍‌ରେ ଅପେକ୍ଷା କରିଛନ୍ତି ।"

କହିଦେ, "ସାହେବଙ୍କ ଦେହ ଭଲ ହୋଇନି ପରେ ଆସିବେ । ସାହେବ ତାଙ୍କୁ ବର୍ତ୍ତମାନ ଦେଖାଦେଇ ପାରିବେନି ।"

"ହାଁ, ହାଁ, ଏ କ'ଣ କହୁଛ ଗୀତା ? ସେ କ'ଣ ଏକ ଜରୁରୀ କାମରେ ଆସିଥିବେ । ହଠାତ୍ ଏମିତି କହି ଫେରାଇ ଦେଉଛ କାହିଁକି ? ଯଦି ଏହାଦ୍ୱାରା କିଛି କ୍ଷତି ହୁଏ, ଆମରି ତ କ୍ଷତି ହେବ ।"

ଏତକ କହୁ କହୁ ହଠାତ୍ ମୁଣ୍ଡ ଘୂରାଇଦେଲା । ଦେବବାବୁ ଯାହା ପଲଙ୍କ ଉପରେ ଉଠି ବସିଥିଲେ, ପୁଣି ଶୋଇ ପଡ଼ିବାକୁ ବାଧ୍ୟ ହେଲେ । ତାଙ୍କୁ ସାରା ଘରଟା ଭଉଁରି ଖେଳିଲାଭଳି ଦିଶିଲା ।

ଗୀତାଦେବୀ ତାଙ୍କ ପାଖକୁ ଦୌଡ଼ିଯାଇ ମୁଣ୍ଡ ଆଉଁଶି ଦେଉ ଦେଉ କହିଲେ, "ଡାକ୍ତର ମନାକରିବା ସତ୍ତ୍ୱେ ଏଭଳି ଅବାଧ୍ୟ ହେଲେ ଏମିତି କଷ୍ଟ ପାଇବାକୁ ପଡ଼େ । ଡାକ୍ତରଙ୍କ ଉପଦେଶକୁ ନ ମାନିବା ଭାରି ଖରାପ । ଏମିତି କି ଜରୁରୀ କାମ ଅଛି ଯେ ମେନେଜର ନିଜେ ତାହା କରି ନ ପାରି ତୁମଠାକୁ ଦୌଡ଼ି ଆସିଛନ୍ତି, ଯେତେବେଳେ ସେମାନେ ଜାଣିଛନ୍ତି, ତୁମ ଦେହ ଭଲ ନାହିଁ ।

ଏଭଳି ଅବସ୍ଥାରେ ତୁମେ କ'ଣ ପରାମର୍ଶ ଦେଇପାରିବ ? ପରେ କ'ଣ ପରାମର୍ଶ କଲେ ଚଳିବ ନାହିଁ ? ଆଗ ତୁମ ଦେହ ଟିକିଏ ଭଲ ହେଉ ।''

''ମା, ତେବେ ମେନେଜରଙ୍କୁ କ'ଣ ମନା କରିଦେବି ?' ପରେ ଆସିବା ପାଇଁ କହିବି ?''

''ହଁ, ସେଇଆ କହିଦେ ?'' ସ୍ୱାମୀଙ୍କ କପାଳରେ ହାତ ମାରୁ ମାରୁ ଗୀତାଦେବୀ କହିଲେ ।

କିଛି ସମୟ ପରେ ଚପରାସୀଟି ଫେରି ଆସି କହିଲା, ''ସାହେବଙ୍କ ଦେହ ଯଦି ଭଲ ନାହିଁ, ତେବେ ମେଡେମ୍‌ଙ୍କୁ ଦେଖାକଲେ ଚଳିବ । ସିମେଣ୍ଟ ଉତ୍ପାଦନ ନେଇ ଏକ ଜରୁରୀ କଥାବାର୍ତ୍ତା ଅଛି ।''

''ନା, ନା, ମୁଁ ଯାଇ ପାରିବିନି । ମନା କରିଦେ । କାରଖାନା ସମ୍ବନ୍ଧୀୟ କୌଣସି କଥାବାର୍ତ୍ତା ମୁଁ କରି ପାରିବିନି । କହିଦେ, ସାହେବଙ୍କ ଦେହ ଭଲ ହେଲେ ପରାମର୍ଶ ପାଇଁ ଆସିବେ ।''

''ମେନେଜରଙ୍କୁ ଏମିତି ଫେରାଇ ଦିଅନି ଗୀତା । ସେ ଅସୁବିଧାରେ ପଡ଼ି ନ ଥିଲେ ପରାମର୍ଶ ପାଇଁ ଆସି ନ ଥାନ୍ତେ । କିଛି ଗୋଟାଏ ଜରୁରୀ ବିଷୟ ହୋଇଥିବ ନିଶ୍ଚୟ । ନଚେତ୍ ସେ ସାକ୍ଷାତ ପାଇଁ ଏତେ ଜିଦ୍ ଧରନ୍ତେ କାହିଁକି ?'' ଯାଅ ଗୀତା, ଟିକିଏ ବୁଝି ଆସ, କ'ଣ ହୋଇଛି ।

''ମୋତେ ଆଉ ସେ ଝଞ୍ଜାଳରେ ପୂରାଅନି । ଥରେ ପଶି ମୁଁ ଯେଉଁ ହୀନସ୍ତା ହୋଇଛି, ତାହା ମୁଁ ଜାଣେ । ମୋ ଜୀବନରେ ଆଉ ଯେମିତି ସେପରି ନ ଘଟେ, ଏତିକି ମୋର ତୁମଠାରେ ମାଗୁଣି ।''

''ତୁମେ ଏମିତି ମାନ କରୁଛ କାହା ଉପରେ ଗୀତା ? ଆଜି ମୋର ଯଦି କିଛି ହୋଇଯାଏ, ସବୁ ଦାୟିତ୍ୱ ତ ତୁମକୁ ମୁଣ୍ଡାଇବାକୁ ପଡ଼ିବ ।''

''ଛି, ଛି, କ'ଣ କହି ପକାଉଛ ତୁମେ ?'' ପାଟିରେ ହାତ ଦେଉ ଦେଉ ଆଖି ଛଳଛଳ କରି କ୍ରନ୍ଦନସ୍ୱରରେ କହିଲେ ଗୀତାଦେବୀ, ''ରୋଗଶଯ୍ୟାରେ ପଡ଼ି ଏମିତି ଅମଙ୍ଗଳ କଥା କ'ଣ ତୁଣ୍ଡରେ ଆଣନ୍ତି ?''

''ତୁମେ ଯଦି ମେନେଜରଙ୍କ କଥା ଶୁଣିବାକୁ ଯାଇଥାନ୍ତ, ତେବେ ମୁଁ ସେଭଳି କାହିଁକି କହିଥାନ୍ତି କହିଲ ? ତୁମେ ମୋଠାରୁ ଏତେ ପାଖଛଡ଼ା ହେଲେ କ'ଣ ଚଳିବ ? ମୋ ଅନୁପସ୍ଥିତିରେ ତୁମେ ସିଦ୍ଧାନ୍ତ ନ ଦେଲେ ଏସବୁ ଶିଳ୍ପ କାରଖାନା ଚାଲିବ କେମିତି ? ଆମର ଆଉ କିଏ ଅଛି, ଏସବୁ ବୁଝିବା ପାଇଁ ? ଯାଅ ଗୀତା, ବୁଝି ଆସ, ମେନେଜର କ'ଣ କହିବାକୁ ଚାହୁଁଛନ୍ତି ।''

"ହେଉ, ମୁଁ ଯିବି ସିନା, ସିଦ୍ଧାନ୍ତ କିଛି ଦେଇ ପାରିବିନି । ତୁମକୁ ଆସି କହିବି, ସେ କ'ଣ ଚାହୁଁଛନ୍ତି । ତୁମେ ଯାହା ସିଦ୍ଧାନ୍ତ ନେବ, ମୁଁ ତାଙ୍କୁ ଜଣାଇ ଦେବି ।"

କିଛି ସମୟ ପରେ ଗୀତାଦେବୀ ଫେରି ଆସି କହିଲେ, "ମଧ୍ୟପ୍ରାଚ୍ୟରୁ ଯେଉଁ ସିମେଣ୍ଟ ଅର୍ଡ଼ର ଆସିଥିଲା, ତା'ର ମିଆଦ ପୂରିଯିବା ଉପରେ । ମିଆଦ ଭିତରେ ଯଦି ଅର୍ଡ଼ର ପୂରଣ କରା ନ ଯାଉଛି, ତେବେ ଆମକୁ ବୈଦେଶିକ ମୁଦ୍ରା ହରାଇବାକୁ ପଡ଼ିବ । ସେଥିସହିତ ଆମକୁ ମଧ୍ୟ ଜୋରିମାନା ଦେବାକୁ ପଡ଼ିବ । ସେମାନଙ୍କ ଅର୍ଡ଼ର ଅଛି ଦଶଲକ୍ଷ ଟନ୍ । ଆମର ବାର୍ଷିକ ଉତ୍ପାଦନ ମୋଟେ ବାରଲକ୍ଷ ଟନ୍ । ସେଥିରୁ ଲେଭି ସିମେଣ୍ଟ ବାଦ୍ ଯାଇ ବିଭିନ୍ନ ରାଜ୍ୟକୁ ପଠାପଠି ହୋଇଗଲେ ଆମ ହାତରେ ଆଉ ବେଶି ସିମେଣ୍ଟ ରହୁନି ? ଆମର ଉତ୍ପାଦନକୁ ଯଦି ଆହୁରି ବଢ଼ା ନ ଯାଏ, ତେବେ ମଧ୍ୟପ୍ରାଚ୍ୟ ଅର୍ଡର ରଖି ହେବନି । ଏଣେ ପୁଣି ଆମ ମଧ୍ୟପ୍ରଦେଶର ଚୂନଖଣି ସରିଯିବା ଉପରେ । ଆମେ କର୍ଣ୍ଣାଟକର ଯେଉଁ ଚୂନଖଣି ବାଛିଛୁ, ତାହା ସହିତ ଯଦି ଚୁକ୍ତି କରା ନ ଯାଉଛି, ତେବେ ଆମେ ଅସୁବିଧାରେ ପଡ଼ିଯିବା । ସେହି ଚୂନଖଣିରୁ ଚୂନ ଉତ୍ପାଦିତ ହେଲେ ଆମେ ମଧ୍ୟପ୍ରାଚ୍ୟ ଅର୍ଡ଼ରକୁ ଯୋଗାଇପାରିବା ।

"ମୋ'ଠାକୁ ସମସ୍ୟାଟାକୁ ନେଇ ଆସିଲ କଅଣ ? ସିଦ୍ଧାନ୍ତ ଦେଇ ଆସିଲନି । ମୋତେ ଆଉ ବିବ୍ରତ କରନି, ଗୀତା । ମୋ ମୁଣ୍ଡ ଭୟଙ୍କର ବିନ୍ଧୁଛି ।" ଏତକ କହି ଆରପାରିକୁ ମୁହଁ କରି ଶୋଇପଡ଼ିଲେ ଦେବବାବୁ ।

"ଏଥିରେ ମୁଁ କ'ଣ ସିଦ୍ଧାନ୍ତ ଦେବି ଯେ ମୋତେ କହୁଛ ? ତୁମ ସିମେଣ୍ଟ କାରଖାନା ବିଷୟରେ ମୁଁ କ'ଣ ଜାଣିଛି ଯେ ସିଦ୍ଧାନ୍ତ ଦେଇପାରିବି ।"

"ମୁଁ ଆଜି ନ ଥିଲେ କିଏ ସିଦ୍ଧାନ୍ତ ଦିଅନ୍ତା ? ତୁମେ ତ ଦିଅନ୍ତ ।"

"ମୁଁ ତୁମକୁ ହାତଯୋଡ଼ି କହୁଛି, ମୋତେ ଆଉ ସେ ଜଞ୍ଜାଳରେ ପୂରାଅନି । ଯେ ଗଙ୍ଗା ଗଲି, ସେ ଫଳ ପାଇଲି । ମୋତେ ଟିକିଏ ଦୟାକର, ଆଉ ଯେମିତି ଗଙ୍ଗା ଦର୍ଶନ ନ ହୁଏ ।"

"ହେଉ, ମୁଁ ଅସୁସ୍ଥ ଥିଲା ପର୍ଯ୍ୟନ୍ତ ଗଙ୍ଗା ଦର୍ଶନ କର । ମୁଁ ଭଲ ହେଇଗଲେ ପଛେ ଆଉ କରିବ ନାହିଁ । ଗଙ୍ଗା ହେଲା ଆମର ସବୁଠାରୁ ପବିତ୍ର ନଦୀ, ତାଙ୍କୁ ଏପରି ଅମାନ୍ୟ କରି କ'ଣ କୁହାଯାଏ ଗୀତା ?"

"ତୁମେ ତ ସବୁକଥା ଜାଣିଛ, ସିଦ୍ଧାନ୍ତ ଦେଇ ଦେଉନ । ମୁଁ ମେନେଜରଙ୍କୁ ଜଣାଇ ଦେବି ।"

''ମୋ ମଥା ଭୀଷଣ ବିନ୍ଧୁଛି ଗୀତା । ମୋ ମୁଣ୍ଡକୁ କିଛି ପଶୁନି । ମୁଁ କିଛି ଭାବିପାରୁନି କ'ଣ ସିଦ୍ଧାନ୍ତ ନେବାକୁ ପଡ଼ିବ । ମୋତେ ଆଉ ବ୍ୟସ୍ତ କରନି । ମୋ ଅନୁରୋଧ, ମେନେଜରଙ୍କ ସହ ପରାମର୍ଶ କରି, ଯାହା କରିବା କଥା ତାହା କହିଦିଅ । ପରେ ଫାଇଲରେ ସେ ସମ୍ବନ୍ଧରେ ଅର୍ଡର ଦେଇଦେବ ।''

''ମୁଁ ଜାଣିଛି, ତୁମେ ମୋତେ ଏହିଭଳି ହଇରାଣ କରିବ ।''

× × × × ×

ଯେଉଁଦିନ ମିଷ୍ଟର ଅଗ୍ରୱାଲ କ୍ରମାଗତ କ୍ଷତି ଯୋଗୁଁ ପଲିଏଷ୍ଟର କାରଖାନା, ସାଂଶ୍ଲେଷିକ ରଙ୍ଗ କାରଖାନା, ପି.ଭି.ସି. କାରଖାନାକୁ ବନ୍ଦ କରି ଦେବା ପାଇଁ ନିଷ୍ପତ୍ତି ନେଲେ, ସେଦିନ ଗୀତାଦେବୀ ନିଶ୍ଚିନ୍ତ ହୋଇ ବସି ରହି ପାରିଲେନି । କ୍ଷତି କାହିଁକି ହେଉଛି, କ୍ଷତି କେଉଁଠି ହେଉଛି, ସେ ଭଲ ଭାବରେ ଜାଣନ୍ତି । ଏହି କାରଖାନାଗୁଡ଼ିକର ଭବିଷ୍ୟତ ସମ୍ବନ୍ଧରେ ସେ କେତେଥର ସ୍ୱାମୀଙ୍କୁ ଚେତାଇ ଦେଇଛନ୍ତି । କିନ୍ତୁ ସ୍ୱାମୀ ତାଙ୍କୁ ଭୁଲ ବୁଝି ମୋଟେ ବିଶ୍ୱାସ କରୁ ନ ଥିଲେ । କିନ୍ତୁ ବାସ୍ତବରେ ଯେତେବେଳେ ଦେଖିଲେ ଆଉ ଚଳାଇ ହେବନି, ବନ୍ଦ କରିବାକୁ ବାଧ ହେଲେ । ସ୍ୱାମୀ ଯଦି ତାଙ୍କ କଥାରେ ବିଶ୍ୱାସ କରି ମୂଳରୁ ପଦକ୍ଷେପ ନେଇଥାନ୍ତେ, ତେବେ କାରଖାନାଗୁଡ଼ିକ ସଜଡ଼ା ଯାଇ ପାରିଥାନ୍ତା । ଗୀତାଦେବୀ ଦେଖିଲେ, ସେ ଯଦି ବର୍ତ୍ତମାନ କିଛି ନ କରୁଛନ୍ତି, ତେବେ କାରଖାନାଗୁଡ଼ାକ ବନ୍ଦ ହୋଇଯିବ । ଶିଳ୍ପପତିମାନଙ୍କ ମହଲରେ ସ୍ୱାମୀଙ୍କର ନିନ୍ଦା ଢେର୍ ବଢ଼ିଯିବ । ଲୋକେ ତାଙ୍କୁ ଏକ ଅପାରଗ ବ୍ୟକ୍ତି ବୋଲି କହି ସମାଲୋଚନା କରିବେ । ବାପା ଭାଇଙ୍କ ବ୍ୟଙ୍ଗାତ୍ମକ ଉକ୍ତି ନିଜକୁ ଆହୁରି ବାଧିବ ।

ଡାଇନିଂ ଟେବୁଲ ଉପରେ ଡିନର୍ ବାଢ଼ୁ ବାଢ଼ୁ ଗୀତାଦେବୀ କହିଲେ, ''ସେହିସବୁ କାରଖାନା ବନ୍ଦ କରିଦେବା କ'ଣ ତୁମର ନିର୍ଧାର୍ଯ୍ୟ ?''

''ହଁ, ଗୀତା, ଆଉ ଉପାୟ ନାହିଁ । ମୁଁ ଯଦି ମୂଳରୁ ତୁମ କଥାକୁ ବିଶ୍ୱାସ କରିଥାନ୍ତି, ମୋତେ ଆଜି ଏ ଅବସ୍ଥାରେ ପଡ଼ିବାକୁ ହୋଇ ନ ଥାନ୍ତା । ମୁଁ ତୁମକୁ ଅଯଥା ଭୁଲ ବୁଝି ତୁମ ମତକୁ ଉପେକ୍ଷା କଲି । ତା'ରି ପରିଣାମ ହେଉଛି ଇଏ ।''

''କାରଖାନା ବନ୍ଦ କରିଦେଲେ, ଶ୍ରମିକମାନଙ୍କୁ ଥଇଥାନ କରିବ କେମିତି ?''

''ଠିକାମାନଙ୍କୁ ବିଦା କରିଦେବାକୁ ପଡ଼ିବ । ମୁକରିରମାନଙ୍କୁ ଅନ୍ୟ କାରଖାନାରେ କାମ ଦେବାକୁ ପଡ଼ିବ । ଯେଉଁ ଅସାଧୁ ଓ ଦକ୍ଷତାହୀନ ଅଫିସର ଓ ଇଞ୍ଜିନିଅରମାନଙ୍କ କଥା କହୁଥିଲ, ସେମାନେ ମନକୁମନ ବିଦା ହୋଇଯିବେ ।''

"ତା' ଠିକ୍ ଯେ, ହେଲେ ଶିଳ୍ପପତି ମହଲରେ ତୁମର ଯେଉଁ ବଦନାମ ହେବ, ସେଆଡ଼କୁ ଟିକିଏ ଦୃଷ୍ଟି ଦେଇଛ ତ ?"

"ହେଲେ, ଆଉ କ'ଣ କରିପାରିବି କହିଲ ? ଏତେଗୁଡ଼ାଏ କାରଖାନାକୁ ଏତେଦିନ ଧରି କ୍ଷତିରେ ଚଳାଇବା ବୋକାମି ଛଡ଼ା ଅନ୍ୟ କିଛି ହେବନି ।"

"ଦେଖ, ଆମେ କାଶ୍ମୀରରୁ ଫେରିବାଦିନୁ ମନେ ମନେ ପ୍ରତିଜ୍ଞା କରିଥିଲି, ତୁମ କଳକାରଖାନା ସମ୍ବନ୍ଧରେ ଆଉ କେବେ ନ ଭାବିବି ବୋଲି । କାରଣ ସେହି କାରଖାନାରୁ ହିଁ ଆମ ଭିତରେ ଏତେ ଗୋଳମାଳ । ଭାବିଥିଲି, ସେହି କଳ କାରଖାନାଠାରୁ ଯେତେ ଦୂରରେ ରହିବି, ସେତେ ମୋର ମଙ୍ଗଳ । କିନ୍ତୁ ବର୍ତ୍ତମାନ ଦେଖୁଛି, ଚୁପ୍ ହୋଇ ରହି ହେବନି । ତୁମେ କାରଖାନାଗୁଡ଼ିକୁ ବନ୍ଦ କରି ଦିଅନି । ସେହି କାରଖାନା କେତୋଟିର ପରିଚାଳନା ଦାୟିତ୍ୱ ମୋତେ ହସ୍ତାନ୍ତର କରିଦିଅ । ମୁଁ ଦେଖେ, ମୁଁ ସେଗୁଡ଼ିକୁ ସଜାଡ଼ିପାରୁଛି କି କଅଣ । ମୁଁ ଜାଣିଛି, ଏହିସବୁ କ୍ଷତିର ମୂଳ କେଉଁଠି ? ଦେଖ, ମୁଁ ଏହାକୁ ଯେଉଁ ରୀତିରେ ଚଳାଇବି, ତୁମେ ସେଥିରେ ଯେମିତି ହସ୍ତକ୍ଷେପ ନ କର । ତେବେ ତୁମ ପରିଚାଳନା ନୀତିକୁ ମୁଁ ପୂରାପୂରି ପାଳନ କରିବି । ତୁମ ଶିଳ୍ପନୀତିକୁ ଆଖି ଆଗରେ ରଖି ମୁଁ ଏହି ରୁଗ୍ଣ ଶିଳ୍ପଗୁଡ଼ିକୁ ସଜାଡ଼ିବି । ଏହି ଚାରୋଟି କାରଖାନା ମୋ ଦାୟିତ୍ୱରେ ରହୁ । ବାକିଗୁଡ଼ିକ ତୁମ ଶାସନାଧୀନରେ । ମୁଁ ଏହି ରୁଗ୍ଣ ଶିଳ୍ପଗୁଡ଼ିକୁ କେମିତି ସଜାଡୁଛି ଦେଖ । ତୁମ ଶାସନସଂସ୍ଥା ପୂରାପୂରି ଅଲଗା ହୋଇଯାଉ । ତୁମେ ମୋ କାରଖାନା ପରିଚାଳନାରେ ହସ୍ତକ୍ଷେପ କରିବ ନାହିଁ କି ମୁଁ ତୁମ କାରଖାନା ପରିଚାଳନାରେ ମୁଣ୍ଡ ପୂରାଇବିନି ।"

"ମୋତେ ତୁମେ ବଞ୍ଚାଇଦେଲ ଗୀତା, ମୋତେ ତୁମେ ବଞ୍ଚାଇଦେଲ ।" ଚେୟାରରୁ ଉଠିପଡ଼ି ଗୀତାଦେବୀଙ୍କୁ କୁଣ୍ଢାଇ ପକାଇ କହିଲେ ଦେବବାବୁ । ଏହି ରୁଗ୍ଣ ଶିଳ୍ପ କେତୋଟିକୁ ବନ୍ଦ କରିଦେବାର ସିଦ୍ଧାନ୍ତ ନେଇ ମୁଁ ମନେ ମନେ କ'ଣ କମ୍ କଷ୍ଟ ପାଉଥିଲି ? ଗତ କେତେ ରାତି ହେଲା ମୁଁ ଟିକିଏ ନିଶ୍ଚିନ୍ତରେ କ'ଣ ଶୋଇ ପାରିଛି ? ମୋର ଏହି କେତେଦିନ ହେଲା ଯେଉଁ ମନସ୍ତାପ, ସେକଥା କହିଲେ ତୁମେ ବିଶ୍ୱାସ କରିବ ନାହିଁ । କାରଖାନା ବନ୍ଦ ହୋଇଗଲେ ମୋର କ'ଣ କମ୍ ଦୁର୍ନାମ ହେବ ? କେତେ ଶ୍ରମିକ, ଅଫିସର୍, ଇଞ୍ଜିନିଅର ବେକାର ହୋଇଯିବେ । ତୁମେ ମୋତେ ପ୍ରକୃତରେ ବଞ୍ଚାଇଦେଲ । ତୁମେ ଯାହା ପ୍ରସ୍ତାବ ଦେଉଛ, ମୁଁ ସେସବୁରେ ରାଜି । ଆଜିଠାରୁ ତୁମ ଅଫିସ୍ ମୋ ଅଫିସ୍‌ଠାରୁ ଅଲଗା ହୋଇଯିବ । ମୁଁ ଭୁଲରେ ସୁଦ୍ଧା ତୁମ ଶାସନ ପରିଚାଳନାରେ ହସ୍ତକ୍ଷେପ କରିବିନି ।

× × × × ×

ଇଣ୍ଟରକମ୍ ବାଜି ଉଠିଲା । ଆରପାଖରୁ ଲେଡ଼ି ଗିସେପ୍‌ସନିଷ୍ଟ କହି ଉଠିଲା, ''ସାର୍, ଶିକ୍ଷମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଆପଣଙ୍କୁ ସାକ୍ଷାତ କରିବାକୁ ଆସିଛନ୍ତି ।''

''କିଏ ? ଶିକ୍ଷମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ? କ'ଣ କିଛି ଜରୁରୀ ବିଷୟ ନେଇ ଆସିଛନ୍ତି ନା କ'ଣ ?'' ପଚାରିଲେ ଦେବବାବୁ ।

''ହଁ, ସାର୍ ।''

''ହେଉ, ତେବେ ତାଙ୍କୁ ସଙ୍ଗରେ ନେଇ ଆସ ।''

ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ରୁମ୍ ଭିତରକୁ ପଶୁ ପଶୁ କହିଲେ, ''ନମସ୍କାର, ମିଷ୍ଟର ଅଗ୍ରୱାଲ । ଆପଣଙ୍କ କାର୍ଯ୍ୟରେ ବାଧା ଦେଲି ନିଶ୍ଚୟ ।''

''ନାଇଁ, ନାଇଁ, ନମସ୍କାର, ଅନେକଦିନ ପରେ ଆପଣଙ୍କ ପାଦ ଏଠି ପଡ଼ିଲା ।''

''ଅନେକ ସମୟରେ ଭାବେ, ଆପଣଙ୍କ ଆଡ଼େ ବୁଲି ଆସିବା ପାଇଁ । ବେଳ କେଉଁଠି ହେଉଛି ଯେ ଆସିବି ? ଆଜି ମିନିଷ୍ଟରଙ୍କ ଏକ ଜରୁରୀ ଖବର ନେଇ ଆପଣଙ୍କ ସହ ସାକ୍ଷାତ କରିବା ପାଇଁ ଚାଲି ଆସିଲି ।''

''ଅତି ଭାଗ୍ୟ ଆମର, ମିଷ୍ଟର ସାକ୍‌ସେନା, ମିନିଷ୍ଟର ଆମକୁ ଯେ ମନେ ରଖିଛନ୍ତି, ସେଇ ଆମର ଯଥେଷ୍ଟ ।'' କୁହନ୍ତୁ, ଆପଣଙ୍କ କି ସେବାରେ ମୁଁ ଲାଗିପାରେ ?

''ଆପଣ ଜାଣିଛନ୍ତି କି କଥଣ ମୁଁ ଜାଣିନି ମିଷ୍ଟର ଅଗ୍ରୱାଲ, ମିନିଷ୍ଟର ତାଙ୍କ ଗୁଲବର୍ଗା ନିର୍ବାଚନ ମଣ୍ଡଳୀରେ ଗୋଟିଏ ମେଡ଼ିକେଲ କଲେଜ ବସାଇବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଏହା ଆମ ରାଜ୍ୟରେ ହେବ ସର୍ବପ୍ରଥମ ଘରୋଇ ପରିଚାଳିତ ମେଡ଼ିକେଲ କଲେଜ । ବର୍ତ୍ତମାନ ସେହି କଲେଜର କୋଠାବାଡ଼ି ତିଆରି ଚାଲିଛି । ଆସନ୍ତା ଜୁଲାଇ ମାସରେ ଏହି କଲେଜର ପାଠ ପଢ଼ାପଢ଼ି ଆରମ୍ଭ ହେବ । ଏଥିପାଇଁ ଅନ୍ୟୁନ ସାଢ଼େ ପାଞ୍ଚକୋଟି ଟଙ୍କା ଖରଚ ହେବ । ସେଥିପାଇଁ ସାରା ରାଜ୍ୟରୁ ଚାନ୍ଦା ସଂଗୃହୀତ ହେଉଛି । ଆପଣଙ୍କ ଉପରେ ଚାନ୍ଦା ଧାର୍ଯ୍ୟ ହୋଇଛି ପାଞ୍ଚଲକ୍ଷ ଟଙ୍କା । ଆପଣମାନଙ୍କଠାରୁ ଟଙ୍କା ନିଆହେଲେ ସିନା ତେଣେ କାର୍ଯ୍ୟ ଚାଲିବ । ଆଜି ସେଥିପାଇଁ ମୋର ଆପଣଙ୍କ ପାଖକୁ ଆଗମନ ।''

କହୁ କହୁ ଏକ କାଗଜ ଖୋଲି ବିଭିନ୍ନ ଚାନ୍ଦାଦାତାଙ୍କ ନାମ ଭିତରେ ମିଷ୍ଟର ଦେବକିଷନ ଅଗ୍ରୱାଲାଙ୍କ ନାମ ଦେଖାଇଦେଲେ । ''ଏଇ ଦେଖନ୍ତୁ, ଆପଣଙ୍କ ନାଁରେ କେତେ ଟଙ୍କା ପଡ଼ିଛି । ତା'ଛଡ଼ା ଘର ତିଆରି ପାଇଁ ଆପଣଙ୍କ ଉପରେ ସିମେଣ୍ଟ ଚାନ୍ଦା କୋଡ଼ିଏ ଟନ୍ ।''

"ଆମ ଉପରେ ଏତେ ଅଧିକ ଚାପ ପଡ଼ିଲେ ଆମେ ଉଧେଇବୁ କେମିତି କହିଲେ ?"

"ଆପଣ ଚିନ୍ତା କରନ୍ତୁନି ସାର୍ । ଏହି ଚାନ୍ଦା ପାଇଁ ଆପଣଙ୍କୁ ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ପ୍ରକାରର ସୁବିଧା ସୁଯୋଗ ଓ ରିହାତି ମିଳିବ । ତାଲିକାଟିକୁ ପଢ଼ୁ ନାହାନ୍ତି । ଅନ୍ୟମାନଙ୍କ ତୁଳନାରେ ଆପଣଙ୍କ ଉପରେ ଚାନ୍ଦା ପରିମାଣ କେତେ କମ୍ । ହେଇ ଦେଖନ୍ତୁ, ଶେଠ୍ ରଣଛୋଡ଼ ଲାଲ ଦେଉଛନ୍ତି ଷାଠିଏ ଲକ୍ଷ, ସୋରାବଜୀ ଦେଉଛନ୍ତି ପଇଁଚାଳିଶ ଲକ୍ଷ, ଶେଠ୍ ମାନେକ୍‌ଲାଲ ଦେଉଛନ୍ତି ପଞ୍ଚାବନ ଲକ୍ଷ, ହେଇ ଆପଣଙ୍କ ଶ୍ୱଶୁର ଦେଉଛନ୍ତି ଅଠେଇଶ ଲକ୍ଷ । ସେମାନେ ସବୁ ତ ବିନା ଆପତ୍ତିରେ ପୂରା କେଶ୍ ଧରାଇ ଦେଉଛନ୍ତି ।"

"ସେମାନେ ହେଲେ ବଡ଼ ବଡ଼ ଶିଳ୍ପପତି । ସେମାନଙ୍କର ଲାଭ ହେଉଛି ଅପର୍ଯ୍ୟାପ୍ତ । ସେମାନଙ୍କ ସହିତ ମୁଁ କ'ଣ କେବେ ତୁଳନୀୟ ହୋଇ ପାରିବି ଆଜ୍ଞା ? ସେମାନଙ୍କୁ ଏହି ଚାନ୍ଦା ଦେବାକୁ ବାଧିବନି । ସେମାନେ ତ ଏମିତି ସୁବିଧା ମିଳିଲେ ଆହୁରି ଅଧିକ ଚାନ୍ଦା ଦେବା ପାଇଁ ଆଗଭର ହୋଇ ବାହାରି ଆସିବେ । ଚାନ୍ଦା ଦେବେ ଯେତିକି, ତାର କେତେଗୁଣ ସୁବିଧା ପାଇବେ ଆପଣମାନଙ୍କଠାରୁ । ମୁଁ ତ ସେମାନଙ୍କ ଭଳି ବଡ଼ ନୁହେଁ, କି ସେଭଳି ଧନ୍ଦାରେ—"

"ହଁ, ଆଜ୍ଞା, ମୁଁ ବୁଝୁଛି । ଆପଣ ବଡ଼ ସଚ୍ଚା ବ୍ୟବସାୟୀ । ସେମାନଙ୍କ ଭଳି ଆପଣଙ୍କର ଦୋନମ୍ବରୀ କାରବାର ନାହିଁ । ଦୁଇ ତିନିଟା ଲେଖାଏଁ ଅସଲି ନକଲି ହିସାବ ଖାତା ନାହିଁ । ସେମାନଙ୍କ ପ୍ରକୃତ ଆୟ ଗୋଟିଏ, ସରକାରଙ୍କୁ ହିସାବ ଦେଲାବେଳକୁ ଆୟ ଅନ୍ୟ ପ୍ରକାରର । ଆୟକର ବିଭାଗଠାରୁ ବିକ୍ରୀକର ପର୍ଯ୍ୟନ୍ତ ସବୁଠାରେ ଜାଲ୍ ଜୁଆଚୋରି, ଦୋନମ୍ବରୀ କାରବାର । ଏହା କ'ଣ ମୁଁ ଜାଣେନି ନା ମନ୍ତ୍ରୀ ମହାଶୟ ଜାଣି ନାହାନ୍ତି । ସେଥିପାଇଁ ତ ଆମେ ସେମାନଙ୍କ ଦୁଆରକୁ ଥରକୁଥର ଆସୁ । ଆମ ଉଦ୍ଦେଶ୍ୟ ସେହି ଲାଭଗୁଡ଼ାକ ସେମାନେ ଏକା ମାରିନେବେ କାହିଁକି, ସେଥିରୁ ଦେଶବାସୀ କିଛି ଏହିଭଳି କାମ ଜରିଆରେ ପାଇ ଯାଆନ୍ତୁ । ସେମାନେ କିଏ ତେବେ ସରକାରଙ୍କୁ ଠକନ୍ତି, ସରକାର କ'ଣ ଜାଣନ୍ତିନି ? ସେମାନଙ୍କର ଟିକିନିଖି ଖବର ଆମ ପାଖରେ ଅଛି । କାହାର ଅସଲି ଆୟ କେତେ, ନକଲି ଆୟ କେତେ, ଆମକୁ କ'ଣ ଜଣା ନାହିଁ ? ଆମେ ଜାଣିଛୁ, ସାରା ରାଜ୍ୟରେ ଆପଣ ଗୋଟିଏ ଲୋକ, ଯା'ଙ୍କଠାରେ ଜାଲ୍ ଜୁଆଚୋରିର ନାମଗନ୍ଧ ନାହିଁ । ଆପଣଙ୍କ ଶ୍ରମିକ, ଅଫିସରମାନେ ଖୁବ୍ ଖୁସୀରେ ଥାନ୍ତି । ଆପଣ ଅତ୍ୟଧିକ ପରିମାଣରେ ଲାଭ ରଖି ଜିନିଷ ବଜାରକୁ ଛାଡ଼ନ୍ତିନି । ଆପଣ ନ୍ୟାୟତଃ ଯେତିକି ଲାଭ ପାଇବା କଥା, ସେତକ

ନେଇ ବ୍ୟବସାୟ କରନ୍ତି । ସେଥିପାଇଁ ଆପଣଙ୍କ କାରଖାନାରେ ଶ୍ରମିକ ଅଶାନ୍ତି ନାହିଁ । ତେବେ ମଝିରେ ମଝିରେ ଶିଳ୍ପ ମାଲିକମାନେ ସେମାନଙ୍କ ଟାଉଟରଙ୍କ ଜରିଆରେ ଆପଣଙ୍କ ଶିଳ୍ପରାଜ୍ୟରେ ଜାଣିଶୁଣି ଗୋଳମାଳ ଭିଆଇ ଯାହାକିଛି ଅଶାନ୍ତି ସୃଷ୍ଟି କରନ୍ତି । ଆପଣଙ୍କ ପ୍ରତି ସେମାନଙ୍କର ଅସୂୟାଭାବ ଏହାର ପ୍ରଧାନ କାରଣ । ଖାଲି ଶିଳ୍ପମନ୍ତ୍ରୀ କାହିଁକି, ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ସମସ୍ତେ ଏହା ଜାଣନ୍ତି । ସେଥିପାଇଁ ସବୁବେଳେ ସେମାନଙ୍କ ମୁହଁରେ ଆପଣଙ୍କ ପ୍ରଶଂସା । ଶିଳ୍ପମନ୍ତ୍ରୀ ସିନା ଆପଣଙ୍କ ନାଁରେ ଚାନ୍ଦା ପକାଇଛନ୍ତି ପାଞ୍ଚଲକ୍ଷ, କିନ୍ତୁ ମୋତେ କହିଛନ୍ତି, ତାଙ୍କୁ ବାଧ୍ୟ କରିବନି, ସେ ଯାହା ଦେବେ, ସେତିକି ନେଇ ଆସିବ । ସେ ଜାଣନ୍ତି ଏଭଳି କାମରେ ଆପଣ କାର୍ପଣ୍ୟ ନ ଦେଖାଇ ସ୍ୱତଃପ୍ରବୃତ୍ତ ହୋଇ ଦାନ କରିବାକୁ ଆଗ୍ରହ ଦେଖାନ୍ତି ।''

''ହେଉ, ଆପଣ ମୋ ନାଁରେ ପକାନ୍ତୁ ଦୁଇଲକ୍ଷ । ଏହାଠାରୁ ଅଧିକ ହୋଇ ପାରିବନି । ମନ୍ତ୍ରୀ ମହାଶୟଙ୍କୁ କହିଦେବେ ସେତିକିଦେଇ ମୁଁ ତାଙ୍କର ଏହି ବିରାଟ କାର୍ଯ୍ୟ ପାଇଁ ଶୁଭେଚ୍ଛା ଜଣାଉଛି । ସିମେଣ୍ଟ ପାଇଁ ଟ୍ରକ୍ ପଠାନ୍ତୁ, ଦେଖେ କେତେ ଦେଇପାରିବି ।''

''ହେଉ, ହେଲା, ଆପଣ ସ୍ୱତଃପ୍ରବୃତ୍ତ ହୋଇ ଯେତିକି ଦେବେ, ସେତିକି ଆମର ଯଥେଷ୍ଟ । ମନ୍ତ୍ରୀ ମଧ୍ୟ ମୋତେ ସେଇଆ କହିଥିଲେ ଆସିଲାବେଳେ । ଆପଣଙ୍କୁ ବାଧ୍ୟ ନ କରିବା ପାଇଁ ତାଙ୍କର କଡ଼ା ତାଗିଦ୍ । ସେ ଜାଣନ୍ତି ଭଲ କାମ ପାଇଁ ଆପଣ ଚାନ୍ଦା ଦେବାକୁ ମୋଟେ ପଛାନ୍ତି ନାହିଁ ।''

''ହେଉ, ଅଶେଷ ଧନ୍ୟବାଦ ।'' ଏତକକହି ଦେବବାବୁ ଡ୍ରୟରରୁ ଚେକ୍ ବହି ବାହାର କଲେ । ଚେକ୍ ଲେଖିବାକୁ ଯାଉଛନ୍ତି, ମିଷ୍ଟର ସାକ୍ସେନା କହିଲେ, ''ଆପଣ ଚେକ୍‌ରେ ଦେବେ ନା କଅଣ ? କାହା ନାଁରେ ଦେବେ । ଭାରି ଗୋଳମାଳିଆ କଥା ହେବ । ଆପଣ କେଶ୍‌ରେ ଦେଲେ ଭଲ ହୁଅନ୍ତା । ନଚେତ୍ ବିରୋଧୀ ଦଳ ଏହାର ଢେର୍ ଫାଇଦା ଉଠାଇବାକୁ ଚେଷ୍ଟା କରିବେ ।''

''ଆଁ, କେଶ୍ । ହଠାତ୍ ଏତେ କେଶ୍ ତ ମୋ ପାଖରେ ହୋଇପାରିବ ନାହିଁ ଆଜ୍ଞା ।''

ହସିଲେ ମିଷ୍ଟର ସାକ୍ସେନା, ''କ'ଣ କହୁଛନ୍ତି ଆଜ୍ଞା, ଦୁଇଲକ୍ଷ ଟଙ୍କାର କେଶ୍ ଆପଣଙ୍କ ପାଖରେ ହୋଇ ପାରିବନି ? ଆପଣ ଜଣେ ଏତେ ବଡ଼ ଶିଳ୍ପପତି, ରେଡ଼ିକେଶ୍ ଦୁଇଲକ୍ଷ ଟଙ୍କା ହୋଇ ପାରିବନି, ଆପଣଙ୍କଠାରେ ?''

"ଆପଣ ବିଶ୍ୱାସ କରନ୍ତୁ, ମିଷ୍ଟର ସାକ୍‌ସେନା । ଆମର ଟଙ୍କା ପଇସା ସବୁ ବେଙ୍କ୍‌ରେ । ଦୈନିକ ଖରଚ ପାଇଁ ଯାହା ଅଳ୍ପ କିଛି ଆମ ହାତରେ ଥାଏ । ଆପଣ ଚାଲନ୍ତୁ, ଆମ ଟ୍ରେଜେରି, ଷ୍ଟ୍ରଙ୍ଗରୁମ୍ ଆଦି ଦେଖିବେ, ଲକ୍ଷେ ଦେଢ଼ଲକ୍ଷ ଟଙ୍କାରୁ ଅଧିକ କେଶ୍ ବାହାରିବନି । ଆମର ତ ସବୁଆଡ଼େ ସବୁ ପେମେଣ୍ଟ ବେଙ୍କ୍ ଜରିଆରେ, କେଉଁଠି ତ କେଶ୍ କାରବାର ହୁଏନି । ଆମ ପାଖରେ ଏତେଗୁଡ଼ିଏ କେଶ୍ ହଠାତ୍ ଆସିବ କୁଆଡୁ ? ଆପଣ କାଲିକୁ ନେଲେ, ମୁଁ ବେଙ୍କ୍‌ରୁ ଆଣି ଦେଇପାରେ । ବର୍ତ୍ତମାନ ତ ବେଙ୍କ୍ ବେଳ ଗଲାଣି ।"

"ମୁଁ ଦେଖୁଛି, ଆପଣ ଏକମାତ୍ର ଶିଳ୍ପପତି ଯେ କି ଏତେବଡ଼ ଶିଳ୍ପ ସାମ୍ରାଜ୍ୟର ଅଧିକାରୀ ହୋଇମଧ ନିଜ ପାଖରେ ଦୁଇଲକ୍ଷ ଟଙ୍କାର କେଶ୍ ନାହିଁ । ଆପଣଙ୍କ ବ୍ୟତୀତ ପ୍ରତ୍ୟେକ ଶିଳ୍ପପତିଙ୍କ ପାଖରେ କୋଟି କୋଟି ଟଙ୍କାର କେଶ୍ । ଆପଣ ବିଶ୍ୱାସ କରିବେ କି କଅଣ ଜାଣିନି, ଆଜି ସକାଳଠାରୁ ଏ ପର୍ଯ୍ୟନ୍ତ ମୁଁ ଦେଢ଼କୋଟି ଟଙ୍କା ଯାଏ ସଂଗ୍ରହ କରି ସାରିଲିଣି । ସବୁ ରେଡିକେଶ୍ ।"

"ମୁଁ ଜାଣେ ଅନ୍ୟମାନେ ଦେଇ ପାରିବେ । ସେମାନଙ୍କ ପାଖରେ ବ୍ଲେକ୍‌ମନି ଅପର୍ଯ୍ୟାପ୍ତ । ସେଥିରୁ ସେମାନେ ଏହିଭଳି ଦାନ ଖଇରାତ କରନ୍ତି । ବ୍ଲେକ୍‌ମନି ସଦାସର୍ବଦା ଘରେ ଥାଏ । ଏହା କେବେ ବେଙ୍କ୍ ଦର୍ଶନ କରେନି । ତେଣୁ ଏଭଳି କାର୍ଯ୍ୟରେ ଦେବାରେ ବାଧା ନାହିଁ ? ମୋଠାରେ ତ ଗୋଟିଏ ପଇସା ବ୍ଲେକ୍‌ମନି ନାହିଁ । ତେଣୁ ଏତେ କେଶ୍ ଆସିବ କୁଆଡୁ ?"

"ମହାରାଷ୍ଟ୍ର ରାଜ୍ୟର ଏତେବଡ଼ ଶିଳ୍ପପତି, ଶିବାଜୀନଗର ଶିଳ୍ପନଗରୀର ମାଲିକ, ଆପଣ ଆପଣଙ୍କ ସମସ୍ତ ଟ୍ରେଜେରି ଝାଡ଼ି ଆସିଲେ ଦୁଇଲକ୍ଷ ଟଙ୍କାର କେଶ୍ କ'ଣ ମିଳିବନି ?"

"ଆପଣ ତ ମୋ କଥାକୁ ବିଶ୍ୱାସ କରିବେନି, ମୁଁ କ'ଣ କରିବି ? ହେଉ, ଟିକିଏ ଅପେକ୍ଷା କରନ୍ତୁ, ମୁଁ ଫୋନ୍ କରୁଛି, ଦେଖେ, କେତେ କେଶ୍ ହେଉଛି । ଏତକ କହି ଦେବବାବୁ ଗୀତା ଦେବୀଙ୍କଠାକୁ ଫୋନ୍ କଲେ ।"

"ଦେଖ ଗୀତା, ବର୍ତ୍ତମାନ ଶିଳ୍ପମନ୍ତ୍ରୀଙ୍କର ଦୁଇଲକ୍ଷ ଟଙ୍କା କେଶ୍ ଦରକାର । ଆମଠାରେ ଏତେ ପରିମାଣର କେଶ୍ ହୋଇପାରିବ କି ? ତାଙ୍କ ସେକ୍ରେଟେରୀ ଚେକ୍ ନେବାକୁ ମନା କରୁଛନ୍ତି ।"

"କିନ୍ତୁ ଏତେ ଟଙ୍କାର କେଶ୍ ଆସିବ କୁଆଡୁ ? ତୁମେ କ'ଣ ଜାଣିନ ? ତାଙ୍କୁ ସେଇଆ କହି ଦେଉନ ?"

''ମୁଁ କହିଲାବେଳକୁ ସେ ମୋଟେ ବିଶ୍ୱାସ କରୁ ନାହାନ୍ତି । ସେ କହୁଛନ୍ତି ଆମର ସମସ୍ତ ଟ୍ରେଜେରି, ଷ୍ଟ୍ରଙ୍ଗରୁମ୍ ଝଡ଼ାଝଡ଼ି କରିବ, ଦେଖିବ କେତେ କେଶ୍ ହେଉଛି । ମୁଁ ତାଙ୍କୁ ଏଠି ବସାଇଛି । ଶୀଘ୍ର ଟିକିଏ ଦେଖି କୁହ ।''

କିଛି ସମୟ ପରେ ଫୋନ୍ ଆସିଲା । ଗୀତାଦେବୀ ଫୋନ୍‌ରେ କହିଲେ, ''ଲକ୍ଷେ ଅଶୀହଜାରରୁ ଅଧିକ କେଶ୍ ହୋଇପାରୁନି । ସେତକ ନେଇ ଯାଆନ୍ତୁ, ସେଥିସହ କୋଡ଼ିଏ ହଜାରର ଏକ ସେଲ୍‌ଫ ଚେକ୍ ଦେଇ ଦିଅ ।''

''କିନ୍ତୁ କୋଡ଼ିଏ ହଜାରର ସେଲ୍‌ଫ ଚେକ୍ ବେଙ୍କ୍ ପେମେଣ୍ଟ ନ କରିପାରେ । ଆମ ଲୋକ ନ ଗଲେ ପେମେଣ୍ଟ୍ କରିବନି ।''

''ହେଉ, ବେଙ୍କ୍‌କୁ ଆସନ୍ତାକାଲି ପେମେଣ୍ଟ୍ କରିବା ପାଇଁ ଫୋନ୍ କରିଦିଅ । ଅସୁବିଧା ହେବନି ।''

ଶିକ୍ଷମନ୍ତ୍ରୀଙ୍କ ସେକ୍ରେଟେରୀଙ୍କୁ ବିଦା କରି ଦେବବାବୁ ନିଜ ଅଫିସ୍‌କୁ ନ ଫେରି ଗୀତାଦେବୀଙ୍କ ଅଫିସ୍‌କୁ ଚାଲି ଆସିଲେ । ଦେବବାବୁ କେବେ ଭୁଲବଶତଃ ବି ସ୍ତ୍ରୀଙ୍କ ଅଫିସ୍‌କୁ ଆସନ୍ତିନି । କାରଣ ସ୍ତ୍ରୀଙ୍କ ସଂସ୍ଥା ଚୁକ୍ତି ଅନୁସାରେ ତାଙ୍କ ସଂସ୍ଥାଠାରୁ ପୂରାପୂରି ଅଲଗା ।

ହଠାତ୍ ସ୍ୱାମୀଙ୍କୁ ଦେଖି ଗୀତାଦେବୀ ଆଶ୍ଚର୍ଯ୍ୟ ହୋଇଗଲେ । ଉଠିପଡ଼ି ସ୍ୱାମୀଙ୍କୁ ସ୍ୱାଗତ କରୁ କରୁ ପଚାରିଲେ, ''ମନ୍ତ୍ରୀଙ୍କର ହଠାତ୍ କ'ଣ ଏମିତି ଦରକାର ପଡ଼ିଲା ଯେ ଯେତେବେଳେ ପାରି ସେତେବେଳେ ସେକ୍ରେଟେରୀଙ୍କୁ ପଠାଇଦେଇ ଅପଦସ୍ତ କରି ପକାଉଛନ୍ତି ।''

''ମନ୍ତ୍ରୀ ନିଜ ନିର୍ବାଚନ ମଣ୍ଡଳୀକୁ ଖୁସି କରିବା ପାଇଁ ଦାତାପଣିଆ ଦେଖାଉଛନ୍ତି, ଅଥଚ ତଣ୍ଟି କାଟୁଛନ୍ତି ଆମର । ଷ୍ଟେନ୍‌ଲେସ୍ ଷ୍ଟିଲ୍ ତଣ୍ଟି ଥିଲାବାଲାଙ୍କ ବେକରେ ଛୁରି ଦେଲେ ସିନା କିଛି ଯାଏ ଆସେନି, ଆମଭଳି ଲୋକଙ୍କ ଚମଡ଼ା ବେକରେ ଛୁରି ଦେଲେ ଯେ ଆମେ ଶେଷ ହୋଇଯିବୁ ।''

''ତାଙ୍କୁ ମୁହେଁ ମୁହେଁ କହିଦେଲନି, ଆମେ ତ ଅନ୍ୟ ଶିକ୍ଷପତିମାନଙ୍କ ଭଳି ବ୍ଲେକ୍‌ମନି ରଖୁନୁ, ଆମେ ଏତେ ଚାନ୍ଦା ଦେଇପାରିବୁ କେମିତି ?''

''ନା, ଗୀତା ସେପରି କ'ଣ କହି ହେବ ? ନଈ ଭିତରେ ଘର କରି କୁମ୍ଭୀର ସହିତ ଅପଡ଼ କଲେ କ'ଣ ଚଳି ହେବ ? ମନ୍ତ୍ରୀ ଆମ ଉପରେ ଚାନ୍ଦା ପକାଇଥିଲେ ପାଞ୍ଚଲକ୍ଷ, କିନ୍ତୁ ଦୁଇଲକ୍ଷରେ ତ ବିଦା ହୋଇଗଲେ ।

ଅନ୍ୟମାନେ ଯାହା ଦେଉଛନ୍ତି, ତାହା ତୁଳନାରେ ଆମର ତ ଢେର୍ କମ୍ । ଶେଠ୍ ରଣ୍‌ଛୋଡ଼୍ ଲାଲ ଦେଉଛି ଷାଠିଏ ଲକ୍ଷ ଟଙ୍କା । ତା' ତୁଳନାରେ ଆମର କେତେ କମ୍ କହିଲ ?''

''ହେଲେ, ଦୁଇଲକ୍ଷ ଟଙ୍କା ତାଙ୍କୁ ଦେଇ ଆମର କି ଲାଭ ? ଆମେ ତାଙ୍କ ଠାରୁ କିଛି ଫାଇଦା ତ ଆଶା କରୁନୁ । ଆମେ ଆମ ବାଟରେ ନ୍ୟାୟରେ ଯାହା ଅର୍ଜନ କରୁଛୁ । ଅନ୍ୟମାନେ ଯେମିତି ଦେଉଛନ୍ତି, ସେମିତି ଫାଇଦା ପାଉଛନ୍ତି ମନ୍ତ୍ରୀଙ୍କଠାରୁ । ଆମେ ଦେବୁ ନାହିଁ କି ଫାଇଦା ଉଠାଇବୁ ନାହିଁ ।''

''ହଁ, ଗୀତା, ରଣ୍‌ଛୋଡ଼୍ ଲାଲ କ'ଣ ଖାଲି ଦେଉଛି ? ଏଣେ ଷାଠିଏ ଲକ୍ଷ ସିନା ଦେଲା, ତେଣେ ମନ୍ତ୍ରୀଙ୍କଠାରୁ କ'ଣ ଦୁଇ ଚାରି କୋଟିରୁ କମ୍ ଫାଇଦା ନ ଉଠାଇବ ?''

''ମନ୍ତ୍ରୀଙ୍କର କ'ଣ ବା ଯାଉଛି ? ଦେଶର ଯାହା କ୍ଷତି ହେଉଛି । ଯେଉଁ ପଇସାଟା ଦେଶବାସୀ ପାଆନ୍ତେ, ତାହା ପାଉଛି ରଣ୍‌ଛୋଡ଼୍ ଲାଲ । ଏହିଭଳି ଜାଲ୍ ଜୁଆଚୋରିର ଢେଉ କେବେ ଆମ ଦେଶରୁ ଯିବ, ମୁଁ ତାହା ହିଁ ଭାବୁଛି ।''

ହସିଲେ ଦେବବାବୁ, ''ଢେଉ ଯିବ ନା ବଢ଼ିବ ? ଆଜି ତ ସମସ୍ତେ ଅନ୍ୟାୟରେ, ଅଳ୍ପ ପରିଶ୍ରମରେ ବଡ଼ ଲୋକ ହେବାକୁ ବସିଛନ୍ତି । ପୁଞ୍ଜିପତି ଚାହୁଁଛି, ଅନ୍ୟାୟରେ ସେ କେମିତି ଗୁଡ଼ାଏ ଅର୍ଜନ କରି ପାରିବ । ମନ୍ତ୍ରୀ ଚାହୁଛନ୍ତି, ସେ ଗୋଟିଏ ଟର୍ମରେ କେମିତି ବଡ଼ଲୋକ ପାଲଟିଯିବେ । ପର ଟର୍ମକୁ ଆସିବେ କି କଥଣ ଠିକ୍ ନାହିଁ । ଗୋଟିଏ ଟର୍ମରେ ଯାହା ରଖିଦେଇଯିବେ, ଜୀବନ ସାରା ଖାଉଥିବେ, ପୁଅ ନାତି ମଧ୍ୟ ତାକୁଇ ଭୋଗଦଖଲ କରି ଚଳିବେ । ଅଫିସର ଚାହୁଁଛି, ସେ ଶୀଘ୍ର କେମିତି ବଡ଼ଲୋକ ହୋଇଯିବ । ଅଧସ୍ତନ କିରାଣି ଚାହୁଁଛି, ସେ କାହିଁକି ଚୁପ୍ ହୋଇ ବସି ରହିବ । ତାର ବି କିଛି ହେଉ । ଉପରଠାରୁ ତଳ ପର୍ଯ୍ୟନ୍ତ ତ ଏହି ଧନ୍ଦା ଚାଲିଛି । ଏହାର ଅବସାନ କେମିତି ହେବ ? ଏହିଭଳି ଦୋନମ୍ବରୀ ଧନ୍ଦା ଚାଲନ୍ତାନି, ଯଦି ସରକାର ତାକୁ ପ୍ରଶ୍ରୟ ନ ଦିଅନ୍ତେ । ସରକାରଙ୍କ ପ୍ରଶ୍ରୟ ଫଳରେ ଅପର୍ଯ୍ୟାପ୍ତ କଳାଧନ ଲୋକଙ୍କଠାରେ ଜମା ହୋଇ ଯାଉଛି । ଏହି କଳାଧନ ଫଳରେ ଜିନିଷପତ୍ରର ଦରଦାମ୍ ବଢୁଛି, ଶ୍ରମିକ ଅଶାନ୍ତି ହେଉଛି । ଅବଶ୍ୟ ଏହି କଳାଧନର ବଡ଼ ଫାଇଦା ହେଉଛି ଶିଳ୍ପପତିମାନଙ୍କର । ସେମାନଙ୍କ ଶିଳ୍ପ ପ୍ରସାର, ନୂଆନୂଆ ପ୍ରକଳ୍ପର ଆରମ୍ଭ, ନୂଆନୂଆ ବ୍ୟବସାୟର ଉପୃତ୍ତି ଏହି କଳାଧନ ସାହାଯ୍ୟରେ ହିଁ ହେଉଛି । ଶିଳ୍ପପତିମାନଙ୍କଠାରେ ଅପର୍ଯ୍ୟାପ୍ତ ପରିମାଣର କଳାଧନ ନ ଥିଲେ, ଏସବୁ ନୂଆ ନୂଆ ଶିଳ୍ପ କି ବ୍ୟବସାୟ ଏତେଶୀଘ୍ର ଆରମ୍ଭ ହୋଇ ପାରନ୍ତାନି ।''

"କିନ୍ତୁ ଆମେ ତ ସେସବୁଠାରୁ ଢେର୍ ଦୂରରେ । ଆମେ କିଛି ଦେବୁ ନାହିଁ କି ମନ୍ତ୍ରୀଙ୍କଠାରୁ କିଛି ଫାଇଦା ଉଠାଇବୁ ନାହିଁ ।" ରୀତାଦେବୀ କହିଲେ ।

"ତା'ହେଲେ ମଧ୍ୟ ଆମର ମନ୍ତ୍ରୀଙ୍କ ସହିତ ସହଯୋଗ କରିବା କଥା । ଆମେ ସିନା ମନ୍ତ୍ରୀଙ୍କ ଆଶା ଅନୁଯାୟୀ ଦେଇପାରିବା ନାହିଁ, କିନ୍ତୁ କିଛି ତ ନିଶ୍ଚୟ ଦେବା । ଏହା ପୁଣି ଏକ ଭଲ କାମ ପାଇଁ ।"

"କିନ୍ତୁ ଆମେ ସେହି ଟଙ୍କା ଆମ ଶ୍ରମିକ କଲୋନୀରେ ଖରଚ କରିଥିଲେ ଆମ ଶ୍ରମିକମାନେ କେତେ ଖୁସି ହୋଇ ନ ଥାନ୍ତେ ସତେ ? ସେମାନଙ୍କର ଆହୁରି ସ୍କୁଲ ଦରକାର, ମନ୍ଦିର ଦରକାର, କ୍ଲବ୍ ଦରକାର, ଲାଇବ୍ରେରି ଦରକାର, ଭଲ ମାର୍କେଟ ଦରକାର । ଏହି ଦୁଇଲକ୍ଷ ଟଙ୍କା ମନ୍ତ୍ରୀଙ୍କୁ ନ ଦେଇ ଏଥିରେ ତ ଖରଚ କରିଥିଲେ କେତେ ଭଲ ହୋଇଥାନ୍ତା ।"

"ସେ ସବୁଥିରେ ତ ଆମକୁ ନିଶ୍ଚୟ ଖରଚ କରିବାକୁ ପଡ଼ିବ । ଏହି ବର୍ଷ ଭିତରେ ଯେମିତି ସ୍କୁଲ, ମନ୍ଦିର, ଲାଇବ୍ରେରି, ମାର୍କେଟ୍‌ବିଲ୍‌ଡିଂ ହୁଏ, ସେଥିପ୍ରତି ମୁଁ ଦୃଷ୍ଟି ରଖିଛି ରୀତା । ଆମ ଆର୍କିଟେକ୍ଟ ତ ପ୍ଲେନ୍ ଦେଇ ସାରିଲେଣି ଖାଲି କାମ ଆରମ୍ଭ କରିବା କଥା । ଏଇ ବସନ୍ତଋତୁରେ ଏ ସବୁର କାମ ଆରମ୍ଭ ହେବ, ଆସନ୍ତା ରଥଯାତ୍ରାବେଳକୁ ସେ ସବୁର ଯେମିତି ଉଦ୍‌ଘାଟନ ହୁଏ ।"

"ତୁମେ ଯାହାକୁହ, ଏହି ମନ୍ତ୍ରୀମାନଙ୍କ ମାଗିବା ପ୍ରବୃତ୍ତି ମୋତେ ମୋଟେ ଭଲ ଲାଗେନି । ଇଏ କ'ଣ ସାଧାରଣ ମଗା, ଜୋରଜବରଦସ୍ତି ମଗା । ହାତରେ ପାୱାର ଅଛି, ନ ଦେଲେ ନ ହୁଏ । ଏଇଟା କ'ଣ ଭଲ କଥା ? ପୁଣି କେତେ ମନ୍ତ୍ରୀ ତ ଭଲ କାମ ନାଁରେ ଚାନ୍ଦା ଆଦାୟ କରୁଛନ୍ତି, ତାକୁ ନିଜ ପାଟିରେ ପକାଇ ଦେଉଛନ୍ତି ବା ନିଜ କାମରେ ଲଗାଇ ଦେଉଛନ୍ତି । ମନ୍ତ୍ରୀ ଏବେ ଯେଉଁ ଟଙ୍କା ନେଲେ, ଏହା ଠିକ୍ କାମରେ ଲାଗିବ ତ ? ନାଁ, ମନ୍ତ୍ରୀ ପାଟିରେ ପକାଇଦେଇ ବିଦା ହୋଇଯିବେ । ଗୋଟିଏ ଗୋଟିଏ ମନ୍ତ୍ରୀ ଜୀବନକାଳ ଭିତରେ ଯାହା ଆୟ କରି ନେଉଛନ୍ତି ନା ସେଥିରେ ତାଙ୍କର ସାତପୁରୁଷ ପର୍ଯ୍ୟନ୍ତ ଅଭାବ ରହିବନି ।"

"ତୁମେ ଖାଲି ମନ୍ତ୍ରୀଙ୍କ ଦୋଷ କାହିଁକି ଧରୁଛ ରୀତା, ଆମ ସାଧାରଣ ଲୋକେ କ'ଣ ସେହି ସ୍ତରକୁ ଆସି ନାହାନ୍ତି ? ବଜାରରେ ଖାଣ୍ଟି ଗୁଆଘିଅ ଦୁଷ୍ପ୍ରାପ୍ୟ ହେଲାଭଳି ସମାଜରେ ଗୋଟିଏ ଅନେଷ୍ଟ ଲୋକ ପାଇବା କଷ୍ଟକର । ଆଜି ସମାଜ ଯେତେବେଳେ ସମ୍ମାନ ଦେଉଛି ପଇସାବାଲା ଜିଲାପୋଡିଆ କି ବ୍ଲାକ୍ ମାର୍କେଟରଙ୍କୁ କି ଅସଦ୍ ବ୍ୟବସାୟୀଙ୍କୁ, ସେମାନଙ୍କ ସାମନାରେ ଅନେଷ୍ଟ

ଲୋକ ତିଷ୍ଠିବେ କେଉଁଠୁ କହିଲ ? ଆଜିର ସମାଜ ଅନେଷ୍ଟ ଲୋକଙ୍କୁ ଅପାରିବାର କି ଅସିହାଣିଆ କହି ବିଦ୍ରୂପ କରୁଛି, ସେହି ବିଦ୍ରୂପରେ ସାଧୁପଣିଆ କୁଆଡ଼େ ଉଭେଇଗଲାଣି । ସାଧୁ ପ୍ରକୃତିର ଲୋକଙ୍କୁ ଥଟ୍ଟା କରି କହୁଛନ୍ତି, ଆଧୁନିକ ସମାଜ ପାଇଁ ଏମାନେ ଅନୁପଯୁକ୍ତ, ଏମାନେ ସମସ୍ତଙ୍କର ଦୟାର ପାତ୍ର, କାହାର ନମସ୍ୟ ନୁହନ୍ତି । ତେଣୁ ସେ ପରିସ୍ଥିତିରେ ମଣିଷର ଏହି ସଦ୍‌ଗୁଣ କ'ଣ କେବେ ରହିପାରିବ ?''

ଜଣେ ମଣିଷ ପକ୍ଷରେ ଅସାଧୁ ହେବା ସହଜ, କିନ୍ତୁ ସାଧୁ ହେବା ସେତେ ସହଜ ନୁହେଁ । ହେଇ, ଆମ ଶିଳ୍ପପତିମାନଙ୍କୁ ଦେଖୁନାହଁ, ସମସ୍ତେ ଲାଗିଛନ୍ତି ଭିନ୍ନ ଭିନ୍ନ ବାଟରେ । କେମିତି ଆହୁରି ବଡ଼ ଲୋକ ହେବେ । ଅନ୍ୟାୟ ବାଟରେ ଅଜସ୍ର ରୋଜଗାର କରନ୍ତି, ଅଥଚ ନିଜ ପାଇଁ ଖରଚ କରି ପାରନ୍ତିନି । ସେମାନେ ଖାଲି କଷ୍ଟ କରନ୍ତି, ଅନ୍ୟାୟରେ ରୋଜଗାର କରନ୍ତି, ମାନସିକ ଅଶାନ୍ତି ପାଆନ୍ତି କିନ୍ତୁ ନିଜ ଉପଭୋଗ ପାଇଁ ଖରଚ କରି ପାରନ୍ତିନି । ସେମାନେ ଲକ୍ଷ ଲକ୍ଷ ଟଙ୍କା ଅନ୍ୟାୟରେ ଉପାର୍ଜନ କଲାବେଳକୁ ତେଣେ ଡାକ୍ତରଙ୍କ ତାଗିଦ୍ ତେଲ ଘିଅ ଖାଇବନି, ଶୁଖିଲା ରୋଟି ଖାଇବ, ମାଛ, ମାଂସ, ଅଣ୍ଡା ପାଖ ପଶିବନି, ହୃଦ୍‌ରୋଗ ହେବ । ପଲାଓ, ବିରିୟାନି ଖାଇବନି, ମୋଟା ହୋଇଯିବ, ବହୁମୂତ୍ର ରୋଗ ହେବ । ଏଣେ ମଦ ସିଗାରେଟ୍ ଖାଇବା ମନା, କେନ୍‌ସର୍ ହୋଇଯିବ । ବିଚାରା ଶିଳ୍ପପତି କେତେ ଅନ୍ୟାୟରେ ରୋଜଗାର କରୁଛି ଆହୁରି ବଡ଼ ଲୋକ ହେବା ପାଇଁ, ଆହୁରି ଉପଭୋଗ କରିବା ପାଇଁ, ଅଥଚ ଡାକ୍ତରଙ୍କ ନିର୍ଦ୍ଦେଶରେ ଭିଖାରିଟିଏ ଭଳି ଚଳୁଛି, ଭିଖାରିଟିଏ ଭଳି ଖାଉଛି । ଖାଲି ଘରର ଲୁହା ଆଲମାରିରେ ବିଡ଼ା ବିଡ଼ା ନୋଟ୍ ମୁଣ୍ଡା ମୁଣ୍ଡା ସୁନା ଜମା କରୁଛି । ସତେ ଯେମିତି ସେଇଆକୁ ସେ ଦେଖି ଦେଖି ଏ ସଂସାରରୁ ବିଦା ହେବ । ଏ ପରିସ୍ଥିତିରେ ଏତେ ଅନ୍ୟାୟ ଉପାର୍ଜନ କରିବ କ'ଣ ପାଇଁ ? ଅନ୍ୟାୟକୁ ଆଣି ଅଣ୍ଟାରେ ପୂରାଇ ଲାଭ କଅଣ ? ଏ ସବୁର ମୂଳ ହେଉଛି ଖାଲି ଲୋଭ, ଲୋଭ ଆଉ ଲୋଭ । ଏହି ଲୋଭ ପାଇଁ ଏତେ ଅନ୍ୟାୟ । ଅନ୍ୟାୟ ମାତ୍ରା ଦିନକୁଦିନ ଏତେ ବଢ଼ି ବଢ଼ି ଚାଲିଲାଣି ଯେ ଅନ୍ୟାୟଟା ନ୍ୟାୟଭଳି ଦିଶିଲାଣି ସମସ୍ତଙ୍କୁ । ଅସଦ୍ ଉପାୟକୁ ଆଜିକାଲି ଲୋକେ ଅସଦ୍ ଉପାୟ ବୋଲି ଆଉ କହୁ ନାହାନ୍ତି, କି ଘୃଣା କରୁ ନାହାନ୍ତି । କି ଯୁଗ ହେଲା ଇଏ ? ଛାଡ଼ ସେକଥା ଗୀତା, ଆଉ ସେସବୁ ବିଷୟରେ ଆଲୋଚନା କରି ଲାଭ ନାହିଁ । ଚାଲିଲ, ଆଜି ଟିକିଏ ବାହାରୁ ବୁଲି ଆସିବା । ଅଫିସ୍‌ରେ ବସି ବସି ବିରକ୍ତ ଲାଗିଲାଣି ।''

"ସନ୍ଧ୍ୟାବେଳେ ନ ଗାଧୋଇ କୁଆଡ଼େ ଯିବା ? ନ ଗାଧୋଇଲେ ନ ହୁଏ ।"

"ମୁଁ କ'ଣ ନ ଗାଧୋଇ ବାହାରକୁ ଯିବା ପାଇଁ କହୁଛି । ମୁଁ ବି ତ ଗାଧୋଇବି । ଏହି ଖରାଦିନେ ଦିନକୁ ଦୁଇଥର ନ ଗାଧୋଇଲେ ମୋଟେ ଭଲ ଲାଗେନି । ବର୍ତ୍ତମାନ ପାଞ୍ଚଟା ବାଜିଛି, ସାଢ଼େ ଛଅଟାବେଳକୁ ବାହାରି ପଡ଼ିବା ।"

ଦେବକିଷନବାବୁ ଓ ଗୀତାଦେବୀ ସାନ୍ଧ୍ୟସ୍ନାନ, ସାନ୍ଧ୍ୟଭୋଜନ ଶେଷ କରି ବୁଲି ବାହାରୁ ବାହାରୁ ସନ୍ଧ୍ୟା ସାତଟା । ଦୁହେଁ ହାତ ଧରାଧରି ହୋଇ ଘରୁ ବାହାରି କାର୍‌ରେ ବସିବାକୁ ଯାଉଛନ୍ତି, ଗୀତାଦେବୀ ପଚାରିଲେ, "ଆଜି କୁଆଡ଼େ ଯିବା କହିଲ ? ଆମେ ଢେର୍‌ଦିନ ହେଲା ବୋମ୍ବେ ଆଡ଼େ ଯାଇ ନାହାନ୍ତି । ଚାଲ ଆଜି ସେଆଡ଼େ ଯିବା ।"

"ହେଉ, ଚାଲ, ଆସିଲାବେଳେ ହୋଟେଲ ଏମ୍ବାସେଡ଼ରରୁ ଡିନର୍ ଖାଇ ଆସିବା । ରାତିରେ ଘରେ ଖାଇବା ବନ୍ଦ ।"

"ମୋର ମୋଟେ ହୋଟେଲ ଏମ୍ବାସେଡ଼ରକୁ ଯିବା ପାଇଁ ଇଚ୍ଛା ନାହିଁ । ସେଠି ଯେଉଁ ଅଧାଲଙ୍ଗଳା ନାଚ, ସେଥିରେ ସେ ହୋଟେଲକୁ ଗଲେ ଭାରି ଖରାପ ଲାଗିବ ।"

"ସେହି ଅଧାଲଙ୍ଗଳା ନାଚକୁ ଦେଖିବା ପାଇଁ ତ ସେଠି ଏଡ଼େ ଭିଡ଼ । ତୁମେ ତ ପୁଣି ସେହି ଦେଶରୁ ପାଠ ପଢ଼ି ଆସିଛ । ଏଠି ଦେଖିବାକୁ ଲଜ୍ଜା କାହିଁକି ?"

"ଯେଉଁଟା ଆମ ସଂସ୍କୃତିର ବାହାର, ତାକୁ ଦେଖିବାକୁ ଲୋକେ ଏତେ ଲାଳାୟିତ କାହିଁକି ମୁଁ ବୁଝିପାରେନି । ଆମ ସଂସ୍କୃତି ଭିତରେ ଉପଭୋଗ କରିବାକୁ କ'ଣ ଆଉକିଛି ନାହିଁ ? ଆମେ ସବୁଥିରେ ସେହି ପାଶ୍ଚାତ୍ୟ ସଂସ୍କୃତିରୁ ଉଧାର ଆଣି ଚଳିବା ?"

"ଆମ ଲୋକଙ୍କ ଆଖିରେ ପାଶ୍ଚାତ୍ୟ ସଂସ୍କୃତି ଖୁବ୍ ବଡ଼ । ତେଣୁ ସେ ଦେଶରୁ ଧନ ଉଧାର ଆଣିଲା ଭଳି ସେମାନଙ୍କ ସଂସ୍କୃତିରୁ ଉଧାର ଆଣି ଆମ ଦେଶ ବଡ଼ ହୋଇପାରିବ ବୋଲି ସେମାନଙ୍କ ଧାରଣା ।"

"ନିହାତି ଭୁଲ କଥା । ଲଙ୍ଗଳା ନାଚ ପାଶ୍ଚାତ୍ୟ ସଂସ୍କୃତିର ଅବଦାନ ବୋଲି ଭାବନି । ପାଶ୍ଚାତ୍ୟ ଦେଶର ବହୁ ଲୋକ ଏହାକୁ ମୋଟେ ପସନ୍ଦ କରନ୍ତିନି । ସେମାନଙ୍କ ମତରେ ଏହା ଏକ ଛତରାମି ସଂସ୍କୃତିର ପ୍ରତୀକ । ପାଶ୍ଚାତ୍ୟ ଦେଶର ବହୁ ଲୋକ ଏହାକୁ ଘୃଣା କରନ୍ତି; ଦେଖିବାକୁ ଯାଆନ୍ତିନି । ଆମେରିକା, ଫ୍ରାନ୍‌ସ,

ଇଟାଲୀର କେତେକ ନୀଚ ପ୍ରକୃତିର ଲୋକଙ୍କ ଦ୍ୱାରା ଏହା ସୃଷ୍ଟ, ଉଦ୍ଦେଶ୍ୟ ଶସ୍ତାରେ ଧନ ଉପାର୍ଜନ କରିବା ।

× × × × ×

"ହାଏ, ଦେବକିଷନ, ବହୁତଦିନ ପରେ ଦେଖା । ତୁମେ ଭାଇ ବୋମ୍ବେ ଆଡ଼େ ଆସୁ ନାହଁ ନା କଅଣ ? ତୁମ ସହିତ ମୋର ତ କେବେ ଭେଟ ହେଉନି । ବାଃ, ଆଜି କ'ଣ ଭାଉଜଙ୍କୁ ଧରି ଚାଲି ଆସିଛ ? ନମସ୍କାର ଭାଉଜ । ବିଭାଘର ପରେ ଆଜି ପ୍ରଥମ ଦେଖା", ଏତକ କହି ପାଖ ଚେୟାରରେ ବସି ପଡ଼ିଲେ ଯୁବ ଶିଳ୍ପପତି ଦିନକରାମ୍ ।

"ଆରେ, ତୁମ ହାଲଚାଲ କ'ଣ କହୁନ । ତୁମ କାରବାର କେମିତି ଚାଲିଛି ଭାଇ ?"

"ସେମିତି ଚାଲିଛି । ଆଉ କ'ଣ ? ବ୍ୟବସାୟ ଅବସ୍ଥା କଅଣ ତୁମେ ଜାଣୁନ ଯେ ମୁଁ କହିବି । ସରକାରଙ୍କ ଆଜିକାଲି ଯେଉଁ କଟକଣା, ତାଙ୍କ ଖୋସାମତିଆଙ୍କ ଯେଉଁ ଅତ୍ୟାଚାର, ସେଥିରେ ବ୍ୟବସାୟ ଚଳାଇବା ଅସମ୍ଭବ ହୋଇପଡୁଛି ଭାଇ । ହଁ, ମୁଁ ଶୁଣୁଥିଲି, ତୁମେ କାଳେ କେତେଟା କାରଖାନା ବନ୍ଦ କରି ଦେଉଥିଲ ? ଏହା କ'ଣ ସତ ?"

"ହଁ, ବନ୍ଦ କରିବାର ଯୋଜନା ଥିଲା । ତାକୁ ପୁଣି ଆଧୁନିକୀକରଣ କରି ଚଳାଇଛି ।"

"ତୁମ ରେୟନଟା ଢେର୍ ତଳେ ପଡ଼ି ଯାଇଥିଲା । ଏବେ ପୁଣି କ'ଣ ଉପରକୁ ଉଠିଲାଣି । ବର୍ତ୍ତମାନ ତ ସବା ଉପରେ ତମେ । ତମ ତଳକୁ ଗୋଆଲିୟର । ଆରେ, ଏ କେମିତି ହେଲା ମୁଁ ବୁଝିପାରୁନି ?"

"ଆରେ, ସେସବୁ ତୁମ ଏଇ ଭାଉଜଙ୍କ ଦୟାରୁ । ତୁମ ଭାଉଜ ସେ କାରଖାନାକୁ ଆଧୁନିକୀକରଣ କରିବା ଫଳରେ ଆମ ରେୟନ ଉପରକୁ ଉଠି ପାରିଛି ।"

"ଆରେ ଭାଇ, ତୁମ ଭଳିଆ କେତେଜଣ ଭାଗ୍ୟବାନ ଅଛନ୍ତି ? ତୁମ ଭଳିଆ ଇଞ୍ଜିନିଅର ସ୍ତ୍ରୀ ଆଉ କାହାର ଅଛି କହିଲୁ ? ଭାଉଜଙ୍କ ଦୟାରୁ ତୋ କାରଖାନାରେ କିଛି ଅସୁବିଧା ହେଉ ନ ଥିବ ? ହେଇ, ଦେଖୁନୁ ଭାଇ, ଆମେରିକାରୁ ଇଞ୍ଜିନିଅର ନ ଆସିବାରୁ ମୋ ସାଂଶ୍ଲେଷିକ ରଙ୍ଗ କାରଖାନା ବନ୍ଦ ଅଛି । ଦିନକୁ ମୋର କେତେ କ୍ଷତି ହେଉଛି ଜାଣୁ ? ଦେଢ଼ଲକ୍ଷ ଟଙ୍କା । ମୋ ଭାଗ୍ୟ ଖରାପ, କାହାକୁ ଦୋଷ ଦେବି ? ଦେଢ଼ମାସ ହେଲାଣି କାରଖାନା ବନ୍ଦ । ତୋର ଭାଇ, ସେ ଅନୁଭୂତି କେବେ ହୋଇ ନ ଥିବ ।"

"ହୋଇନି କଅଣ ? କେତେଥର ହୋଇଛି । ଏବେ ତୋ ଭାଉଜଙ୍କ ସୁଦୟାରୁ ଆଉ ମୋର ସେ ତିକ୍ତ ଅନୁଭୂତି ନାହିଁ ।"

"ଆରେ କିଛି ପିଇବୁନି ? ଭାଉଜ, ତୁମେ କ'ଣ କିଛି ପିଇବନି ? ହୁଇସ୍କି ମଗାଇବି ?"

"ନାଇଁ, ନାଇଁ, ଡିନର ମଗାଇଛି । ତୁ ତ ଜାଣିଛୁ, ହୁଇସ୍କି ମୋ ଦେହରେ ଚଳେନି । ତୁ ଜାଣିକରି ଭାଉଜ ଆଗରେ ଖେଳୁଛୁ ନା କଅଣ ?" ଦେବବାବୁ କହିଲେ ।

"ଆମେ ନ ଖାଇଲେହେଁ, ଆପଣ ଏଠି ଖାଇ ପାରନ୍ତି । ଆମର ସେଥିରେ ଆପତ୍ତି ନାହିଁ । ଆପଣ ମଗାଉ ନାହାନ୍ତି ?" ଗୀତାଦେବୀ କହିଲେ ।

"ସେ କ'ଣ ଡିନର ଖାଇବା ପାଇଁ ଏଠିକି ଆସିଛି ? ସେ ଏଠି ଢୋଳେ ହୁଇସ୍କି ପିଇ ଟଳି ଟଳି ଘରକୁ ଯିବ, ଘରେ ଫାଏଁ ହୋଇ ପଡ଼ିଯିବ । ସେ କ'ଣ ଏକା ଏଠି ହୁଇସ୍କି ପିଇବ ? ସାଙ୍ଗସାଥି ନ ହେଲେ କ'ଣ ମଜା ଉଠିବ ? ସେ ଜାଣିଛି, ତା ସାଙ୍ଗମାନେ କେଉଁଠି ବସିଛନ୍ତି । ହେଇ, ଦେଖୁନ, ସେ ଚୁମ୍ବକ ଟାଣିଲା ଭଳି କେମିତି ସେଠିକି ଟାଣି ହୋଇ ଯିବ ।"

"ଆରେ, ଦେବ୍, ହୁଇସ୍କି ନ ହେଲେ କ'ଣ ଜୀବନ ଅଛି ? ତୁ ତ ତୁଚ୍ଛା ଶାଗଖିଆ ଲୋକ । ହୁଇସ୍କିର ମାହାତ୍ମ୍ୟ ଜାଣିବୁ କୁଆଡୁ ? ଭାଉଜ କେମିତି ଆମେରିକାରେ ଏତେଦିନ ରହି, ପିଇବାଟା ଅଭ୍ୟାସ କରି ନାହାନ୍ତି ?"

"ଆଚ୍ଛା, ଭଲ ଅଭ୍ୟାସଟା ଯେ, ନ କଲେ ବୋଲି ତୋର ଚିନ୍ତା ପଡ଼ିଛି ? ଛତରାଙ୍କ ଛଡ଼ା ଆଜିକାଲି ମଦ ପିଏ କିଏରେ ? ହେଉ, ଯା, ଯା, ତୋ ସାଙ୍ଗମାନେ ସେଠି ତୋତେ ଅନାଇ ବସିଛନ୍ତି । ସେଠି ଜୈନ, ଡାଲମିଆଁ, ପଟେଲ, କିଶୋରୀଲାଲ ବୋତଲ ଖୋଲି ତୋ ଅପେକ୍ଷାରେ ବସିଛନ୍ତି । ଆଜି ତୁମମାନଙ୍କର ରାତି । ବେଶ୍ ଢୋଳେ ଲେଖାଏଁ ପିଇ ଟଳିଟଳି ଘରକୁ ଯିବ । ଡ୍ରାଇଭର ବିଚାରାଗୁଡ଼ାକ ତ ଅନାଇ ବସିଛନ୍ତି, ତୁମମାନଙ୍କୁ ଟେକାଟେକି କରି ମଟରରେ ପକାଇ ଘରକୁ ନେବା ପାଇଁ । ନ ପିଇଲେ ସେ କଳାଟଙ୍କାଗୁଡ଼ାକ ଧଳା ହେବ କେମିତି କିରେ ?

× × × × ×

"ଆଜି ଆମ ଶିଳ୍ପନଗରୀର ନୂଆ ଶ୍ରମିକ କଲୋନିଆଡ଼େ ବୁଲି ନ ଗଲେ ଚଳିବନି ଗୀତା । ସେଠାକାର ଅଭାବ ଅସୁବିଧା ନେଇ ମେନେଜର ଓ ଶ୍ରମିକମାନଙ୍କ ଭିତରେ କ'ଣ ମାନ ମନାନ୍ତର ହୋଇଥିଲା, ସେ କଥା ମଧ୍ୟ ବୁଝିବା । ଯାହା

କୁହ ଗୀତା, ତୁମେ ସିନା ସେ ମେନେଜରକୁ ଆମ କାଚ କାରଖାନା ପାଇଁ ନିଯୁକ୍ତି ଦେଲ, କିନ୍ତୁ ଲୋକଟା ଭଲ ନୁହେଁ ।''

''ହଁ, ସେଇଟା ମୋର ଏକ ବିରାଟ ଭୁଲ । ବାପାଙ୍କ କାରଖାନାରେ ଏକ ଦକ୍ଷ ମେନେଜର ଥିଲା ବୋଲି ମୁଁ ତାକୁ ଏଠି ଆଣି ରଖିଲି । କିନ୍ତୁ ଦେଖୁଛି, ମୋର ସେଇଟା ଭ୍ରାନ୍ତ ଧାରଣା ।''

''ଲୋକଟା ତୁମ ବାପାଙ୍କ କାରଖାନାରେ ଦକ୍ଷ ହୋଇପାରେ । କିନ୍ତୁ ଆମ କାରଖାନା ପାଇଁ ମୋଟେ ଉପଯୋଗୀ ନୁହେଁ । ତା'ର ଶ୍ରମିକମାନଙ୍କ ସହିତ ସମ୍ପର୍କ ଭଲ ନୁହେଁ । ସେ ଆମ ନୀତିର ଠିକ୍ ଓଲଟା କାମ କରୁଛି । ଯେଉଁ ମେନେଜରମାନେ ଶ୍ରମିକମାନଙ୍କ ସହିତ ଭଲ ସମ୍ପର୍କ ରଖିପାରୁ ନାହାନ୍ତି, ସେମାନେ ଦକ୍ଷ ହେଲେ ବି ଆମ ସଂସ୍ଥା ପାଇଁ ମୋଟେ ଉପଯୋଗୀ ନୁହନ୍ତି ।''

''ହଁ, ମୁଁ ବର୍ତ୍ତମାନ ସେଇଆ ଉପଲବ୍ଧି କରୁଛି ।''

''ତୁମ ବାପାଙ୍କ ଶାସନ ନୀତି ଓ ଆମ ନୀତି ଭିତରେ ଢେର୍ ତଫାତ୍ । ତୁମ ବାପାଙ୍କ ଶାସନରେ ଦକ୍ଷତା ଦେଖାଇଲା ବୋଲି ଆମର ଏଠି ଯେ ଦେଖାଇବ, ତା'ର କିଛି ମାନେ ନାହିଁ । ତୁମ ବାପାଙ୍କ ମିଲ୍‌ରେ ସେ ଶ୍ରମିକମାନଙ୍କୁ ଯେମିତି ଡରାଡରି କରି ରଖିଥିଲେ, ସେ ଭାବିଲେ ଏଠି ସେମିତି କରିବେ । କିନ୍ତୁ ଏଠି ଆମ ଶ୍ରମିକଙ୍କର ଯେଉଁ ସ୍ୱାଧୀନତା, ସେଥିରେ ତାଙ୍କ ବୁଦ୍ଧି ଖଟୁଛି କେତେକେ ? ସେ ଶ୍ରମିକମାନଙ୍କୁ ନାଲି ଆଖି ଦେଖାଇଲାବେଳକୁ ଶ୍ରମିକମାନେ ତାଙ୍କ ବିରୋଧରେ ଉଠିଲେ ।''

''ମୁଁ ଭାବୁଛି, ଆମେ ତାଙ୍କୁ ବାପାଙ୍କ ମିଲ୍‌କୁ ପୁଣି ଫେରାଇଦେବା । ଆମର ବର୍ତ୍ତମାନ ଯିଏ ଡେପୁଟି ମେନେଜର ଅଛନ୍ତି, ସେ ଅତି ଦକ୍ଷ ଲୋକ ଭଳି ଜଣା ପଡୁଛନ୍ତି । ଶ୍ରମିକମାନଙ୍କ ସହ ସମ୍ପର୍କ ମଧ ଖୁବ୍ ଭଲ । ସେ ଏବେ ନୂଆ ପାସ୍ କରି ଆସିଛନ୍ତି । ଅଳ୍ପ ବୟସର ହେଲେ କଅଣ ହେବ, ସେ ଖୁବ୍ ଦକ୍ଷ ଓ କର୍ମଠ । ତେଣୁ ତାଙ୍କୁ ମେନେଜର ପଦରେ ରଖିଲେ କିଛି କ୍ଷତି ନାହିଁ ।''

''ଦେଖ ଗୀତା, ଆମେ ଅଫିସ୍ ବାହାରେ ଶିଳ୍ପ କାରଖାନା କଥା ଆଲୋଚନା ନ କରିବା ପାଇଁ ଶପଥ ନେଇଛେ । ଅଥଚ ଗାଧୋଇ ଯାଉ ଯାଉ ସେହି ଶିଳ୍ପ କାରଖାନା କଥା । ମୁଁ ଦେଖୁଛି ଦିନରାତି ଚବିଶଘଣ୍ଟା ଆମେ ଶିଳ୍ପ ଶିଳ୍ପ ହୋଇ ପାଗଳ ହୋଇଯିବା । ଗାଧୋଇ ଗଲାବେଳେ ଶିଳ୍ପ, ବୁଲିଗଲା ବେଳେ ଶିଳ୍ପ, ଖାଇଲାବେଳେ ଶିଳ୍ପ, ଶୋଇଲାବେଳେ ଶିଳ୍ପ, ସ୍ୱପ୍ନରେ ଶିଳ୍ପ, ଆଉ ରହିଲା

କଅଣ ? ଆମ ଜୀବନ କ'ଣ ଖାଲି ଶିଳ୍ପ ଶିଳ୍ପ ହୋଇ କଟିବ ? ଆମ ଜୀବନରେ କ'ଣ ଆଉ କିଛି ନାହିଁ ?''

''ନାଇଁ, ନାଇଁ, ମୋର ଭୁଲ ହୋଇଗଲା । ଆମେ ପରା ଶପଥ ନେଇଥିଲେ, କାରଖାନା ପରିସର ବାହାରେ ଆମେ କେବେ ଆମ ଶିଳ୍ପ କାରଖାନା କଥା ଆଲୋଚନା କରିବାନି ବୋଲି । ମୁଁ ହେଇ ଗାଧୋଇ ବାହାରିଲି । ତୁମେ ଏଥର ଗଲ ଗାଧୋଇବ ।'' ଦେବବାବୁ କହିଲେ ।

''ହେଉ, ମୁଁ ଚାଲିଲି । ଦେଖ, ଗାଧୋଇଲାବେଳେ ଆଉ ଯେମିତି ଶିଳ୍ପ କାରଖାନା କଥା ଚିନ୍ତା ନ କର । ନଚେତ୍ ଗାଧୋଉ ଗାଧୋଉ ଗତଥର ଭଳି ମୋ ଗାଧୁଆଘର କବାଟ ଯେମିତି ଧଡ଼ ଧଡ଼ ନ କର । କ'ଣ ନା ଗୋଟିଏ କଥା କହିବାକୁ ଭୁଲିଗଲି, ଦୁଆର ଖୋଲ, ମୁଁ କହିଦେଇ ଯାଏ ।''

''ତା'ହେଲେ ଏବେ ଏଣିକି ଗୋଟିଏ ଗାଧୁଆ ଘର ଆମେ ଦିହେଁ ଗାଧୋଇବା । ଏଣେ ଗାଧୋଉଥିବା, ତେଣେ ଶିଳ୍ପ କାରଖାନା କଥା ଆଲୋଚନା କରୁଥିବା ।'' ହସି ହସି ଉତ୍ତର ଦେଲେ ଦେବବାବୁ ।

''ବାଃ, ବଢ଼ିଆ ପ୍ରସ୍ତାବଟେ ଦେଲ ସତେ । ସ୍ୱାମୀ-ସ୍ତ୍ରୀ ଦିହେଁ ଗୋଟିଏ ଘରେ ଗାଧୋଇଲେ ଲୋକେ ପାଗଳ କହିବେ ନାହିଁ ତ ଆଉ କ'ଣ କହିବେ ?''

''କାହିଁକି କହିବେ ? ମୋଗଲ ବାଦଶାହାମାନେ ତ ସେମାନଙ୍କ ଦଶ ବାର ବେଗମଙ୍କ ସହିତ ଗୋଟିଏ ଗାଧୁଆ ଘରେ ଗାଧୋଉଥିଲେ । ଗାଧୋଉ ଗାଧୋଉ ନାଚ ଚାଲୁଥିଲା । ସେମାନଙ୍କୁ ତ କେହି ପାଗଳ କହୁ ନ ଥିଲେ ।''

ସେ ଯୁଗ ଆଜି ଆଉ ନାହିଁ । ସେ ସଭ୍ୟତା ଓ ବର୍ତ୍ତମାନର ସଭ୍ୟତା ଭିତରେ ଆକାଶ ପାତାଳ ପ୍ରଭେଦ ।

''ହେଉ, ଥାଉ, ଥାଉ, ଏବେ ଗାଧୁଆଘରକୁ ଗଲ । ମୁଁ ହେଇ ଗଲି ।''

''ହଁ, ହଁ, ଗୋଟିଏ କଥା ରହିଗଲା ରୀତା । ଗୋଟିଏ ଅତି ଉତ୍କୃଷ୍ଟ ଚୂନଖଣି ଆମକୁ ମିଳି ଯାଇଛି ତୁମେ ଜାଣିଛ ? ଏହା ଚୂନପଥର ଏତେ ଉତ୍କୃଷ୍ଟ ଯେ ଆମେ ସେଥିରୁ ଖୁବ୍ ଶସ୍ତାରେ ଧଳା ସିମେଣ୍ଟ ତିଆରି କରି ପାରିବା । ଆମ ଭୂତତ୍ତ୍ୱବିତ୍ ତାଙ୍କ ରିପୋର୍ଟ ନେଇ ଆଜି ମୋ'ଠାକୁ ଆସିଥିଲେ । ମୁଁ ଦେଖିଲି ଚୂନପଥର ଖୁବ୍ ଉତ୍କୃଷ୍ଟ ଧରଣର । ଏହି ଧଳା ସିମେଣ୍ଟ ଆମେ ବାହାରକୁ ରପ୍ତାନୀ କରି ପାରିବା । ସେହି ଚୂନଖଣିକୁ ପଟ୍ଟା ନେବାପାଇଁ ମୁଁ ସଙ୍ଗେ ସଙ୍ଗେ ବରାଦ କରି ଦେଇଛି । ଆଉ କେହି ଯଦି ଏହାର ସନ୍ଧାନ ପାଇଯାଏ ନା ତେବେ ଅସୁବିଧା ହୋଇଯିବ । ଯେତେ ଶୀଘ୍ର ନିଆଯାଏ, ସେତେ ଭଲ ।''

"ଧଳା ସିମେଣ୍ଟକୁ ବାହାରକୁ ରପ୍ତାନୀ ନ କରି ଆମେ ଯଦି ଗୋଟିଏ ସିମେଣ୍ଟ ରଙ୍ଗ କାରଖାନା ବସାନ୍ତୁ, ତେବେ ଭଲ ହୁଅନ୍ତା । ଆମେ ଖୁବ୍ ଶସ୍ତାରେ ସିମେଣ୍ଟ ରଙ୍ଗ ବଜାରକୁ ଛାଡ଼ି ପାରନ୍ତେ । ସ୍ନୋସେମ୍, ସୁପର୍, ସ୍ନୋସେମ୍ ଆଦି କୋମ୍ପାନୀ ଯେଉଁ ଦରରେ ସିମେଣ୍ଟ ରଙ୍ଗ ବଜାରକୁ ଛାଡୁଛନ୍ତି, ଆମେ ସେମାନଙ୍କ ଠାରୁ ଆହୁରି ଶସ୍ତାରେ ଛାଡ଼ି ପାରନ୍ତେ । ଫଳରେ ଆମର ଲାଭ ହୁଅନ୍ତା ଅପର୍ଯ୍ୟାପ୍ତ । ଲୋକେ ଶସ୍ତାରେ ଖୁବ୍ ଖୁସି ହୁଅନ୍ତେ ଆମ ଉପରେ" ଗୀତାଦେବୀ କହିଲେ । ଏହି ଅଧିକ ଲାଭଖୋର ବ୍ୟବସାୟୀଙ୍କ ଯୋଗୁ ସିମେଣ୍ଟ ରଙ୍ଗ ମୋଟେ ଶସ୍ତା ହୋଇପାରୁନି ବଜାରରେ । ସେମାନେ ସମସ୍ତେ ମିଶି ଯାଇଛନ୍ତି, ଲୋକଙ୍କୁ ଶୋଷଣ କରିବାପାଇଁ ।

ହଁ, ଠିକ୍ କଥା କହିଛ ଗୀତା । ଧଳା ସିମେଣ୍ଟକୁ ସେମିତି ବିକ୍ରୟ ନ କରି ସେଥିରୁ ନାନା ପ୍ରକାର ସିମେଣ୍ଟ ରଙ୍ଗ ଉତ୍ପାଦନ କଲେ ଅଧିକ ଲାଭ ହେବ । କେତେଗୁଡ଼ିଏ ଲୋକ ତ ନିଯୁକ୍ତି ପାଇ ପାରିବେ । ତୁମେ ଠିକ୍ କଥାଟିଏ ମୋ ମନେ ପକାଇ ଦେଇଛ । ମୋର ସେଆଡ଼କୁ ମୋଟେ ଦୃଷ୍ଟି ନ ଥିଲା । ସିମେଣ୍ଟ ରଙ୍ଗ ତିଆରିକୁ ଏକ କାରଖାନା ଭାବରେ ପ୍ରତିଷ୍ଠା ନ କରି ଧଳା ସିମେଣ୍ଟ କାରଖାନାର ଏକ ଡିଭିଜନ ଭାବରେ ପ୍ରତିଷ୍ଠା କରିବା । ଆମ ଚୂନପଥରର ବିଶୁଦ୍ଧତା ଦେଖିଛ ଗୀତା ? ଅତି ଉଚ୍ଚରେ । ଏଥିରେ ସିମେଣ୍ଟ ତିଆରି ହେଲେ ନା ଏହା ଜେ. କେ. ଧଳା ସିମେଣ୍ଟକୁ ଢେର୍ ପଛରେ ପକାଇଦେବ ?"

"ଆଉ ଡେରି ନ କରି ଏ ଦିଗରେ ଆଗେଇଯିବା ଦରକାର ।" ଗୀତାଦେବୀ କହିଲେ ।

"ମୁଁ ଦେଖୁଛି, ତୁମ ମୁଣ୍ଡରୁ ଆଉ ଶିଳ୍ପ କାରଖାନା ଚିନ୍ତା କେବେ ଯିବନି ଗୀତା । ଗୋଟିଏ ଚିନ୍ତା ପରେ ଆଉ ଗୋଟିଏ ଚିନ୍ତା ଯେମିତି ଧାଡ଼ି ଧରି ରହିଛି ତୁମ ମୁଣ୍ଡରେ । ଆମେ ଶିଳ୍ପପତି ହେଲେ ବୋଲି ଆମର ଏହି ଶିଳ୍ପ କାରଖାନା ଚିନ୍ତା ଛଡ଼ା କ'ଣ ଆଉ କିଛି ଚିନ୍ତା ନାହିଁ ? ମୁଁ ଦେଖୁଛି ଆମେ ସର୍ବଦା ଶିଳ୍ପ ଶିଳ୍ପ ହେଉଛେ । ଥାଉ, ଥାଉ, ଏଠି । ଏ ଶିଳ୍ପ କଥା ଅଫିସ୍‌ରେ ଆମେ ଚିନ୍ତା କରିବା । ତୁମେ ଏଥର ଗଲ ଗାଧୁଆଘରକୁ । ମୁଁ ହେଇ ଚାଲିଲି ।"

× × × × ×

"ଇଏ କ'ଣ ଗୀତା, ଘରକୁ କଅଣ ଫାଇଲ ସବୁ ନେଇ ଆସୁଛ ? ଅଫିସ୍ କାମ ଅଫିସ୍‌ରେ, ଘର କାମ ଘରେ । ଅଫିସ୍ କାମ ଘରେ କାହିଁକି ?"

"ଘରେ ଭଲ ଭାବରେ ଚିନ୍ତା କରି ଅର୍ଡ଼ର ଦେବି ବୋଲି ଗୁରୁତ୍ୱପୂର୍ଣ୍ଣ ଫାଇଲ୍ ସବୁ ଘରକୁ ନେଇ ଆସେ ।"

"ଏତେ କାମ କଲେ ଚଳିବନି ଗୀତା । ଘରେ ଏତେ କାମ କଲେ ତୁମର ବିଶ୍ରାମ ସମୟ କମି ଆସିବ । ଏହାଫଳରେ ମାନସିକ ଚାପ ବଢ଼ିଯିବ ।"

"ମୁଁ ତାହା ଜାଣୁଛି ଯେ, ତଥାପି ଘରକୁ ତ ନେଇ ଆସୁଛି ?"

"ଦେଖ, ଯାହା ଆଣିଲ ଆଣିଲ, ଆଉ ଯେମିତି ନ ଆଣ । ଘରେ ଫାଇଲ ଦେଖା ରଖିଦିଅ । ଆଜି ଚାଲ ଟିକିଏ ବାହାରୁ ବୁଲି ଆସିବା । ଆଜି ତ ରବିବାର, ଶ୍ରମିକ କଲୋନିଆଡ଼େ ଟିକିଏ ବୁଲି ଆସିଲେ ହୁଅନ୍ତାନି । ଅନେକ ଦିନ ହେଲା ଆମେ ସେଆଡ଼କୁ ଯାଇ ନାହାନ୍ତି । ଆମର ଶିବାଜୀନଗର ଶ୍ରମିକ କଲୋନିରେ ଗୋଟିଏ ମନ୍ଦିର ହେବା ପାଇଁ ବହୁତ ଦିନ ହେଲା ଦାବୀ ହୋଇ ଆସୁଛି । ସେଠା ଶ୍ରମିକମାନଙ୍କ ଏକ ଦଳ ମୋତେ ଆଜି ଦେଖା କରିଥିଲେ । ମୁଁ ସେମାନଙ୍କୁ ଜବାବ ଦେଇଛି ଆଜି ସ୍ଥାନ ବାଛି ଇଞ୍ଜିନିଅରଙ୍କୁ ଅର୍ଡ଼ର ଦେବି । ଚାଲ, ସେଆଡ଼େ ଟିକିଏ ବୁଲି ଆସିବା ଗୀତା । ମନ୍ଦିର ପାଇଁ ଦୁଇ ତିନୋଟି ଜାଗାର ସନ୍ଧାନ ଦେଇଛନ୍ତି ସେମାନେ । ଦେଖିବା, ସେଥିଭିତରୁ କେଉଁଟିକୁ ବାଛିଲେ ସମସ୍ତଙ୍କର ସୁବିଧା ହେବ ।"

"କିନ୍ତୁ ସେଠାକାର ଦଳେ ଯୁବକ କ'ଣ ଗୋଟିଏ ଲାଇବ୍ରେରି ପାଇଁ ମୋ'ଠାରେ ଦରଖାସ୍ତ ପେଶ୍ କରିଛନ୍ତି । ମୋର ଯାହା ମନେପଡୁଛି, ହଁ, ସେମାନେ ସମସ୍ତେ ଶିବାଜୀନଗରର ବାସିନ୍ଦା । ସେମାନେ କହୁଛନ୍ତି, ସେମାନଙ୍କ ଆଖପାଖ ଅଞ୍ଚଳରେ ଲାଇବ୍ରେରିଟାଏ ନାହିଁ । ସେଇଟା ହେବା ନିହାତି ଉଚିତ । ଏ କେମିତି ? ମୋ ଠାରେ ଗୋଟିଏ କଥା, ତୁମଠାରେ ଆଉ ଏକ କଥା ।"

ହସିଲେ ଦେବବାବୁ, କହିଲେ, "ହେଉ, କୁହ, କେଉଁଟା କରିବା ଆଗ, ମନ୍ଦିର ନା ଲାଇବ୍ରେରି ?"

"ନା, ମନ୍ଦିର ହେଉ । ମନ୍ଦିର ନ ହେଲେ ଲୋକଙ୍କ ପୂଜା ଅର୍ଚ୍ଚନାରେ ବ୍ୟାଘାତ ଜନ୍ମିବ । ପୂଜା କରିବା ପାଇଁ ସେମାନଙ୍କୁ ଆଠ ନମ୍ବର ସେକ୍ଟରକୁ ଯିବାକୁ ପଡୁଛି । ଆଠ ନମ୍ବର ସେକ୍ଟର ଶିବାଜୀନଗରଠାରୁ କେତେଦୂର କହିଲ ? ଖାସ୍ ପୂଜା କରିବା ପାଇଁ ପିଲାକବିଲା ଧରି ଏତେ ବାଟ ଯିବା କ'ଣ ସହଜ ? ନିକଟରେ ମନ୍ଦିର ନ ହେଲେ ଲୋକଙ୍କ ଧର୍ମଭାବ ଧୀରେ ଧୀରେ କମିଯିବ । ଲୋକଙ୍କ ଧର୍ମଭାବ ଯେମିତି ବଢ଼େ, ଆମର ସେଆଡ଼କୁ ଦୃଷ୍ଟି ଦେବା ବିଧେୟ । ଲୋକଙ୍କ ମନରୁ ଯଦି ଧର୍ମଭାବ ଉଭେଇଯାଏ ନା, ସାରା ସଂସାର ଧ୍ୱଂସ ପାଇଯିବ ।"

"ଲାଇବ୍ରେରି ହେଲେ ତ ଆହୁରି ଭଲ ହେବ । ସେ ଅଞ୍ଚଳର ପିଲାଏ ଓ ଲୋକେ ଲାଇବ୍ରେରିରୁ ଭଲ ଭଲ ବହି ପଢ଼ି ନାନା କଥା ଜାଣିବେ ।

ସେମାନଙ୍କ ଜ୍ଞାନ ବଢ଼ିବ । ଭଲ ଭଲ ବହି ପଢ଼ିଲେ ପିଲାଙ୍କ ମନ ପାଠ ଆଡ଼କୁ ଅଧିକ ଢଳିବ । ସେମାନେ ଭଲ ଭଲ ବହି ପଢ଼ିଲେ ଭଲ ମଣିଷ ହେବାକୁ ଚେଷ୍ଟା କରିବେ । ସେମାନଙ୍କ ଚରିତ୍ର ଭଲ ଭାବରେ ଗଠିତ ହୋଇପାରିବ ।''

''ବେଶ୍ ଭଲ କଥା । ମୁଁ ତୁମଠାରେ ହୋଇଥିବା ଦାବୀକୁ ସମର୍ଥନ କରେ, ତୁମେ ମୋ ଠାରେ ହୋଇଥିବା ଦାବୀକୁ ସମର୍ଥନ କର । ଆମ ଭିତରେ ଯୁକ୍ତିତର୍କ ଚାଲୁ । ସେଥିପାଇଁ ମୁଁ କ'ଣ ମନସ୍ଥ କରିଛି ଜାଣ ?''

''କ'ଣ ମନସ୍ଥ କରିଛ ?''

''ସେହି ନଗରରେ ଏକ ସଙ୍ଗେ ଉଭୟ ମନ୍ଦିର ଓ ଲାଇବ୍ରେରି ପ୍ରତିଷ୍ଠିତ ହେବ । ଲାଇବ୍ରେରି ସହିତ କ୍ଲବ୍‌ଟିଏ କରିଦେଲେ ଆହୁରି ଭଲ ହେବ । ସେ ଅଞ୍ଚଳର ପିଲାମାନେ ବହି ପଢ଼ିବା ସହିତ ଆମୋଦ ପ୍ରମୋଦ ମଧ୍ୟ କରି ପାରିବେ । ଯେଉଁମାନେ ମନ୍ଦିରକୁ ଯିବା କଥା, ସେମାନେ ମନ୍ଦିରକୁ ଯିବେ । ଯେଉଁମାନେ ଲାଇବ୍ରେରିକୁ ଯିବା କଥା, ସେମାନେ ଲାଇବ୍ରେରିକୁ ଯିବେ । ଚାଲ, ଆଜି ସେ ଅଞ୍ଚଳ ବୁଲି ସେମାନଙ୍କ ପାଇଁ ଦୁଇଟି ସ୍ଥାନ ବାଛି ଦେବା, ଗୋଟିଏ ମନ୍ଦିର ପାଇଁ, ଅନ୍ୟଟି ଲାଇବ୍ରେରି ଓ କ୍ଲବ୍ ପାଇଁ ।''

''ତା'ହେଲେ ଆମେ ସେମାନଙ୍କ ଦାବୀଠାରୁ ତ ଅଧିକ ଦେଲେ ?''

''ହଁ, ସେଇ ତ ହେଉଛି ଆମ ସଂସ୍ଥାର ବିଶେଷତ୍ୱ । ଆମେ ତ ସେମାନଙ୍କ ଦାବୀକୁ ଉପେକ୍ଷା କରିବାନି । ଯେଉଁଟା ତାଙ୍କ ଅଞ୍ଚଳରେ ହେବା ଦରକାର, ସେମାନଙ୍କ ଦାବୀ ହେଉ ବା ନ ହେଉ, ଆମେ କରିଦେଲେ ଗଲା । ଅନ୍ୟ ସଂସ୍ଥାଭଳି ସେମାନେ ଦାବୀପତ୍ର ଦେବେ, ବାରମ୍ବାର କର୍ତ୍ତୃପକ୍ଷଙ୍କୁ ଦେଖା କରିବେ, ଧର୍ମଘଟ, ହରତାଳର ଧମକ ଦେବେ । ତା'ପରେ ଯାଇ କର୍ତ୍ତୃପକ୍ଷ ସେମାନଙ୍କ ଦାବୀ ଶୁଣିବେ । ଏଭଳି ବ୍ୟବସ୍ଥା ତ ଆମ ସଂସ୍ଥାରେ ନାହିଁ ।''

ମିଷ୍ଟର ଅଗ୍ରୱାଲଙ୍କ ଶ୍ରମିକ କଲୋନି ବେଶ୍ ଉନ୍ନତଧରଣର । ଅନ୍ୟ ଶିଳ୍ପପତିଙ୍କ ଭଳି ତାଙ୍କ କଲୋନି ଗୋଟିଏ ଗୋଟିଏ ସ୍ଲମ୍ ନୁହେଁ । ପ୍ରତ୍ୟେକଙ୍କୁ ଦିଆଯାଇଛି କୋଠାଘର । ଘରେ ବିଜୁଳି ଆଲୁଅ, ପାଣି ପାଇପ୍, ଗ୍ୟାସ୍ ପାଇପ୍ ଆଦି ସବୁକିଛି ଅଛି । ପ୍ରତ୍ୟେକଙ୍କ ପାଇଁ ଭଲ ଭଲ ଗାଧୁଆଘର ଓ ସେପ୍‌ଟିଟେଙ୍କ୍ ପାଇଖାନା । ଅସ୍ୱାସ୍ଥ୍ୟକର ପରିବେଶ ଟିକିଏ ବି କେଉଁଠି ନାହିଁ । ମିଷ୍ଟର ଅଗ୍ରୱାଲ ଶ୍ରମିକମାନଙ୍କୁ ମଣିଷ ଭଳି ବଞ୍ଚିବାକୁ ଦିଅନ୍ତି, ପଶୁଭଳି ନୁହେଁ । ଅନ୍ୟ ଶିଳ୍ପପତିମାନେ ଅଗ୍ରୱାଲଙ୍କ ଶ୍ରମିକ କଲୋନି ଦେଖି ଈର୍ଷା କରନ୍ତି । ଅନ୍ୟ ଶିଳ୍ପ କାରଖାନାରେ ଶ୍ରମିକମାନେ ସେମାନଙ୍କ ଶ୍ରମିକ କଲୋନି ମିଷ୍ଟର ଅଗ୍ରୱାଲଙ୍କ ଶ୍ରମିକ କଲୋନି

ଭଳି ଦେବାକୁ ଦାବୀ କରନ୍ତି । କିନ୍ତୁ ମାଲିକମାନେ ଶୁଣନ୍ତିନି । ତେଣୁ ସେମାନେ ଧର୍ମଘଟର ସାହାଯ୍ୟ ନିଅନ୍ତି । କି ମାଲିକମାନେ ସେମାନଙ୍କ ନେତାଙ୍କୁ ଡକାଇ ଲାଞ୍ଚ ଦେଇ ଧର୍ମଘଟ ବନ୍ଦ କରନ୍ତି । ମନେ ମନେ ବିଗିଡ଼ନ୍ତି ଅଗ୍ରୱାଲଙ୍କ ଉପରେ । ଅଭିଶାପ ଦିଅନ୍ତି ଶିଳ୍ପପତି ସମାଜର ଏ କଳଙ୍କ କେମିତି ଲୋପ ପାଉ । ସେମାନଙ୍କ ରାଗ, ‘‘ଆଚ୍ଛା ଶିଳ୍ପପତିଟାଏ ହେଲା ଯେ ଶ୍ରମିକମାନଙ୍କୁ ଦେବତା ଭଳି ମୁଣ୍ଡରେ ଆଣି ଥୋଇଲା । ସେମାନଙ୍କ କାରଖାନାର ଶ୍ରମିକମାନଙ୍କ ମୁହଁ ବଢ଼ାଇଦେଇଛି ଇଏ । ତା’ ଦାଉରେ ଶ୍ରମିକମାନଙ୍କୁ ଆଉ କ’ଣ ସମ୍ଭାଳି ହେଉଛି ? ଶିଳ୍ପପତି ସମାଜରେ ସେ ଗୋଟିଏ କଳଙ୍କ । ପୁଣି କହୁଛି କ’ଣ ନା, ଶ୍ରମିକମାନେ ହେଲେ ଦେବତା । ସେମାନେ ଯେତେ ଭଲରେ ରହିବେ, ସମସ୍ତଙ୍କର ସେତେ ମଙ୍ଗଳ । ହୁଁ, ଶ୍ରମିକମାନେ ଯଦି ଦେବତା ହେବେ, ତେବେ ମନ୍ଦିରରେ ପୂଜା ପାଉଥିବା ଦେବତାମାନେ କୁଆଡ଼େ ଯିବେ ? ଓଃ, କି ଯୁଗ ହେଲା ଇଏ ? ଏହି କୁଳଙ୍ଗାରମାନଙ୍କ ଦାଉରେ ଆଉ କଳ କାରଖାନା ଚଳାଇ ହେବନି । ସବୁ ଶ୍ରମିକଙ୍କ ମୁହଁକୁ ଜାଣିଶୁଣି ବଢ଼ାଇ ଦେଉଛି । ତା ଦାଉରେ ନିଜ ନିଜ ଶ୍ରମିକମାନଙ୍କୁ ଆଉ କ’ଣ ସମ୍ଭାଳି ହେଉଛି ? ଶିଳ୍ପପତି ସମାଜରେ ସେ ଗୋଟାଏ କଳଙ୍କ । କି ଯୁକ୍ତି, ଶ୍ରମିକମାନେ ଭଲରେ ରହିଲେ, ମାଲିକମାନେ ଭଲରେ ରହିବେ । ମାଲିକମାନେ ଯେଉଁଭଳି ଭାବରେ ରହିବେ, ଶ୍ରମିକମାନେ ସେହିଭଳି ଭାବରେ ରହିବା ଉଚିତ । ଓଃ, ଭଗବାନ, କି ଯୁଗ ହେଲା ଆଉ ? ଏହିଭଳି କୁଳାଙ୍ଗାରମାନଙ୍କ ଦାଉରେ ଆଉ ଶିଳ୍ପ କାରଖାନା ଚଳାଇ ହେବନି । ମିଷ୍ଟର ଅଗ୍ରୱାଲଙ୍କ ଏତାଦୃଶ ଶ୍ରମିକ ନୀତି ସବୁ ଶିଳ୍ପପତିଙ୍କ ଚକ୍ଷୁଶୂଳ ହୋଇ ଉଠିଲା ।

ଦେବବାବୁ ଓ ଗୀତାଦେବୀ ଗାଡ଼ିରୁ ଓହ୍ଲାଇଛନ୍ତି କି ନାହିଁ, ମାଲିକଙ୍କ ଗାଡ଼ି ଦେଖି ଶ୍ରମିକ କଲୋନିର ଚହଳ ପଡ଼ିଗଲା । ସମସ୍ତେ ଗାଡ଼ି ପାଖକୁ ଧାଇଁ ଆସିଲେ । ସେମାନଙ୍କର ଆନନ୍ଦ, ମାଲିକ ମାଲିକାଣୀ ଉଭୟେ ଆସିଥିବାରୁ । ସେମାନଙ୍କ ଆଶା କଲୋନିରେ କିଛି ଗୋଟାଏ ନିଶ୍ଚୟ ହେବ ଏଥର । ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ଦେବବାବୁ ଲକ୍ଷ୍ୟ କଲେ କଲୋନିର ବୁଢ଼ା ଓ ଟୋକା ଦୁଇଦଳ ହୋଇ ଅଲଗା ଠିଆ ହୋଇଛନ୍ତି । ସମ୍ଭବତଃ ସେମାନଙ୍କ ଇଚ୍ଛା ଅଲଗା ଅଲଗା ଥିବାରୁ ସେମାନେ ପରସ୍ପରଠାରୁ ଏମିତି ଦୂରେଇ ଛିଡ଼ା ହୋଇଛନ୍ତି । ଏଭଳି ଠିଆହେବା ଦେଖି ଦେବବାବୁଙ୍କୁ ହସ ଲାଗିଲା । ସେମାନଙ୍କ ପାଖକୁ ଯାଇ ହସି ହସି ପଚାରିଲେ, ‘‘ଆରେ, ତୁମେ ସବୁ ଏମିତି ଅଲଗା ଅଲଗା ହୋଇ ଠିଆ ହୋଇଛ କାହିଁକି ? କଥା କ’ଣ ?’’

‘‘ଆପଣ ଆଗେ ଆମ କଥା ଶୁଣନ୍ତୁ । ସେମାନଙ୍କ କଥା ପରେ ଶୁଣିବେ ।’’ ଟୋକାଏ କହିଲେ ।

"କାହିଁକି ? ଆଗେ ସେମାନଙ୍କ କଥା ଶୁଣିଲେ କ'ଣ କ୍ଷତି ହେବ ?"

"ନାଇଁ ଆଜ୍ଞା, ଆଗ ଆମ କଥା ଶୁଣନ୍ତୁ ।"

"ଆରେ, ତୁମେ ସମସ୍ତେ ଗୋଟିଏ କଲୋନିର । ଯାହା ହେବ ସମସ୍ତଙ୍କ ଭଲ ପାଇଁ ହେବ । ଏମିତି ଅଲଗା ଅଲଗା କଥା କ'ଣ ?"

"ନାଇଁ ଆଜ୍ଞା, ସେମାନଙ୍କ ଦାବୀ ଅମୂଳକ । ଆମେ ଯାହା କହୁଛୁ, ସେଥିରେ ସମସ୍ତଙ୍କର ମଙ୍ଗଳ ହେବ ।"

"ହେଉ, କୁହ ତୁମେ କ'ଣ କହିବାକୁ ଚାହୁଁଛ ?"

"ଆମ କଲୋନି ପାଇଁ ଆଗ ଗୋଟିଏ ଲାଇବ୍ରେରି ଦରକାର । ଆମ କଲୋନିର ଯେଉଁଟି କେନ୍ଦ୍ର ଜାଗା ସେହି ସ୍ଥାନଟିରେ ହେଲେ ସବୁଠାରୁ ଭଲ ହେବ । ଲାଇବ୍ରେରି ସହିତ ଗୋଟିଏ କ୍ଲବ୍ ଘର ହେଲେ ଆହୁରି ଭଲ ହୁଅନ୍ତା ।"

ହସିଲେ ଦେବବାବୁ । ଏଇ ହେଲା ତୁମ୍ଭମାନଙ୍କର ଇଚ୍ଛା । ସେମାନଙ୍କ ଇଚ୍ଛା କ'ଣ ?"

"ଆଜ୍ଞା, ସେମାନେ ବଳେ କହିବେନି । ଆପଣ ସେମାନଙ୍କ କଥା ମୋଟେ ଶୁଣନ୍ତୁନି । ସେମାନଙ୍କ କଥା ଆମ ପରେ ବିଚାର କରିବେ ।"

"ହେଉ, ସେମାନେ କ'ଣ କହୁଛନ୍ତି, ଶୁଣିବା ।" ହସି ହସି କହିଲେ ଦେବବାବୁ । ବୁଢ଼ାମାନଙ୍କ ଆଡ଼କୁ ଅନାଇଲା ବେଳକୁ ସେମାନଙ୍କ ଭିତରୁ ସବୁଠାରୁ ବୁଢ଼ା ଜଣେ ବାହାରି ଆସି କହିଲା, "ଆଜ୍ଞା, ବଡ଼ ଅସୁବିଧା ହେଉଛି ଆମ୍ଭମାନଙ୍କର । ଆମ କଲୋନିରେ ମନ୍ଦିରଟିଏ ନାହିଁ । ମନ୍ଦିରରେ ପୂଜା ଅର୍ଚ୍ଚନା ପାଇଁ ଆମ୍ଭମାନଙ୍କୁ ଯିବାକୁ ପଡୁଛି ଏଠାରୁ ବହୁତ ଦୂର ଆଠ ନମ୍ବର ସେକ୍ଟରକୁ ।"

"ଆପଣମାନେ ଏଥିପାଇଁ କେଉଁ ଜାଗାଟିକୁ ବାଛିଛନ୍ତି ଶୁଣେ ?"

"ଏହିଠାରୁ ଦୁଇଟି ବ୍ଲକ୍ ଛାଡ଼ି ସେହି ଯେଉଁ ଛୋଟ ପଡ଼ିଆଟିଏ ଦେଖୁନାହାନ୍ତି ଆଜ୍ଞା, ସେହି ସ୍ଥାନଟି ମନ୍ଦିର ପାଇଁ ସବୁଠାରୁ ଭଲ ଜାଗା । ଆପଣଙ୍କ ଟାଉନ୍‌ପ୍ଲେନ୍‌ର ମଧ୍ୟ ତାହାକୁ ଅନୁମୋଦନ କରିଛନ୍ତି ।"

ପାଖରେ ଠିଆ ହୋଇଥିବା ଟାଉନ୍‌ପ୍ଲେନ୍‌ର ଓ ଆର୍‌କିଟେକ୍ଟଙ୍କ ଆଡ଼କୁ ଦେବବାବୁ ଅନାଇଲେ । ସେମାନେ ସଙ୍ଗେ ସଙ୍ଗେ ନକ୍‌ସା କାଢ଼ି ସେହି ଜାଗାଟିକୁ ଦେଖାଇଦେଲେ । ଆର୍‌କିଟେକ୍ଟ ମନ୍ଦିର ପାଇଁ କରିଥିବା ନକ୍‌ସା ଦେବବାବୁଙ୍କ ହାତକୁ ବଢ଼ାଇଦେଲେ । ଦେବବାବୁ ମନ୍ଦିରର ନକ୍‌ସା ଦେଖି ଭାରି ଖୁସୀ ହୋଇଗଲେ । ସଙ୍ଗେ ସଙ୍ଗେ ଗୀତାଦେବୀଙ୍କୁ ଦେଖାଉ ଦେଖାଉ ପଚାରିଲେ, "ଏହା ତୁମ

ମନକୁ କେମିତି ପାଉଛି ଗୀତା । ମନ୍ଦିରଟି ତିଆରି ହୋଇଗଲେ କ'ଣ ଭଲ ଦିଶିବନି ?''

''ଚମତ୍କାର ଦିଶିବ । ମନ୍ଦିରର ନକ୍‌ସା ମୋ ମନକୁ ବେଶ୍ ପାଇଛି । ଆଉ ଡେରି କାହିଁକି ? ଶୀଘ୍ର କାମ ଆରମ୍ଭ କରାଯାଉ ।''

ସଙ୍ଗେ ସଙ୍ଗେ ଆସନ୍ତାକାଲିଠାରୁ ମନ୍ଦିର କାର୍ଯ୍ୟ ଆରମ୍ଭ ହେବ ବୋଲି ଦେବବାବୁ ପାଖରେ ଠିଆ ହୋଇଥିବା ଇଞ୍ଜିନିୟରମାନଙ୍କୁ ଆଦେଶ ଦେଲେ ।

ଯୁବକମାନଙ୍କ ଆଡ଼କୁ ଅନାଇ କହିଲେ, ''ଦେଖ ମନ୍ଦିର ତିଆରି ସହିତ ତୁମ୍ଭମାନଙ୍କ ଲାଇବ୍ରେରି ଓ କ୍ଲବ୍ ଘର ମଧ୍ୟ ତିଆରି ହେବ । ଯୁବକ ଦଳ କହିଥିବା ସ୍ଥାନଟିକୁ ଦେଖାଇଦେଇ ଦେବବାବୁ ଟାଉନ୍‌ପ୍ଲେନ୍‌ରଙ୍କୁ ପଚାରିଲେ, ସେହି ଜାଗାଟିରେ ଆମର ଆଉ କିଛି ତିଆରି ହେବାପାଇଁ ତ ଯୋଜନା ନାହିଁ ? ତେବେ ସେହି ଜାଗାଟିରେ ଗୋଟିଏ ଲାଇବ୍ରେରି ଓ ପାଖରେ ଗୋଟିଏ କ୍ଲବ୍ ଘର କରାଯାଉ । ସଙ୍ଗେ ସଙ୍ଗେ ଆର୍‌କିଟେକ୍ଟଙ୍କୁ ବରାଦ ହେଲା, ଏହାର ନକ୍‌ସା ଯେମିତି ଦୁଇଦିନ ଭିତରେ ମେଡେମ୍‌ଙ୍କ ପାଖରେ ଦାଖଲ ହୁଏ ।''

ଉଭୟ ମନ୍ଦିର ଓ ଲାଇବ୍ରେରି ପ୍ରତିଷ୍ଠିତ ହେବା ଶୁଣି ଯୁବକ ଓ ବୃଦ୍ଧଦଳଙ୍କ ମଧ୍ୟରେ ଆନନ୍ଦ କହିଲେ ନ ସରେ । ସେମାନେ ଆନନ୍ଦରେ ମିଷ୍ଟର ଅଗ୍ରୱାଲ ଜିନ୍ଦାବାଦ, ମିସେସ୍ ଅଗ୍ରୱାଲ ଜିନ୍ଦାବାଦ୍ ଧ୍ୱନିରେ ସେହି ସ୍ଥାନଟିକୁ କମ୍ପାଇ ଦେଲେ ।

ଦେବବାବୁ ଓ ଗୀତାଦେବୀ ସ୍ଥାନ ନିର୍ବାଚନ ସାରି କଲୋନି ରାସ୍ତା ଦେଇ ନିଜ କାର୍‌ଠାକୁ 'ଯାଉଥାନ୍ତି; ହଠାତ୍ ଗୋଟିଏ ଶ୍ରମିକ ଘରେ ଜଣେ ସ୍ତ୍ରୀଲୋକ ବିକଳ ସ୍ୱରରେ କାନ୍ଦୁଥିବାର ଶୁଣାଗଲା । ଯାଉ ଯାଉ ଅଟକିଯାଇ ଗୀତାଦେବୀ କାନେଇଲେ । କାନ୍ଦ ଧୀରେ ଧୀରେ ବଢ଼ି, ''ବାପାଲୋ ମରିଗଲି'', ''ମାଲୋ ମରିଗଲି'' ଶବ୍ଦରେ ସ୍ଥାନଟି କମ୍ପି ଉଠିଲା । କେହି ଜଣେ ପୁରୁଷ ଲୋକ କୌଣସି ଜଣେ ସ୍ତ୍ରୀଲୋକକୁ ଖୁବ୍ ଜୋରରେ ବାଡ଼େଇଲା ଭଳି ଜଣାପଡୁଥାଏ । ସେଥି ସହିତ ନାନା ଅଶ୍ଳୀଳ ଭାଷାରେ ପୁରୁଷଟି ଗାଳିଗୁଲଜ କରୁଥାଏ । ଗାଳିଦେବା ଢଙ୍ଗରୁ ଜଣାପଡୁଥାଏ, ପୁରୁଷଟି ମଦନିଶାରେ ଟୁଲ୍‌ଟୁଲ୍ । ସେହି ନିଶାବସ୍ଥାରେ ସେ ଅତି ଅମାନୁଷିକ ଭାବରେ ସ୍ତ୍ରୀଟିକୁ ପିଟି ଚାଲିଛି । ସ୍ତ୍ରୀଲୋକଟି 'ମାଲୋ', 'ବାପଲୋ' ହୋଇ କାନ୍ଦି କାନ୍ଦି ତଳେ ଲୋଟି ଯାଉଛି ।

ଗୀତାଦେବୀ ଏଭଳି ଅତ୍ୟାଚାର ଶୁଣି ଦେବବାବୁଙ୍କୁ ଅଟକିବା ପାଇଁ କହିଲେ, ''ହଇହେ, ଶୁଣୁଛ, କେହି ଜଣେ ପୁରୁଷ ଲୋକ ମଦନିଶାରେ ଗୋଟିଏ ସ୍ତ୍ରୀଲୋକକୁ ବାଡ଼ୋଉଛି ନା କଅଣ ? ଚାଲ, ଟିକିଏ ଦେଖିବା କ'ଣ ହୋଇଛି ପ୍ରକୃତରେ ।

କାହିଁକି ସେ ପୁରୁଷଟା ଅମାନୁଷିକ ଭାବରେ ସ୍ତ୍ରୀ ଲୋକଟାକୁ ଏମିତି ପିଟି ଚାଲିଛି ।''

ଦେବବାବୁ ଅଟକିଯାଇ, "ଆଁ, ପିଟୁଛି ? ସ୍ତ୍ରୀ ଲୋକଟାକୁ ? ମଦ ନିଶାରେ ?''

ଏତକ କହୁ କହୁ ଦେବବାବୁ ଓ ଗୀତାଦେବୀ ଘର ଭିତରକୁ ପଶିଗଲେ । ସୌଭାଗ୍ୟବଶତଃ ଦୁଆର ମେଲା ଥିଲା । ସେମାନେ ପଶିଯାଇ ଦେଖନ୍ତି ତ ସ୍ତ୍ରୀଲୋକଟି 'ବାପଲୋ', 'ମାଲୋ' ହୋଇ ପୁରୁଷଟିର ଗୋଡ଼ ଧରି କାନ୍ଦୁଛି । "ମୋତେ ଆଉ ମାର ନାହିଁ । ମୁଁ ମରି ଯିବି । ମୁଁ ତୁମ ଗୋଡ଼ ଧରୁଛି । ତୁମେ ଯାହା କହୁଛ, ମୁଁ ତାହା କରୁଛି । ମୋତେ ଆଉ ମାର ନାହିଁ । ତମ ଗୋଡ଼ତଳେ ପଡୁଛି ।''

ମିଷ୍ଟର ଅଗ୍ରୱାଲ ହଠାତ୍ ପୁରୁଷଟିକୁ ଧରି ପକାଇ ତା ହାତରୁ ବାଡ଼ିଟି ଛଡ଼ାଇ ନେଲେ । ଗୀତାଦେବୀ ସ୍ତ୍ରୀ ଲୋକଟିକୁ କୁଣ୍ଢାଇ ପକାଇ ପିଠି ଆଉଁଶି ଦେଲେ । ମାଡ଼ ଫଳରେ ପିଠିରୁ ରକ୍ତ ଧାର ଧାର ହୋଇ ଛୁଟି ଚାଲିଥାଏ ।

ନିଜ ମାଲିକ ଓ ମାଲିକାଣୀଙ୍କୁ ଆଖି ସାମନାରେ ଦେଖି ପୁରୁଷଟି ହଠାତ୍ ପ୍ରକୃତିସ୍ଥ ହୋଇ ପଡ଼ିଲା । ଦେବବାବୁ ତ ହାତରୁ ବାଡ଼ିଟିକୁ ଛଡ଼ାଉ ଛଡ଼ାଉ ଚିହ୍ନିଲେ, ଶ୍ରମିକଟି ଆଉ କେହି ନୁହେଁ, ସେ ହେଉଛି ତାଙ୍କ ସିମେଣ୍ଟ କାରଖାନାର ଏକ ସିନିୟର ଶ୍ରମିକ । ସାଧାରଣ ଶ୍ରମିକମାନଙ୍କଠାରୁ ଟିକିଏ ଉଚ୍ଚରେ ଥିବାରୁ ମିଷ୍ଟର ଅଗ୍ରୱାଲ ତାକୁ ଚିହ୍ନି ପକାଇଲେ । ତା ପାଟିରୁ ମଦର ତୀବ୍ର ଗନ୍ଧ, ଏଣେ କଥାବାର୍ତ୍ତାରେ ମାତାଲି ଢଙ୍ଗ ଦେଖି ଦେବବାବୁ କହିଲେ, "ତୁମେ ଘରେ ଏହି କାଣ୍ଡ କରୁଛ ଟଲୱାର ? ତୁମ ଉପରେ ମୋର ଭଲ ଧାରଣା ଥିଲା । ତୁମେ ଜଣେ ଶିକ୍ଷିତ ଓ ଦକ୍ଷ ଶ୍ରମିକ ବୋଲି ତୁମକୁ ଅନ୍ୟମାନଙ୍କଠାରୁ ଉଚ୍ଚରେ ସ୍ଥାନ ଦିଆଯାଇଥିଲା । ଅଥଚ ତୁମେ ମଦଖାଇ, ମାତାଲ ହୋଇ ତୁମ ସ୍ତ୍ରୀ ଉପରେ ଏଭଳି ଜଘନ୍ୟ ଅତ୍ୟାଚାର କରୁଛ ?''

ମାଲିକଙ୍କୁ କ'ଣ ଉତ୍ତର ଦେବ, ଲଜ୍ଜାରେ ମ୍ରିୟମାଣ ହୋଇ ଶ୍ରମିକଟି ଘରୁ ବାହାରି ପଳାଇଗଲା ।

ଗୀତାଦେବୀ ସ୍ତ୍ରୀଟିର ପିଠି ଆଉଁଶୁ ଆଉଁଶୁ ମାଡ଼ ଖାଇ, ତା'ର ପିଠି ଫାଟି ଯାଇଥିବାରୁ ଠାଏ ଠାଏ ରକ୍ତର ଧାର ଛୁଟି ଚାଲିଥାଏ । ସେହି ରକ୍ତରେ ତାଙ୍କ ହାତ ରଞ୍ଜିତ ହୋଇଯିବାରୁ ସେ ଦୁଃଖ କରି ସ୍ତ୍ରୀଲୋକଟିକୁ ଅନ୍ୟ ଏକ ଘରକୁ ନେଇଯାଇ ପଚାରିଲେ, "ତୁମକୁ ଯିଏ ପିଟୁଥିଲେ, ସେ କ'ଣ ତୁମ ସ୍ୱାମୀ ? ସେ ତୁମ ଉପରେ ଏପରି ଅମାନୁଷିକ ଅତ୍ୟାଚାର କରୁଛନ୍ତି କାହିଁକି ?''

କ୍ରନ୍ଦନରତା ସ୍ତ୍ରୀଲୋକଟି ତା'ର ସମସ୍ତ ଦୁଃଖର କାହାଣୀ କହିଗଲା । ମଦ ନିଶାରେ ତା' ସ୍ୱାମୀ ପ୍ରତିଦିନ କେମିତି ବାଡ଼ାଏ ଶୁଣୁ ଶୁଣୁ ଗୀତାଦେବୀଙ୍କ ଆଖିରେ ଲୁହ ରହିଲାନି । ମଦ ଖାଇବାରେ ତା'ର ସମସ୍ତ ଦରମା କେମିତି ମଦ କିଣାରେ ଯାଏ, ଖାଇବା ପାଇଁ ଘରକୁ କିଛି ଖାଦ୍ୟପଦାର୍ଥ କେମିତି ଆଣେନି ଶୁଣୁ ଶୁଣୁ ଗୀତାଦେବୀଙ୍କ ଧୈର୍ଯ୍ୟଚ୍ୟୁତି ଘଟିଲା । ମାସ ଶେଷକୁ ଦରମା ସରିଗଲେ ସେ କେମିତି ସ୍ତ୍ରୀର ଗହଣାଗାଣ୍ଠି, ଘରର ଆସବାବପତ୍ର ବିକି ମଦ ଖାଏ, ଶୁଣୁ ଶୁଣୁ ପାଗଳ ଭଳି ହୋଇ ଉଠିଲେ ଗୀତାଦେବୀ । ବିବାହ ଦିନଠାରୁ ସ୍ୱାମୀ-ସ୍ତ୍ରୀ ଭାବରେ ଦୁଃଖସୁଖ କି ହସଖୁସି ସେମାନେ କେବେ ହୋଇ ନାହାନ୍ତି । ଏକ ଦକ୍ଷ ଶ୍ରମିକଭାବରେ ନାଁ ଥିବାରୁ ଓ ବହୁ ଶ୍ରମିକ ତାକୁ ନେତା ଭଳି ମାନୁଥିବାରୁ ପଡ଼ୋଶୀମାନେ ଦୟାକରି ତା ସ୍ତ୍ରୀକୁ ବେଳେବେଳେ କେମିତି ଖାଇବାକୁ ଦିଅନ୍ତି, ନଚେତ୍ ଖାଡ଼ା ଖାଡ଼ା ଉପାସ ରହି ବେଳେବେଳେ ପାଣିପିଇ ବିଚାରୀ ଦିନ କାଟେ ଶୁଣି ଶୁଣି ଗୀତାଦେବୀଙ୍କ ଧୈର୍ଯ୍ୟ ରହିଲାନି । ଗୀତାଦେବୀ ଲକ୍ଷ୍ୟ କଲେ ସ୍ତ୍ରୀଟି ବେଶ୍ ସୁନ୍ଦରୀ, ଶିକ୍ଷିତା, ବୟସ ବେଶି ହେବନି, ତେଇଶ ଚବିଶ ଭିତରେ । ସ୍ୱାମୀର ଅବହେଳା ଓ ଅତ୍ୟାଚାର ଏଣେ ଖାଦ୍ୟର ଅଭାବରୁ ତା ଦେହ ଶୁଖି କଣ୍ଟାଭଳି ହୋଇଗଲାଣି । ଯୌବନର ଅରୁଣିମା ତା'ଠାରେ କେତେଦିନୁ ମିଳାଇଗଲାଣି । ଚକ୍ଷୁ କୋଟରଗତ, ଦେଖିଲେ ଯେ କେହି କହିବ ବ୍ୟାଧିଗ୍ରସ୍ତା ପ୍ରୌଢ଼ା ନାରୀଟିଏ ।

ତା ଦୁଃଖ ଶୁଣୁ ଶୁଣୁ ଗୀତାଦେବୀ ସ୍ୱାମୀଙ୍କୁ ପଚାରିଲେ, ''ଇଏ ତୁମ କାରଖାନାର ଶ୍ରମିକ ବୋଧହୁଏ ?''

''ହଁ, କିନ୍ତୁ ସେ ଏତେ ନିର୍ମମ ବୋଲି ତ ଜଣାପଡ଼େନି । କାରଖାନାରେ ଏକ ଦକ୍ଷ ଶ୍ରମିକ ଭାବରେ ତା'ର ସୁନାମ ଅଛି । ଭଲ କାମ କରେ ଓ ମେଳାପୀ ମଧ୍ୟ । ଛୋଟକାଟିଆ ଶ୍ରମିକ ନେତା । ତା କଥାକୁ ଅନ୍ୟ ଶ୍ରମିକମାନେ ଶୁଣନ୍ତି । ପାଠ ମଧ୍ୟ ପଢ଼ିଛି । କାମ ବେଳେ ହସଖୁସିରେ ଦିନ କଟାଏ ସେ । କିନ୍ତୁ କାରଖାନାରୁ ଫେରିଲେ ଘରେ ଏଡ଼ିକି ନୃଶଂସ ? ଆଉ କହି ପାରିଲେନି ଦେବବାବୁ । ଦୁଃଖରେ ଅତ୍ୟଧିକ ମ୍ରିୟମାଣ ହୋଇ ପଡ଼ିଲେ ସେ ।

ସ୍ୱାମୀଙ୍କୁ ଏଭଳି ମ୍ରିୟମାଣ ଦେଖି ଗୀତାଦେବୀ ପଚାରିଲେ, ''ଏହାଙ୍କର ଦୁଃଖ ଶୁଣି ମୋ ଗୋଡ଼ ଏଠୁ ଉଠୁନି ଯିବାକୁ । ଏହି ସ୍ତ୍ରୀଲୋକଟି ପାଇଁ ଆମର କ'ଣ କିଛି କର୍ତ୍ତବ୍ୟ ନାହିଁ ?''

''ହଁ, ଅଛି । ନାହିଁ କାହିଁକି ? ଶ୍ରମିକଟି ଆମକୁ ଦେଖି କେଉଁଆଡ଼େ ତ ପଳାଇଲାଣି । ସିଏ ଥିଲେ ସିନା କିଛି ଗାଳିଫଜିତ୍ ଦେଇ କିଛି ବ୍ୟବସ୍ଥା କରନ୍ତେ ।

କାଲି ତାକୁ ଅଫିସ୍‌କୁ ଡାକି ସାବଧାନ କରାଇ ଦେବି ବୋଲି ଭାବୁଛି । ସେ ଯଦି ତା ସ୍ତ୍ରୀ ପ୍ରତି ଏଭଳି ଖରାପ ବ୍ୟବହାର ପୁଣି କରେ, ତେବେ ଚାକିରିରୁ ବିଦା କରିଦେବା ଭୟ ଦେଖାଇଲେ, ସେ ହୁଏତ ନିଜକୁ ସଂଶୋଧନ କରି ଭଲ ବାଟକୁ ଆସି ପାରିବ ।

× × × × ×

ଯେଉଁଦିନ ଶ୍ରମିକଟି ବର୍ଷ ବର୍ଷ ଧରି ଅତ୍ୟଧିକ ମଦ ଖାଇବା ଯୋଗୁ ଲିଭର୍ ସିରୋସିସ୍ ରୋଗରେ ପ୍ରାଣ ହରାଇଲା, ସେଦିନ ତା ସ୍ତ୍ରୀଟି ଖାଲି ବିଧବା ହେଲାନି, ସାରା ସଂସାରରେ ପୂରାପୂରି ଏକୁଟିଆ ହୋଇଗଲା ବୋଲି ବୋଧ କଲା । ମଲାବେଳକୁ ତା'ର ସ୍ୱାମୀ ହାତଉଧାରି କରଜ କରିଥିଲା ଅପର୍ଯ୍ୟାପ୍ତ । ସ୍ୱାମୀର ଶୁଦ୍ଧିକ୍ରିୟା ପରେ ସେ ସ୍ୱାମୀର ଯାହାକିଛି ଗ୍ରେଚୁଇଟି ଓ ଛୁଟି ଦରମା ପାଇଲା, ସେତକରେ ସ୍ୱାମୀଙ୍କର ହାତଉଧାରି ସବୁ ଶୁଝି ଦେଲା । ଘରର ଜିନିଷପାତି, ନିଜର ଗହଣାଗାଣ୍ଠି ଯାହା ଥିଲା, ସେତକ ତ ଆଗରୁ ଯାଇଛି । ପିନ୍ଧିବାକୁ ମାତ୍ର ଖଣ୍ଡିଏ ଦୁଇଖଣ୍ଡ ଲୁଗା ଛଡ଼ା ଆଉ କିଛି ନ ଥିଲା ତାର । ସ୍ୱାମୀ ମରିଗଲା ପରେ ତାକୁ କୋମ୍ପାନୀ ଘର ଛାଡ଼ିବାକୁ ପଡ଼ିବ । ତେଣୁ ସେ ତା'ର ସର୍ବସ୍ୱ ଲୁଗା ଦୁଇଖଣ୍ଡି ଗୋଟିଏ ଗଣ୍ଠିଲି କରି ଯେତେବେଳେ ଘରୁ ବାହାରି ପଡ଼ିଲା, ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । କୁଆଡ଼େ ଯିବ ସେ ? ଶ୍ୱଶୁରଘରେ ତ କେହି ନାହାନ୍ତି । ବାପଘରେ ଯାଇ ଯାହା ରହନ୍ତା, ବାପାଙ୍କର ଆର୍ଥିକ ଦୁରବସ୍ଥା ତ ଆଗ ଅପେକ୍ଷା ଢେର୍ ବଢ଼ି ଯାଇଛି । କେଉଁ ମୁହଁରେ ସେ ପୁଣି ବାପଘରକୁ ଯାଇ ବାପାଙ୍କ ବୋଝ ଉପରେ ନଳିତାବିଡ଼ା ଭଳି ହେବ । ଶେଷରେ ଏହି ନିଲଠା ଜୀବନକୁ ନେଇ କୁଆଡ଼େ ଯିବ ସେ ? ନିଜର ଯୌବନାବସ୍ଥା ଯାଇ ନ ଥିବାରୁ ବାହାର ଲୋକଙ୍କ ପାପ ଆଖିରୁ ସେ କ'ଣ ନିଜକୁ ରକ୍ଷା କରି ପାରିବ । ବରଂ ଏହି ଜୀବନକୁ ତ୍ୟାଗ କରିବା ହିଁ ଶ୍ରେୟସ୍କର । ନିଜର ତ ସବୁ ଯାଇଛି, ଏହି ଅଲୋଡ଼ା ଜୀବନକୁ ନେଇ ହନ୍ତସନ୍ତ ହୋଇ ଲାଭ କଅଣ ? ବରଂ ଶେଷ କରିଦେଲେ ଶାନ୍ତି ।

ସେ ଏହିଭଳି ଭାବି ଘରୁ ଗୋଡ଼ କାଢ଼ିଛି କି ନାହିଁ, ଗୀତାଦେବୀଙ୍କ ପିଅନ ଆସି ଖବର ଦେଲା, "ମା ତୁମକୁ ଡାକୁଛନ୍ତି । କହିଛନ୍ତି ତୁମେ ଏଠୁ ବିଦା ହେବାପୂର୍ବରୁ ତାଙ୍କୁ ଯେମିତି ଦେଖା କର । ତୁମକୁ ତାଙ୍କ ପାଖକୁ ନେଇଯିବା ପାଇଁ ମୋତେ ପଠାଇଛନ୍ତି । ମା ବର୍ତ୍ତମାନ ଘରେ ଅଛନ୍ତି । ତୁମେ ମୋ ସହିତ ଆସ ।"

ସ୍ତ୍ରୀଲୋକଟି ଅଗତ୍ୟା ବାଧ୍ୟ ହୋଇ ପିଅନଟି ପଛେ ପଛେ ଚାଲିଲା । ଗୀତାଦେବୀ ସ୍ତ୍ରୀଲୋକଟିକୁ ନିଜ ଘରଆଡ଼କୁ ଆସୁଥିବାର ଦେଖି ଘରୁ ବାହାରିଆସି ତାକୁ

ପାଛୋଟି ନେଲେ । ମା'ଙ୍କୁ ଦେଖିଲାକ୍ଷଣି ସ୍ତ୍ରୀଲୋକଟିର ଧୈର୍ଯ୍ୟ ରହିଲାନି । ସେ ହଠାତ୍ କଇଁ କଇଁ ହୋଇ କାନ୍ଦି ଉଠିଲା । ସ୍ତ୍ରୀଲୋକଟିକୁ ସାନ୍ତ୍ୱନା ଦେଉ ଦେଉ ଡ୍ରଇଂରୁମ୍‌କୁ ଘେନି ଆସିଲେ । ତାଙ୍କ ଡ୍ରଇଂରୁମ୍‌ର ଗୋଟିଏ ସୋଫାରେ ବସାଉ ବସାଉ କହିଲେ, "ତୁମର ଏହା ଭିତରେ ଯେଉଁସବୁ ଘଟନା ଘଟିଗଲା, ମୁଁ ସେସବୁର ଖବର ରଖିଛି । ତୁମ ସ୍ୱାମୀଙ୍କର ମୃତ୍ୟୁ ପରେ ତୁମେ କେମିତି ନିଃସହାୟା ହୋଇଛ, ତାହା ବି ଜାଣେ । ତେବେ ବର୍ତ୍ତମାନ ତୁମେ କେଉଁଆଡ଼େ ଯିବ, ବାପ ଘରକୁ ନା ଶ୍ୱଶୁର ଘରକୁ ?"

ବାପଘର, ଶ୍ୱଶୁରଘର ନାଁ ଶୁଣି ସ୍ତ୍ରୀଲୋକଟି ଆହୁରି ବିକଳ ହୋଇ କାନ୍ଦିବାକୁ ଲାଗିଲା । ଗୀତାଦେବୀ ଅନୁମାନ କରିନେଲେ ସମ୍ଭବତଃ ସ୍ତ୍ରୀଲୋକଟିର ସେଠି ସ୍ଥାନ ନାହିଁ କି ସେଠାରେ ଆଶ୍ରୟ ପାଇବାର ସମ୍ଭାବନା ନାହିଁ । ହେଲେ ଠିକ୍ ଭାବରେ ଜାଣିବା ପାଇଁ ପଚାରିଲେ, "ତୁମର ବାପଘରେ କି ଶ୍ୱଶୁରଘରେ ଆଶ୍ରୟ ନେବାର ସମ୍ଭାବନା କ'ଣ ନାହିଁ ?"

ସ୍ତ୍ରୀଲୋକଟି କାନ୍ଦୁ କାନ୍ଦୁ ମୁଣ୍ଡ ହଲାଇ ନାସ୍ତି କଲା ।

"ତା'ହେଲେ ନିଜକୁ କେମିତି ପୋଷିବ ?"

ସ୍ତ୍ରୀଲୋକଟି ଉତ୍ତର ଦେବ କ'ଣ ପୁଣି କାନ୍ଦିଲା ।

ଗୀତାଦେବୀ ଦେଖିଲେ ସ୍ତ୍ରୀଟି ରୁଗ୍ଣ ହେଲେ କ'ଣ ହେବ, ଯୌବନାବସ୍ଥା ଯାଇନି । ଦେଖିବାକୁ ସୁନ୍ଦର । ଅଳ୍ପ କିଛି ପାଠ ପଢ଼ିଛି । ପୂରାପୂରି ନିରକ୍ଷରା ନୁହେଁ । ସେ ବା କି କାମଧନ୍ଦା କରି ଚଳିବ ? ଆଜିକାଲି ସମାଜରେ ଜଣେ ସୁଶ୍ରୀ ଯୁବତୀ ପକ୍ଷରେ ଏକା ଏକା କାମଧନ୍ଦା କରି ଚଳିବା ନିଜ ପ୍ରତି କମ୍ ବିପଦଜନକ ନୁହେଁ । ସେ ସ୍ତ୍ରୀଲୋକଟିକୁ ଅନୁପ୍ରାଣିତ କରିବା ଆଶାରେ କହିଲେ, "ତୁମର ଯଦି କିଛି ଆପତ୍ତି ନ ଥାଏ, ତେବେ ତୁମେ ଆମ ଘରେ ରହିପାର । ତୁମେତ ଜାଣିଛ ଆମ ଘରେ ଆମେ ଦୁହେଁ ଏକାଟିଆ । ଆମେ ଦିହେଁ ଅଫିସକୁ ଚାଲିଗଲେ ଆମ ଘରର ଦେଖାଶୁଣା କରିବା ପାଇଁ କେହି ନାହିଁ । ଚାକର ପୂଝାରୀଙ୍କ ଦାୟିତ୍ୱରେ ସବୁ ଛାଡ଼ିଦେଇ ଆମେ ଅଫିସ୍‌କୁ ଚାଲି ଯାଉ । ଆମ ଘରର ଦେଖାଶୁଣା କରିବା ପାଇଁ ଆମର ଜଣେ ସ୍ତ୍ରୀଲୋକ ଏକାନ୍ତ ଦରକାର । ତୁମେ ଯଦି ରାଜି ହୁଅ, ତେବେ ଆମେ ଅତ୍ୟନ୍ତ ଖୁସୀ ହେବୁ । ତୁମେ ଆମ ଘରର ସମସ୍ତ ଦାୟିତ୍ୱ ନେଇ ଆମ ଘରେ ରହିବ । ଚାକର, ଚାକରାଣୀ, ପୂଝାରୀ, ମାଳୀ, ଦରୱାନ୍‌ମାନଙ୍କୁ ତୁମେ ଚଳାଇବ । ତୁମେ ସେତକ ଦାୟିତ୍ୱ ନେଲେ ମୁଁ ସେସବୁ ଜଞ୍ଜାଳରୁ ମୁକ୍ତ ହେବି । ତୁମେ ବୁଦ୍ଧିମତୀ, ଶିକ୍ଷିତା, ମୋ ଆଶା, ତୁମେ ଏ କାମ ବେଶ୍ ଭଲ ଭାବରେ ତୁଲାଇ ପାରିବ । ତୁମେ

ସର୍ବଦା ମୋ ପାଖେ ପାଖେ ମୋର ଜଣେ ସହଚରୀ ଭାବରେ ରହିବ । ତୁମର ଖାଇବାପିଇବା, ଲୁଗାପଟା ବ୍ୟତୀତ ମୁଁ ତୁମକୁ ମାସିକ ଏକହଜାର ଟଙ୍କା ବେତନ ଦେବାକୁ ପ୍ରସ୍ତୁତ ଅଛି । ଏଥିରେ ତୁମେ ରାଜି ତ ?''

ରୀତାଦେବୀଙ୍କ ମୁଖରୁ ଏହି କଥା କେଇପଦ ଶୁଣି ସେ ଯାହା ନିରାଶ୍ରୟା ଅନୁଭବ କରୁଥିଲା, ଆଉ ଅନୁଭବ କଲାନି । ତାଙ୍କ ପ୍ରସ୍ତାବରେ ରାଜି ହୋଇ ତାଙ୍କ ଘରେ ରହିବା ପାଇଁ ନିଜ ସମ୍ମତି ଜଣାଇଲା ।

ତାରାର କାର୍ଯ୍ୟରେ ସ୍ୱାମୀ-ସ୍ତ୍ରୀ ଦୁହେଁ ଏତେ ପ୍ରୀତ ଯେ ସେ କଥା କହିଲେ ସରିବନି । ଘରର ସବୁ ଦାୟିତ୍ୱ ସେ ବୁଝେ । ଘରର ଚାକର, ଚାକରାଣୀ, ପୂଝାରୀ, ଆୟା, ମାଳୀ ଆଦି ସମସ୍ତେ ତା' ଅଧୀନରେ । ସେମାନଙ୍କ ଖାଇବା ପିଇବାଠାରୁ ଆରମ୍ଭ କରି ଲୁଗାପଟା, ପୋଷାକପତ୍ର, ଦରମା ସବୁକିଛି ତାରାର ଦାୟିତ୍ୱରେ । ସେମାନଙ୍କ କାମ ତଦାରଖଠାରୁ ଆରମ୍ଭ କରି ସେମାନଙ୍କ ସମସ୍ତ ହାନିଲାଭ, ଘରର ଯାବତୀୟ ଦାୟିତ୍ୱ ସେ ବୁଝେ । ରୀତାଦେବୀଙ୍କ ପାଖକୁ କେହି କିଛି କାର୍ଯ୍ୟ ପାଇଁ ଆସିଲେ ଆଗ ଦେଖାକରନ୍ତି ତାରାଦେବୀଙ୍କୁ । ତାଙ୍କ ସୁପାରିଶ୍ ପାଇଲେ ରୀତାଦେବୀଙ୍କୁ ଦେଖା କରି ପାରନ୍ତି, ନୋହିଲେ ଦେଖାକରି ପାରନ୍ତିନି । ତାରା ଏହା ଭିତରେ ଏତେ ବିଶ୍ୱସ୍ତ ହୋଇ ପଡ଼ିଲାଣି ଯେ ରୀତାଦେବୀ ଘରର ଯାବତୀୟ ଖରଚ ପାଇଁ ଉଦ୍ଦିଷ୍ଟ ଥିବା ଟ୍ରେଜେରିର ଚାବି ତାକୁ ଦେଇଛନ୍ତି । ତାରା କିଛି ଅପବ୍ୟୟ କରେ ନାହିଁ । ସେ ରୀତାଦେବୀଙ୍କ ମନ ଜାଣିଛି । ଯେ ଯେଉଁ ଖରଚକୁ ପସନ୍ଦ କରନ୍ତି, ସେ ଠିକ୍ ସେହିଭଳି ଖରଚ କରେ । ତାରା ଘରକୁ ଆସିଲା ଦିନଠାରୁ ରୀତାଦେବୀଙ୍କୁ ଯେଉଁ ଘରର ଯାବତୀୟ ବିଷୟ ବୁଝିବାକୁ ପଡୁଥିଲା, ଆଉ ବୁଝିବାକୁ ପଡୁନି । ସେ ଏବେ ଏଣିକି ବଳକା ସମୟତକ କାରଖାନାର ଉନ୍ନତି ଦିଗରେ ଲଗାଇ ପାରୁଛନ୍ତି ।

ତାରା ବିଧବା ହେଲେହେଁ ମିଷ୍ଟର ଅଗ୍ରୱାଲ ତାକୁ ଖୁବ୍ ସମ୍ମାନ କରନ୍ତି । ନିଜର ଆଶ୍ରିତା ଏକ ନିରାଶ୍ରୟା ସ୍ତ୍ରୀଲୋକ ଭଳି କେବେ ଭାବନ୍ତିନି । ରୀତାଦେବୀ ତାକୁ ନିଜ ସାନଭଉଣୀ ଭଳି ସ୍ନେହ କରନ୍ତି । ବାବୁ-ବାବୁଆଣୀଙ୍କର ଅତି ବିଶ୍ୱସ୍ତ ବୋଲି ଚାକର-ଚାକରାଣୀମାନେ ତାକୁ ଖୁବ୍ ଭୟ କରନ୍ତି, ଭକ୍ତି କରନ୍ତି ମଧ୍ୟ । ସେମାନଙ୍କ ଭଳି ସେ ଜଣେ କର୍ମଚାରୀ ବୋଲି ଭାବନ୍ତିନି । ତାକୁ ଭାବନ୍ତି, ସେ ଯେମିତି ମାଲିକଙ୍କ ପରିବାର ଭିତରୁ ଜଣେ । ତାରାଦେବୀ ବୁଦ୍ଧିମତୀ, ଘର ଚଳାଇବାରେ ବେଶ୍ ଧୁରନ୍ଧର । ଏଣେ ଶିକ୍ଷିତା ଥିବାରୁ ଘରର ଯାବତୀୟ ଖରଚର ଏକ କ୍ରମାଗତ ହିସାବ ସଦାସର୍ବଦା ପ୍ରସ୍ତୁତ କରି ରଖିଥାଏ । କାଳେ କିଏ ଅବସ୍ଥାଚକ୍ରରେ ପଡ଼ି ତାକୁ ସନ୍ଦେହ କରିବ, ସେଥିପାଇଁ ସେ ମୂଳରୁ ଖୁବ୍

ସାବଧାନ ଥାଏ । ଗୀତାଦେବୀ ତାରାର ଏଭଳି ବ୍ୟବସ୍ଥା ଦେଖି ଭାରି ଖୁସି ହୁଅନ୍ତି । ତାକୁ ଅତି ନିଜର ବୋଲି ଭାବନ୍ତି । ଗୀତାଦେବୀଙ୍କ ଏମିତି କିଛି ଗୋପନୀୟ କଥା ନାହିଁ, ଯାହା ସେ ତାରାକୁ କହନ୍ତି ନାହିଁ । କାରଖାନା ପରିଚାଳନା ନେଇ କିଛି କଥା ଥିଲେ, ତାରାକୁ ପଚାରନ୍ତି, ଦରକାର ପଡ଼ିଲେ ତା'ର ପରାମର୍ଶ ବି ନିଅନ୍ତି । ତାରାର ଗୋଟିଏ ଭଲ ଗୁଣ, ଗୀତାଦେବୀ କେତେବେଳେ କ'ଣ ଚାହୁଁଛନ୍ତି, ସେ ନିର୍ଭୁଲ ଭାବରେ ଜାଣିପାରେ ଓ ସେହି ଅନୁସାରେ କାମ କରେ । ଏହାଫଳରେ ଗୀତାଦେବୀ ତା' ଉପରେ ସର୍ବଦା ପ୍ରସନ୍ନ । ଘରେ ତାରାକୁ ଛାଡ଼ି ସେ ଦଣ୍ଡେ ଚଳି ପାରନ୍ତିନି । ସବୁକଥାରେ ତାରା ଆଗ । ତାରା ଘରେ ନ ଥିଲେ ସେ ପାଗଳ ଭଳି ହୋଇଯାନ୍ତି ।

ତାରା ଦେବବାବୁଙ୍କୁ ଭାରି ଲାଜ କରେ । ତାଙ୍କ ସାମନାକୁ ପ୍ରାୟ କେବେ ଆସେନି । ସାରା ସଂସ୍ଥାର ମାଲିକ ବୋଲି ତାଙ୍କୁ ସମ୍ମାନ କରେ, ମନେ ମନେ ଭୟ କରେ ମଧ । ଦେବବାବୁ ମୂଳରୁ ତ ଦେବପ୍ରତିମ ଲୋକ, ସେ କେବେ ତାରା ସହିତ କଥାବାର୍ତ୍ତା କରିବା ପାଇଁ ଆଗ୍ରହ ଦେଖାନ୍ତି ନାହିଁ । ତାରା ଦ୍ୱାରା କିଛି କାମ କରିବାକୁ ଥିଲେ, ସେ ତାରାକୁ ନ କହି ସ୍ତ୍ରୀଙ୍କୁ କହନ୍ତି । ଗୀତାଦେବୀ ତାରାକୁ କହି ସେ କାମଟିକୁ କରାନ୍ତି । ତାରାର ବାରଣସତ୍ତ୍ୱେ, ତାରାର ଦରମା ମାସକୁ ମାସ ତା ନାଁରେ ଖୋଲା ହୋଇଥିବା ବେଙ୍କ୍ ଆକାଉଣ୍ଟରେ ଜମା ହୋଇ ଯାଉଥାଏ ।

ଗୀତାଦେବୀ ତାରାକୁ ଏତେ ସମ୍ମାନ ଦେଖାନ୍ତି ଯେ କେଉଁଦିନ ଯଦି ତାଙ୍କର ଦେହ ମୁଣ୍ଡ ବିନ୍ଧୁଥାଏ, ତାରା ଯଦି ପାଖରେ ବସି ତାଙ୍କ ଦେହ ମୁଣ୍ଡକୁ ଚିପିଦିଏ, ତେବେ ସେ ତାକୁ ବାରଣ କରି ହଠାତ୍ ବିଛଣାରୁ ଉଠି ବସନ୍ତି । ତାରା ଯଦି କେଉଁଦିନ ତାଙ୍କ ପାଇଁ ଚା' ଘେନି ଆସେ, ତେବେ ଚାକର ପୂଝାରୀଙ୍କ ଉପରେ ସେଦିନ ଗୀତାଦେବୀ ଭାରି ବିଗିଡ଼ନ୍ତି । ଜଣେ ସହଚରୀ ଯେତେ ସମ୍ମାନରେ ରହିବା କଥା, ସେମିତି ସମ୍ମାନରେ ଗୀତାଦେବୀ ତାରାକୁ ରଖିବାକୁ ଚେଷ୍ଟା କରନ୍ତି । ତାଙ୍କର ଭୟ, ତାରା ଯେମିତି ନ ଭାବେ, ସେ ତାଙ୍କର ଆଶ୍ରିତା ବୋଲି ଓ ସେହି ନିରାଶ୍ରୟତାର ସୁବିଧା ନେଇ ତା'ଠାରୁ ଫାଇଦା ଉଠାଉଛନ୍ତି ଗୀତାଦେବୀ । ତାରା ମନକୁ ସେମିତି ଧାରଣା କ୍ଷଣକ ପାଇଁ ଯେମିତି ନ ଆସେ, ସେଥିପ୍ରତି ଗୀତାଦେବୀ ସଦାସର୍ବଦା ଚେଷ୍ଟିତା ।

× × × × ×

ଦିନେ ସଅଳ ସଅଳ ଗୀତାଦେବୀ ଅଫିସ୍‌ରୁ ଘରକୁ ଫେରି ଆସିଥାନ୍ତି । ସେ କାହାରିକୁ କିଛି ନ କହି ନିଜ ଶୋଇବାଘରର ପଲଙ୍କ ଉପରେ ପଡ଼ିଯାଇ କ'ଣ ଭାବି

ହେଉଥାନ୍ତି । ଏହି ସମୟରେ ହଠାତ୍ ତାରା ମାଙ୍କ ଶୋଇବା ଘର ଭିତରକୁ କ'ଣ ଏକ କାର୍ଯ୍ୟୋପଲକ୍ଷେ ପଶି ଆସିଲା । ଦେଖିଲା, ମା ଅସମୟରେ ଅଫିସ୍‌ରୁ ଚାଲି ଆସି ପଲଙ୍କରେ ଶୋଇ ରହି କ'ଣ ଭାବୁଛନ୍ତି । ସେ ମାଙ୍କୁ ଦେଖି ହଠାତ୍ ପଲଙ୍କ ପାଖକୁ ଚାଲିଯାଇ ପଚାରିଲା, "ଆପଣ କ'ଣ ହଠାତ୍ ଏ ଅସମୟରେ, ମା ? ଦେହପା କିଛି ଖରାପ ହୋଇଛି ନା କଅଣ ?"

"ନା, ନା, ତାରା, ଦେହପା ବେଶ୍ ଭଲ ଅଛି । କିଛି ଖରାପ ହୋଇନି । ତୁ କ'ଣ ପାଇଁ ଘରକୁ ଆସିଥିଲୁ ଯେ ? ହେଉ, ବସ, ତୋତେ ଗୋଟିଏ କଥା କହିବି ।"

ମା କ'ଣ କହିବେ ଶୁଣିବା ପାଇଁ ତାରା ପାଖ ଚେୟାରରେ ବସି ପଡ଼ିଲା ।

ଗୀତାଦେବୀ କହିଲେ, "ଦେଖ୍ ତାରା, ଆଜି ମୋ ମୁଣ୍ଡରେ ଗୋଟିଏ କଥା ପଶିଲାରୁ ସଙ୍ଗେ ସଙ୍ଗେ ଘରକୁ ଚାଲି ଆସିଲି ।"

"କେଉଁ କଥା ମା ?"

"ତୋରି କଥା ।"

"ମୋ କଥା ? ମୋ ବିଷୟରେ ପୁଣି କି କଥା ମା ? ମୁଁ କେଉଁଠି କିଛି ଭୁଲଭଟକା କରି ପକାଇଛି ନା କ'ଣ ?"

"ନା, ନା, ପାଗଳୀ, ତୁ କାହିଁକି କିଛି ଭୁଲ କରିବୁ । ତୋ ବିଷୟରେ ଗୋଟିଏ ଚିନ୍ତା ଆଜି ମୋ ମୁଣ୍ଡରେ ଖେଳୁଛି । ସେଥିପାଇଁ ଚାଲି ଆସିଲି ।"

ଗୀତାଦେବୀ ଏହି କଥା କେଇପଦରେ ତାରା ଭୟ ପାଇଗଲା ଭଳି ବୋଧ ହେଲା । ସେ ଶଙ୍କିତ ହୋଇଯାଇ ମା' କ'ଣ କହିବେ ଶୁଣିବା ପାଇଁ ତାଙ୍କରି ଆଡ଼କୁ ଅନାଇ ରହିଲା ।

ଗୀତାଦେବୀ ପଚାରିଲେ, "ଦେଖ୍ ତାରା, ତୋ ବୟସ ବେଶି ନୁହେଁ । ପିଲାପିଲି ହୋଇନି । ତୁ ବେଶ୍ ସ୍ୱାସ୍ଥ୍ୟବତୀ । ତୁ ଆଉଥରେ ବିବାହ କଲେ କ୍ଷତି କଅଣ ହୁଅନ୍ତା ? ଏତେ ଅଳ୍ପ ବୟସରୁ ବୈଧବ୍ୟବ୍ରତ ପାଳନକରିବା ଜଣେ ଭାରତୀୟ ନାରୀ ପକ୍ଷରେ କେତେ କଷ୍ଟକର, ମୁଁ ତାହା ଜାଣେ । ତୁ ଯଦି ରାଜି ହେଉ, ତେବେ ତୋ ପାଇଁ ଭଲ ପାତ୍ରଟିଏ ଠିକ୍ କରି ତୋର ବିବାହ କରାଇଦେବା ମୋର ଇଚ୍ଛା । ବିବାହ କରାଇ ତୋତେ ଯେ ଏଠୁ ବିଦା କରିଦେବି, ତାହା କଦାପି ମୋର ଇଚ୍ଛା ନୁହେଁ । ତୁ ବିବାହ କରି ଆମ ଘରେ ରହିବୁ । ତୋ ଭବିଷ୍ୟତ ସ୍ୱାମୀକୁ ଆମ କାରଖାନାରେ ଗୋଟିଏ ଚାକିରି ଦିଆଯିବ । ତୁମ ଦୁହିଁଙ୍କୁ ଆମ ଉଆସ ଭିତରେ ଗୋଟିଏ ଘର ଦେଲେ, ତୁମେ ଦୁହେଁ

ବେଶ୍ ଆନନ୍ଦରେ ରହି ପାରିବ । ତୁ ଆମ ଘରେ ଯେମିତି ଦାୟିତ୍ୱ ନେଇ ରହିଛୁ, ଠିକ୍ ସେମିତି ରହିବୁ ।''

ମା'ଙ୍କ ପାଟିରୁ ତାରା ଏପରି କଥା କେବେ ଆଶା କରି ନ ଥିଲା । ମା'ଙ୍କ ଠାରୁ ତାରା ଏହି କଥା କେଇପଦ ଶୁଣି ସଂକୋଚ ନ କରି କହିଲା, ''ମା, ଯାହାର ଥରେ ସୋହାଗ ଚାଲି ଯାଇଛି, ତା'ର ସୋହାଗ କ'ଣ ଆଉ କେବେ ଫେରି ଆସି ପାରିବ ? ଫଟା କାଚକୁ ଯେତେ ଯୋଡ଼ିଲେ, ତାହା କ'ଣ କେବେ ଯୋଡ଼ି ହୋଇ ଭଲ କାଚ ଭଳି ହୋଇ ପାରିବ ? ମୋର ତ ଫଟାକପାଳ, ମୋ ଭାଗ୍ୟରେ ସ୍ୱାମୀ ସୋହାଗ ନାହିଁ ମା, ଆଉଥରେ ବିବାହ କଲେ ତାହା ମିଳିବ ବୋଲି କି ସମ୍ଭାବନା ଅଛି ? ଥରେ ତ ମୁଁ ପାରିବାରିକ ଜଞ୍ଜାଳରୁ ମୁକ୍ତ ହୋଇଛି, ମୋତେ ଆଉ ପୁଣି ସେ ଜଞ୍ଜାଳରେ ପୂରାଇ ଲାଭ କ'ଣ ମା ? ଆପଣଙ୍କ ଭଳି ମାଲିକ ପାଇଛି, ସେହି ମୋର ଯଥେଷ୍ଟ । ମୋର ଆଉ କିଛି ଦରକାର ନାହିଁ ମା ।''

''ତୁ ଯାହା କହୁଛୁ, ମୁଁ ବୁଝୁଛି ତାରା । ତୋର ଏତେ ଅଳ୍ପ ବୟସ । ଘରସଂସାର କ'ଣ ଜାଣିଲୁନି । ତୋ ବୟସର ଝିଅମାନେ ଏବେବି ବିଭା ହୋଇ ନାହାନ୍ତି । ତୁ ଏତେ ଅଳ୍ପ ବୟସରୁ ସଂସାର ପ୍ରତି ଏମିତି ବୈରାଗ୍ୟ ଦେଖାଉଛୁ କାହିଁକି ଯେ ? ତୋ ସାମନାରେ ତୋର କେତେ ବଡ଼ ଭବିଷ୍ୟତ ପଡ଼ିଛି କହିଲୁ ?''

''ମୁଁ ବୁଝିପାରୁଛି ମା, ଆପଣ କ'ଣ ଆଶଙ୍କା କରୁଛନ୍ତି । ସେଭଳି ଭୁଲ କେବେ ମୋ ଜୀବନରେ ହେବନି । ଭଗବାନଙ୍କ ଉପରେ ମୋର ପୂରା ବିଶ୍ୱାସ ଅଛି । ମୋତେ କେବେ ସେଭଳି ଭୁଲ ବାଟକୁ ଯିବାକୁ ସେ ଦେବେନି, ଏହା ମୋର ଦୃଢ଼ବିଶ୍ୱାସ । ଆପଣ ନିଶ୍ଚିତ ରହନ୍ତୁ ମା । ଆପଣଙ୍କ ସମ୍ମାନରେ ଆଞ୍ଚ ଆସିଲା ଭଳି କିଛି କାମ ମୋଠାରୁ ପାଇବେନି । ଆପଣ ମୋତେ ଖାଲି ଆଶ୍ରୟ ଦେଇ ନାହାନ୍ତି, ଜୀବନ ଦେଇଛନ୍ତି ମଧ୍ୟ । ଆପଣଙ୍କ ସେବାରେ ମୋ ଜୀବନ କେମିତି ଯାଉ, ସେତିକି ମୋର ଭଗବାନଙ୍କ ନିକଟରେ ମାଗୁଣି ମା ।

× × × × ×

''କିଏ ମାଧବ, ତୁମେ ହଠାତ୍ ?''

''ହଁ, ମା ଆସିଥିଲି । ଆପଣଙ୍କୁ ଟିକିଏ ସାକ୍ଷାତ କରିବା ପାଇଁ ।'' ଏତକ କହି ସିମେଣ୍ଟ କାରଖାନାର ସିନିୟର ଶ୍ରମିକ ମାଧବ ରାଓ ଗୀତାଦେବୀଙ୍କ ଅଫିସ୍ ଭିତରକୁ ପଶୁ ପଶୁ ତା ପଛେ ତା'ର ସ୍ତ୍ରୀ ଓ ସ୍ତ୍ରୀ ପଛରେ ତା'ର ଝିଅ ।

ଏମାନଙ୍କୁ ଏକ ସଙ୍ଗେ ଦେଖି ଗୀତାଦେବୀ ଚମକି ପଡ଼ିଲେ । ସେମାନେ ସମସ୍ତେ ତାଙ୍କୁ ନମସ୍କାର କରି ସେଠି ଠିଆ ହେଲେ ।

"ଆରେ, ଏମାନେ ସବୁ କୁଆଡ଼େ ? ତୁମେ ୟାଙ୍କୁ ସବୁ ଧରି କୁଆଡ଼େ ଚାଲି ଆସିଲ ଶୁଣେ ?"

"ନାଇଁ ମା, ଇଏ ମୋ ଝିଅ ଲକ୍ଷ୍ମୀ । ତା' ବିଭାଘର ଆସନ୍ତାମାସ ୪ଠରେ ତାରିଖ ଦିନ ହେବ । ମୁଁ ତାକୁ ଡାକି ଆଣିଥିଲି ଆପଣଙ୍କ ପାଖକୁ ଆଶୀର୍ବାଦ ନେବା ପାଇଁ ମା ।"

"ଆଁ, ଇଏ ତମ ଝିଅ ? ଏହାର ବିଭାଘର ? ଏଡ଼ିକି ଛୋଟିଆ ଝିଅଟିକୁ କ'ଣ ବିଭାକରି ଦେଉଛ ମାଧବ ? ଇଏ ପାଠଶାଠ ପଢ଼ିଛି ନା ନାହିଁ ?"

"ହଁ, ମା, ଏଇବର୍ଷ ଆମ କଲୋନି ହାଇସ୍କୁଲରୁ ପରା ମେଟ୍ରିକ୍ ପାସ୍ କରିଛି ।"

"ଆଁ, ମେଟ୍ରିକ୍ ପାସ୍ କରିଛି ? ଆଉ ଉପରକୁ ପଢ଼ାଇଲନି ? ଏତେ ଅଳ୍ପ ବୟସରୁ କ'ଣ ବିବାହ କରି ଦେଉଛ ?"

"ଆଉ ବେଶି ପଢ଼ାଇ ଲାଭ କଅଣ ମା ? ଯେତେ ପାଠ ପଢ଼ିଲେହେଁ, ସେ ତ ପରଘରକୁ ଯିବ । ଝିଅପିଲାଙ୍କ ପାଠପଢ଼ା ପରା ଚୁଲିମୁଣ୍ଡକୁ ।"

ହସିଲେ ଗୀତାଦେବୀ, କହିଲେ, "ତୁମେ ଇମିତି କହିଲେ କ'ଣ ହେବ ମାଧବ । ଆଜିକାଲି ଦୁନିଆ କେତେ ଆଗେଇଲାଣି ଦେଖୁ ନାହଁ ? ତୁମ ଜୋଇଁଟି କ'ଣ କରେ ?"

"ମା, ସେ ସରକାରୀ ଚାକିରି କରୁଛି । ଓଭରସିଅର ପାସ୍ କରି ଜୁନିଅର ଇଞ୍ଜିନିଅର ହୋଇଛି । ସରକାରଙ୍କ କୋଠାବାଡ଼ି ତିଆରି ତଦାରଖ କରିବା ତା' କାମ ।"

"ବେଶ୍ ତ ଭଲ ଚାକିରି । ଜୋଇଁଟି ଦେଖିବାକୁ କେମିତି ? ସ୍ୱଭାବ ଚରିତ୍ର ?"

"ହଁ, ମା, ଦେଖିବାକୁ ବେଶ୍ ଭଲ । ସ୍ୱଭାବ ଚରିତ୍ର ମଧ୍ୟ ଖୁବ୍ ଭଲ ।"

"ଆଉ ବିଭାଘରର ଦାବୀଫାବି କିଛି ଅଛି ?"

"ନା, ମା, ସେମିତି କିଛି ନାହିଁ । ତେବେ ଯେତେବେଳେ ଏତେ ବଡ଼ ଅଫିସରକୁ ଜୋଇଁ କରୁଛି ତା ମାନସମ୍ମାନକୁ ଦେଖି ତ ଯୌତୁକ ଦେବାକୁ ପଡ଼ିବ ।"

"କୋମ୍ପାନୀକୁ କିଛି ଆଡ୍‌ଭାନ୍‌ସ ପାଇଁ ଦରଖାସ୍ତ କରିଛ ?"

"ହଁ, ମା କରିଛି । ଆମ ବଡ଼ବାବୁ କହୁଥିଲେ ବେଶି ମିଳିବନି । ଟଙ୍କା ଦଶବାରହଜାର ଭିତରେ ଆଡ଼ଭାନ୍ସ ମିଳିବ । ସେତିକିରେ କ'ଣ ବିଭାଘର ହୋଇପାରିବ ମା ?"

"ତେବେ ?"

"ମୋର ପୈତୃକସମ୍ପତ୍ତି କିଛି ଅଛି । ସେଥିରୁ କିଛି ବିକିଦେବାକୁ ଠିକ୍ କରିଛି । ପଚିଶି ତିରିଶି ହଜାର ନ ହେଲେ ଆଜିକାଲି ଯୁଗରେ କ'ଣ ବିଭାଘରଟାଏ ହୋଇପାରିବ ମା । ବରଘରର ସେମିତି କିଛି ଦାବୀ ନାହିଁ । ଦାବୀ ଥିଲେ ମୁଁ କ'ଣ ପାରି ଉଠନ୍ତି ?"

"ତୁମ ଝିଅଟି ତ ବେଶ୍ ସୁନ୍ଦରୀ । ଏଡ଼େ ସୁନ୍ଦର ଝିଅଟିକୁ ବିନା ଯୌତୁକଦାବୀରେ ବିଭା ହୋଇଯିବା କଥା ?"

"ବିନା ଯୌତୁକଭଳିଆ କଥା ହୋଇଛି ଆଜ୍ଞା । ସେମାନେ କ'ଣ ସେମିତି କିଛି ଦାବୀ କରିଛନ୍ତି ମା ? ସେମାନେ କହିଛନ୍ତି, ତୁମେ ଯାହା ଦେବ, ଆମର ସେଥିରେ ଖୁସି । ସେମାନଙ୍କର କିଛି ଦାବୀ ନାହିଁ ମା, ଆମେ ଯାହା ଦେବୁ ।"

"ବାଃ ତୁମ ଝିଅଟି ଖୁବ୍ ଭାଗ୍ୟବତୀ ମାଧବ ? ଆଜିକାଲି ଦୁନିଆରେ ଯେଉଁ ଯୌତୁକ ଦାବୀ, ସେଥିରୁ ତୁମେ ରକ୍ଷା ପାଇ ଯାଇଛ । ମାଧବ, ମୁଁ ଗୋଟାଏ କଥା କହିବି ରଖିବ ? କାଲି ସନ୍ଧ୍ୟାବେଳେ ତୁମେମାନେ ଲକ୍ଷ୍ମୀକୁ ନେଇ ଆମ ଘରକୁ ରାତ୍ରିଭୋଜନ ପାଇଁ ଆସି ପାରିବ ? ଝିଅଟି ଯେତେବେଳେ ପରଘରକୁ ଚାଲି ଯାଉଛି, ଆମ ଘରୁ ଟିକିଏ ଖାଇକରି ଯାଉ । କାଲି ସନ୍ଧ୍ୟାବେଳକୁ ଆସିବ ତ ?"

"ଇଏତ ଅତି ଭାଗ୍ୟର କଥା । ହଁ, ମା, ଆମେ କାଲି ନିଶ୍ଚୟ ଆସିବୁ । ଇଏତ ଆମର ବଡ଼ ଭାଗ୍ୟ ।" ଏତକ କହି ସମସ୍ତେ ଗୀତାଦେବୀଙ୍କୁ ନମସ୍କାର ଜଣାଇ ବାହାରିଗଲେ ।

ଗୀତାଦେବୀ ମାଧବ, ତା ସ୍ତ୍ରୀ, ତା ଝିଅ ଲକ୍ଷ୍ମୀକୁ ଡିନର୍ ଟେବୁଲ ଉପରେ ବସାଇ ଖାଇବାକୁ ଦେଇ ନିଜେ ଗୋଟିଏ ପାଖ ଚେୟାରରେ ବସି ରହିଲେ । ପୂଝାରୀମାନେ କେମିତି ପରଶୁଛନ୍ତି, କା'ର କ'ଣ ସରି ଯାଉଛି, ତଦାରଖ କରି ସେମାନଙ୍କୁ ତାଗିଦ୍ କରୁଥାନ୍ତି । ଖାଇସାରି ସୋମନେ ମୁହଁ ହାତ ଧୋଇ ଚେୟାରରେ ବସିଛନ୍ତି କି ନାହିଁ, ତାରା ଗୋଟିଏ ରୁପାଥାଳିରେ ଗୋଟିଏ ବନାରସୀ ଶାଢ଼ି, ବ୍ଲାଉଜ୍ ଓ ଶାଢ଼ି ଉପରେ ଗୋଟିଏ ସୁନାହାର ଆଣି ଟିପୟ ଉପରେ ଥୋଇ ଦେଇଗଲା । ଗୀତାଦେବୀ ହଠାତ୍ ଉଠିପଡ଼ି ହାରଟିକୁ ନେଇ ଲକ୍ଷ୍ମୀ ବେକରେ

ଗଳାଇଦେଇ ଆଶୀର୍ବାଦ କଲେ । ତତ୍‌ପରେ ଝିଅଟିକୁ ପାଖ କୋଠରିକୁ ଯାଇ ନୂଆ ଶାଢ଼ି ବ୍ଲାଉଜକୁ ପିନ୍ଧିବାକୁ କହିଲେ । ଝିଅଟି ପିନ୍ଧିବ କି ପିନ୍ଧିବ ନାହିଁ, ଏପରି ହେଉ ହେଉ ନିଜ ମା'ଙ୍କ ଇସାରାପାଇ ପାଖଘରକୁ ଚାଲିଗଲା ପିନ୍ଧିବା ପାଇଁ । ପିନ୍ଧି ଆସି ଗୀତାଦେବୀଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିବାକୁ ଯାଉଛି, ଗୀତାଦେବୀ ତାଙ୍କ କୋଳକୁ ଆଉଜାଇ ନେଇ କହିଲେ, ''ମୁଁ ତୋତେ ଆଶୀର୍ବାଦ କରୁଛି, ତୋ ଭବିଷ୍ୟତ ଜୀବନ ଯେମିତି ସୁଖମୟ ହେଉ ମା ।''

ସ୍ୱାମୀ-ସ୍ତ୍ରୀ ଦୁହେଁ ଗୀତାଦେବୀଙ୍କ ଉଦାରତା ଦେଖି ଅବାକ୍ । ତାଙ୍କ ମାଲିକାଣୀ କି ଉଦାର ନୁହନ୍ତି ସତେ । ଏତେ ଦାମିକା ହାର, ଏତେ ଦାମିକା ଶାଢ଼ି ଅତି ଉଦାର ନ ହେଲେ କିଏ କ'ଣ କାହାକୁ ଦେଲାଣି ?

ସେମାନଙ୍କୁ ଗୀତାଦେବୀ ଗେଟ୍ ପାଖରେ ବିଦାୟ ଦେଇ ଆସୁ ଆସୁ ତାରା ଗୀତାଦେବୀଙ୍କ ଗହଣରେ ଥାଇ କହିଲା, ''ଝିଅଟି ବେଶ୍ ସୁନ୍ଦରୀଟିଏ ମା । ଭଗବାନ ତାକୁ କେମିତି ଗୋଟିଏ ଚାଉଳରେ ଗଢ଼ିଛନ୍ତି ଦେଖୁ ନାହାନ୍ତି ? ବନାରସୀ ଶାଢ଼ି ପିନ୍ଧି ସେ ଯେତେବେଳେ ଆପଣଙ୍କୁ ମୁଣ୍ଡିଆ ମାରୁଥିଲା, ଜଣାପଡୁଥିଲା, ସତେ ଯେମିତି ସରଗରୁ ପରୀଟିଏ ଓହ୍ଲାଇ ଆସିଛି । ମୁଁ ଢେର୍ ସୁନ୍ଦରୀ ଝିଅ ଦେଖିଛି ମା, କିନ୍ତୁ ଲକ୍ଷ୍ମୀ ଭଳି ସୁନ୍ଦରୀ ଝିଅ ଦେଖିନି କେଉଁଠି ? କି ଶାନ୍ତ, ଶିଷ୍ଟ, କି ଧୀର ଚାଲି । ଝିଅଟି ବଡ଼ ଲକ୍ଷ୍ମୀବନ୍ତ ହେବ ମା । ତା ନାଁ ଯେମିତି ଲକ୍ଷ୍ମୀ, ସେ ସାକ୍ଷାତରେ ଲକ୍ଷ୍ମୀ ଠାକୁରାଣୀ । ସେ ଯାହା ଘରକୁ ଯିବ, ତା ଘର ଧନ ଦଉଲତରେ ଉଜଳି ଉଠିବ ମା ।

× × × × ×

ଗୀତାଦେବୀ ଦିନେ ଅଫିସରେ ବସିଥାନ୍ତି । ହଠାତ୍ ମାଧବ ଓ ତା ସ୍ତ୍ରୀ କାନ୍ଦି କାନ୍ଦି ଆସି ଗୀତାଦେବୀଙ୍କ ଗୋଡ଼ତଳେ ପଡ଼ିଯାଇ କହିଲେ, ''ଆପଣଙ୍କ ଲକ୍ଷ୍ମୀ ଆଉ ଇହଜଗତରେ ନାହିଁ ମା । ଆପଣଙ୍କ ଲକ୍ଷ୍ମୀ ଆଉ ଇହଜଗତରେ ନାହିଁ । ତାକୁ ତା'ର ଶ୍ୱଶୁରଘରର ଲୋକେ ପୋଡ଼ି ମାରି ଦେଇଛନ୍ତି । ଆମକୁ ରକ୍ଷାକର ମା । ଆମେ କ'ଣ କରିବୁ । ଆମର ସବୁ ଭାସିଗଲା ମା ।'' ଏତକ କହି ବାପା ମା ଦୁହେଁ ତାଙ୍କ ଗୋଡ଼ତଳେ ପଡ଼ି କାନ୍ଦିଲେ ।

ଗୀତାଦେବୀ ହଠାତ୍ ଚମକିପଡ଼ି, ''କ'ଣ କହିଲ ମାଧବ, ଲକ୍ଷ୍ମୀକୁ ତା ଶ୍ୱଶୁରଘର ଲୋକେ ପୋଡ଼ି ମାରି ଦେଲେ ? କ'ଣ ପାଇଁ, କ'ଣ ପାଇଁ ? ଲକ୍ଷ୍ମୀ ଭଳି ଝିଅକୁ ସେମାନେ ମାରି ପାରିଲେ ? କି ନୃଶଂସ ନୁହନ୍ତି ସେମାନେ ?''

"ବାହାଘର ପରେ ସେମାନଙ୍କ ଦାବୀ ହେଲା ଗୋଟିଏ ସ୍କୁଟର । କହିଲେ ସ୍କୁଟର ଯଦି ନ ଦେବ, ତେବେ ଝିଅକୁ ଘେନିଯାଅ । ସ୍କୁଟର ପୂର୍ବରୁ ସେମାନେ ଗୋଟିଏ ଟେଲିଭିଜନ ଦାବୀ କରିଥିଲେ । ମୁଁ ମୋ ବାପା ଗୋସବାପାଙ୍କ ଜମି ବିକି ଗୋଟିଏ ଟେଲିଭିଜନ ଦେଇଥିଲି । ପ୍ରଥମଥର ସେମାନେ ଯେତେବେଳେ ଝିଅକୁ ଆମ ଘରକୁ ପଠାଇଥିଲେ, କହିଥିଲେ ଯେମିତି ଟେଲିଭିଜନ ସଙ୍ଗରେ ନେଇ ଆସୁ । ଝିଅ ଆସି ଘରେ କନ୍ଦାକଟା କଲା । ସେମାନେ ତାକୁ ବହୁତ ଧମକାଇଥିଲେ । ସିଏ ଯଦି ସାଙ୍ଗରେ ଟେଲିଭିଜନ ନ ଆଣେ, ତେବେ ସେମାନେ ତାକୁ ଖାଇବାକୁ ପିଇବାକୁ ଦେବେନି କହିଥିଲେ । ଝିଅକୁ କାଳେ ସେମାନେ ହଇରାଣ ହରକତ କରିବେ, ସେହି ଭୟରେ ଜମି ବିକ୍ରୟ କରି ଟେଲିଭିଜନଟାଏ କିଣିକରି ଦେଲୁ । ଟେଲିଭିଜନ ଦେବାର ଦୁଇତିନି ମାସ ହୋଇଛି କି ନାହିଁ, ସ୍କୁଟର ପାଇଁ ଦାବୀ ହେଲା । ଝିଅ ସେମାନଙ୍କୁ ବାରମ୍ବାର କହିଲା, ବାପାଙ୍କର ଶକ୍ତି ନାହିଁ ସ୍କୁଟର ଦେବାକୁ । ଝିଅକୁ ଏମିତି କହିବାର ଦେଖି ସେମାନେ ପ୍ରଥମେ ପ୍ରଥମେ ଝିଅକୁ ମାରଧର କରିବା ଆରମ୍ଭ କଲେ । ସେମାନେ ଜାଣନ୍ତି, ମୋର ଆଉ କିଛି ପୈତୃକ ସମ୍ପତ୍ତି ଅଛି । ଝିଅକୁ ମାରଧର କଲେ, ଆମେ ସେତକ ବିକି, ତାଙ୍କ ଦାବୀ ପୂରଣ କରିବୁ । ତାହା କେମିତି ହେବ ମା । ମୋର ପୁଣି ଆଉ ଗୋଟିଏ ଝିଅ ଅଛି । ସେତକ ଯଦି ବିକି ଦେଉଛି, ତେବେ ଆର ଝିଅଟିକୁ ବିଭା ଦେବି କେମିତି ? ଝିଅ ସେମାନଙ୍କୁ ସବୁକଥା କହି ଯେତେ କାକୁତିମିନତି କଲା, ସେମାନେ ଶୁଣିଲେନି, ଓଲଟା ଝିଅ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ । ଝିଅର ଶାଶୁ ଓ ନଣନ୍ଦଙ୍କର ଭାରି ଜିଦ୍ ସ୍କୁଟର ପାଇଁ । ଜୋଇଁଙ୍କର ଜିଦ୍ ମଧ କମ୍ ନୁହେଁ । ସେମାନଙ୍କର ଆଶା ଝିଅକୁ ଏମିତି ହଇରାଣ ହରକତ କଲେ, ଭୟ ଦେଖାଇଲେ ମାଡ଼ ମାରିଲେ ସେ ତା ବାପାକୁ କହି ନିଶ୍ଚୟ ସ୍କୁଟରଟାଏ ଆଣିବ । ଝିଅ ଯେତେ କାକୁତିମିନତି କଲେହେଁ ସେମାନେ ଶୁଣନ୍ତିନି । କେତେଥର ସେମାନେ ଝିଅକୁ ପିଠାଖଡ଼ିକା ତତାଇ ତା ପିଠିରେ ଚେଙ୍କା ଦେଲେଣି । ସେସବୁ ନିଜେ ସହ୍ୟ କରିଛି ଲକ୍ଷ୍ମୀ । କିନ୍ତୁ ସବୁବେଳେ କହିଛି ମୋ ବାପାଙ୍କର ଆଉ ଶକ୍ତି ନାହିଁ ସ୍କୁଟର ଦେବାକୁ ।"

ତା ଶାଶୁ ଓ ନଣନ୍ଦ ଦିନେ ତାକୁ ବାଧ କଲେ ବାପଘରକୁ ଯାଇ ସ୍କୁଟର ଆଣିବାକୁ । ସେମାନେ ତାକୁ ଜବରଦସ୍ତ ଗୋଟିଏ ଗାଡ଼ି କରି ସେହି ଗାଡ଼ିରେ ଆମ ଘରକୁ ପଠାଇଦେଲେ । ଝିଅକୁ ହଠାତ୍ ଘରେ ଆସି ପହଞ୍ଚିବା ଦେଖି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ । ସେ ତାର ସୁଖ ଦୁଃଖ କଥା ବର୍ଣ୍ଣନା କରିଗଲା । ତା ପ୍ରତି ସେମାନେ କି କି ଅତ୍ୟାଚାର କରିଛନ୍ତି, ସବୁ ଦେଖାଇଲା ।

ସେମାନଙ୍କ ଅତ୍ୟାଚାର ସେ ସବୁ ସହ୍ୟ କରିଛି । କଷ୍ଟ ହେଲେବି କେବେ ଚିତ୍କାର କରିନି । କାଳେ ବାହାରେ ପ୍ରକାଶ ପାଇଯିବ । ଝିଅର ଏ ଅବସ୍ଥା ଦେଖି ଆମେ ଠିକ୍ କଲୁ, ଝିଅକୁ ଆଉ ତା ଶ୍ୱଶୁରଘରକୁ ପଠେଇବୁନି ବୋଲି ।

ଏହିଭଳି କିଛିଦିନ କଟିଗଲା । ଦିନେ ଝିଅକୁ ନେବା ପାଇଁ ଖୋଦ୍ ଜୋଇଁ ଆସି ଆମ ଘରେ ପହଞ୍ଚିଗଲେ । ଆମେ ଝିଅର ଦୁଃଖ କଥା ସବୁ କହିଲୁ । ତା ଶାଶୁ ଓ ନଣନ୍ଦମାନେ ତା ପ୍ରତି କିପରି ଅତ୍ୟାଚାର କରୁଛନ୍ତି, କହିଲୁ । ସେ କହିଲେ, "ନା, ସେମାନେ ଆଉ ତା ପ୍ରତି ଖରାପ ବ୍ୟବହାର କରିବେନି । ତା ପ୍ରତି ଯେମିତି ଅତ୍ୟାଚାର ନ ହୁଏ, ସେ ଦାୟିତ୍ୱ ମୋର । ଏହିଭଳି ବୁଝାଇ ଶୁଝାଇ ସେ ଝିଅକୁ ସଙ୍ଗରେ ନେଇଗଲେ ।

ଯିବାର ତିନିଦିନ ପରେ ଖବର ପାଇଲୁ, ତା ଶାଶୁ ଓ ନଣନ୍ଦ ଝିଅକୁ ଗୋଟିଏ ଖୁଣ୍ଟରେ ବାନ୍ଧି ପକାଇ ତା ଉପରେ କିରାସିନି ଢାଳି ପୋଡ଼ି ପକାଇଛନ୍ତି । ତା ଚିତ୍କାର ଶୁଣି ପାଖ ପଡ଼ିଶାର ଲୋକେ ଧାଇଁ ଆସିଲେ । ହେଲେ କେହି ତାକୁ ରକ୍ଷା କରି ପାରିଲେନି । ସେଦିନ ଆମ ଜୋଇଁ ମଧ୍ୟ ଘରେ ଥିଲେ । ଶାଶୁ ନଣନ୍ଦ କିରାସିନି ଢାଳି ଯେତେବେଳେ ଧମକାଉଥିଲେ, "ଏଇ ନିଆଁ ଲଗାଇଦେବୁ । କହ, ତୁ ତୋ ବାପାଙ୍କୁ କହି ସ୍କୁଟର ଆଣିବୁ କି ନାହିଁ, ଜୋଇଁ ସବୁ ଶୁଣି ରହୁଥିଲେ । ଏଭଳି କରିବାକୁ ବାରଣ କରୁ ନ ଥିଲେ । ସେମାନଙ୍କ ଆଶା ଥିଲା, ସେ ଡରରେ ମାନିଯିବ ଓ ସ୍କୁଟର ଆଣିବାକୁ ଯିବ । ଯେତେ ଧମକାଇଲେ ମଧ୍ୟ ସେ ସେମାନଙ୍କ କଥାରେ ମୋଟେ ରାଜି ହେଲାନି । ଧମକଉ ଧମକଉ, ଶେଷରେ ସେମାନେ ରାଗରେ ନିଆଁ ଲଗାଇଦେଲେ । ନିଆଁ ଲଗାଇଦେଲା ପରେ ଝିଅ କଷ୍ଟରେ ବଡ଼ ଚିତ୍କାର କଲା । ପାଖ ପଡ଼ିଶା ଲୋକେ ଧାଇଁ ଆସିଲେ, କିନ୍ତୁ କେହି ତାକୁ ରକ୍ଷା କରି ପାରିଲେନି । ପଡ଼ିଶା ଲୋକେ ସେ ଜଳୁଥିବା ବେଳେ ତାର ଦଉଡ଼ି କାଟି ପକାଇ ନିଆଁ ଲିଭାଇବାକୁ ଚେଷ୍ଟା କଲେ । କିନ୍ତୁ କିଛି ହୋଇ ପାରିଲାନି । ସେମାନେ ତାକୁ ଗାଡ଼ିରେ ପକାଇ ହସ୍‌ପିଟାଲ ନେଲେ । ନେଉ ନେଉ ବାଟରେ ତା ପ୍ରାଣବାୟୁ ଉଡ଼ିଗଲା ।"

"ଆମର ଏଡ଼େ ସୁନ୍ଦର ଝିଅଟିକୁ ସେମାନେ ପୋଡ଼ି ମାରିଦେଲେ ମା । ଆମେ କ'ଣ କରିବୁ କହନ୍ତୁ ଆଜ୍ଞା । ଆମ ମୁଣ୍ଡକୁ କିଛି ପଶୁନି ।"

ଗୀତାଦେବୀ ସଙ୍ଗେ ସଙ୍ଗେ ଏସ୍.ପି.ଙ୍କୁ ଫୋନ୍ ଉଠାଇଲେ । ଏଡ଼େ ସୁନ୍ଦର ଝିଅଟାକୁ ଗୋଟାଏ ସ୍କୁଟର ଲୋଭରେ ସେମାନେ ପୋଡ଼ି ମାରିଦେବେ ଗୀତାଦେବୀ ଧାରଣା କରି ପାରିଲେନି । ଏଡ଼େ ସୁନ୍ଦର ଓ ଖୁସିବାସିଆ ଝିଅଟାକୁ ମାରିଦେବାକୁ କେମିତି ସେମାନଙ୍କ ହାତ ଗଲା, ସେ ଭାବି ପାରିଲେନି । ଲକ୍ଷ୍ମୀର ହସ ହସ

ମୁହଁ ତାଙ୍କ ଆଖିଆଗରେ ନାଚି ଉଠିଲା । ଆରପାଖରୁ ଏସ୍.ପି.ଫୋନ୍ ଧରି ପଚାରିବାରୁ ଗୀତାଦେବୀ ପ୍ରକୃତିସ୍ଥ ହୋଇଗଲେ । ସେ ଲକ୍ଷ୍ମୀ ସମ୍ବନ୍ଧରେ ଯାହା ଶୁଣିଥିଲେ ସବୁ ଗୋଟି ଗୋଟି କରି କହିଗଲେ । ପ୍ରକୃତ କଥାଟା କ'ଣ, ମୁଜରିମ୍‌ମାନେ ଧରା ହୋଇଛନ୍ତି କି କଥଣ ବୁଝି ଫୋନ୍ କରିବେ ବୋଲି କହିଲେ । ସେମାନେ ଯେମିତି ଖସି ନ ଯାନ୍ତି, ତାର ତଦ୍‌ବିର କରିବା ପାଇଁ ସେ ପ୍ରତିଶ୍ରୁତି ଦେଲେ ।

ତତ୍‌ପରେ ଗୀତାଦେବୀ ଫୋନ୍‌ରେ ତାଙ୍କ ଓକିଲ ମିଷ୍ଟର ଲେଖିଙ୍କୁ ଡକାଇଲେ । ଲକ୍ଷ୍ମୀଙ୍କୁ ଯେଉଁମାନେ ପୋଡ଼ି ମାରିଛନ୍ତି, ସେମାନେ କେମିତି ଉଚିତ ଦଣ୍ଡ ପାଇବେ ସେଇଆ ଥାଏ ତାଙ୍କର ଉଦ୍ଦେଶ୍ୟ । ଏଥିପାଇଁ କେମିତି କାଗଜପତ୍ର ପ୍ରସ୍ତୁତ କରିବାକୁ ପଡ଼ିବ, ଲେଖିଙ୍କୁ ତଦ୍‌ବିର କରିବାକୁ ଆଦେଶ ଦେଲେ ।

ବିଚାରର ଶେଷ ଦିନ । ଜଜ୍ ସାହେବ ରାଏ ଦେବା କଥା । ସେଦିନ ଗୀତାଦେବୀ, ମାଧବ ଓ ତା ସ୍ତ୍ରୀକୁ ଧରି କଚେରିକୁ ଯାଇଥିଲେ । ଜଜ୍ ସାହେବଙ୍କ ରାଏରେ ଜୋଇଁ, ଶାଶୁ, ନଣନ୍ଦଙ୍କୁ ଫାଶୀ ହୁକୁମ ହେବା ଶୁଣି ଗୀତାଦେବୀ ମନେ ମନେ ଆଶ୍ୱସ୍ତ ହେଲେ । ଲକ୍ଷ୍ମୀଭଳି ସୁନ୍ଦର ଝିଅକୁ ସେମାନେ ପୋଡ଼ି ମାରିଛନ୍ତି, ତାଙ୍କୁ ଫାଶୀଖୁଣ୍ଟ ଛଡ଼ା ଆଉ କେଉଁଠି ସ୍ଥାନ ନାହିଁ । ସେମାନେ ମଣିଷ ତ ନୁହନ୍ତି, ରାକ୍ଷସ ବି ନୁହନ୍ତି । ରାକ୍ଷସମାନଙ୍କଠାରୁ ଆହୁରି ହିଂସ୍ର । ମୃତ୍ୟୁ ହିଁ ସେମାନଙ୍କର ଉପଯୁକ୍ତ ଦଣ୍ଡ । କିନ୍ତୁ ସେମାନଙ୍କ ଫାଶୀ ଜେଲ ଭିତରେ ନ ହୋଇ ସମସ୍ତଙ୍କ ସାମନାରେ ବିଚ୍ ରାଜଦାଣ୍ଡ ଉପରେ ହେବା ଉଚିତ ଥିଲା । ତା'ହେଲେ ଲୋକେ ଜାଣନ୍ତେ ଯୌତୁକଦାବୀ ଓ ବୋହୂକୁ ପୋଡ଼ି ମାରିବାର ପରିଣାମ । ଆମ ସମ୍ବିଧାନରେ ଏଭଳି ବ୍ୟବସ୍ଥା ନ ଥିଲେ ହେଁ ସମ୍ବିଧାନକୁ ବଦଳାଇ ଏଭଳି ମୃତ୍ୟୁ ବ୍ୟବସ୍ଥା ଖଞ୍ଜିଲେ ବର୍ତ୍ତମାନର ଘୃଣ୍ୟ ଯୌତୁକଦାବୀର ଠିକଣା ମୁକାବିଲା କରି ହେବ ।

× × × × ×

ସେଦିନ ଦେବବାବୁ ଓ ଗୀତାଦେବୀ ସାଙ୍ଗ ହୋଇ ମଧ୍ୟାହ୍ନଭୋଜନ ପାଇଁ ଘରକୁ ଆସିଲେ । ମଧ୍ୟାହ୍ନଭୋଜନ ସାରି ଦେବବାବୁ ଏକ କାର୍ଯ୍ୟୋପଲକ୍ଷେ ବୋମ୍ବେ ବାହାରିଗଲେ । ଗୀତାଦେବୀ ଆଉ ଅଫିସ୍‌କୁ ନ ଫେରି ନିଜ ଶୋଇବା କକ୍ଷରେ ବିଶ୍ରାମ ନେଲେ । ପଲଙ୍କ ଉପରେ ଶୋଇ ରହି ଗୋଟିଏ ମେଗାଜିନ୍ ପଢୁ ପଢୁ କେତେବେଳେ ତାଙ୍କୁ ଛାଇନିଦ ଲାଗିଗଲାଣି ଜଣା ନାହିଁ । ଠିକ୍ ଚାରିଟା ବାଜିଲା ବେଳକୁ ତାରା ହାତରେ ଚା' ଟ୍ରେ ଧରି ଗୀତାଦେବୀଙ୍କ ପଲଙ୍କ ପାଖରେ ଆସି ହାଜର । ଗୀତାଦେବୀଙ୍କୁ ଶୋଇଥିବା ଦେଖି ଟିପୟ ଉପରେ ଟ୍ରେଟି ଥୋଇ

ଦେଇ ଚା' ଗୋଳାଇବାକୁ ବସିଲା । ଚା' କପ୍ ଓ ଚାମଚର ଖଡ୍‌ଖଡ୍ ଶବ୍ଦରେ ଗୀତାଦେବୀଙ୍କ ନିଦ ହଠାତ୍ ଭାଙ୍ଗିଗଲା । ତାରାକୁ ଚା' ଗୋଳାଉଥିବା ଦେଖି ଗୀତାଦେବୀ କହିଲେ, ''ପୂଝାରୀ, ଆୟାମାନେ ସବୁ କୁଆଡ଼େ ଗଲେ କି ତାରା ? ତୁ କ'ଣ ଆଜି ନିଜେ ଚା' ଘେନି ଆସିଛୁ ?''

''ହଁ, ମା, ସେମାନେ ସବୁ ଅଛନ୍ତି ଯେ ହେଲେ ଅନ୍ୟ କାମରେ ଲାଗିଛନ୍ତି । ଭାବିଲି ମା'ଙ୍କର ଚା' ଖାଇବା ଡେରି ହୋଇଯିବ, ତେଣୁ ମୁଁ ନିଜେ ନେଇ ଆସିଲି ।''

''ତୁ ଏତେ ତରବର ହୋଇପଡ଼ିଲୁ କାହିଁକି ଯେ ? ସେମାନେ କାମ ସାରିଥିଲେ ଆଣିଥାନ୍ତେ । ଗୀତାଦେବୀଙ୍କ ହାତକୁ ଚା' କପ୍‌ଟା ବଢ଼ାଇ ଦେଉ ଦେଉ ତାରା କହିଲା, ''ମା, ଆପଣଙ୍କୁ ଗୋଟିଏ କଥା ଡେର୍ ଦିନ ହେଲା କହିବି କହିବି ବୋଲି ହେଉଛି, ଡରରେ କହିପାରୁନି ମା ।''

''ଇମିତି କି କଥା କିଲୋ, କହିବାକୁ ଏତେ ଡର ? ପୁଣି ମୋ ପାଖରେ ?''

''ନାଇଁ, ମା, ଆପଣମାନେ ହେଲେ ବଡ଼ ଲୋକ । ମୋ କଥାଟା କାଳେ ପସନ୍ଦ ହେବନି ।''

ହସିଲେ ଗୀତାଦେବୀ, ''ଇମିତି କି ଅପସନ୍ଦ କଥା ତୁ କହିବୁ ଯେ ମୋ ମନକୁ ପାଇବନି ।''

''ମା, ମୁଁ କ'ଣ କହୁଥିଲି କି– କିଛି ସମୟ ଛେପ ଢୋକି, କ'ଣ କହୁଥିଲି କି–''

''କ'ଣ କହୁନୁ ? କହୁଥିଲିକି, କହୁଥିଲିକି କ'ଣ ହଉଛୁ ?''

''ମା, କ'ଣ କହୁଥିଲିକି– ଟିକିଏ ଲାଜେଇଯାଇ କହିଲା, ''ଏ ଘରଟା କେମିତି ଏକାଟିଆ ଏକାଟିଆ ଲାଗୁଛି ମା । ଏ ଘରକୁ ଗୋଟିଏ ଛୋଟ ପିଲା ଆସିଲେ କ'ଣ ହୁଅନ୍ତାନି ?''

''ଓଃ, ଏଇ କଥା ? ପୁଣି ଯାଗି ପାଇଁ ଏତେ ଡର ?'' ହସିଲେ ଗୀତାଦେବୀ ।

''ତୁ ଏଇକଥା କହିବା ପାଇଁ, ଚା' ନେଇ ଆସିଥିଲୁ ପରା ? କ'ଣ ନା ପୂଝାରୀ, ଆୟାମାନେ ତେଣେ କାମରେ ଲାଗିଛନ୍ତି ।'' ହସିଲେ ଗୀତାଦେବୀ ।

''ମା, କ'ଣ କହିବେ ଶୁଣିବା ପାଇଁ ତାରା ମା'ଙ୍କ ମୁହଁକୁ ଅନାଇ ରହିଲା ।''

ଗୀତାଦେବୀ କିଞ୍ଚିତ ଗମ୍ଭୀର ହୋଇଯାଇ କହିଲେ, ''ତୁ ଠିକ୍ କହିଛୁ ତାରା । ମୋର ବି ବେଳେ ବେଳ ସେଇଆ ମନେ ହୁଏ । ଆମ ସଂସାରକୁ ପିଲାଟିଏ

ଆସିଲେ ଭଲ ହୁଅନ୍ତା । ବାବୁ ବି ବେଳେବେଳେ ସେଇଆ କହନ୍ତି ? କିନ୍ତୁ କାହିଁ, ସେ ଆଶା ତ ମୋତେ ଦିଶୁନି । କେତେଥର ଭାବିଲିଣି, ବୋମ୍ବେ ଯାଇ ଡାକ୍ତରଙ୍କ ସହ ପରାମର୍ଶ କରିବି । ବେଳ କେଉଁଠି ହେଉଛି ଯେ ବୋମ୍ବେ ଯିବି ? କାମର ଚାପ ଏତେ ବେଶି ଯେ ମୁଁ ସେ କଥା ସଙ୍ଗେ ସଙ୍ଗେ ଭୁଲିଯାଏ । କାମର ଚାପରେ ବାବୁ ବି ସେ କଥା ମନେପକାଇ ଦିଅନ୍ତିନି । ସେ ବି ମୋ ଭଳି ଭୁଲିଯାନ୍ତି । ଡାକ୍ତରଙ୍କ ସହ ଏପଏଣ୍ଟମେଣ୍ଟ କରି ଥରେ ଗଲେ ହୁଅନ୍ତା ।''

''ହଁ, ମା, ପିଲାଟିଏ ଏଇ ଘରକୁ ଆସିଲେ ଭାରି ଭଲ ହୁଅନ୍ତା । ମୁଁ ତାର ସବୁ ହେପାଜତ, ଯତ୍ନ ନିଅନ୍ତି । ଆପଣଙ୍କୁ କିଛି କରିବାକୁ ପଡ଼ନ୍ତାନି । ପିଲାଛୁଆ ନ ଥିଲେ ସଂସାରଟା କେମିତି ହୀନିମାନିଆ ଦିଶେ ମା ।''

× × × × ×

''ଦେଖନ୍ତୁ ମିଷ୍ଟର ଅଗ୍ରୱାଲ, ଆପଣଙ୍କ ସ୍ତ୍ରୀଙ୍କୁ ମୁଁ ଭଲ ଭାବରେ ପରୀକ୍ଷା କରି ଦେଖିଲିଣି । ମୁଁ ଯାହା ଦେଖୁଛି, ଆପଣଙ୍କ ସ୍ତ୍ରୀଙ୍କ ପକ୍ଷେ ମାତୃତ୍ୱର ଗୌରବ ପାଇବାର ସମ୍ଭାବନା ଖୁବ୍ କମ୍ ।'' ବୋମ୍ବେର ବିଶିଷ୍ଟ ସ୍ତ୍ରୀରୋଗ ବିଶେଷଜ୍ଞ ମିସେସ୍ ଜରିବାଲା କହିଲେ ।

ଡାକ୍ତରଙ୍କ ଏଭଳି ଉକ୍ତି ଶୁଣି ଦେବବାବୁ ହଠାତ୍ ଆକାଶରୁ ପଡ଼ିଲା ଭଳି ଅନୁଭବ କଲେ । ତାଙ୍କ ମୁଣ୍ଡ ଘୂରିଗଲା । ଡାକ୍ତର ପ୍ରକୃତରେ କ'ଣ କହୁଛନ୍ତି, ସେ ସତେ ଯେମିତି ବୁଝିପାରୁ ନାହାନ୍ତି ।

ମିସେସ୍ ଜରିବାଲା ପୁଣି କହି ଚାଲିଲେ, ''ଆପଣଙ୍କ ସ୍ତ୍ରୀଙ୍କ ଜରାୟୁଟି ଅସ୍ୱାଭାବିକ ଭାବରେ ଅତି ଛୋଟ । ଗର୍ଭ ସମୟରେ ଶିଶୁଟି ଏହି ଜରାୟୁରେ ରହି ବଢ଼ିବା କଥା । କିନ୍ତୁ ଜରାୟୁଟି ଅତି ଛୋଟ ହୋଇଥିବାରୁ ଏଥିରେ କୌଣସି ପିଲା ରହି ବୃଦ୍ଧି ପାଇବା ସମ୍ଭବ ନୁହେଁ । ଆପଣଙ୍କ ସ୍ତ୍ରୀ ବହୁ ସମୟରେ ଅନ୍ତଃସତ୍ତ୍ୱା ହେଉଥିବେ, କିନ୍ତୁ କିଛିଦିନ ପରେ ସେହି ଶିଶୁଟି ଜରାୟୁରେ ରହି ନ ପାରି ବାହାରି ଯାଉଥିବ । ଫଳରେ ଆପଣଙ୍କ ସ୍ତ୍ରୀଙ୍କର ଥରକୁଥର ଗର୍ଭପାତ ହେଉଥିବ । ପିଲାଟି ଜରାୟୁରେ ରହି ନ ପାରିବା ହେତୁ ଏହିଭଳି ବାରମ୍ବାର ଗର୍ଭପାତ ହେଉଛି । ଆପଣଙ୍କ ସ୍ତ୍ରୀ ଯାହା କହନ୍ତି, ତାଙ୍କର ବହୁବାର ମନକୁମନ ଗର୍ଭ ନଷ୍ଟ ହୋଇଯାଇଛି ତାହା ଏଇଥିପାଇଁ । ମାସେ ଦେଢ଼ମାସରୁ ଅଧିକ ଦିନ ଶିଶୁଟି ଗର୍ଭାଶୟରେ ରହିବା ସମ୍ଭବ ନୁହେଁ । ଆପଣଙ୍କ ସ୍ତ୍ରୀ ଏହାକୁ ସାଧାରଣ ଭାବି ଏହା ଉପରେ ଅଧିକ ଗୁରୁତ୍ୱ ଦେଇ ନାହାନ୍ତି । ବାରମ୍ବାର ଗର୍ଭପାତ କାହିଁକି ହେଉଛି, ଜାଣିବା ପାଇଁ ଆପଣ ଯଦି କୌଣସି ବିଶେଷଜ୍ଞଙ୍କୁ ଦେଖାଇଥାନ୍ତେ,

ତେବେ ଏହାର କାରଣ ଢେର୍ ଆଗରୁ ଜାଣିପାରିଥାନ୍ତେ । ବାରମ୍ବାର ଗର୍ଭପାତ ହେବା ଶୁଭଲକ୍ଷଣ ନୁହେଁ । ଏହା କେନ୍‌ସର ରୋଗକୁ ଆଶ୍ରା କରିପାରେ ।''

''ଏହା ହେବାର କାରଣ ? ଇଏତ ନିହାତି ଅସ୍ୱାଭାବିକ ?''

''ହଁ, ଅତ୍ୟନ୍ତ ଅସ୍ୱାଭାବିକ । ଲକ୍ଷେ ସ୍ତ୍ରୀଲୋକଙ୍କ ଭିତରୁ ଏଭଳି ରୋଗୀ ଗୋଟାଏ ଦୁଇଟା ଥିବେ କି ନାହିଁ ସନ୍ଦେହ । ତେବେ ଆପଣ ମୋଠାକୁ ଘେନିଆସି ଭଲ କରିଛନ୍ତି । ତା' ନ ହୋଇଥିଲେ ଆପଣମାନେ ଅନ୍ଧାରରେ ରହି ଏହାର ବହୁତ ଚିକିତ୍ସା ପାଇଁ ଚିନ୍ତା କରି ନ ଥାନ୍ତେ । ତେବେ ଆପଣ ଯେଉଁ କାରଣ କଥା ପଚାରିଲେ, ସେ ସମ୍ବନ୍ଧରେ ଏତିକି କୁହାଯାଇପାରେ ଯେ ଜନ୍ମ ପରଠାରୁ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶରୀରର କୌଣସି ଏକ ବ୍ୟତିକ୍ରମ ହେତୁ ଆପଣଙ୍କ ସ୍ତ୍ରୀଙ୍କ ଏହି ଅଙ୍ଗଟି ସମ୍ୟକ୍ ଭାବରେ ବୃଦ୍ଧି ପାଇପାରିନି । ହୋଇପାରେ ଯୌନ ହରମୋନ୍‌ସର ଆଶାନୁରୂପ କ୍ଷରଣ ଯୁବତୀ ଅବସ୍ଥାକୁ ଆସିଲାବେଳେ ହୋଇପାରି ନ ଥିବାରୁ ଏହି ଅଙ୍ଗଟି ସମ୍ୟକ୍ ଭାବରେ ବୃଦ୍ଧି ନ ପାଇ ସେମିତି ରହି ଯାଇଛି । ଆପଣଙ୍କ ସ୍ତ୍ରୀଙ୍କ ଗର୍ଭକୋଷ, ଫେଲୋପିଆନ୍ ନଳୀ ଆଦି ସବୁ ଠିକ୍ ଅଛି । ଠିକ୍ ଭାବରେ ଗର୍ଭକୋଷରୁ ଡ଼ିମ୍ବାଣୁ ବୃଦ୍ଧିପ୍ରାପ୍ତ ହୋଇ ନିର୍ଗତ ହେଉଛି । ଡିମ୍ବାଣୁ ଠିକ୍ ଭାବରେ ଜରାୟୁରେ ନିଷିକ୍ତ ହେଉଛି । ସେଥିରେ କୌଣସି ଗୋଳମାଳ ନାହିଁ । ନିଷିକ୍ତ ଡିମ୍ବାଣୁଟି ମାସେ ଦେଢ଼ମାସରୁ ଅଧିକ ଦିନ ଜରାୟୁରେ ନ ରହିପାରିବା ହେତୁ ମନକୁମନ ଗର୍ଭପାତ ହୋଇଯାଉଛି । ମୁଁ ବଡ଼ ଦୁଃଖିତ ମିଷ୍ଟର ଅଗ୍ରୱାଲ, ଏହାର ସଫଳ ଚିକିତ୍ସା ଆମ ଦେଶରେ ହୋଇ ପାରିବନି । ଆପଣ ଯଦି ଆପଣଙ୍କ ସ୍ତ୍ରୀଙ୍କୁ ଆମେରିକା ନେଇ ଯାଇପାରନ୍ତି, ତେବେ ସେଠାରେ ଏହାର ସଫଳ ଚିକିତ୍ସା କିଛି ସମ୍ଭବ ହୋଇପାରନ୍ତା । ଆପଣ ଯଦି ଆମେରିକା ଯିବାକୁ ରାଜି ହୁଅନ୍ତି, ତେବେ ମୁଁ ଆମେରିକାରେ ଏ ରୋଗରେ ଯେ ସବୁଠାରୁ ବଡ଼ ବିଶେଷଜ୍ଞ, ତାଙ୍କ ସହ କଥାବାର୍ତ୍ତା କରି ତାରିଖ ଠିକ୍ କରନ୍ତି ।''

× × × × ×

ଏଇ କେତେଦିନ ହେଲା ଗୀତାଦେବୀଙ୍କ ମନ ଭଲ ନାହିଁ । ସେ ସବୁବେଳେ କିଛି ଗୋଟିଏ ବିଷୟ ନେଇ ଚିନ୍ତା କଲାଭଳି ଦିଶୁଥାନ୍ତି । ମିଷ୍ଟର ଅଗ୍ରୱାଲ ମଧ୍ୟ ସେଇଆ । ଦୁଇଜଣ ଯାକ ସାଙ୍ଗହୋଇ ଯନ୍ତ୍ରଚାଳିତବତ୍ ଅଫିସ୍‌କୁ ଯାଉଛନ୍ତି । ଅଫିସ୍‌ରୁ ଠିକ୍ ସେହିଭଳି ଫେରି ଖାଇପିଇ ଦୁହେଁ ଅଲଗା ଅଲଗା ଜାଗାରେ ବସିଯାଇ କଅଣ କଅଣ ଭାବୁଛନ୍ତି । ଖାଇଲାବେଳେ ଯେଉଁ ହସଖୁସି, କଥାବାର୍ତ୍ତା, ଏଇ କେତେଦିନ ହେଲା ସେସବୁ କିଛି ନାହିଁ । ତାରା ସମେତ ଘରର ସମସ୍ତେ ଏଥିପାଇଁ ଚିନ୍ତିତ । ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ । ମା, ବାବୁଙ୍କର ଇଏ

କ'ଣ ହେଲା ? ବ୍ୟବସାୟରେ କିଛି ଗୋଳମାଳ ବା କ୍ଷୟକ୍ଷତି ଘଟିଛି ନା କଅଣ ? ମା, ବାବୁଙ୍କୁ ପଚାରିବ ବା କିଏ ? ତାରା ମା'ଙ୍କର ଅତି ପ୍ରିୟ ହୋଇମଧ୍ୟ ସେ କିଛି ପଚାରିବାକୁ ସାହସ କରୁ ନ ଥାଏ । ମା'ଙ୍କୁ ବେଳେବେଳେ କାନ୍ଦ କାନ୍ଦ ମୁହଁରେ ତାରା କେତେଥର ଦେଖିଲାଣି । କିନ୍ତୁ ସାହସ କରି ପଚାରିପାରୁନି, କ'ଣ ହୋଇଛି ତାଙ୍କର । ଯେଉଁ ମା'ଙ୍କୁ ସଦାସର୍ବଦା ହସ ହସ ମୁଖରେ ଦେଖିଲେ, ତା'ର ପେଟ ପୂରିଉଠେ, ସେହି ହସ ହସ ମୁହଁ ତାଙ୍କଠାରୁ ଛଡ଼ାଇନେଲା କିଏ ? ତାରା ମନେ ମନେ କେତେଥର ଠିକ୍ କଲାଣି ମା'ଙ୍କୁ ଏକଥା ପଚାରିବ, କିନ୍ତୁ ସାହସ ସଞ୍ଚୟ କରିପାରୁ ନ ଥାଏ ।

ଦିନେ ଉପରଓଳି ଗୀତାଦେବୀ ହଠାତ୍ ଅଫିସ୍‌ରୁ ଫେରି ଆସି ନିଜ ଶୟନକକ୍ଷରେ ପଲଙ୍କ ଉପରେ ବସି ପଡ଼ିଲେ । ଆସିଲାବେଳେ ପୂର୍ବଭଳି କାନ୍ଦକାନ୍ଦ ମୁହଁ । ତାରା ମା'ଙ୍କୁ ଏଭଳି କାନ୍ଦ କାନ୍ଦ ମୁହଁରେ ଦେଖି ତା' ଆଖିରେ ମଧ୍ୟ ପାଣି ଆସିଗଲାଣି । ମା'ଙ୍କର କ'ଣ ହୋଇଛି, କିଛି କହୁ ନାହାନ୍ତି କାହାକୁ ? ସେ ଠିକ୍ କଲା ଆଜି ନିଶ୍ଚୟ ମା'ଙ୍କୁ ପଚାରିବ । ଏମିତି କେତେଦିନ ସେମାନେ ହନ୍ତସନ୍ତ ହୋଇ ଦିନ କାଟୁଥିବେ ।

ଗୀତାଦେବୀ ଶୟନକକ୍ଷକୁ ପଶିବାର କିଛି ସମୟ ପରେ ତାରା ମା'ଙ୍କ ଶୋଇବାଘରକୁ ଆସିଲା । ଦେଖିଲା ମା ପଲଙ୍କ ଉପରେ ମୁହଁମାଡ଼ି ଶୋଇଛନ୍ତି । ସେ ତରତର ହୋଇ ନିକଟକୁ ଯାଇ ମା, ମା, ଡାକିବାକୁ ଯାଉଛି, ଦେଖିଲା ମା ମୁହଁମାଡ଼ି କଇଁ କଇଁ ହୋଇ କାନ୍ଦୁଛନ୍ତି । ସତେ ଯେମିତି ତାରାକୁ ଆସିବାର ଜାଣି ତାଙ୍କ କୋହର ପରିମାଣ ବଢ଼ିଗଲା । ତାରା ହଠାତ୍ କ'ଣ କରିବ ଭାବି ପାରିଲାନି । ମା'ଙ୍କୁ ଡାକିବ କି ନ ଡାକିବ ଏମିତି ହେଉ ହେଉ ମା'ଙ୍କୁ ହଲାଇ ଦେଇ ଡାକିଲା, ''ମା, ମା, ଆପଣ କ'ଣ କାନ୍ଦୁଛନ୍ତି ? କ'ଣ ଦେହମୁଣ୍ଡରେ କିଛି ଅସୁଖ ହୋଇଛି । ବାବୁଙ୍କୁ କଅଣ ଡାକି ପଠାଇବି ?''

''ନା, ନା, ତାରା ଥାଉ । ତୁ ଏତେ ବ୍ୟସ୍ତ ହ'ନା । ତୁ ଏଠୁ ଗଲୁ । ମୋତେ ଟିକିଏ କାନ୍ଦିବାକୁ ଦେ ।'' ସେ ଯିବ କ'ଣ, ଟିପଏ ଉପରେ ବସିପଡ଼ି ମା'ଙ୍କ ପିଠି ଆଉଁଶିବାକୁ ଲାଗିଲା । ମା'ଙ୍କୁ ଏଭଳି ଅବସ୍ଥାରେ ଛାଡ଼ିଯିବାକୁ ତା'ର ମନ ହେଉ ନ ଥାଏ ।

ତାରା କିଛି ସମୟ ଆଉଁଶିବା ପରେ ଗୀତାଦେବୀ ମୁହଁକୁ ତକିଆ ଉପରୁ ଟେକି ଅନାଇଲେ । ତାରାକୁ ଲକ୍ଷ୍ୟ କରି କାନ୍ଦ କାନ୍ଦ ସ୍ୱରରେ କହିଲେ, ''ମୁଁ ବଡ଼ ହତଭାଗିନୀ ତାରା, ମୁଁ ବଡ଼ ହତଭାଗିନୀ । ମୋ ଭଳି ହତଭାଗିନୀ ସାରା ଦୁନିଆରେ କେହି ନ ଥିବେ ।''

ତାରା ଅବାକ୍ ହୋଇ ମା'ଙ୍କ ମୁହଁକୁ ଅନାଇ ରହିଲା । କହିଲା, "ମା, ଆପଣ ଏ କି ଅଶୁଭ କଥା ମୁହଁରେ ଆଣୁଛନ୍ତି । ଆପଣ କାହିଁକି ହତଭାଗିନୀ ହେବେ ? ଆପଣଙ୍କ ଭଳି ସୌଭାଗ୍ୟବତୀ ନାରୀ ସାରା ଦୁନିଆରେ କେତେଜଣ ଅଛନ୍ତି କହିଲେ ?"

"ମୋ ଭାଗ୍ୟ ଖରାପ ତାରା, ମୋ ଭାଗ୍ୟ ଖରାପ । ଆମେ ସେଦିନ ବୋମ୍ବେ ଡାକ୍ତରଙ୍କ ପାଖକୁ ଯାହା ଯାଇ ନ ଥିଲୁ, ଡାକ୍ତର କ'ଣ କହିଲେ ଜାଣୁ ?"

ତାରା ହୁଣ୍ଡିଙ୍କ ଭଳି ମା'ଙ୍କ ପାଟିକୁ ବଲବଲ କରି ଅନାଇ ରହିଲା, ମା କ'ଣ କହିବେ ଶୁଣିବା ପାଇଁ ।

"ଡାକ୍ତର କହିଲେ, ମୋର ଛୁଆପିଲା ମୋଟେ ହୋଇପାରିବନି । ମୁଁ ମାତୃତ୍ୱର ଗୌରବ ପାଇବାରୁ ଚିରଦିନ ପାଇଁ ବଞ୍ଚିତା । ମୁଁ ମୋ ଜୀବନରେ କେବେ ମା ହୋଇ ପାରିବିନି ।"

"କାହିଁକି ମା, ଆପଣଙ୍କର କ'ଣ ହୋଇଛି କି ? ଆପଣ ମା ହୋଇ ପାରିବେନି କାହିଁକି ଯେ ?"

"ଡାକ୍ତରଙ୍କ ମତରେ ମୋ ପେଟରେ ପିଲା ରହି ପାରିବନି । ମୋ ପେଟରେ ପିଲା ରହିବା ଥଳିଟି ଅତି ଛୋଟ ହୋଇଥିବାରୁ ସେଥିରେ କୌଣସି ପିଲା ରହି ବଢ଼ି ପାରିବନି । ପିଲା ରହିଲେହେଁ ଅଳ୍ପ କିଛିଦିନ ପରେ ନ ବଢ଼ି ମନକୁମନ ବାହାରିଯିବ । ଫଳରେ ମୁଁ କେବେ ପିଲାର ମୁଖ ଦେଖି ପାରିବିନି ।"

"ସେଥିପାଇଁ କ'ଣ କିଛି ଉପାୟ ନାହିଁ ମା ? ଡାକ୍ତରମାନେ ତ କିଛି ବ୍ୟବସ୍ଥା ଥିବା କଥା କହିଥିବେ ?"

"ନା, କହି ନାହାନ୍ତି । ସେ କହନ୍ତି, ଏହାର କିଛି ଚିକିତ୍ସା ଆମ ଦେଶରେ ହୋଇ ପାରିବନି ।"

"ଅନ୍ୟ ଡାକ୍ତରଙ୍କୁ ଦେଖାଇଲେନି ମା । ସେମାନେ ହୁଏତ କିଛି ନିଦାନ ଦେଇପାରିଥାନ୍ତେ ।"

"ନା, ତାରା, ସମସ୍ତଙ୍କର ସେହି ଗୋଟିଏ ମତ । ଏଥିପାଇଁ ଆମ ଦେଶରେ କିଛି ବ୍ୟବସ୍ଥା ନାହିଁ । ସେମାନଙ୍କ ମତ, ଆମେ ଯଦି ଆମେରିକା ବା ଅନ୍ୟ କୌଣସି ପାଶ୍ଚାତ୍ୟଦେଶକୁ ଯାଉ, ତେବେ ସେଠାକାର ବିଶେଷଜ୍ଞମାନେ ପରୀକ୍ଷା କରି ପିଲା ହେବା ନ ହେବା କଥା ନିର୍ଦ୍ଧାର୍ଯ୍ୟ ଭାବରେ କହିପାରନ୍ତେ । ସେମାନେ ପରୀକ୍ଷା ନ କଲା ପର୍ଯ୍ୟନ୍ତ କିଛି କହି ହେବନି ।"

"ସେମାନେ ପରୀକ୍ଷା ନ କଲା ପର୍ଯ୍ୟନ୍ତ ଆପଣ ଏତେ ଅଧୈର୍ଯ୍ୟ ହୋଇ ପଡୁଛନ୍ତି କାହିଁକି ମା ? ସେ ଦେଶର ବଡ଼ ବଡ଼ ଡାକ୍ତରମାନେ କ'ଣ ଏଥିପାଇଁ କିଛି ବ୍ୟବସ୍ଥା ଜାଣି ନ ଥିବେ ? ନିଶ୍ଚୟ ଜାଣିଥିବେ ।"

"ଭାରତର ସବୁଠାରୁ ବଡ଼ ବଡ଼ ଡାକ୍ତରମାନେ ଯେତେବେଳେ ନିଜ ନିଜ ଅକ୍ଷମତା ଜଣାଇ ସାରିଲେଣି, ସେ ଦେଶକୁ ଗଲେ ଏହାର କ'ଣ କିଛି ବ୍ୟବସ୍ଥା ହୋଇପାରିବ, ମୋ ମନକୁ ମୋଟେ ପାଉନି ତାରା ।"

"ନା, ମା, ଆପଣ ଏତେ ହତାଶ ହୋଇ ପଡ଼ନ୍ତୁନି । ଏଥିପାଇଁ ନିଶ୍ଚୟ କିଛି ବ୍ୟବସ୍ଥା ଥିବ । ଭଗବାନ ଆପଣଙ୍କ ପ୍ରତି କେବେ ଏତେ ନିର୍ଦ୍ଦୟ ହେବେନି ବୋଲି ମୋର ବିଶ୍ୱାସ ।"

× × × × ×

ଯେଉଁଦିନ ମିଷ୍ଟର ଅଗ୍ରୱାଲ ଓ ମିସେସ୍ ଅଗ୍ରୱାଲ ବୋମ୍ବେ ଏୟାରପୋର୍ଟରୁ ଆମେରିକା ଅଭିମୁଖେ ରମାନା ହେଲେ, ସେଦିନ ବୋମ୍ବେ ଏୟାରପୋର୍ଟ ଲୋକାରଣ୍ୟ । ଅଗ୍ରୱାଲଙ୍କ ବ୍ୟବସାୟ ପ୍ରତିଷ୍ଠାନର ବଡ଼ ବଡ଼ ଏକ୍‌ଜିକ୍ୟୁଟିଭ୍, ସାଙ୍ଗସାଥି, ବନ୍ଧୁବାନ୍ଧବ, ଶିଳ୍ପପତିମାନେ ଦୌଡ଼ି ଆସିଥାନ୍ତି ଏହି ଶିଳ୍ପପତି ଦମ୍ପତିଙ୍କୁ ବିଦାୟ ଦେବା ପାଇଁ । ମିସେସ୍ ଅଗ୍ରୱାଲ ସଙ୍ଗରେ ତାରାକୁ ମଧ୍ୟ ନେଇଥାନ୍ତି । କାଳେ କେଉଁଠି କିଛି ଦରକାର ପଡ଼ିଲେ, ତାରା ନ ଥିଲେ ତାଙ୍କୁ ସାହାଯ୍ୟ କରିବ କିଏ ? ସେମାନେ ଯେତେବେଳେ ସେମାନଙ୍କ ଶିଳ୍ପନଗରୀ. ଶିବାଜୀନଗରରୁ ବାହାରିଲେ, ହଜାର ହଜାର ଶ୍ରମିକ ସେମାନଙ୍କୁ ଲୋତକପୂର୍ଣ୍ଣ ନୟନରେ ବିଦାୟ ଦେଇଥିଲେ । ସମସ୍ତଙ୍କର ଭଗବାନଙ୍କଠାରେ ମାଗୁଣି, ସେମାନଙ୍କ ମାଲିକମାଲିକାଣୀଙ୍କୁ ଭଗବାନ ସଦୟ ହୁଅନ୍ତୁ । ସେମାନଙ୍କ ସଂସାରକୁ ଯଦି ପିଲାଟିଏ ନ ଆସେ, ତେବେ ସେମାନଙ୍କ ସଂସାର କେତେ ଦୁଃଖମୟ ନ ହେବ ସତେ ? ସାରା ପୃଥିବୀରେ ସେମାନଙ୍କ ମାଲିକ-ମାଲିକାଣୀ ଭଳି କେଉଁଠି ନ ଥିବେ । ଶ୍ରମିକମାନଙ୍କୁ ଯେ ନିଜ ସହିତ ସମାନ କରି ଦେଖନ୍ତି, ସେମିତି ମାଲିକ କେଉଁଠି ମିଳିବେ ? ଶ୍ରମିକମାନଙ୍କ ନାନାଦି ଉପକାର ଯେଉଁମାନଙ୍କ ଚିନ୍ତା, ଭଗବାନ ସେମାନଙ୍କୁ ଏଭଳି ଦୁଃଖ ଦେଲେ ଭଗବାନଙ୍କ ପକ୍ଷରେ ଏହା ନିହାତି ଅନ୍ୟାୟ ହେବ । ଏହି ଦେଶରେ ଶହ ଶହ ଅତ୍ୟାଚାରୀ, ଅର୍ଥଲୋଲୁପୀ, କଳାବଜାରୀ ଶିଳ୍ପପତି ଅଛନ୍ତି । ସେମାନଙ୍କ ପ୍ରତି ଭଗବାନଙ୍କର କିଛି ଦଣ୍ଡବିଧାନ ନାହିଁ । ଅଥଚ ଯେଉଁମାନେ ଧର୍ମପରାୟଣ, ପର ପାଇଁ ଯେଉଁମାନେ କାନ୍ଦନ୍ତି, ସେମାନଙ୍କ ପ୍ରତି ଭଗବାନ ଏମିତି ନିର୍ଦ୍ଦୟ ? ଏଇଆ କ'ଣ ଭଗବାନଙ୍କ ରାଜ୍ୟରେ ବିଚାର ?

# ପାଞ୍ଚ

"ମୁଁ ଆପଣଙ୍କ ସ୍ତ୍ରୀଙ୍କୁ ଭଲ ଭାବରେ ପରୀକ୍ଷା କରି ସାରିଛି ମିଷ୍ଟର ଅଗ୍ରୱାଲ । ଭାରତୀୟ ଡାକ୍ତର ମିସେସ୍ ଜରିବାଲା ଯାହା ସନ୍ଦେହ କରିଛନ୍ତି, ତାହା ଯଥାର୍ଥ । ମୁଁ ତାଙ୍କ ସହିତ ପୂରାପୂରି ଏକମତ । ଆପଣଙ୍କ ସ୍ତ୍ରୀଙ୍କ ଗର୍ଭାଶୟ ଅସ୍ୱାଭାବିକ ଭାବରେ ଛୋଟ ହୋଇଥିବାରୁ ଏଥିରେ ପିଲା ରହି ବଢ଼ିବା ସମ୍ଭବପର ନୁହେଁ । ପ୍ରତିଥର ପିଲା ରହିବାକୁ ଚେଷ୍ଟା କରୁଛି, କିନ୍ତୁ କିଛିଦିନ ପରେ ନିଷିକ୍ତ ଡିମ୍ବାଣୁଟି ଅଳ୍ପ ବୃଦ୍ଧି ପାଇସାରିଲା ପରେ ଗର୍ଭାଶୟରେ ରହି ନ ପାରି ମନକୁମନ ବାହାରି ଯାଉଛି । ଏହାଫଳରେ ଗର୍ଭଧାରଣର ଅଳ୍ପ କେଇଦିନ ପରେ ଆପଣଙ୍କ ସ୍ତ୍ରୀଙ୍କର ମନକୁମନ ଗର୍ଭପାତ ହୋଇଯାଉଛି । ତେଣୁ ଆପଣଙ୍କ ସ୍ତ୍ରୀ ଅନ୍ତଃସତ୍ତ୍ୱା ହୋଇପାରୁ ନାହାନ୍ତି ।"

"ତାହାହେଲେ ଆପଣ କ'ଣ ମତ ଦେଉଛନ୍ତି ଡକ୍ଟର ମେକ୍‌ଡୋନାଲ୍ଡ ? ପିଲାହେବାର କ'ଣ କିଛି ସମ୍ଭାବନା ଆପଣ ଦେଖିପାରୁ ନାହାନ୍ତି ?"

"ନା, ସାଧାରଣଭାବେ ହେବା ସମ୍ଭବପର ନୁହେଁ ।"

"ତେବେ ?"

"ଆପଣଙ୍କର ସ୍ତ୍ରୀଙ୍କ ଗର୍ଭାଶୟ ଗର୍ଭଧାରଣ ପାଇଁ ଉପଯୋଗୀ ନୁହେଁ । ତେଣୁ ଆପଣ ସନ୍ତାନ ପାଇବା ପାଇଁ ହେଲେ ଦୁଇଗୋଟି ଉପାୟ ଅଛି । ଗୋଟିଏ ହେଉଛି ଇଉଟେରସ ଟ୍ରାନ୍‌ସପ୍ଲାଣ୍ଟେସନ୍ ପଦ୍ଧତି ଓ ଅନ୍ୟଟି ହେଉଛି ସରୋଗେଟ୍ ମା ପଦ୍ଧତି ।"

ମିଷ୍ଟର ଅଗ୍ରୱାଲ ଡାକ୍ତରଙ୍କ କଥାରୁ କିଛି ବୁଝି ପାରିଲେନି । ସେ ମେକ୍‌ଡୋନାଲଡଙ୍କ ମୁହଁକୁ ବଲବଲ କରି ଅନାଇ ରହିଲେ । କହିଲେ, "ଆପଣ ଯେ କ'ଣ କହୁଛନ୍ତି, ମୁଁ ବୁଝିପାରୁନି ଡାକ୍ତର ।"

ମେକ୍‌ଡୋନାଲଡ ଈଷତ୍ ହସି କହିଲେ, "ପ୍ରଥମ ଉପାୟଟି ହେଉଛି ଉଇଟେରସ ଟ୍ରାନ୍‌ସପ୍ଲାଣ୍ଟେସନ୍ । ଅର୍ଥାତ୍ ଜରାୟୁ ପରିରୋପଣ । ତା ମାନେ ଆପଣଙ୍କ ସ୍ତ୍ରୀଙ୍କର ଜରାୟୁ ତ ପିଲାଜନ୍ମ ପାଇଁ ଉପଯୋଗୀ ନୁହେଁ । ଆମେ ତାକୁ କାଟି ବାହାର କରିଦେବା ଉଚିତ । ତା ସ୍ଥାନରେ କୌଣସି ସୁସ୍ଥ ସ୍ତ୍ରୀ ଲୋକ ଶରୀରର ଜରାୟୁ କାଟି ବାହାର କରି ଆଣି ଆପଣଙ୍କ ସ୍ତ୍ରୀଙ୍କଠାରେ ପରିରୋପଣ କରିବା । ଆପଣ ତ ହୃଦୟ ପରିରୋପଣ, କିଡନି ପରିରୋପଣ କଥା ଜାଣିଥିବେ । ଏ ଠିକ୍ ସେମିତି ଏକ ପରିରୋପଣ ।"

''ଜରାୟୁ ପରିରୋପଣ ? କିନ୍ତୁ ଜରାୟୁ ମିଳିବ କେଉଁଠୁ ?''

''ଆପଣଙ୍କୁ କିଣିବାକୁ ପଡ଼ିବ ।''

''ଜରାୟୁ କ'ଣ କେଉଁଠି ବିକ୍ରୟ ହେଉଛି ? ଟଙ୍କା ଦେଲେ ଏହା କ'ଣ ମିଳିପାରିବ ?''

''ହଁ, ନ ମିଳିବ କାହିଁକି ? ବହୁ ସ୍ତ୍ରୀ ଲୋକ ସେମାନଙ୍କ ଆବଶ୍ୟକୀୟ ପିଲାଜନ୍ମ ପରେ ଜରାୟୁକୁ ଆଉ ନିଜ ଦେହରେ ରଖିବାକୁ ଚାହୁଁ ନାହାନ୍ତି । ଜରାୟୁର ପ୍ରଧାନ କାମ ହେଲା ପିଲା ଜନ୍ମ ପାଇଁ । ପିଲାଜନ୍ମ କାମ ସରିଗଲେ, ଜରାୟୁର ଆବଶ୍ୟକତା କିଛି ନ ଥାଏ, ଏହାକୁ ରଖିଲେ ନାନା ପ୍ରକାର ଅସୁବିଧା । କେତେ ପ୍ରକାର ରୋଗ ହେବାର ସମ୍ଭାବନା ହିଁ ରହିବ । କାଟି ବାହାର କରିଦେଲେ ଗଲା । ଜରାୟୁ ଥିଲେ ଋତୁସ୍ରାବ ଆଦି କେତେ ଝନ୍‌ଝଟ ରହିବ । ସେତକ କାଟି ବାହାର କରିଦେଲେ ଆଉ ସେ ଝନଝଟ ନାହିଁ । ତେଣୁ ସେପରି ଅବସ୍ଥାରେ ଯଦି କେହି କ୍ରୟ କରିବାକୁ ଚାହେଁ, ତେବେ ସେମାନେ ସେମାନଙ୍କ ସୁସ୍ଥ ଜରାୟୁକୁ ବିକ୍ରୀ କରିବେ ନାହିଁ କାହିଁକି ?''

''ସେହି ଜରାୟୁକୁ ଆଣି କ'ଣ ମୋ ସ୍ତ୍ରୀଙ୍କଠାରେ ପରିରୋପଣ କରି ହେବ ?''

''ହଁ, କରି ହେବ । ନ ହେବ କାହିଁକି ? ତେବେ ଗୋଟିଏ ଅସୁବିଧା ଅଛି ।''

''ଫେର୍ କି ଅସୁବିଧା ?''

''ଜରାୟୁ ପରିରୋପଣ ପରେ ମଣିଷ ଶରୀର ସବୁ ପ୍ରକାର ଜରାୟୁକୁ ଗ୍ରହଣ କରିପାରେନି । ଏହା ବେଳେବେଳେ ଗ୍ରହଣ କରି ନ ପାରି ପରିତ୍ୟାଗ କରେ । ତେଣୁ ସବୁ ଜରାୟୁ ପରିରୋପଣ ଯେ କୃତକାର୍ଯ୍ୟ ହେବ, ତା ନୁହେଁ । ଜରାୟୁ ଯଦି ଯାଆଁଳା ଭଉଣୀର ବା ନିକଟ ସମ୍ପର୍କୀୟା ଭଉଣୀର ବା ନିଜ ପରିବାର ଭିତରେ କାହାରି ହୋଇଥାଏ, ତେବେ ଶରୀର ଗ୍ରହଣ କରିନେବା ସମ୍ଭାବନା ଢେର୍ ବଢ଼ିଯାଏ । ଯାଆଁଳା ଭଉଣୀ ହୋଇଥିଲେ ସବୁଠାରୁ ଉତ୍ତମ । ଶରୀର ପରିତ୍ୟାଗ କରିବା ସମ୍ଭାବନା ମୋଟେ ନାହିଁ । କିନ୍ତୁ ପରିବାର ବାହାରୁ କ୍ରୟ କଲେ, ପରିରୋପଣର ସଫଳତା କେତେ କହି ହେବନି ।''

''ହଁ, ଆପଣଙ୍କର ସ୍ତ୍ରୀଙ୍କର କେହି ଯାଆଁଳା ଭଉଣୀ ଅଛନ୍ତି ?''

''ନା, ତାଙ୍କର ଯାଆଁଳା ଭଉଣୀ ନାହାନ୍ତି । ସେ ଯାଆଁଳା ଭାବରେ ଜନ୍ମ ହୋଇ ନାହାନ୍ତି ।''

''ତେବେ ଅନ୍ୟ ଭଉଣୀ ?''

"ନା, ସେ ତାଙ୍କ ବାପାଙ୍କର ଗୋଟିଏ ବୋଲି ଝିଅ ! ତାଙ୍କର ଆଉ କେହି ନାହାନ୍ତି ।"

"ତେବେ ତ ହେଲା ଏକ ସମସ୍ୟା । ହଁ, ପରିବାର ବାହାରୁ ଅନ୍ୟ ସ୍ତ୍ରୀ ଲୋକଠାରୁ ଜରାୟୁ ଆଣି ପରିରୋପଣ କରିବା ପାଇଁ ଆଉ ଏକ ବାଟ ଅଛି । କିନ୍ତୁ ତାହା ବି କମ୍ ବିପଦଜନକ ନୁହେଁ ।"

"ଆଁ", ମିଷ୍ଟର ଅଗ୍ରୱାଲ ଶୁଣିବା ପାଇଁ ଅନାଇ ରହିଲେ ।

"ଆମେ କୃତ୍ରିମ ଉପାୟରେ ଆପଣଙ୍କ ସ୍ତ୍ରୀଙ୍କର ଶରୀରର ବହିଷ୍କରଣ ଶକ୍ତିକୁ ଔଷଧ ଦ୍ୱାରା ଦବାଇ ଦେଇ ଜରାୟୁ ପରିରୋପଣ କଲେ ଏହା କୃତକାର୍ଯ୍ୟ ହେବ । କିନ୍ତୁ ଏହାଦ୍ୱାରା ଶରୀରର ରୋଗ ପ୍ରତିରୋଧୀ କ୍ଷମତା ଢେର୍ କମିଯିବ । ଏତିକିବେଳେ ଯଦି କୌଣସି ରୋଗ ଆକ୍ରମଣ କଲା, ତେବେ ସେ ରୋଗ ଆକ୍ରମଣରୁ ରୋଗୀକୁ ସହଜରେ ରକ୍ଷା କରି ହେବନି । ଆମ ଶରୀରର ରୋଗ ପ୍ରତିରୋଧୀ କ୍ଷମତା ହିଁ ଆମକୁ ବଞ୍ଚାଇ ରଖିଛି । ଯେତେବେଳେ ଏହି କ୍ଷମତା ଲୋପ ପାଇଯିବ, ଆମକୁ କେବଳ ଔଷଧ ବଞ୍ଚାଇ ପାରିବନି । ଆମେ ମରିଯିବୁ । ତେଣୁ ସେଭଳି ଏକ ବଡ଼ ବିପଦ ଥିବାରୁ ମୁଁ ଜରାୟୁ ପରିରୋପଣ ପାଇଁ ଆପଣଙ୍କୁ ଉପଦେଶ ଦେବିନି ।"

"ତେବେ ?"

"ଆପଣଙ୍କ ସ୍ତ୍ରୀଙ୍କ ପାଇଁ ଦ୍ୱିତୀୟଟି ଅର୍ଥାତ୍ ସରୋଗେଟ୍ ମା ପଦ୍ଧତି ହିଁ ଠିକ୍ ହେବ । ଏଥିରେ କିଛି ବିପଦ ଆପଦର ସମ୍ଭାବନା ନାହିଁ । ଆପଣ ବିନା କଷ୍ଟରେ ନିଜ ସନ୍ତାନକୁ ପାଇ ପାରିବେ । ଟେଷ୍ଟ୍ ଟିଉବ୍ ବେବି ପଦ୍ଧତିକୁ ସାମାନ୍ୟ ପରିବର୍ତ୍ତନ କରାଯାଇ ଏହି ପଦ୍ଧତିଟି ସୃଷ୍ଟି କରାଯାଇଛି । ଆପଣ ତ ଜାଣିଛନ୍ତି ଟେଷ୍ଟଟିଉବ୍ ବେବି ପଦ୍ଧତି । ପିତାର ଶୁକ୍ରାଣୁ ଓ ମା'ର ଡିମ୍ବାଣୁକୁ ନେଇ ଜରାୟୁ ବାହାରେ ନିଷେକ କରାଇ ସେହି ନିଷିକ୍ତ ଡିମ୍ବାଣୁକୁ ମା'ର ଜରାୟୁରେ ସ୍ଥାପନା କଲେ ଅନ୍ତଃସତ୍ତ୍ୱା ହୋଇପାରୁ ନ ଥିବା ସ୍ତ୍ରୀ ଅନ୍ତଃସତ୍ତ୍ୱା ହୁଏ । ଦଶମାସର ଗର୍ଭଧାରଣ ପରେ ଶିଶୁଟି ଭୂମିଷ୍ଠ ହେଲେ ଆମେ ତାହାକୁ 'ଟେଷ୍ଟଟିଉବ୍ ବେବି' କହୁ । କାରଣ ଏହାର ନିଷେକ ସ୍ତ୍ରୀର ଜରାୟୁରେ ନ ହୋଇ ଜରାୟୁ ବାହାରେ ହୋଇଥାଏ ବୋଲି । ଆପଣଙ୍କ ସ୍ତ୍ରୀଙ୍କଠାରେ ଏହି ପଦ୍ଧତିଟି ସମ୍ଭବପର ନୁହେଁ, କାରଣ ତାଙ୍କ ଜରାୟୁଟି କ୍ଷୁଦ୍ର, ସେଠାରେ ସାଧାରଣ ସନ୍ତାନ ବୃଦ୍ଧି ପାଇବା ସମ୍ଭବପର ନୁହେଁ । ସେଥିପାଇଁ 'ସରୋଗେଟ୍ ମା' ପଦ୍ଧତି ଏଠାରେ ଏକମାତ୍ର ଗ୍ରହଣୀୟ । ଏଥିରେ ଉପରୋକ୍ତ ପଦ୍ଧତି ଭଳି ନିଷିକ୍ତ ଡିମ୍ବାଣୁଟି

ମା'ର ଜରାୟୁରେ ସ୍ଥାପନା କରା ନ ଯାଇ ଅନ୍ୟ ଜଣେ ସୁସ୍ଥ ସ୍ତ୍ରୀଲୋକର ଜରାୟୁରେ ସ୍ଥାପନା କରାଯାଏ । ଫଳରେ ସନ୍ତାନର ପ୍ରକୃତ ମା ଏଠାରେ ଅନ୍ତଃସତ୍ତ୍ୱା ନ ହୋଇ ଅନ୍ୟ ଜଣେ ସ୍ତ୍ରୀଲୋକ ଅନ୍ତଃସତ୍ତ୍ୱା ହୁଏ ଓ ସେ ଦଶମାସର ଗର୍ଭଧାରଣ କରି ଶିଶୁଟିକୁ ଜନ୍ମ ଦିଏ । ଯାହାଙ୍କ ଶୁକ୍ରାଣୁ ଓ ଡିମ୍ବାଣୁରୁ ଏହି ପିଲାଟି ଜନ୍ମ ପାଇଥାଏ, ଆଇନାନୁସାରେ ପିଲାଟି ସେହିମାନଙ୍କର ହୁଏ । ଗର୍ଭଧାରଣ କରିଥିବା 'ସରୋଗେଟ୍ ମା'ର ହୁଏନି । ଗର୍ଭଧାରଣ କରିଥିବା 'ସରୋଗେଟ୍ ମା' କେବଳ ପୂର୍ବଚୁକ୍ତି ଅନୁଯାୟୀ ପାରିଶ୍ରମିକ ପାଇବାକୁ ହକ୍‌ଦାର ହୁଏ । ଏବେ ଆମ ଦେଶରେ କେତେଗୁଡ଼ିଏ ମୋକଦ୍ଦମା ହୋଇଯାଇଛି, ଯାହାର ରାୟ ଏହାକୁ ସ୍ପଷ୍ଟ କରି ଦେଇଛି ।''

''ଆଁ, ଏଥିରେ ପୁଣି ମାଲିମୋକଦ୍ଦମା ?''

''ହଁ, ନ ହେବ କେମିତି ? ଯେଉଁଠି ଅର୍ଥ ମିଳିବାର ସମ୍ଭାବନା ଥାଏ, ସେଠି ଏହିଭଳି ମୋକଦ୍ଦମା ମନକୁମନ ଜୁଟିଯାଏ । ଶୁଣିବେ ସେହି ମୋକଦ୍ଦମା କଥା ?'' ପଚାରିଲେ ଡାକ୍ତର ମେକ୍‌ଡୋନାଲଡ ।

ମିଷ୍ଟର ଅଗ୍ରୱାଲ ଉତ୍ସୁକ ହୋଇ ଅନାଇ ରହିଲେ ।

ଡାକ୍ତର ମେକ୍‌ଡେନାଲଡ ଆରମ୍ଭ କଲେ, ''ବେଶିଦିନ ତଳର କଥା ନୁହେଁ, ଏଇ ଅଳ୍ପ କେଇବର୍ଷ ହେବ । ଆମ ଦେଶର ଟେକ୍‌ସାସ୍ ରାଜ୍ୟର ଜନୈକ ଧନୀ ଦମ୍ପତିଙ୍କର ସ୍ୱାଭାବିକ ରୀତିରେ ପିଲା ହେବାର ସମ୍ଭାବନା ନ ଥିଲା । ଡାକ୍ତର ପରୀକ୍ଷା କରି 'ସରୋଗେଟ୍ ମା' ପଦ୍ଧତି ଦ୍ୱାରା ନିଜ ସନ୍ତାନ ସୃଷ୍ଟି କରିବା ପାଇଁ ଧନୀ ଦମ୍ପତିକୁ ପରାମର୍ଶ ଦେଲେ । ଉପରୋକ୍ତ ପଦ୍ଧତି ଅନୁସରଣ କରି ସେହି ଧନୀ ଦମ୍ପତି ଏକ 'ସରୋଗେଟ୍ ମା' ପେଟରେ ନିଜ ସନ୍ତାନକୁ ବଢ଼ାଇଲେ । ଦୈବାତ୍ କ୍ରମେ ଏକ କାର୍ ଦୁର୍ଘଟଣାରେ ସେହି ଧନୀ ଦମ୍ପତିଙ୍କର ମୃତ୍ୟୁ ହେଲା । ତାଙ୍କ ବିରାଟ ସମ୍ପତ୍ତିର ମାଲିକ କିଏ ହେବ ଖୋଜା ପଡ଼ିଲା । ସେହି ଦମ୍ପତିଙ୍କର ଭବିଷ୍ୟତ୍ ଦାୟାଦକୁ ପେଟରେ ବହନ କରୁଥିବାରୁ 'ସରୋଗେଟ୍ ମା' କୋର୍ଟରେ ଦରଖାସ୍ତ କଲେ ଯେ ସେ ସମସ୍ତ ସମ୍ପତ୍ତି ପାଇବା ଉଚିତ୍ । କାରଣ ସେ ପେଟରେ ବହନ କରୁଥିବା ସନ୍ତାନ ସେ ସମ୍ପତ୍ତିର ମାଲିକ ଓ ସେହି ସନ୍ତାନର ଗର୍ଭଧାରିଣୀ ମା ହୋଇଥିବାରୁ ସେ ସମସ୍ତ ସମ୍ପତ୍ତିର ହକ୍‌ଦାର । କିନ୍ତୁ ଦମ୍ପତ୍ତିଙ୍କର ଆତ୍ମୀୟମାନେ ଏହାକୁ ଅସ୍ୱୀକାର କଲେ । ଯେହେତୁ ସେ ନିଃସନ୍ତାନ, ସମସ୍ତ ସମ୍ପତ୍ତି ଆଇନ ଅନୁସାରେ ସେମାନଙ୍କୁ ମିଳିବା ଉଚିତ୍ । କୋର୍ଟ କାହାରିକୁ ସମ୍ପତ୍ତି ନ ଦେଇ ସନ୍ତାନ ଜନ୍ମ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ ଓ 'ସରୋଗେଟ୍ ମା'କୁ କୋର୍ଟର ତତ୍ତ୍ୱାବଧାନରେ

ରଖାଗଲା । ସନ୍ତାନ ଜନ୍ମ ପରେ 'ସରୋଗେଟ୍ ମା' ଯାହା ପ୍ରାପ୍ୟ ପାଇବା କଥା, ତାହା ସେହି ସମ୍ପତ୍ତିରୁ ଦେଇ ବିଦାୟ କରି ସମସ୍ତ ସମ୍ପତ୍ତି ସେହି ଶିଶୁପୁତ୍ରଟି ନାଁରେ କରି ଦିଆଗଲା । ଯେଉଁମାନେ ଶିଶୁପୁତ୍ରଟିର ପାଳିବା ଦାୟିତ୍ୱରେ ରହିଲେ, ସେମାନଙ୍କ ପାଇଁ ସେହି ସମ୍ପତ୍ତିରୁ ମାସିକ ବେତନ ଖଞ୍ଜି ଦିଆଗଲା । ପିଲାଟି ବଡ଼ ହେଲା ପର୍ଯ୍ୟନ୍ତ କୋର୍ଟ ହେପାଜତରେ ରହିଲା । ସମ୍ପତ୍ତି ଉପରେ 'ସରୋଗେଟ୍ ମା'ର କିଛି ଅଧିକାର ରହିଲାନି । ସେ କେବଳ ଚୁକ୍ତି ଅନୁଯାୟୀ ନିଜ ପ୍ରାପ୍ୟ ପାଇବା ପାଇଁ ହକ୍‌ଦାର ହେଲେ ।''

''ବଡ଼ ବିଚିତ୍ର ଏହି ଘଟଣାଟି । 'ସରୋଗେଟ୍ ମା' ପିଲାଟିକୁ ଏତେ କଷ୍ଟ କରି ନିଜ ମା ଭଳି ପେଟରେ ବଢ଼ାଉଛି, ଅଥଚ ପିଲାଟି ଉପରେ ତା'ର କିଛି ଅଧିକାର ନାହିଁ ।''

''ହଁ, ମିଷ୍ଟର ଅଗ୍ରୱାଲ । 'ସରୋଗେଟ୍ ମା' ଚୁକ୍ତି ଅନୁଯାୟୀ ପାରିଶ୍ରମିକ ଛଡ଼ା ଅନ୍ୟ କିଛିର ହକ୍‌ଦାର ନୁହେଁ । ଏବେ ଅଷ୍ଟ୍ରେଲିଆରେ ଆଉ ଗୋଟିଏ ଘଟଣା ଘଟି ଯାଇଛି, ଯେଉଁଥିରେ ଠିକ୍ ଏମିତି ହୋଇଛି । ଜନ୍ମିତ ଶିଶୁ ଉପରେ 'ସରୋଗେଟ୍ ମା'ର କିଛି ଅଧିକାର ସାବ୍ୟସ୍ତ ହୋଇପାରିନି ।'' ଶୁଣିବେ ସେ ଘଟଣାଟି କଥା ।

ଶୁଣିବା ପାଇଁ ମିଷ୍ଟର ଅଗ୍ରୱାଲ ଅନେଇ ରହିଲେ ।

''ଅଷ୍ଟ୍ରେଲିଆରେ ଜଣେ ଧନୀ ଶିଳ୍ପପତିଙ୍କର ସ୍ୱାଭାବିକ ରୀତିରେ ପିଲା ହେବା ସମ୍ଭାବନା ନ ଥିଲା । ଡାକ୍ତର ସେମାନଙ୍କୁ 'ସରୋଗେଟ୍ ମା'ର ସାହାଯ୍ୟ ନେବା ପାଇଁ ଉପଦେଶ ଦେଲେ । ଏହି ସନ୍ତାନ ସୃଷ୍ଟି ପାଇଁ ଯେତେବେଳେ ଡାକ୍ତର ତାଙ୍କ ସ୍ତ୍ରୀଙ୍କ ଗର୍ଭକୋଷରୁ ପରିପକ୍ୱ ଡିମ୍ବାଣୁ ଅସ୍ତ୍ରୋପଚାର ଦ୍ୱାରା ବାହାର କଲେ ଗୋଟିଏ ପରିବର୍ତ୍ତରେ ଦୁଇଟି ପରିପକ୍ୱ ଡିମ୍ବାଣୁ ବାହାରି ଆସିଲା । ଶିଳ୍ପପତି ଏହି ଦୁଇଟିଯାକକୁ ସମ୍ୟକଭାବରେ ନିଷିକ୍ତ ହେବାପାଇଁ ଡାକ୍ତରଙ୍କୁ ଅନୁରୋଧ କଲେ, ଭୟ ଥିଲା ଗୋଟିଏ ଯଦି ଅକୃତକାର୍ଯ୍ୟ ହୁଏ, ତେବେ ଦ୍ୱିତୀୟଟି ସାହାଯ୍ୟ କରିବ । ଦୁଇଟିଯାକ ଠିକ୍ ଭାବରେ ନିଷିକ୍ତ ହେବା ପରେ ଗୋଟିକୁ 'ସରୋଗେଟ୍ ମା'ର ଜରାୟୁରେ ସ୍ଥାପନା କରି ଅନ୍ୟଟିକୁ ତରଳ ଯବକ୍ଷାରଜାନରେ ଥୋଇ ଡିମ୍ବାଣୁ ବେଙ୍କ୍‌ରେ ସାଇତି ରଖିଲେ । ଆଶଙ୍କା ଥିଲା ପ୍ରଥମ ନିଷିକ୍ତ ଡିମ୍ବାଣୁଟି ଦୈବାତ୍‌କ୍ରମେ ଯଦି ଗର୍ଭପାତ ଦ୍ୱାରା ନଷ୍ଟ ହୋଇଯାଏ, ତେବେ ଦ୍ୱିତୀୟଟି-ସାହାଯ୍ୟକାରୀ ହେବ । ସୌଭାଗ୍ୟବଶତଃ ପ୍ରଥମ ନିଷିକ୍ତ ଡିମ୍ବାଣୁଟି 'ସରୋଗେଟ୍ ମା' ପେଟରେ ଠିକ୍ ଭାବରେ ବଢ଼ି ଏକ ସୁସ୍ଥ ଶିଶୁରେ ପରିଣତ ହେଲା । ପ୍ରସବ ପରେ ଶିଶୁଟିକୁ ଶିଳ୍ପପତି ଦମ୍ପତିକୁ ଦେଇ 'ସରୋଗେଟ୍ ମା' ତା ପ୍ରାପ୍ୟ ନେଇ ଚାଲିଗଲା ।

ସେହି ପିଲାଟି ଶିଳ୍ପପତିଙ୍କ ପରିବାରରେ ଏକ ଅମୂଲ୍ୟନିଧି ଭଳି ଲାଳିତପାଳିତ ହୋଇ ଅତି ଯତ୍ନର ସହିତ ବଢ଼ିବାକୁ ଲାଗିଲା ।

ପିଲାଟି ବଡ଼ ହେବାପରେ ଦିନେ ତାର ମା ବାପା ପିଲାଟି ସହିତ ଏକ କାର୍‌ରେ ବନ୍ଧୁ ଘରକୁ ଯାଉଥିଲେ । ବାଟରେ ହଠାତ୍ କାର୍‌ଟି ଏକ ଦୁର୍ଘଟଣାର ସମ୍ମୁଖୀନ ହେଲା । ଫଳରେ ଘଟଣାସ୍ଥଳରେ ବାପ, ମା, ପୁଅ ତିନିହେଁ ମୃତ୍ୟୁମୁଖରେ ପଡ଼ିଲେ ।

ତାଙ୍କ ବିରାଟ ସମ୍ପତ୍ତିର କିଏ ମାଲିକ ହେବ ଖୋଜା ପଡ଼ିଲା । ଆତ୍ମୀୟମାନେ ଦାବୀ କଲେ, ଯେହେତୁ ସେ ନିଃସନ୍ତାନ, ଆଇନାନୁସାରେ ତାଙ୍କର ସମସ୍ତ ସମ୍ପତ୍ତି ସେମାନଙ୍କୁ ମିଳୁ । କୋର୍ଟ ମଧ୍ୟ ସେଥିରେ ରାଜି ହୋଇ ଯାଇଥିଲା । ହଠାତ୍ ଏହି ସମୟରେ ସେହି ଧନୀଲୋକର ପିଲାଜନ୍ମ ପାଇଁ ଯେଉଁ ଡାକ୍ତର ଚିକିତ୍ସା କରିଥିଲେ, ତାଙ୍କ କାନରେ ଏହି ମୋକଦ୍ଦମା କଥା ପଡ଼ିଲା । ସେ ତ ଜାଣନ୍ତି, ତାଙ୍କର ଆଉ ଗୋଟିଏ ନିଷିକ୍ତ ଡିମ୍ବାଣୁ ଡିମ୍ବାଣୁ ବେଙ୍କ୍‌ରେ ଗଚ୍ଛିତ ଅଛି । ସେ ଏହି କଥାକୁ ବର୍ଣ୍ଣନା କରି କୋର୍ଟକୁ ଏକ ଦରଖାସ୍ତ କଲେ । କୋର୍ଟ ଡାକ୍ତରଙ୍କ ବିବରଣୀକୁ ପରୀକ୍ଷା କରି ଏହାର ସତ୍ୟାସତ୍ୟ ନିର୍ଣ୍ଣୟ କରି ଫଇସଲା ସ୍ଥଗିତ ରଖିବା ପାଇଁ ଆଦେଶ ଦେଲେ । ଆତ୍ମୀୟମାନେ ଉପରକୋର୍ଟରେ ଅପିଲ କଲେ । ଏହିଭଳି ତଳ ଉପର କୋର୍ଟ ହୋଇ ବହୁ ହାର୍‌ଜିତ୍ ଭିତରେ ଅଷ୍ଟ୍ରେଲିଆର ସୁପ୍ରିମକୋର୍ଟରେ ଏହି ମୋକଦ୍ଦମା ପହଞ୍ଚିଲା ।

ସୁପ୍ରିମକୋର୍ଟ ଅର୍ଡର ଦେଲା, ସେହି ଧନୀ ଦମ୍ପତ୍ତିଙ୍କର ସମସ୍ତ ସମ୍ପତ୍ତିର ମାଲିକ ହେଉଛି ସେହି ନିଷିକ୍ତ ଡିମ୍ବାଣୁଟି । ତେଣୁ ସୁପ୍ରିମକୋର୍ଟର ତଦବିର ଓ ହେପାଜତରେ ସେହି ନିଷିକ୍ତ ଡିମ୍ବାଣୁଟି ଏକ 'ସରୋଗେଟ୍ ମା' ଗର୍ଭାଶୟରେ ବଢ଼ିବାକୁ ଦିଆଗଲା । ଯେଉଁଦିନ ସେହି ପିଲାଟି ଜନ୍ମ ହେଲା, 'ସରୋଗେଟ୍ ମା'କୁ ତା'ର ପାରିଶ୍ରମିକ ଦେଇ ବିଦା କରି କୋଟି କୋଟି ଟଙ୍କାର ସେହି ସମ୍ପତ୍ତି ଶିଶୁଟି ନାଁରେ କରି ଦିଆଗଲା । ଯେଉଁମାନେ ସେହି ଶିଶୁଟିର ପାଳିବା ଦାୟିତ୍ୱରେ ରହିଲେ, ସେମାନଙ୍କ ପାଇଁ ମାସିକ ବେତନ ଖଞ୍ଜି ଦେଇ ପିଲାଟି ବଡ଼ ହେବା ପର୍ଯ୍ୟନ୍ତ ସୁପ୍ରିମକୋର୍ଟର ତତ୍ତ୍ୱାବଧାନରେ ରହିଲା ।''

''ଆପଣଙ୍କ କଥା ମୋତେ କୁହୁକ ଭଳି ବୋଧ ହେଉଛି ଡାକ୍ତର । ସତରେ କ'ଣ ଆମେ ଏହି ପଦ୍ଧତିରେ ଆମ ସନ୍ତାନର ବାପ ମା ହୋଇପାରିବୁ ?''

ହସିଲେ ମେକ୍‌ଡୋନାଲ୍‌ଡ । ''ଏଥିରେ ଆଶଙ୍କା କରିବାର କିଛି ନାହିଁ । ଆମେରିକାରେ ଏହି ପଦ୍ଧତିର ବ୍ୟବହାର ଏତେ ବ୍ୟାପକ ହୋଇଗଲାଣି ଯେ ଆଜିକାଲି ଧନୀଘରର ସ୍ତ୍ରୀଲୋକମାନେ ସ୍ୱାଭାବିକ ରୀତିରେ ପିଲାଟିଏ ପାଇବା

ପାଇଁ ନିଜେ ଅନ୍ତଃସତ୍ତ୍ୱା ହେବାକୁ ଚାହୁଁ ନାହାନ୍ତି । ଦଶମାସର ଗର୍ଭଧାରଣାଂର ଯେଉଁ କଷ୍ଟ, ଘର ଭିତରେ ଆବଦ୍ଧ ହୋଇ ରହିବାରେ ଯେଉଁ ଅସୁବିଧା, ଦଶମାସ ପରେ ଶିଶୁଟିକୁ ଜନ୍ମ ଦେଲାବେଳେ ପ୍ରସବବେଦନାର ସେହି ଯେଉଁ ମରଣାନ୍ତକ କଷ୍ଟ, ତାକୁ ସହ୍ୟ କରିବା ପାଇଁ ମାର୍କିନ୍ ଲଳନାମାନେ ଆଉ ଆଜିକାଲି ସେତେ ଆଗ୍ରହୀ ହେଉ ନାହାନ୍ତି । ସେମାନେ ଚାହାନ୍ତି, ସେମାନେ ନିଜ ପିଲାର ମା ହେବେ ନିଶ୍ଚୟ, କିନ୍ତୁ ଶିଶୁଟି ପାଇଁ ଦଶମାସର ଗର୍ଭଧାରଣ କଷ୍ଟ ସହ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କର ଯୁକ୍ତି, ପିଲାଟି ପାଖରେ ମା ଯେତିକି, ବାପ ସେତିକି ପ୍ରିୟ । ପିଲାଟି ବଡ଼ ହେଲେ, ମା'କୁ ଯେଉଁ ଦୃଷ୍ଟିରେ ଦେଖେ, ବାପକୁ ଠିକ୍ ସେହି ଦୃଷ୍ଟିରେ ଦେଖେ । ପିଲାଟି ପାଖରେ ମା, ବାପ ଯଦି ସମାନ, ତେବେ ପିଲାଟିକୁ ଜନ୍ମ ଦେବା ପାଇଁ ବାପର କିଛି କଷ୍ଟ ନ ଥିଲାବେଳେ ମା ଏତେ କଷ୍ଟ ଭୋଗ କରିବ କାହିଁକି ? ସେମାନଙ୍କ ଯୁକ୍ତି ପିଲାଟିଏ ପାଇଁ ବାପର ଯେମିତି କିଛି ଗର୍ଭଧାରଣ କଷ୍ଟ ନାହିଁ, ମା'ର ସେମିତି କଷ୍ଟ ନ ରହିବା ଉଚିତ । ସେମାନଙ୍କୁ ଗର୍ଭଧାରଣ କଷ୍ଟରୁ ତ୍ରାହି ମିଳିବା ଦରକାର ।''

ବଡ଼ ଅଦ୍ଭୁତଯୁକ୍ତି ଆପଣଙ୍କ ଦେଶର ଆଧୁନିକା ନାରୀମାନଙ୍କର ?'' ମିଷ୍ଟର ଅଗ୍ରୱାଲ କହିଲେ ।

ହସିଲେ ଡାକ୍ତର ମେକ୍‌ଡୋନାଲ୍‌ଡ । ''ନା, ନା, ଆମେରିକାର ସବୁ ନାରୀ ଏହା ଚାହାନ୍ତିନି । କେବଳ କେତେକ ଧନୀଘରର ଅତ୍ୟାଧୁନିକାମାନେ ଏହା ଚାହାନ୍ତି । 'ସରୋଗେଟ୍ ମା' ପଦ୍ଧତି ଅତ୍ୟନ୍ତ ଖର୍ଚ୍ଚାନ୍ତଜନକ ହୋଇଥିବାରୁ ଆମେରିକାର ସାଧାରଣ ସ୍ତ୍ରୀ ଲୋକେ ଏହାକୁ ମୋଟେ ପସନ୍ଦ କରନ୍ତିନି ।''

''ଏହା କ'ଣ ଖୁବ୍ ଖର୍ଚ୍ଚାନ୍ତଜନକ ?''

''ହଁ, ଗୋଟିଏ ଗୋଟିଏ ପିଲା ପାଇଁ ଅନ୍ତତଃପକ୍ଷେ ପଚାଶ ଷାଠିଏ ହଜାର ଡଲାର ଖରଚ କରିବାକୁ ପଡ଼ିବ । ପ୍ରାକୃତିକ ରୀତିରେ ପିଲା ହେଲେ ଇନ୍‌ସୁରାନ୍‌ସ କୋମ୍ପାନୀ ପିଲାଜନ୍ମ ସମ୍ବନ୍ଧୀୟ ସମସ୍ତ ଖର୍ଚ୍ଚ ବହନ କରୁଥିବାବେଳେ 'ସରୋଗେଟ୍ ମା' ପଦ୍ଧତି ପାଇଁ ଇନ୍‌ସୁରାନ୍‌ସ କୋମ୍ପାନୀ କୌଣସି ଖର୍ଚ୍ଚ ବହନ କରେନି । ତେଣୁ ସବୁ ଖର୍ଚ୍ଚ ନିଜ ଆୟରୁ ଦେବାକୁ ପଡ଼େ । ଏତେଗୁଡ଼ିଏ ଅର୍ଥ ସାଧାରଣ ମାର୍କିନ୍ ପରିବାର ପକ୍ଷରେ ଖରଚ କରିବା ସମ୍ଭବପର ହୋଇ ନ ଥିବାରୁ ସାଧାରଣ ସ୍ତ୍ରୀ ଲୋକମାନେ ଏହି ପଦ୍ଧତିଟି ପାଇଁ ସେତେ ଆଗ୍ରହୀ ନୁହନ୍ତି । ତା ଛଡ଼ା ଏ ଦେଶର ସାଧାରଣ ନାରୀ ନିଜେ ଗର୍ଭଧାରଣ କରି ମାତୃତ୍ୱର ଗୌରବ ପାଇବାକୁ ବେଶ୍ ଆଗ୍ରହୀ ।''

"ଏହି 'ସରୋଗେଟ୍ ମା' ପଦ୍ଧତିଟି କ'ଣ ଆମ ପାଇଁ ପ୍ରଯୁଜ୍ୟ । ଏଥିରେ ଅକୃତକାର୍ଯ୍ୟ ହେବାର ସମ୍ଭାବନା କ'ଣ କିଛି ନାହିଁ ?"

"ନା, ମୋଟେ ନାହିଁ । ଏହି ପଦ୍ଧତିଟି ଅବଲମ୍ୱନ କରାଯାଇ ମୋ କ୍ଲିନିକ୍‌ରେ ବହୁ ଶିଶୁ ଜନ୍ମ ନେଲେଣି । ଏଥିରେ ଅକୃତକାର୍ଯ୍ୟ ହେବାର ଆଶଙ୍କା ଆସିବ କେଉଁଠୁ ? ଅପରେସନ କରି ଆପଣଙ୍କ ସ୍ତ୍ରୀ ଗର୍ଭକୋଷରୁ ଠିକ୍ ରୂପେ ବୃଦ୍ଧିପ୍ରାପ୍ତ ଡିମ୍ୱାଣୁଟିଏ ବାହାର କରିବାକୁ ପଡ଼ିବ । ଆପଣଙ୍କଠାରୁ ଶୁକ୍ରାଣୁ ନେଇ ସେହି ଶୁକ୍ରାଣୁ ଦ୍ୱାରା ଡିମ୍ୱାଣୁଟିକୁ ବାହାରେ ନିଷିକ୍ତ କରିବାକୁ ହେବ । ତତ୍‌ପରେ ଏହାକୁ ଆପଣଙ୍କ ସ୍ତ୍ରୀଙ୍କ ଜରାୟୁରେ ସ୍ଥାପନା ନ କରି ଆଉଜଣେ ସୁସ୍ଥ ସ୍ତ୍ରୀଲୋକର ଜରାୟୁରେ ସ୍ଥାପନା କରିବାକୁ ପଡ଼ିବ । ଏହା ଫଳରେ ସେହି ସ୍ତ୍ରୀଲୋକଟି ଅନ୍ତଃସତ୍ତ୍ୱା ହେବ । ଆପଣମାନଙ୍କ ପିଲାଟିକୁ ସେହି ସ୍ତ୍ରୀଲୋକଟି ନିଜ ଗର୍ଭରେ ଧାରଣ କରି ବଢ଼ାଇବ । ଦଶମାସ ହେଲାବେଳକୁ ସେହି ସ୍ତ୍ରୀଲୋକଟି ପ୍ରସବ କରି ଆପଣଙ୍କ ପିଲାଟିକୁ ଜନ୍ମ ଦେବ । ସେହି ପିଲାଟି ପ୍ରକୃତରେ ହେବ ଆପଣଙ୍କର । ସେହି ସ୍ତ୍ରୀଲୋକଟି ହେବ ଆପଣଙ୍କ ସନ୍ତାନର 'ସରୋଗେଟ୍ ମା' । ସେହି ସ୍ତ୍ରୀ ଲୋକଟି ପୂର୍ବଚୁକ୍ତି ମୁତାବକ ତା'ର ପାରିଶ୍ରମିକ ନେଇ ଚାଲିଯିବ । ସେହି ପିଲାଟି ଯଦି ସେ ସ୍ତ୍ରୀଲୋକର ଗର୍ଭରେ ବଢ଼ିଲା ତା'ର ରକ୍ତ ମାଂସ ବୃଦ୍ଧି ପାଇଲା, ତଥାପି ଆଇନତଃ ଆପଣମାନେ ହେବେ ତା'ର ପ୍ରକୃତ ବାପ ମା । ସାଧାରଣ ପିଲାମାନେ ନିଜ ବାପ ମା ଠାରୁ ଯେଉଁ ଚାରିତ୍ରିକ ଗୁଣ ପିତ୍ରୀମାତ୍ରୀୟ ରୀତିରେ ହାସଲ କରନ୍ତି, ଏଠାରେ ମଧ ଠିକ୍ ସେମିତି ହେବ । ସେ ସ୍ତ୍ରୀଲୋକର ରୂପ ଗୁଣ ସେ ପିଲାଟିଠାରେ ପ୍ରକଟିତ ନ ହୋଇ ଆପଣମାନଙ୍କ ରୂପ ଗୁଣ ହିଁ ପ୍ରକଟିତ ହେବ, ଯେହେତୁ ସେ ହେଉଛି ଆପଣମାନଙ୍କ ପିଲା । ଆପଣମାନଙ୍କ ପାଇଁ ଏହି ପଦ୍ଧତି ଛଡ଼ା ଅନ୍ୟ ପଦ୍ଧତି ନାହିଁ । ଆପଣମାନେ ଯଦି ଏଥିରେ ରାଜି ହୁଅନ୍ତି, ତେବେ ଏ ଦିଗରେ ବିହିତ ବ୍ୟବସ୍ଥା କରାଯିବ ।"

"ସରୋଗେଟ୍ ମା' ହେବା ପାଇଁ ସ୍ତ୍ରୀଲୋକ ମିଳିବେ କେଉଁଠୁ ?" ମିଷ୍ଟର ଅଗ୍ରୱାଲ ପଚାରିଲେ ।

"କାହିଁକି ? ଆମ ଦେଶରେ ମିଳିବେ ? ବହୁ ସ୍ତ୍ରୀଲୋକ ଏପରିକି ବହୁ ଅବିବାହିତା ଝିଅ 'ସରୋଗେଟ୍ ମା' ହେବା ପାଇଁ ଖୁସି ମନରେ ବାହାରି ଆସିବେ । ଏଠାକାର ଦୈନିକ ଖବରକାଗଜ ଓଲଟାଉ ନାହାନ୍ତି, ଦେଖିବେ କେତେ ବିଜ୍ଞାପନ 'ସରୋଗେଟ୍ ମା' ହେବା ପାଇଁ । ବିଜ୍ଞାପନ ଦେଖି, ସେମାନଙ୍କୁ ଡକାଇ ଇଣ୍ଟରଭିଉ କରି ବାଛିବାକୁ ପଡ଼ିବ । ଆପଣଙ୍କ ସ୍ତ୍ରୀ ଯେଉଁ ବୟସର, ସେଇ ବୟସ ପାଖାପାଖି ଦେଖି ବାଛିଲେ ହେଲା । ଅଳ୍ପ କିଛି ବଡ଼ କି

ସାନ ହେଲେ ଅସୁବିଧା ନାହିଁ । ତତ୍‌ପରେ ସେହି ସ୍ତ୍ରୀଲୋକଟିକୁ ଡାକ୍ତରୀ ପରୀକ୍ଷା କରିବାକୁ ପଡ଼ିବ, ତାହାଠାରେ କୌଣସି ମାରାତ୍ମକ ରୋଗ ଅଛି କି ନାହିଁ ଦେଖିବାକୁ ପଡ଼ିବ, ଯାହାକି ନବଜାତ ଶିଶୁଟିକୁ ଆକ୍ରମଣ କରିପାରେ । ସେହି ସ୍ତ୍ରୀ ଲୋକଟିର ଯେମିତି କିଛି ବଦଭ୍ୟାସ ନିଶାସେବନ କି ସିଗାରେଟ୍‌ଖିଆ ଆଦି ନ ଥାଏ, ଦେଖିବାକୁ ପଡ଼ିବ । କାରଣ ଏସବୁ ଖରାପ ଅଭ୍ୟାସର ଫଳ ବେଳେବେଳେ ନବଜାତ ଶିଶୁ ଉପରେ ପଡ଼ିଥାଏ ।''

''ତା ହେଲେ ତ ଖୁବ୍ ସାବଧାନ ହୋଇ 'ସରୋଗେଟ୍ ମା' ବାଛିବାକୁ ପଡ଼ିବ ଡାକ୍ତର ।''

''ହଁ, ତା ନିଶ୍ଚୟ ।''

''ହେଉ ତେବେ ଡାକ୍ତର, ମୁଁ ଉଠୁଛି । ସ୍ତ୍ରୀଙ୍କ ସହିତ ପରାମର୍ଶ କରି ଆପଣଙ୍କୁ ଜଣାଇବି ।'' ମିଷ୍ଟର ଅଗ୍ରୱାଲ ଏତକ କହି ଡାକ୍ତରଙ୍କଠାରୁ ବିଦାୟ ନେଇ ହୋଟେଲକୁ ଫେରି ଆସିଲାବେଳକୁ ଗୀତାଦେବୀ ଓ ତାରା ନିଉୟର୍କ ନଗରୀ ସମ୍ବନ୍ଧୀୟ କଥାବାର୍ତ୍ତାରେ ଲାଗି ଯାଇଥାନ୍ତି । ନିଉୟର୍କ ନଗରୀ ସମ୍ବନ୍ଧରେ ବର୍ଣ୍ଣନା କରି ଚାଲିଥାନ୍ତି ଗୀତାଦେବୀ, ଆଖିତରାଟି ଶୁଣୁଥାଏ ତାରା । ଗୀତାଦେବୀ ତ ଏହି ଦେଶର ଶିକ୍ଷିତା, ନିଉୟର୍କନଗରୀର ଟିକିନିଖି, ଅନ୍ଦିସନ୍ଦି ସବୁ ତାଙ୍କୁ ଜଣା । ପୃଥିବୀର ସବୁ ବଡ଼ଯାକ କେମିତି ଏଠି ବର୍ଣ୍ଣନା କଲାବେଳକୁ ତାରାର ଆଖି ଖାଲି ତରାଟି ହୋଇ ଯାଉଥାଏ । ମା'ଙ୍କ ମୁଖରୁ ନିଉୟର୍କ ନଗରୀର ବର୍ଣ୍ଣନା ଶୁଣୁଶୁଣୁ ସେ ପାସୋରି ଦେଲାଣି ସେ କେଉଁଠି ?''

ବାବୁଙ୍କୁ ଘର ଭିତରକୁ ପଶି ଆସିବା ଦେଖି ତାରା ଅପ୍ରସ୍ତୁତ ହୋଇପଡ଼ିଲା । ସଙ୍ଗେ ସଙ୍ଗେ ସେ କୋଠରିରୁ ବାହାରି ପାଖ କୋଠରିକୁ ଚାଲିଗଲା ।

ସ୍ୱାମୀଙ୍କୁ ଦେଖି ଗୀତାଦେବୀ ଉତ୍ସୁକ ହୋଇ ସଙ୍ଗେ ସଙ୍ଗେ ପଚାରି ପକାଇଲେ, ''ଡାକ୍ତରଙ୍କ ସହିତ କ'ଣ କିଛି କଥାବାର୍ତ୍ତା ହେଲା ଆଜି ?''

''ହଁ, ହେଲା । ଡାକ୍ତର ଯାହା କହୁଛନ୍ତି, ତୁମେ ନିଜ ସନ୍ତାନର ମା ଏତେ ସହଜରେ ହୋଇ ପାରିବନି । ଯେହେତୁ ତୁମର କେହି ଯାଆଁଳା ଭଉଣୀ ବା ଆତ୍ମୀୟା ଭଉଣୀ ନାହାନ୍ତି ଯେ କି ତୁମକୁ ଜରାୟୁ ଦାନ କରି ପାରିବେ, ତେଣୁ ତୁମଠାରେ ଜରାୟୁ ପରିରୋପଣର ପ୍ରଶ୍ନ ଉଠୁନି । କାରଣ ବାହାରୁ ଜରାୟୁ ଖରିଦ କରି ତୁମଠାରେ ପରିରୋପଣ କଲେ ଏହା କୃତକାର୍ଯ୍ୟ ହେବ କି ନାହିଁ, ନିର୍ଧାର୍ଯ୍ୟ ଭାବରେ କହି ହେବନି । ଶରୀରର ଏକ ବିଚିତ୍ର ପ୍ରକୃତି ଅଛି । ଏହା ସବୁ ପ୍ରକାର ପରିରୋପିତ ଅଙ୍ଗକୁ ଗ୍ରହଣ ନ କରିପାରେ ।

ତେଣୁ ତୁମଠାରେ ପରିରୋପିତ ଜରାୟୁକୁ ଯଦି ଶରୀର ଗ୍ରହଣ ନ କଲା, ତେବେ ସବୁ ଗଲା । ଶରୀର ଉପରେ ଭିନ୍ନ ପ୍ରକାର ଔଷଧ ଉପଚାର କରି ଶରୀରକୁ ଯଦି ଜରାୟୁକୁ ଗ୍ରହଣ କରିବାକୁ ବାଧ କରାଯାଏ, ତେବେ ଏହାର ଫଳ ବେଳେବେଳେ ଖୁବ୍ ବିଷମୟ ହୋଇଥାଏ, ଏପରିକି ମୃତ୍ୟୁଆଡ଼କୁ ଠେଲି ହୋଇଯିବା ମଧ ଅସମ୍ଭବ ନୁହେଁ । ଡାକ୍ତରଙ୍କ ମତରେ ତୁମ ପାଇଁ ଆଉ ଏକ ବ୍ୟବସ୍ଥା 'ସରୋଗେଟ୍ ମା' ପଦ୍ଧତିଟି ସବୁଠାରୁ ନିରାପଦ ଓ ସହଜଜନକ ହେବ ।''

''ସରୋଗେଟ୍ ମା' ପଦ୍ଧତି ?'' ସେ ପୁଣି କ'ଣ ? ମିସେସ୍ ଜରିବାଲା ଆମକୁ ବୋମ୍ବେରେ ସେକଥା ତ କହି ନ ଥିଲେ ? ସେ ଆମକୁ କେବଳ ଜରାୟୁ ପରିରୋପଣ କଥା କହିଥିଲେ । 'ସରେଗେଟ୍ ମା' ପୁଣି କ'ଣ ?

ତୁମେ ଏତେବର୍ଷ କାଳ ଆମେରିକାରେ ଥିଲ, ଅଥଚ 'ସରୋଗେଟ୍ ମା' ପଦ୍ଧତି କ'ଣ ଜାଣିନାହଁ ?

''କିନ୍ତୁ ମୁଁ ଏ ଦେଶରେ ଥିଲାବେଳେ ଏହି ଶବ୍ଦଟି ଏଠି ସୃଷ୍ଟି ହୋଇଥିଲା ବୋଲି ତ ମୋର ମନେହେଉନି । ସୃଷ୍ଟି ହୋଇଥିଲେ ମୁଁ ତ ନିଶ୍ଚୟ ଜାଣିଥାନ୍ତି । ଏହି ପଦ୍ଧତିଟି ସମ୍ଭବତଃ ଆମେରିକାରେ ମୋ ଚାଲିଯିବା ପରର ଘଟଣା । ମୋ ଥିବାବେଳେ 'ସରୋଗେଟ୍ ମା' ସାହାଯ୍ୟରେ ପିଲାଜନ୍ମ କେବେ ହୋଇଥିବା କଥା ମୋର ମନେପଡୁନି । 'ସରୋଗେଟ୍ ମା' ପଦ୍ଧତି ପ୍ରକୃତରେ କ'ଣ କହିଲ ?''

''ତୁମେ ତ 'ଟେଷ୍ଟ୍‌ଟିଉବ୍ ବେବି' କଥା ଜାଣିଛ ଗୀତା ?''

''ହଁ, ଜାଣିଛି । ସିଏତ ପ୍ରକୃତ 'ଟେଷ୍ଟଟିଉବ୍ ବେବି' ନୁହେଁ । ସିଏତ 'ଅର୍ଦ୍ଧ ଟେଷ୍ଟ୍‌ଟିଉବ୍ ବେବି' । ପ୍ରକୃତ 'ଟେଷ୍ଟ୍‌ଟିଉବ୍ ବେବି' ତ ଏ ପର୍ଯ୍ୟନ୍ତ କୃତକାର୍ଯ୍ୟ ହୋଇନି । ସୋଭିୟେଟ୍ ରୁଷିଆରେ ସେ ଦିଗରେ ଗବେଷଣା ଚାଲିଛି ।''

''ହଁ, ହଁ, ସେହି 'ଅର୍ଦ୍ଧ ଟେଷ୍ଟ୍‌ଟିଉବ୍ ବେବି' ପଦ୍ଧତି । ତୁମେ ତ ଜାଣିଛ, ସେଥିରେ ମା'ର ଡିମ୍ବକୋଷରୁ ସୁସ୍ଥ ପରିପକ୍ୱ ଡିମ୍ବାଣୁ ବାହାର କରି ପିତାର ଶୁକ୍ରାଣୁ ସାହାଯ୍ୟରେ ବାହାରେ ନିଷିକ୍ତ କରାଇ ନିଷିକ୍ତ ହେବାପରେ ପୁଣି ମା'ର ଜରାୟୁରେ ସ୍ଥାପନା କଲେ ଅନ୍ତଃସତ୍ତ୍ୱା ହୋଇପାରୁ ନ ଥିବା ସ୍ତ୍ରୀଲୋକଟି ଅନ୍ତଃସତ୍ତ୍ୱା ହୁଏ ଓ ଦଶମାସ ଗର୍ଭଧାରଣ ପରେ ସେ ଯେଉଁ ପିଲାକୁ ଜନ୍ମ ଦିଏ, ତାକୁ କୁହାଯାଏ 'ଟେଷ୍ଟ୍ ଟିଉବ୍ ବେବି' ବା ତୁମ କହିବା ଅନୁସାରେ 'ଅର୍ଦ୍ଧ ଟେଷ୍ଟ୍‌ଟିଉବ୍ ବେବି' । ଯେଉଁଠି ମା'ର ଜରାୟୁ ନିଷିକ୍ତ ଡିମ୍ବାଣୁକୁ ଗ୍ରହଣ କରିବା ପାଇଁ ଉପଯୋଗୀ ନ ଥାଏ, ସେଠି ଅନ୍ୟ ଏକ ସୁସ୍ଥ ସ୍ତ୍ରୀଲୋକର ଜରାୟୁରେ ସ୍ଥାପନା

କଲେ ସେ ସ୍ତ୍ରୀଲୋକଟି ଅନ୍ତଃସତ୍ତ୍ୱା ହୁଏ ଓ ଦଶମାସ ଗର୍ଭଧାରଣ ପରେ ଯେଉଁ ଶିଶୁଟିକୁ ଜନ୍ମ ଦିଏ, ସେହି ଶିଶୁଟି ହେଉଛି ଡିମ୍ବାଣୁ-ଶୁକ୍ରାଣୁ ଦେଇଥିବା ଦମ୍ପତିଙ୍କର । ଶିଶୁଟିକୁ ଯେଉଁ ସ୍ତ୍ରୀଲୋକ ଜନ୍ମଦିଏ, ତାକୁ କୁହାଯାଏ ସେହି ଶିଶୁର 'ସରୋଗେଟ୍ ମା' । ପିଲାଟିର ରୂପ, ଗୁଣ ଉପରେ 'ସରୋଗେଟ୍ ମା'ର କୌଣସି ପ୍ରଭାବ ନ ଥାଏ । ସେ କେବଳ ଜଣେ ଲାଳନପାଳନ କର୍ତ୍ତ୍ରୀଭାବରେ ପିଲାଟିକୁ ନିଜ ଗର୍ଭାଶୟରେ ବଢ଼ାଇ ଜନ୍ମ ଦିଏ ।''

''ଏହି 'ସରୋଗେଟ୍ ମା' ହେବା ପାଇଁ କ'ଣ ସ୍ତ୍ରୀଲୋକ ମିଳିବେ ?''

''ହଁ, 'ସରୋଗେଟ୍ ମା' ହେବା ପାଇଁ ଏ ଦେଶର ବହୁ ସ୍ତ୍ରୀଲୋକ କାଳେ ଲାଳାୟିତ । ଏଠାକାର ଖବରକାଗଜରେ କାଳେ 'ସରୋଗେଟ୍ ମା' ହେବା ପାଇଁ ବହୁ ସ୍ତ୍ରୀଲୋକ ବିଜ୍ଞାପନ ଦିଅନ୍ତି । ଗୋଟିଏ ଗୋଟିଏ 'ସରୋଗେଟ୍ ମା' କୋଡ଼ିଏ ପଚିଶ ହଜାର ଡଲାରରୁ କମ୍ ପାରିଶ୍ରମିକ ନିଅନ୍ତିନି । ତାଛଡ଼ା ଦଶମାସ ଯାକର ଖାଇବା, ପିଇବା, ଲୁଗାପଟା ଆଦି ଖରଚ ଅଛି । ପିଲାଜନ୍ମ ପରେ ସେମାନେ ପିଲାଟିକୁ ଦେଇ ସେମାନଙ୍କ ପାରିଶ୍ରମିକ ନେଇ ନିଜ ଘରକୁ ଚାଲି ଯାଆନ୍ତି ।''

''କିନ୍ତୁ, ଏ ଦେଶର ସ୍ତ୍ରୀଲୋକ ମୋ ପିଲାକୁ ଗର୍ଭରେ ଧାରଣ କରି ନିଜ ଖାଦ୍ୟ, ରକ୍ତ, ମାଂସ ଦେଇ ବଢ଼ାଇବା ମୋତେ ଭଲ ଲାଗିବନି । ସେମାନେ ତ ଆମ ଧର୍ମର ନୁହନ୍ତି । ସେମାନଙ୍କ ଖାଦ୍ୟ ଆମ ଖାଦ୍ୟଠାରୁ ଅଲଗା । ସେମାନେ ଯେଉଁ ପିଲା ଗର୍ଭରେ ବଢ଼ାଇବେ, ସେ ହିନ୍ଦୁପିଲା ହେବ ନା ଖ୍ରୀଷ୍ଟିଆନ୍ ପିଲା ହେବ ?''

''ଆମର ଯେଉଁ ଧର୍ମ, ପିଲାର ସେହି ଧର୍ମ ହେବ । ସେ ତ ଆମ ନିଜ ପିଲା, ଅନ୍ୟ ଗର୍ଭାଶୟରେ ସିନା ବଢୁଛି । ଆମ ରୂପ ଗୁଣ ନେଇ ସେ ବଢ଼ିବ । 'ସରୋଗେଟ୍ ମା'ର କୌଣସି ଲକ୍ଷଣ, ଚରିତ୍ର, ଗୁଣ ତା'ଠାରେ ପ୍ରକଟିତ ହେବନି । ଆମେ ଯଦି ଗୋଟିଏ ଖ୍ରୀଷ୍ଟିଆନ୍ ପିଲାକୁ ପାଳି ନେବା, ସେ ତ ଆମ ଧର୍ମାନୁଯାୟୀ ହିନ୍ଦୁ ହେଉଛି, ଯଦିଚ ତା ବାପ, ମା ଖ୍ରୀଷ୍ଟିଆନ । ଏ ପିଲା ତ ତା ବି ନୁହେଁ । ସେ ଆମ ଔରସରୁ ଜନ୍ମ । କେବଳ ରକ୍ତ ମାଂସ ଦେଇ ବଢ଼ାଉଛି 'ସରୋଗେଟ୍ ମା' । ତେଣୁ ସେ ଆମ ଧର୍ମ ଛଡ଼ା ଅନ୍ୟ ଧର୍ମର କେମିତି ହେବ ?''

''ହେଲେ ମୋତେ ଭଲ ଲାଗିବନି । ଆମ ପିଲା ଆଉଜଣେ ବିଧର୍ମୀର ଗର୍ଭାଶୟରେ ବଢ଼ିବ, ମୋତେ କେମିତି କେମିତିକା ଲାଗୁଛି । ଏଠି କ'ଣ ହିନ୍ଦୁ 'ସରୋଗେଟ୍ ମା' ମିଳିବେନି ?

‘‘ମିଳିବେନି କାହିଁକି ?’’ ଏଠି ତ ବହୁ ଭାରତୀୟ ସ୍ଥାୟୀ ବାସିନ୍ଦା ହୋଇ ରହିଗଲେଣି । ସେମାନଙ୍କ ଭିତରୁ କ’ଣ ‘ସରୋଗେଟ୍ ମା’ ହେବାପାଇଁ କେହି ଆଗ୍ରହାନ୍ୱିତ ହେବେନି ? ମୁଁ ଭାବୁଛି, ହିନ୍ଦୁ ସ୍ତ୍ରୀ ଲୋକ ଏଥିପାଇଁ ମିଳି ପାରନ୍ତି । ଯଦି ନ ମିଳନ୍ତି ?’’

‘‘ହଁ, ସିଏ ଗୋଟିଏ କଥା । ହିନ୍ଦୁ ‘ସରୋଗେଟ୍ ମା’ ନ ମିଳିଲେ ଆମର ପିଲା ହେବା ଦରକାର ନାହିଁ । ବିଧର୍ମୀର ଖାଦ୍ୟ ଖାଇ ଯେଉଁ ପିଲା ବଢ଼ିବ, ସେ ପିଲାକୁ ମୁଁ ନିଜର ବୋଲି ଗ୍ରହଣ କେମିତି କରିବି କହିଲ ?’’

‘‘ତୁମେ ଏହି ଦେଶରେ ଶିକ୍ଷିତା ହୋଇ ଏହି ଦେଶର ଲୋକଙ୍କ ପ୍ରତି ଏମିତି ମନୋଭାବ କ’ଣ ଦେଖାଉଛ ଗୀତା ? ତୁମେ ପ୍ରଗତିଶୀଳ ହେବା ଉଚିତ ।’’

× × × × ×

ଗୀତାଦେବୀ ସଅଳ ସଅଳ ତାରାକୁ ଡାକି କହିଲେ, ‘‘ଦେଖ ତାରା, ଆଜି ‘ସରୋଗେଟ୍ ମା’ମାନଙ୍କର ଇଣ୍ଟରଭିଉ ଅଛି । ମୁଁ ସେମାନଙ୍କୁ ଚିଠି ଦେଇ ଡକାଇଛି । ପ୍ରାୟ କୋଡ଼ିଏ ସରିକି ସ୍ତ୍ରୀ ଲୋକ ଆଜି ଆସିବେ । ଦେଖ, ତୁ ସେମାନଙ୍କୁ ଡ୍ରଇଂରୁମ୍ ପାଖ ଘରେ ବସାଇବୁ । ଜଣ ଜଣ କରି ମୋ ଠାକୁ ଡ୍ରଇଂରୁମ୍‌କୁ ପଠାଇବୁ । ସେମାନଙ୍କ ଆସିବାବେଳ ହୋଇଗଲାଣି । ଏବେ ସେମାନେ ଆସିଯିବେ ।’’

ଗୀତାଦେବୀ ତାରାକୁ ଏତକ କହି ସାରିଛନ୍ତି କି ନାହିଁ, କଲିଂବେଲ୍ ବାଜି ଉଠିଲା । ଗୀତାଦେବୀ କହିଲେ, ‘‘ହେଇ ତାରା, ସେମାନେ ଆସିଗଲେଣି ବୋଧେ । ତୁ ଯା ସେମାନଙ୍କୁ ପାଖ ରୁମ୍‌ରେ ବସାଇବୁ । ମୁଁ ଡ୍ରଇଂରୁମ୍‌କୁ ଯାଉଛି ।’’

ଜଣ ଜଣ କରି ଇଣ୍ଟରଭିଉ ଚାଲିଲା । କେତେକେ ନିଉୟର୍କ ନଗରୀରୁ, କେତେକେ ପାଖ ନିଉଜେର୍‌ସି ସିଟି ଓ ଅନ୍ୟାନ୍ୟ ପାଖଆଖ ସହରରୁ ଆସିଥାନ୍ତି । ସେମାନଙ୍କ ବୟସ କେତେ, କାହାର ପରିବାର କେମିତି, କାହାର ପିଲା କେତୋଟି, ପିଲାମାନେ କେଉଁ ବୟସର, ଏସବୁ ପଚାରି ଗୀତାଦେବୀ ଗୋଟିଏ ଖାତାରେ ଟିପି ରଖୁଥାନ୍ତି । ସେମାନେ କାହିଁକି ‘ସରୋଗେଟ୍ ମା’ ହେବାକୁ ଚାହୁଁଛନ୍ତି, କେତେ ପାରିଶ୍ରମିକ ସେମାନେ ନେବାକୁ ଚାହାନ୍ତି, ଆଦି ବହୁ ବିଷୟରେ ସେ ସେମାନଙ୍କଠାରୁ ତଥ୍ୟ ସଂଗ୍ରହ କରୁଥାନ୍ତି । କିନ୍ତୁ ଗୀତାଦେବୀ ଯେତେବେଳେ ସେମାନଙ୍କୁ ପ୍ରସ୍ତାବ ଦିଅନ୍ତି ଯେ ସେମାନେ ଅନ୍ତଃସତ୍ତ୍ୱା ହେଲାପରେ ଗୀତାଦେବୀଙ୍କ ପାଖରେ ରହିବେ, ତାଙ୍କରି ଖାଦ୍ୟ ଖାଇବେ, ନିଜ ପରିବାର ଭିତରେ ରହି ପାରିବେନି, ଏକଥା ଶୁଣି ସମସ୍ତେ ଛାନିଆ । ଗୀତାଦେବୀ ସେମାନଙ୍କ ପ୍ରାପ୍ୟର

ଦୁଇଗୁଣ ଦେବାକୁ ଲୋଭ ଦେଖାଇଲେହେଁ ତାଙ୍କ କଥାରେ କେହି ରାଜି ହେବାର ଦେଖାଗଲାନି । ସମସ୍ତଙ୍କ ଇଚ୍ଛା ସେମାନେ 'ସରୋଗେଟ୍ ମା' ହେବେ ସତ, କିନ୍ତୁ ନିଜ ନିଜ ଘରେ ରହିବେ, ନିଜ ପରିବାର ଭିତରେ ଚଳପ୍ରଚଳ ହେବେ, ନିଜ ଘରର ଖାଦ୍ୟ ଖାଇବେ । ଗୀତାଦେବୀଙ୍କ ନିକଟରେ ରହି କେହି 'ସରୋଗେଟ୍ ମା' ହେବାକୁ ରାଜି ହେଲେନି ।

ଏ ଦେଶର ସ୍ତ୍ରୀଲୋକଙ୍କ ମତିଗତିକୁ ଦେଖି ଗୀତାଦେବୀ ବଡ଼ ହତାଶ ହୋଇପଡ଼ିଲେ । ଯେତେବେଳେ ଜଣେସୁଦ୍ଧା ସ୍ତ୍ରୀଲୋକ ତାଙ୍କ ପ୍ରସ୍ତାବରେ ରାଜି ହେଲେନି, ସେ ଧରିନେଲେ ଯେ ସେ ସନ୍ତାନଟିଏ ପାଇପାରିବେନି । ଗୀତାଦେବୀଙ୍କୁ ଭାରି ଘୃଣା ଲାଗୁଥାଏ, ତାଙ୍କ ଭାବୀସନ୍ତାନର ଯେ ରକ୍ତ ମାଂସ ପ୍ରଦାନକାରୀ ମା ହେବ, ସେ ଖାଇବ ବିଧର୍ମୀଖାଦ୍ୟ, ରହିବ ବିଧର୍ମୀ ଘରେ, ଆତଯାତ ହେବ ବିଧର୍ମୀ ସମାଜରେ । ସେ ତା ଘରେ ରହି ନିଜ ସ୍ୱାମୀ ସହିତ ବସା ଉଠା କରିବ, ଅଥଚ ବହନ କରିଥିବ ଗୀତାଦେବୀଙ୍କ ସନ୍ତାନଙ୍କୁ ନିଜ ଗର୍ଭରେ । ଗୀତାଦେବୀଙ୍କୁ ଏକଥା ମୋଟେ ଭଲ ଲାଗିଲା ନାହିଁ ।

ଏହି 'ସରୋଗେଟ୍ ମା' ସମ୍ବନ୍ଧରେ ସ୍ୱାମୀଙ୍କ ସହିତ କେତେଥର ଆଲୋଚନା କଲେଣି । ଗୀତାଦେବୀଙ୍କର ଗୋଟିଏ କଥା, ଯିଏ ତାଙ୍କ ସନ୍ତାନର 'ସରୋଗେଟ୍ ମା' ହେବ, ସେ ତାଙ୍କରିଠାରେ ରହିବ, ତାଙ୍କରି ଖାଦ୍ୟ ଖାଇବ, ତା ନିଜ ଘରେ ରହିବନି କି ନିଜ ସ୍ୱାମୀ ସହିତ ବସାଉଠା କରିବନି । ଏସବୁ ପ୍ରତି କୋହଳ ମନୋଭାବ ଗ୍ରହଣ କରିବାକୁ ସ୍ୱାମୀ ବାରମ୍ବାର ପ୍ରବର୍ତ୍ତାଇଲେହେଁ ସେ ସେଥିରେ ମୋଟେ ରାଜି ହୋଇପାରୁ ନ ଥାନ୍ତି । ଗୀତାଦେବୀ ଶେଷରେ ଠିକ୍ କଲେ ତାଙ୍କର ପିଲା ପଛେ ଦରକାର ନାହିଁ, ବିଧର୍ମୀ ଖାଦ୍ୟ ଖାଇ, ବିଧର୍ମୀ ଗର୍ଭରୁ ଜାତ ପିଲାକୁ ସେ ନିଜର ପିଲା ବୋଲି କେବେ ଗ୍ରହଣ କରି ପାରିବେନି । ତାଙ୍କର ସବୁବେଳେ ମନରେ ସନ୍ଦେହ ହେଉଥିବ, ତାଙ୍କ ପିଲା ଉପରେ ବିଧର୍ମୀ ଖାଦ୍ୟ ଓ ବିଧର୍ମୀ ସ୍ୱଭାବର ପ୍ରଭାବ ପଡ଼ି ନାହିଁ ତ ?

ଦିନେ ସକାଳୁ ତାରାକୁ ଡାକି ଗୀତାଦେବୀ କହିଲେ, "କାଲି ଆମେ ଆମ ଦେଶକୁ ଫେରିଯିବା ତାରା । ଆମର ପିଲାଟିଏ ପାଇଁ ଏଠାକାର ଯେଉଁ ବ୍ୟବସ୍ଥା, ତାହା ଗ୍ରହଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ତାରା ।"

"କିନ୍ତୁ ମା, ଆପଣ ଏହି ସାମାନ୍ୟ କଥାଟି ପାଇଁ କ'ଣ ବିଫଳ ମନୋରଥ ହୋଇ ଦେଶକୁ ଫେରିଯିବେ ? ଆପଣ କେତେ ବଡ଼ ଆଶାରେ ଏଠାକୁ ଆସି ନ ଥିଲେ ସତେ ?"

"କିନ୍ତୁ କ'ଣ କରିବି ତାରା, ଭଗବାନ ମୋ ଭାଗ୍ୟରେ ପିଲା ଲେଖି ନାହାନ୍ତି । ମୁଁ ଇଚ୍ଛା କଲେ କ'ଣ ମିଳି ପାରିବ ?" କହୁ କହୁ ଆଖି ଛଳଛଳ ହୋଇ ଆସିଲା ଗୀତାଦେବୀଙ୍କର ।

ମା'ଙ୍କୁ ଏଭଳି ଛଳଛଳ ଆଖିରେ ଦେଖିଲେ ତାରାର ଧୈର୍ଯ୍ୟ ରହେନି । ମା ଯେଉଁ ଉଦ୍ଦେଶ୍ୟରେ ଆସିଥିଲେ, ସେ ଉଦ୍ଦେଶ୍ୟ ଚରିତାର୍ଥ ନ ହେବା ଦେଖି ସେ ମଧ୍ୟ ଧୈର୍ଯ୍ୟ ଧରି ରହି ପାରିଲାନି । ସେ ବହୁ ଚିନ୍ତା କଲା ପରେ ଗୀତାଦେବୀଙ୍କୁ କହିଲା, "ଆପଣ ଯଦି କିଛି ମନେ ନ କରନ୍ତି, ତେବେ ଗୋଟିଏ କଥା କହିବି ମା ? ଆପଣ ରଖିବେ ?"

"କି କଥା କହିବୁ, କହୁନୁ । ରଖିବାର ଥିଲେ ନିଶ୍ଚେ ରଖିବି ।"

"ଆପଣଙ୍କ ସନ୍ତାନର 'ସରୋଗେଟ୍ ମା' ହେବାପାଇଁ ମୁଁ ପ୍ରସ୍ତୁତ ଅଛି ମା । ଆପଣ ମୋତେ ଗ୍ରହଣ କରିବେ ତ ?"

ଗୀତାଦେବୀ ହଠାତ୍ ତାରାକୁ କୁଣ୍ଢାଇ ପକାଇଲେ । "ଆଁ, ତୁ ମୋ ପାଇଁ ଏତେ କଷ୍ଟ କ'ଣ ସହ୍ୟ କରିପାରିବୁ ତାରା ?" କହୁ କହୁ ତାଙ୍କ ଆଖିରେ ଲୁହ ଜକେଇ ଆସିଲା ।

"ହଁ, ମା, ଆପଣଙ୍କ ପାଇଁ ମୁଁ କ'ଣ ଏତିକି କରି ପାରିବିନି । ଆପଣ ମୋର ଯେଉଁ ଉପକାର କରିଛନ୍ତି, ତା ଆଗରେ ଏ ତ କିଛି ନୁହେଁ । ଆପଣଙ୍କ ପାଇଁ ମୁଁ ଆଜି ନୂତନ ଜୀବନ ପାଇଛି । ଆପଣ ଦୟା କରି ନ ଥିଲେ, ମୁଁ କେଉଁଦିନରୁ ଏହି ସଂସାରରୁ ବିଦାୟ ନେଇ ସାରନ୍ତିଣି । ଭଗବାନ ମୋତେ ସିନା ସେ ସୌଭାଗ୍ୟ ଦେଇ ନାହାନ୍ତି । ମୋର ନିଜର ପିଲା ହୋଇଥିଲେ ମୋତେ ତ ସେହି କଷ୍ଟ ସହ୍ୟ କରିବାକୁ ପଡ଼ିଥାନ୍ତା । ଆଜି ଆପଣଙ୍କ ପାଇଁ ସେଇ କଷ୍ଟ ସହିବି, ଏଥିରେ ମୋର ତ ଅପାର ଆନନ୍ଦ ।"

"ତୁ ଆରଜନ୍ମରେ ସତରେ ମୋର ଭଉଣୀ ଥିଲୁ ତାରା । ତା ନ ହୋଇଥିଲେ, ଏତେବଡ଼ ସ୍ୱାର୍ଥତ୍ୟାଗ କେହି କେବେ ଅନ୍ୟ ପାଇଁ କରି ନ ପାରେ ।" ଗୀତାଦେବୀଙ୍କ ଆଲିଙ୍ଗନ ଆହୁରି ନିବିଡ଼ ହୋଇ ଆସିଲା ।

"ମୁଁ ବହୁ ଲୋକଙ୍କୁ ସ୍ୱାର୍ଥତ୍ୟାଗ କରିବା ଦେଖିଛି । କିନ୍ତୁ ତୋ ଭଳି ସ୍ୱାର୍ଥତ୍ୟାଗୀ ମୁଁ କେଉଁଠି ଦେଖିନି । ଚିରଦିନ ଲାଗି ତୁ ମୋତେ ତୋ ଠାରେ ଋଣୀ କରି ରଖିଲୁ ତାରା । ତେବେ ଗୋଟିଏ କଥା ଶୁଣ ତାରା । ମୁଁ ଆଜି ଭଗବାନଙ୍କୁ ସାକ୍ଷୀ କରି ପ୍ରତିଜ୍ଞା କରୁଛି ସେ ଯେଉଁ ପିଲାଟି ଜନ୍ମ ହେବ, ତା ଉପରେ ମୋର ଯେତିକି ଅଧିକାର ରହିବ, ତା ଉପରେ ତୋର ସେତିକି ଅଧିକାର

ରହିବ । ମୁଁ ସିନା ତା'ର ଜନ୍ମ ପାଇଁ ଦାୟୀ, ତୁ ତାକୁ ରକ୍ତମାଂସ ଦେଇ ଗଢ଼ିବୁ । ତା ଜନ୍ମର ସମସ୍ତ କଷ୍ଟ ତୁ ବହନ କରିବୁ । ତେଣୁ ସେ ମୋର ପିଲା ହେଲେ କ'ଣ ହେବ, ତୋର ଅଧିକାର ରହିବ ତା ଉପରେ ଷୋଳଅଣା । ବଢ଼ିଗଲେ ସେ ମୋତେ ଯେଉଁ ଚକ୍ଷୁରେ ଦେଖିବ, ସେ ତୋତେ କେବେ ଊଣାଚକ୍ଷୁରେ ଦେଖିବନି । ତୁ ମଧ୍ୟ ତା'ର ଆଉ ଏକ ମା ଭାବରେ ସମ୍ମାନ ପାଇବୁ ।''

ତାରା 'ସରୋଗେଟ୍ ମା' ହେବା ଦିନଠାରୁ ତା ସ୍ୱାସ୍ଥ୍ୟପ୍ରତି ଗୀତାଦେବୀଙ୍କର କଡ଼ା ଦୃଷ୍ଟି । କାଳେ ତା'ର କେଉଁଠି ଅସୁଖ ହେବ, କି ଦେହପା ଖରାପ ହେବ, ସେଥିପ୍ରତି ସଦାସର୍ବଦା ସଜାଗ ଥାନ୍ତି । ତାରା ସିନା 'ସରୋଗେଟ୍ ମା' ହେଲା, ତାକୁ ଗର୍ଭାବସ୍ଥାରେ ଭାରତ ନେବାକୁ ସାହସ କଲେନି ଗୀତାଦେବୀ । ତାରା ବିଧବା, ବିଧବା ଯଦି ଅନ୍ତଃସତ୍ତ୍ୱା ହୁଏ, ତେବେ ଆମ ସମାଜ ତାକୁ କୁଳଟା କହି କେତେ ଛିଛିକାର କରିବ ? ଜାରଜ ସନ୍ତାନର ମା କହି ଲୋକେ ତାକୁ କେତେ ଘୃଣା କରିବେ । 'ସରୋଗେଟ ମା' ହେବା କି ପବିତ୍ର, କି ପରୋପକାରୀ କାମ, ଏଥିସହିତ କୁଳଟା କି ଚରିତ୍ରହୀନା ପ୍ରକୃତିର କୌଣସି ସମ୍ପର୍କ ନାହିଁ, ଆମ ଦେଶର ଲୋକେ କ'ଣ ଏହା କେବେ ବୁଝିବେ ? ଏହାର ପବିତ୍ରତା ସେମାନଙ୍କୁ ଯେତେ ବୁଝାଇଲେହେଁ ସେମାନେ ବୁଝିବେନି । ତାରା ସନ୍ତାନ ଜାତ କଲେ, ଲୋକମାନେ ତାରା ସହିତ ସ୍ୱାମୀଙ୍କ ଅବୈଧ ପ୍ରଣୟ କଥା କହି ଛିଛିକାର କରିବେ । ଏଥିରେ ତାରାର ତ ସମ୍ମାନ ଯିବ, ନିଜ ସ୍ୱାମୀଙ୍କର ସମ୍ମାନ ମଧ୍ୟ ଯିବ । 'ସରୋଗେଟ ମା' ସହିତ ଅବୈଧ ପ୍ରଣୟର କୌଣସି ସମ୍ପର୍କ ନାହିଁ ଯେତେ କହିଲେହେଁ ଆମ ଦେଶର ଅଜ୍ଞ ଲୋକେ କ'ଣ ଏହାକୁ କେବେ ବିଶ୍ୱାସ କରିବେ ? ଆମେରିକାରେ ଅବିବାହିତା ଝିଅମାନେ 'ସରୋଗେଟ ମା' ହେବାକୁ କେମିତି ଆଗେଇ ଆସନ୍ତି, ଏଥିରେ ସେମାନଙ୍କର ଚରିତ୍ରର କିପରି ପତନ ଘଟେନି, ଯେତେ କହିଲେହେଁ ଆମ ଦେଶରେ କେହି ଗ୍ରହଣ କରିବେନି । ତାରାର ପ୍ରସବ କରିଥିବା ସନ୍ତାନକୁ ଗୀତାଦେବୀ ଯଦି ଗ୍ରହଣ କରନ୍ତି, ତେବେ ଲୋକେ ଗୀତାଦେବୀଙ୍କୁ କମ୍ ହୀନଦୃଷ୍ଟିରେ ଦେଖିବେନି । ପିଲାଟିକୁ ଜାରଜ ସନ୍ତାନ କହି ଲୋକେ କେତେ ହୀନିମାନ କରିବେ ।

ଗୀତାଦେବୀ ବହୁ ଚିନ୍ତା କରି ଠିକ୍ କଲେ ସ୍ୱାମୀ-ସ୍ତ୍ରୀ ଦୁହେଁ ଏହାକୁ ଖୁବ୍ ସାବଧାନତାର ସହିତ ଗୋପନ ରଖିବେ । ଭୁଲରେ ଯେମିତି ଏହି ଗୋପନୀୟତା କେଉଁଠି ପ୍ରକାଶ ପାଇ ନ ଯାଏ, ସେଥିପାଇଁ ସେମାନେ ଖୁବ୍ ସାବଧାନ ହେବେ । ତାରା ଦଶମାସ ଗର୍ଭଧାରଣ କରି ପିଲାପ୍ରସବ ନ କଲା ପର୍ଯ୍ୟନ୍ତ, ସେ ଓ

ତାରା ଆମେରିକା ଛାଡ଼ି ଭାରତ ଫେରିବେନି । ଏହି ଦଶମାସ କାଳ ମିଷ୍ଟର ଅଗ୍ରୱାଲ ଆମେରିକାରେ ରହି ନ ପାରନ୍ତି, କିନ୍ତୁ ସେ ଓ ତାରା ସନ୍ତାନ ଜନ୍ମ ହେବା ପୂର୍ବରୁ ଭାରତ ଫେରି ପାରିବେନି । ଗୀତାଦେବୀ ଅନ୍ତଃସତ୍ତ୍ୱା ହୋଇ ଆମେରିକାରେ ଡାକ୍ତରଙ୍କ ଚିକିତ୍ସାରେ ଅଛନ୍ତି ଓ ତାରା ତାଙ୍କର ପରିଚର୍ଯ୍ୟା ଦାୟିତ୍ୱରେ ଅଛି ବୋଲି ଦେଶରେ ଯାଇ ପ୍ରଚାର କରିବେ । ଗୀତାଦେବୀଙ୍କ ସ୍ଥାନରେ ତାରା ଯେ ଗର୍ଭଧାରଣ କରିଛି, ଏକଥା କହିଲେ ତାରାର ଚରିତ୍ର ଉପରେ ଖାଲି କଳଙ୍କ ଆସିବନି, ମିଷ୍ଟର ଅଗ୍ରୱାଲଙ୍କ ନିର୍ମଳ ଚରିତ୍ର ଉପରେ କଳଙ୍କ ଲେପି ହୋଇଯିବ ଓ ଏଭଳି ସନ୍ତାନକୁ ନେଇ ସେ ନିଜ ଭାବୀ ବଂଶୀଧର କରିବାରେ ଅନ୍ୟମାନେ ବାଧା ଜନ୍ମାଇବେ । ଲୋକେ ସେମାନଙ୍କ ପରିବାରକୁ ଅତି ହୀନଚକ୍ଷୁରେ ଦେଖିବେ ଓ ନିଜ ସନ୍ତାନକୁ ଏକ ଜାରଜ ସନ୍ତାନ କହି ଘୃଣା କରିବେ । ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଆଲୋଚନା ହୋଇ ଠିକ୍ ହେଲା ମିଷ୍ଟର ଅଗ୍ରୱାଲ ଭାରତରେ ରହି ନିଜ କଳକାରଖାନା କଥା ବୁଝିବେ । ମଝିରେ ମଝିରେ ଆସି ସେମାନଙ୍କୁ ଦେଖି ଯାଉଥିବେ । ତା'ହେଲେ ଭାରତରେ କେହି ସନ୍ଦେହ କରିବେନି ତାରାର ସତୀତ୍ୱ ପ୍ରତି । ସେମାନଙ୍କର ଭାବୀ ସନ୍ତାନ ପ୍ରତି ଲୋକେ କିଛି ଅଲଗା ମନୋଭାବ ପୋଷଣ କରିବେନି ।

ଯେଉଁଦିନ ଗୀତାଦେବୀ ଓ ତାରାକୁ ଆମେରିକାରେ ରଖି ମିଷ୍ଟର ଅଗ୍ରୱାଲ ଭାରତ ଅଭିମୁଖେ ରମାନା ହେଲେ, ସେଦିନ ସ୍ୱାମୀଙ୍କୁ ବିଦାୟ ଦେଉ ଦେଉ ଗୀତାଦେବୀଙ୍କ ଆଖି ଛଳଛଳ ହୋଇ ଆସିଲା । ସ୍ତ୍ରୀଙ୍କ ଆଖି ଛଳଛଳ ଦେଖି ମିଷ୍ଟର ଅଗ୍ରୱାଲଙ୍କ ଆଖି ମଧ୍ୟ ଆର୍ଦ୍ର ହୋଇ ଆସିଲା । ତାରା ଅପୂର୍ବ ସ୍ୱାର୍ଥତ୍ୟାଗ ପ୍ରତି ଅନୁପ୍ରାଣିତ ହୋଇ ଦୁହେଁଯାକ ତା ପ୍ରତି କୃତଜ୍ଞ ହୋଇ ପଡ଼ିଥାନ୍ତି । ଭାବୁଥାନ୍ତି, କି ଉଦାର, କି ହୃଦୟବତୀ ତାରା, ସେମାନଙ୍କ ବଂଶରକ୍ଷା ପାଇଁ କି ସ୍ୱାର୍ଥତ୍ୟାଗ ନ କରୁଛି ସିଏ ? ସ୍ୱାମୀଙ୍କୁ ବିଦାୟ ଦେଉ ଦେଉ କହିଲେ, "ଏକଥା ଯେମିତି କେଉଁଠି ଭୁଲରେ ସୁଦ୍ଧା ପ୍ରକାଶ ନ କର । ଜାଣିଲେ ଆମ ଦେଶର ଲୋକେ ଆମକୁ ଛିଛିକାର କରିବେ । ଆସୁଥିବା ଆମର ଭବିଷ୍ୟତ ବଂଶଧର ପାଇଁ ଏହା ଏକ କଳଙ୍କ ହୋଇ ରହିବ । ଆମେ ଏଠି କେମିତି ରହିଛୁ, ଆମର ଅସୁବିଧା ହେବ କି କଅଣ, ଏହା ଭାବି ମୋଟେ ବ୍ୟସ୍ତ ହେବନି । ସୁବିଧା ଦେଖି ମଝିରେ ମଝିରେ ବୁଲି ଆସୁଥିବ । ଫୋନ୍‌ରେ ଆମ ସହିତ ସଦାସର୍ବଦା ସମ୍ପର୍କ ରଖିଥିବ । ଆମର ଯଦି କେଉଁଠି କିଛି ଅସୁବିଧା ହୁଏ, ତୁମକୁ ସଙ୍ଗେ ସଙ୍ଗେ ଫୋନ୍‌ରେ ଜଣାଇଦେବି । ମୁଁ ଯେତେବେଳେ ଏଠି ରହିଛି, ତାରାର କିଛି ଅସୁବିଧା ହେବନି ବୋଲି ଭାବୁଛି । ଯଦି କିଛି ଅସୁବିଧା ହୁଏ, ଡାକ୍ତର

ତ ଅଛନ୍ତି । ବେଶି କିଛି ଅସୁବିଧା ହେଲେ ତୁମକୁ ନିଶ୍ଚୟ ଜଣାଇବି । ଫୋନ୍ ତ ଅଛି, ଆଉ ଚିନ୍ତା କ'ଣ ? ଆମଠାରୁ ଫୋନ୍‌କଲ୍ ନ ପାଇଲା ପର୍ଯ୍ୟନ୍ତ ଭାବୁଥିବ ଯେ ଆମେ ଏଠି ଭଲରେ ଅଛୁ । କିଛି ଅସୁବିଧା ହେଉନି ଆମର ।''

ଅନାଉ ଅନାଉ ଦିନଗୁଡ଼ିକ କଟିଯିବାକୁ ଲାଗିଲା । ତାରାର ଚାହୁଁ ଚାହୁଁ ଆଠମାସ ହେବାକୁ ଆରମ୍ଭ କଲା । ତାରା ସାତମାସଠାରୁ ଏକ ଗର୍ଭଧାରିଣୀ ମହିଳାର ରୂପ ନେଇ ସାରିଲାଣି । ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାରାର ଯେଉଁସବୁ ଯତ୍ନ ନିଆଯିବା କଥା ସେସବୁ ଠିକ୍ ଭାବରେ ନିଆ ଚାଲିଛି । ତାରାର ଶରୀରରେ କୌଣସି କଷ୍ଟ ହେଲେ ଗୀତାଦେବୀ ଅନୁଭବ କରନ୍ତି ଯେମିତି ତାଙ୍କ ନିଜ ଦେହରେ କଷ୍ଟ ହେଉଛି ବୋଲି । ତାରାର ମନ ଯେମିତି ସଦାସର୍ବଦା ପ୍ରଫୁଲ୍ଲ ରହେ, ତାକୁ ନେଇ ବାହାରକୁ ବୁଲିଯିବା, ସିନେମା, ଥିଏଟର, ଭିଡିଓ ଆଦି ଦେଖାଇବାରେ କୌଣସି ହେଳା କରୁ ନ ଥାନ୍ତି ଗୀତାଦେବୀ । ଏହା ଭିତରେ ମିଷ୍ଟର ଅଗ୍ରୱାଲ ଦୁଇଥର ଆସି ସେମାନଙ୍କୁ ଦେଖି ଫେରିଗଲେଣି ।

ଆମେରିକାରେ ଦିନଗୁଡ଼ାକ ଆନନ୍ଦରେ କଟି ଯାଉଥାଏ । ହଠାତ୍ ଦିନେ ଗୀତାଦେବୀ ତାଙ୍କ ବାପାଙ୍କ ପାଖରୁ ଚିଠି ପାଇଲେ ଯେ ତାଙ୍କ ବାପା ଓ ଭାଇ ଏକ କାର୍ଯ୍ୟୋପଲକ୍ଷେ ୱାଶିଂଟନ୍ ଆସୁଛନ୍ତି । କାର୍ଯ୍ୟସାରି ଫେରିଲାବେଳେ, ସେମାନେ ନିଉୟର୍କରେ ଗୀତାଦେବୀଙ୍କୁ ଦେଖି ସାକ୍ଷାତ କରି ଯିବେ । ସେମାନଙ୍କ ଝିଅ ଏତେଦିନ ପରେ ଏତେ ଅସୁବିଧା ଭିତରେ ନିଜ ସନ୍ତାନର ମା ହେବାକୁ ଯାଉଛି, ଏଥିରେ ସେମାନଙ୍କ ଝିଅକୁ ବଧାଇ ନ ଦେଇ ସେମାନେ ଆମେରିକା ଛାଡ଼ିବେ କେମିତି ?

ବାପାଙ୍କ ପାଖରୁ ଚିଠି ପାଇ ଗୀତାଦେବୀ ଆନନ୍ଦିତା ହେବା ପରିବର୍ତ୍ତରେ ତାଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା ଭଳି ଅନୁଭବ କଲେ । ତାଙ୍କର ଚିନ୍ତା ହେଲା ତାଙ୍କ ବାପା ଭାଇ ତାଙ୍କୁ ଦେଖିଲେ ସବୁ ରହସ୍ୟ ତ ଉଦ୍‌ଘାଟିତ ହୋଇଯିବ । ସେମାନେ ଯେତେବେଳେ ଦେଖିବେ ଯେ ସେ ନିଜେ ଗର୍ଭବତୀ ନ ହୋଇ ତାରା ଗର୍ଭବତୀ ହୋଇଛି, ସେମାନେ ତ ତାରାକୁ ଅତି ହୀନଦୃଷ୍ଟିରେ ଦେଖିବେ । ଦେଶକୁ ଫେରିଯାଇ ସେମାନେ ତାରା ନାଁରେ ନାନାପ୍ରକାର କୁତ୍ସାରଟନା କରିବେ । ସେମାନେ 'ସରୋଗେଟ୍ ମା'ର ତାତ୍ପର୍ଯ୍ୟ ମୋଟେ ବୁଝିବେନି । ନିଜ ସ୍ୱାମୀଙ୍କ ଔରସରୁ ତାରା ଅନ୍ତଃସତ୍ତ୍ୱା ହୋଇଛି ବୋଲି କହି ତାଙ୍କ ଭବିଷ୍ୟତ ବଂଶଧରକୁ ଜାରଜ ସନ୍ତାନ କହି କେତେ କ'ଣ ଛିଛିକାର କରିବେ । ବଡ଼ ଚିନ୍ତା ହେଲା ଏଭଳି ପରିସ୍ଥିତିରେ ସେ ନିଜର ଓ ତାରାର ସମ୍ମାନକୁ ରକ୍ଷା କରିବେ କେମିତି ? ବହୁ ଚିନ୍ତାକରି ସେ ଠିକ୍ କଲେ ବାପା ଭାଇ ତାଙ୍କ ଘରକୁ ଆସିବା ପୂର୍ବରୁ

ସେ ନିଉୟର୍କର କୌଣସି. ପ୍ଲାଷ୍ଟିକ୍ ସର୍ଜନଙ୍କ ସହ କଥାବାର୍ତ୍ତା କରି ତାଙ୍କଠାରେ ଗର୍ଭବତୀ ସ୍ତ୍ରୀର ରୂପ ଆଣିବାକୁ ପଡ଼ିବ । ନ ହେଲେ ସେମାନଙ୍କ ସବୁ ଯୋଜନା ଫସର ଫାଟିଯିବ । ସେମାନେ ଯେତେ ସମୟ ତାଙ୍କ ଘରେ ରହିବେ, ତାରାକୁ ସେତେ ସମୟ ପାଇଁ ତାଙ୍କ ବାନ୍ଧବୀଙ୍କ ଘରକୁ ପଠାଇଦେବେ । ତାଙ୍କ ବାପା ଭାଇ ତାଙ୍କୁ ଦେଖିଗଲା ପରେ ତାରା ପୁଣି ତାଙ୍କ ଘରକୁ ଫେରି ଆସିବ । ତା ନ କରି ସେମାନେ ତାରାକୁ ଯଦି ଏଭଳି ଅବସ୍ଥାରେ ଦେଖନ୍ତି, ତେବେ ସେମାନେ ତାରା ନାଁରେ ଦେଶରେ ଯାଇ ନାନା କୁତ୍ସାରଟନା କରିବେ ଓ ସେମାନଙ୍କ ସନ୍ତାନକୁ ଜାରଜ ସନ୍ତାନ କହି ଭାବୀ ଉତ୍ତରାଧିକାରୀ ଭାବରେ ସ୍ୱୀକାର କରିବାକୁ ବାଧା ସୃଷ୍ଟି କରିବେ । ତାରାର ସନ୍ତାନ ଯେ ପ୍ରକୃତରେ ସେମାନଙ୍କ ସନ୍ତାନ ଯେତେ ବୁଝାଇଲେହେଁ ସେମାନେ କ'ଣ ବୁଝିବେ ? ଗୀତାଦେବୀଙ୍କର ବଡ଼ ଭୟ ତାଙ୍କ ବାପା ଭାଇ ତାଙ୍କୁ ଦେଖାକରି ସୁରୁଖୁରୁରେ ଚାଲିଯାନ୍ତୁ । ସେମାନଙ୍କ ଭିତିରି କଥା ଯେମିତି ସେମାନେ ନ ଜାଣନ୍ତୁ ।

ପ୍ଲାଷ୍ଟିକ୍‌ସର୍ଜନ୍ ତଥା ବିଉଟିସିଆନ୍ ମିସ୍ ସୁସାନ୍ ରିଚମଣ୍ଡ୍ ଯେଉଁଦିନ ଗୀତାଦେବୀଙ୍କ ଉଦର ଉପରେ ଏକ ପ୍ରକାର ଫୁଲିଲା ଫୁଲିଲା ସ୍ୱଚ୍ଛ ଓ ଡନ୍‌ଲୋପିଲୋ ରବର ବାନ୍ଧି ତାଙ୍କୁ ଗର୍ଭବତୀ ମହିଳାର ରୂପ ପ୍ରଦାନ କଲେ, ତାଙ୍କ ରୂପକୁ ଦେଖିଲେ ଯେ କେହି ଲୋକ ଧାରଣା କରିବ ସେ ପ୍ରକୃତରେ ଆଠମାସର ଗର୍ଭବତୀ ମହିଳା ବୋଲି । ଗର୍ଭବତୀ ମହିଳାମାନଙ୍କର ମୁଖ ଓ ଶରୀରରେ ଯେଉଁଭଳି ପରିବର୍ତ୍ତନ ଦେଖାଦିଏ ସେହିଭଳି ପରିବର୍ତ୍ତନ ତାଙ୍କ ମୁଖମଣ୍ଡଳ ଉପରେ ଆଣିବାକୁ ମିସ୍ ରିଚମଣ୍ଡ୍ ଭୁଲି ନ ଥାନ୍ତି । ମା'ଙ୍କର ଏଭଳି ରୂପ ପରିବର୍ତ୍ତନ ଦେଖି ତାରା ହସି ହସି ଗଡ଼ି ଯାଉଥାଏ । ତାରାକୁ ଏଭଳି ହସିବାର ଦେଖି ଗୀତାଦେବୀ ତାକୁ ସାବଧାନ କରାଇଦେଲେ ଏଭଳି ନ ହସିବା ପାଇଁ । ଏହିଭଳି ରୂପ ପରିବର୍ତ୍ତନର ଗୁରୁତ୍ୱ ଗୀତାଦେବୀ ତାରାକୁ ବୁଝାଇ ଦେଇଥାନ୍ତି ।

ଗୀତାଦେବୀଙ୍କ ବାପା ଭାଇ ଘରକୁ ଆସିବାର ଠିକ୍ ଅଧଘଣ୍ଟାଏ ପୂର୍ବରୁ ତାରାକୁ ଗୀତାଦେବୀଙ୍କ ବାନ୍ଧବୀ ମିସେସ୍ ଗୀତା ସେମୁରଙ୍କ ଘରକୁ ପଠାଇ ଦିଆଗଲା । ଡ୍ରାଇଭରକୁ କୁହାଗଲା ତାରା ଯେତେ ସମୟ ପର୍ଯ୍ୟନ୍ତ ସେମୁରଙ୍କ ଘରେ ରହିବ, ସେତେ ସମୟ ପର୍ଯ୍ୟନ୍ତ ସେ ସେଠି ଅପେକ୍ଷା କରି ରହିଥିବ । ତାଙ୍କଠାରୁ ଫୋନ୍‌କଲ୍ ପାଇଲେ ତାରାକୁ ଗାଡ଼ିରେ ନେଇ ପୁଣି ଘରକୁ ଫେରି ଆସିବ ।

ଠିକ୍ ସମୟରେ ବାପା ଭାଇ ନିଉୟର୍କରେ ଥିବା ତାଙ୍କ ବାସଭବନରେ ଆସି ପହଞ୍ଚିଗଲେ । ବାପା ଭାଇଙ୍କୁ ପାଛୋଟି ଆଣିବା ପାଇଁ ଦୁଆରମୁହଁକୁ ଗଲାବେଳକୁ

ଗୀତାଦେବୀଙ୍କ ବାପା ମିଷ୍ଟର ଗୋଏଙ୍କା ଝିଅକୁ ଏ ଅବସ୍ଥାରେ ଦେଖି ଦୁଆରମୁହଁକୁ ନ ଆସିବା ପାଇଁ ବାରଣ କଲେ ।

"ହାଁ, ହାଁ, ମା ଗୀତା, ତୁ ଏତେ କଷ୍ଟ କରି କ'ଣ ଆମକୁ ପାଛୋଟି ନେବାକୁ ଆସିଲୁ ? ତୁ ବିଶ୍ରାମ କର ମା । ତୋର ଏ ଅବସ୍ଥାରେ ଏତେ ଚଳପ୍ରଚଳ ହେବା କ'ଣ ଉଚିତ ? ଭଗବାନ କେମିତି ତୋତେ ଏ ବିପଦରୁ ଉଦ୍ଧାର କରନ୍ତୁ, ଭଗବାନଙ୍କଠାରେ ଆମର ଏତିକିମାତ୍ର ପ୍ରାର୍ଥନା ।"

ଏତକ କହି ଗର୍ଭବତୀ ଝିଅକୁ ନେଇ ଇଜିଚେୟାରରେ ବସାଇ ଦେଉ ଦେଉ କହିଲେ, "ତୋ ବୋଉ ଆମ ସହିତ ଆସିବାକୁ ଚାହୁଁଥିଲା ମା । ଆମର ତ ଏଠି ଏତେ କାମ ଯେ ସହର ସେ ସହର ହୋଇ ବୁଲାବୁଲି କରୁଛୁ । ତୋ ମା'କୁ ଆଣିଥିଲେ, ତାକୁ ସଙ୍ଗରେ ଧରି ଆମେ ଏପଟ ସେପଟ ହୁଅନ୍ତୁ କେମିତି ?"

"କାହିଁକି, ମା'କୁ ନେଇ ଆସିଥିଲେ, ମା'ତ ଏଠି ଥାଆନ୍ତା । ଆପଣଙ୍କ କାମ ସରିଥିଲେ ତାକୁ ଏଠାରୁ ନେଇ ଯାଇଥାଆନ୍ତେ ।" ଗୀତାଦେବୀ ସିନା ଉପରେ ଉପରେ ଏତେ କଥା କହୁଥିଲେ, ମନେ ମନେ ଶଙ୍କା ପାଇ ଯାଉଥିଲେ ଅପର୍ଯ୍ୟାପ୍ତ । ମା ଯଦି ଆସିଥାନ୍ତା, ତେବେ ସେମାନଙ୍କର ସମସ୍ତ ଭିତିରି କଥା ଜଣାପଡ଼ି ଯାଇଥାନ୍ତା । ତାରାକୁ ଦେଖି ସେମାନେ କେତେ କ'ଣ ଭାବି ଯାଇଥାନ୍ତେ । ଭଗବାନଙ୍କ ଦୟାରୁ ମା ନ ଆସିଛି ଭଲ ହୋଇଛି । ତାରା ଯେ ତାଙ୍କ ସନ୍ତାନର 'ସରୋଗେଟ୍ ମା', ସେ କ'ଣ ଏକଥା ନିଜ ମା'କୁ ବୁଝାଇ ପାରିଥାନ୍ତେ ? ଓଲଟି ସେ ଯାଇ ଦେଶରେ ପ୍ରଚାର କରିଥାନ୍ତା, ଜାରଜ ସନ୍ତାନ କଥା । ସବୁଦିନ ପାଇଁ ସେମାନଙ୍କ ସମ୍ମାନ ଭୂଲୁଣ୍ଠିତ ହୋଇଥାଆନ୍ତା । ଗୀତାଦେବୀ ମନେ ମନେ ଭାବୁଥାନ୍ତି ବାପା ଭଲ କରିଛନ୍ତି ମା'କୁ ସଙ୍ଗରେ ଆଣି ନାହାନ୍ତି ।

ଗୀତାଦେବୀ ବାପା ଭାଇଙ୍କୁ ଚା' ଜଳଖିଆରେ ଆପ୍ୟାୟିତ କରୁ କରୁ ମିଷ୍ଟର ଗୋଏଙ୍କା ପଚାରିଲେ, "ତାରାକୁ କ'ଣ ମୁଁ ଏଠି ଦେଖୁନି ମା । ତାରା ପରା ତୋଠାରେ ସଦାସର୍ବଦା ରହି ତୋ ସେବା ଶୁଶ୍ରୂଷା କରୁଥିଲା ? ତୋର ଏ ଅବସ୍ଥାରେ ତୋଠାରେ ସଦାସର୍ବଦା ଜଣେ ସ୍ତ୍ରୀଲୋକ ନ ରହିଲେ ତୁ କ'ଣ ଚଳି ପାରିବୁ ମା ? କାହିଁ, ତାରା ତ ଏଠି କେଉଁଠି ଦେଖାଯାଉନି ?"

"ନାଇଁ ବାପା, ମୁଁ ତାକୁ ମୋର ଜଣେ ସାଙ୍ଗ ଘରକୁ ପଠାଇଛି । ଛୋଟିଆ ପିଲାଟି ପାଇଁ ମୁଁ ଗୋଟିଏ ସ୍ୱେଟର ବୁଣିବା ପାଇଁ ବସିଛି ଯେ ସେ ସାଙ୍ଗଠାରୁ କେତୋଟି ପେଟର୍ଣ୍ଣ ଆଣିବାକୁ ତାକୁ ପଠାଇଛି । ଆମ ଗାଡ଼ିରେ ଯାଇଛି, ସାଙ୍ଗେ ସାଙ୍ଗେ ଆମରି ଗାଡ଼ିରେ ଫେରି ଆସିବ ।"

''ବାପା, ଆପଣ ଆଜି ଏଠି ଖାଇକରି ଯିବେ ତ ? ତାରା ବର୍ତ୍ତମାନ ଆସିଲେ ରାନ୍ଧିବ । ଆପଣ ଏଠି ଖାଇ ଉପରବେଳାକୁ ଗଲେ କ'ଣ ଚଳିବନି ?''

ଗୀତାଦେବୀ ସିନା ଉପରେ ଉପରେ ଏକଥା କହୁଥାନ୍ତି, ମନ ଭିତରେ ଶଙ୍କା ପାଇଯାଉଥାନ୍ତି, ବାପା ଯଦି ରାଜି ହୁଅନ୍ତି, ତେବେ ସର୍ବନାଶ ।

ମିଷ୍ଟର ଗୋଏଙ୍କା କହିଲେ, ''ନା, ମା, ଆମକୁ ବେଳ କାହିଁ ? ଆମକୁ ତ ବର୍ତ୍ତମାନ ସାନ୍‌ଫ୍ରାନ୍‌ସିସ୍କୋକୁ ପ୍ଲେନ୍ ଧରିବାକୁ ପଡ଼ିବ, ନିଉୟର୍କର କେନେଡ଼ି ଉଡ଼ାଜାହାଜ ଘାଟିରୁ । ଆମର ସେଠି ଦିନ ତିନିଟା ଭିତରେ ପହଞ୍ଚିବା ଦରକାର । ସେଠି କାମ ସାରି ଆଜି ରାତିରେ ପ୍ଲେନ୍ ଧରିବାକୁ ପଡ଼ିବ ଟୋକିଓକୁ । ଟୋକିଓରେ ଦିନଟାଏ ରହି ଭାରତ ଫେରିଯିବୁ । ଆମ ପ୍ରୋଗ୍ରାମ୍ ଏତେ ଟାଇଟ୍ ଯେ ଆମେ କ'ଣ ଏଠି ଆଉ ଅଧିକ ସମୟ ରହିପାରିବୁ ମା ? ତୋତେ ଯାହାହେଉ ଦେଖିଗଲୁ ସେତକ ଆମର ଯଥେଷ୍ଟ । ତୋତେ ଦେଖି ନ ଥିଲେ ତୋ ବୋଉ କେତେ ମନ କଷ୍ଟ ଯେ କରିଥାନ୍ତା ତା'ର ଇୟତ୍ତା ନାହିଁ । ତୋ ଡେଲିଭରୀ ବେଳକୁ ତୋ ମା'କୁ ଏଠାକୁ ପଠାଇଦେଲେ ତୋର ସୁବିଧା ହେବ ।''

''ନା, ବାପା, ମା'କୁ କାହିଁକି ପଠାଇବେ ? ଏଠି ତ ତାରା ଅଛି, କିଛି ଅସୁବିଧା ହେବନି । ସେ ତ ସବୁ ଚଳାଇ ନେଉଛି । ତାଛଡ଼ା ଏଠାକାର ନର୍ସ, ଧାଈ ସମସ୍ତେ ଅଛନ୍ତି । କିଛି ଅସୁବିଧା ହେବନି । ସେତେବେଳକୁ ଆପଣଙ୍କ ଜ୍ୱାଇଁ ତ ଆସି ଯାଇଥିବେ ।''

''ଯେତେହେଲେ ସେମାନେ ସମସ୍ତେ ଏ ଦେଶର ଲୋକ । ଆମ ଦେଶର ଲୋକ ଭିତରେ ତାରା ଏକୁଟିଆ । ତାରା କ'ଣ ଏକା ପାରିବ ? କାଳେ କିଛି ଅସୁବିଧା ହେବ । ତୋ ଭାଇ ସାଥିରେ ମା'କୁ ପଠାଇଦେଲେ ଅସୁବିଧା ତ ହୁଅନ୍ତାନି ।''

''ନାଇଁ ବାପା । ମା'କୁ ଏତେ କଷ୍ଟ ଦିଅନ୍ତୁନି । ଏଠି ମୋର କିଛି ଅସୁବିଧା ନାହିଁ । ଡେଲିଭରୀ ତ ଡାକ୍ତରଙ୍କ କ୍ଲିନିକ୍‌ରେ ହେବ । ସେଠି ତ ପୁଣି ତାଙ୍କ ନର୍ସ, କମ୍ପାଉଣ୍ଡରମାନେ ଅଛନ୍ତି । ମୋ ସାଥିରେ ତ ତାରା ଓ ଆମ ନର୍ସମାନେ ସବୁବେଳେ ରହିବେ । ପିଲା ହୋଇଯିବାର ଦଶ ପନ୍ଦରଦିନ ପରେ ତ ଆମେ ଦେଶକୁ ଫେରି ଯିବୁ । ଆମର ଏଠି କିଛି ଅସୁବିଧା ହେବନି ବାପା । ଆପଣ ବ୍ୟସ୍ତ ହୁଅନ୍ତୁନି । ମା'କୁ କହିଦେବେ ସେ ଯେମିତି ମୋ ପାଇଁ ବ୍ୟସ୍ତ ନ ହୁଏ । ମୁଁ ବେଶ୍ ଭଲରେ ଅଛି ବୋଲି କହିଦେବେ । ଭାରତକୁ ଫେରିଲେ ଦେଖା ହେବ ।''

"ତୋ ପିଲା ହେବା କଥା ଶୁଣି ତୋ ମା ଯେ କେତେ ଖୁସି ହେବ ଭାଷାରେ ବର୍ଣ୍ଣନା କରି ହେବନି ତ ମା । ମୁଁ ଆସିଲାବେଳେ ସେ ଗୋଡ଼ ଟେକି ରହିଥିଲା ମୋ ସହିତ ଆମେରିକା ଆସିବା ପାଇଁ ।"

"ହେଉ, ତୁ ଥା ଝିଅ । ଆମେ ଯାଉଛୁ । ପ୍ଲେନ୍ ଛାଡ଼ିବା ବେଳ ହୋଇଗଲାଣି । ତୋ ଭଲ ମନ୍ଦ କଥା ସବୁ ତୋ ମା'କୁ କହିବି । ସେ ତ ଅନାଇ ବସିଥିବ ତୋ କଥା ଶୁଣିବା ପାଇଁ । ତୁ ଯେ ଭଲରେ ଅଛୁ, ସେତକ ଶୁଣିଲେ ସେ କେତେ ଯେ ଖୁସି ହେବ ତା'ର କଳନା ନାହିଁ ।"

ବାପା ଚାଲିଗଲା ପରେ ଦୀର୍ଘ ନିଃଶ୍ୱାସ ପକାଇଲେ ଗୀତାଦେବୀ । ମନେ ମନେ ଭଗବାନଙ୍କୁ ଶତ ଧନ୍ୟବାଦ ଜଣାଇ ମନକୁମନ କହିଲେ, "କେତେବଡ଼ ବିପଦ କଟିଗଲା ସତେ ? "ବାପା ଯଦି ପ୍ରକୃତ କଥା ଜାଣିଥାନ୍ତେ, କେତେ କୁଘାଟଣା ହୋଇଥାନ୍ତା ଆମ ଦେଶରେ", ସେ ଆଉ ଭାବି ପାରିଲେନି । ଯାହାହେଉ, ଭଗବାନ ତାଙ୍କୁ ରକ୍ଷା କରି ଦେଇଛନ୍ତି । ଭଲରେ ଭଲରେ ବାପା ଫେରି ଯାଇଛନ୍ତି, ମୋ ସମ୍ବନ୍ଧରେ ଭଲ ଧାରଣା ନେଇ । ସେ ଯଦି ଭିତିରି କଥା ଜାଣି ଯାଇଥାନ୍ତେ, କେତେ ଖରାପ କଥା ହୋଇଥାନ୍ତା ସତେ ?"

× × × × ×

ଡାକ୍ତର ଯେଉଁ ତାରିଖ ଦେଇଥିଲେ, ଠିକ୍ ସେହିଦିନ ତାରାର ପ୍ରସବ ବେଦନା ଆରମ୍ଭ ହେଲା । ସେତେବେଳକୁ ମିଷ୍ଟର ଅଗ୍ରୱାଲ ଭାରତରୁ ଆମେରିକା ଫେରି ଆସିଲେଣି । ସଙ୍ଗେ ସଙ୍ଗେ ତାରାକୁ ନିଆଯାଇ ଡାକ୍ତରଙ୍କ କ୍ଲିନିକ୍‌ରେ ଏଡ୍‌ମିସନ କରାଇ ଦିଆଗଲା । ଏଥିପୂର୍ବରୁ ଡାକ୍ତର ମେକ୍‌ଡୋନାଲ୍‌ଡ ପ୍ରତି ପନ୍ଦର ଦିନରେ ଥରେ ଲେଖାଏଁ ତାରାକୁ ଓ ତାର ଗର୍ଭସ୍ଥ ଶିଶୁ ଠିକ୍ ଅଛି କି କଅଣ ପରୀକ୍ଷା କରି ଦେଖୁଥାନ୍ତି । ପ୍ରସବ ପର୍ଯ୍ୟନ୍ତ ତାରାର କି ଗର୍ଭସ୍ଥ ଶିଶୁର କିଛି ଅସୁବିଧା ହୋଇ ନ ଥାଏ । ଡାକ୍ତର ଥରକୁଥର ପରୀକ୍ଷା କରି ନିଜ ସନ୍ତୋଷତା ପ୍ରକାଶ କରୁଥାନ୍ତି । ପ୍ରସବବେଦନା ତିନି ଚାରିଘଣ୍ଟା ଚାଲିବାପରେ ତାରାର ସ୍ୱାଭାବିକ ରୀତିରେ ପୁଅଟିଏ ଜନ୍ମ ହେଲା । ପିଲାଟି ଦେଖିବାକୁ ଗୀତାଦେବୀଙ୍କ ଭଳି ଥପଥପ୍ ଗୋରା, ମୁଖର ଗଢ଼ଣ ଠିକ୍ ବାପାଙ୍କ ଭଳି । ପିଲାଟି ପୁଅ ହୋଇଥିବାରୁ ସ୍ୱାମୀ-ସ୍ତ୍ରୀଙ୍କ ମନ ଭାରି ଖୁସି । ତାରା ଯୋଗୁ ଆଜି ସେମାନେ ନିଜ ପୁଅର ପିତାମାତା ହୋଇ ପାରିଥିବାରୁ, ତାରା ପ୍ରତି ସେମାନେ ଅତ୍ୟନ୍ତ କୃତଜ୍ଞ ହୋଇ ପଡ଼ିଥାନ୍ତି । ପ୍ରସବପରେ ଗୀତାଦେବୀ ପିଲାଟିକୁ ଅତି ଯତ୍ନରେ ରଖାଇଥାନ୍ତି । ସାତଦିନ ପର୍ଯ୍ୟନ୍ତ ଦିନରାତି ଚବିଶି ଘଣ୍ଟା ନର୍ସମାନଙ୍କୁ ନିଯୁକ୍ତି ଦିଆଯାଇଥାଏ ପିଲାଟିକୁ ଦେଖାଚାହାଁ କରିବା ପାଇଁ । ତାରା କି ଗୀତାଦେବୀଙ୍କୁ ପିଲା ହେପାଜତ

କଥା ଜଣା ନ ଥାଏ । ନିଜ ଶାଶୁ କି ଯାଆ କେହି ପୁରୁଖା ଲୋକ ଏଠି ତ ନାହାନ୍ତି । ସେମାନଙ୍କୁ ପିଲାଟିର ଯତ୍ନ ନେବା କିଏ ଶିଖାଇବ ? ତାରା ପିଲାଟିକୁ ଜନ୍ମ ଦେବା ପରେ ପରେ ତାର ସ୍ତନ୍ୟରୁ ସ୍ୱାଭାବିକ ରୀତିରେ କ୍ଷୀର ଝରିଲା । ତେଣୁ ତାରା ପିଲାଟିକୁ ନିଜ ସ୍ତନ୍ୟରୁ କ୍ଷୀର ଖୁଆଇଲା । ତାରା ସ୍ତନ୍ୟରୁ କ୍ଷୀର ଝରିବା, ଏଣେ ଗୀତାଦେବୀଙ୍କ ସ୍ତନ୍ୟ ଶୁଷ୍କ ଦେଖି ବଡ଼ ଚିନ୍ତା ମୁଣ୍ଡରେ ପଶିଲା ସ୍ୱାମୀ-ସ୍ତ୍ରୀଙ୍କର । ଏହିଭଳି ରୀତିରେ ଭାରତକୁ ଫେରିଲେ ଲୋକେ କେତେ କ'ଣ ଭାବିବେ । ଭାରତରେ ଅନେକେ ସନ୍ଦେହ କରିବେ ପିଲାଟି ତାରାର, ଗୀତାର ନୁହେଁ । ତେଣୁ ଡାକ୍ତରଙ୍କୁ କହି ଔଷଧ ପ୍ରୟୋଗ କରି ତାରାର ଦୁଧ ଝରିବା ବନ୍ଦ କରାଗଲା । ଗୀତାଦେବୀଙ୍କ ସ୍ତନ୍ୟରୁ ଦୁଧ ନ ଝରିଲେ କିଛି ଯାଏ ଆସେ ନାହିଁ । କାରଣ ଆଜିକାଲି ଉଚ୍ଚ ସମାଜରେ ସ୍ତ୍ରୀଲୋକମାନେ ନିଜ ପିଲାକୁ ନିଜ ସ୍ତନ୍ୟରୁ କ୍ଷୀର ନ ଖୁଆଇ କ୍ଷୀର ଝରିବା ବନ୍ଦ କରି ଦେଉଛନ୍ତି । ଉଦ୍ଦେଶ୍ୟ ନିଜ ବକ୍ଷ ସୌନ୍ଦର୍ଯ୍ୟ ନଷ୍ଟ ହେବନି । ପିଲାଟି ପାଇଁ ମା କ୍ଷୀର ପରିବର୍ତ୍ତରେ ନାନା ପ୍ରକାର ଶିଶୁଖାଦ୍ୟର ବନ୍ଦୋବସ୍ତ କରାଉଛନ୍ତି, ଯାହାକୁ ପିଲା ମା'କ୍ଷୀର ବଦଳରେ ଖାଇ ବେଶ୍ ବଢ଼ି ପାରିବ ।

ପିଲାଟି ଏତେ ଗୁଲୁଗୁଲିଆ ହୋଇଥାଏ ଯେ ସ୍ୱାମୀ-ସ୍ତ୍ରୀ ଦୁହେଁ ତାକୁ ଦେଖୁ ଦେଖୁ ଆନନ୍ଦରେ ବିଭୋର ହୋଇ ପଡୁଥାନ୍ତି । ମିଷ୍ଟର ଅଗ୍ରୱାଲଙ୍କ ମୁଖର ଗଠନ ଆଣିଲେ କ'ଣ ହେବ, ଆଖି, କାନ, ନାକର ଗଢ଼ଣ ଗୀତାଦେବୀଙ୍କ ଅଙ୍ଗ ଭଳି । ଯେଉଁମାନେ ଗୀତାଦେବୀଙ୍କୁ ଦେଖିଛନ୍ତି, ସେମାନେ କହନ୍ତି ଗୀତାଦେବୀଙ୍କ ଆଖି ଓ ଚାହାଣି ଅତୀବ ସୁନ୍ଦର । ସେହି ଆଖି ହିଁ ତାଙ୍କୁ ସମସ୍ତଙ୍କ ଆଗରେ ଆକର୍ଷଣୀୟା କରି ତୋଳିଥାଏ । ଗୀତାଦେବୀଙ୍କ ପୂରାଆଖି ଯେମିତି ତୋଳି ଆଣିଛି ପିଲାଟି ।

× × × × ×

ଯେଉଁଦିନ ଆମେରିକାରୁ ନିଜ ଜନ୍ମିତ ପୁଅକୁ ଧରି ଗୀତାଦେବୀ ନିଜ ସ୍ୱାମୀ ଓ ପରିଚାରିକା ତାରା ସହ ନିଜ ଶିଳ୍ପନଗରୀକୁ ଫେରି ଆସିଲେ, ସେଦିନ ଶିଳ୍ପନଗରୀରେ ଯେଉଁ ଆନନ୍ଦମୁଖରିତ ଚହଳ ଖେଳିଗଲା ତାହା ଭାଷାରେ ବର୍ଣ୍ଣନା କରି ହେବନି । ବିଭିନ୍ନ କଳକାରଖାନାର ଇଞ୍ଜିନିଅର, ମେନେଜରଙ୍କଠାରୁ ଆରମ୍ଭ କରି ଶ୍ରମିକ ପର୍ଯ୍ୟନ୍ତ ସମସ୍ତେ ଦୌଡ଼ିଲେ ଶିଳ୍ପନଗରୀର ଭବିଷ୍ୟତ ମାଲିକ ନବାଗତ ଶିଶୁପୁତ୍ରଟିକୁ ସ୍ୱାଗତ ଜଣାଇବା ପାଇଁ । ବାସଭବନର ସମ୍ମୁଖ ଉଦ୍ୟାନ ପୂରାପୂରି ଲୋକାରଣ୍ୟ । ଗୀତାଦେବୀ ଶିଶୁପୁତ୍ରଟିକୁ କୋଳରେ ଧରି ଦୁଇତାଲା ବାରଣ୍ଡାରେ ଠିଆ ହୋଇ ଲୋକମାନଙ୍କଠାରୁ ଅଭିବାଦନ ଗ୍ରହଣ କରୁଥାନ୍ତି । ସାରା ନଗରୀଟିରେ

ସମସ୍ତେ ଖୁସି ଯେ ସେମାନଙ୍କ ଶିଳ୍ପସଂସ୍ଥାର ଭବିଷ୍ୟତ ମାଲିକ ଧରାପୃଷ୍ଠରେ ଜନ୍ମ ନେଇଛନ୍ତି । ଏହି ଶିଶୁଟି ଅଭାବରୁ ସେମାନଙ୍କ ପରୋପକାରୀ, ଶ୍ରମିକ ହିତୈଷୀ ମାଲିକ-ମାଲିକାଣୀ ଯେଉଁ ଚିନ୍ତାରେ ଦିନ କାଟୁଥିଲେ, ଯାହାହେଉ, ଭଗବାନଙ୍କ ଦୟାରୁ ତାହାର ଅବସାନ ହୋଇଛି । ଭଗବାନ ଏହି ପିଲାଟିକୁ ଦୀର୍ଘଜୀବୀ କରିଥାନ୍ତୁ, ସମସ୍ତଙ୍କର ଭଗବାନଙ୍କଠାରେ ମାଗୁଣି ।

ମାଲିକଙ୍କ ପୁଅ ହୋଇଛି ବୋଲି ଏକୋଇଶଦିନ ଧରି ନାନା ପୂଜା, ଅର୍ଚ୍ଚନା, ନାନା ଉତ୍ସବ, ନାନା ଦାନଖଇରାତ ଶିଳ୍ପନଗରୀରେ ଚାଲିଥାଏ । ଉତ୍ସବର ଶେଷ ଦିନ ଶିଳ୍ପନଗରୀର ସମସ୍ତଙ୍କୁ ଭୂରି ଭୂରି ଭୋଜନରେ ଆପ୍ୟାୟିତ କରାଗଲା । ସାରା ସହରଟି, ସେଥିରେ ଥିବା ବିଭିନ୍ନ କଳକାରଖାନା, ରାସ୍ତାଘାଟ ବିବିଧବର୍ଣ୍ଣର ଆଲୋକମାଳାରେ ସଜ୍ଜିତ ହୋଇଥାଏ । ପିଲାଟିକୁ ଆଶୀର୍ବାଦ କରିବା ପାଇଁ ନିଜ ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ, ସାଙ୍ଗସାଥି, ବ୍ୟବସାୟୀ, ପୁଞ୍ଜିପତି, ଶିଳ୍ପପତି କେତେ ଯେ ଆସିଥାନ୍ତି, ତା'ର କଳନା ନାହିଁ । ସମସ୍ତଙ୍କୁ ଭୂରି ଭୂରି ଭୋଜନରେ ଆପ୍ୟାୟିତ କରି ସ୍ୱାମୀ-ସ୍ତ୍ରୀ ଦୁହେଁ ବିଦାୟ ଦେଉ ଦେଉ ରାତି ବାରଟା । ପୂଜାବେଦୀ ଉପରେ ପିଲାଟିର ନାମ ରଖାଗଲା ରାମକିଷନ ।

## ଛଅ

"ଗୀତା", "ଗୀତା", ପଲଙ୍କ ଉପରୁ ଧୀରସ୍ୱରରେ ଡାକିଲେ ଦେବବାବୁ । ସେତେବେଳକୁ ଗୀତାଦେବୀ ପଲଙ୍କରୁ ଉଠିଯାଇ ସେହି ଘରେ ଛୁଆକୁ ଝୁଲଣାରେ ପକାଇ ଝୁଲାଉଥିଲେ । ସ୍ୱାମୀଙ୍କ ବେଦନାଭରା ଡାକରେ ଗୀତାଦେବୀଙ୍କ ଛାତି ଦାଉଁକିନା ହୋଇଗଲା । ସେ ପିଲାର ଦୋଳିକୁ ଛାଡ଼ିଦେଇ ସ୍ୱାମୀଙ୍କ ପାଖକୁ ଦୌଡ଼ି ଆସିଲେ ।

ସ୍ତ୍ରୀଙ୍କୁ ପାଖରେ ଦେଖି ଦେବବାବୁ କହିଲେ, "ମୋ ଦେହ ଆଜି ଭଲ ଲାଗୁନି ଗୀତା । ମୁଁ ଆଜି ଅଫିସ୍ ଯାଇପାରିବିନି । ତୁମେ ଆଜି ଦୁଇଟାଯାକ ଅଫିସ୍ ବୁଲିଦେଇ ଆସିବ । ଯଦି କେଉଁଠି କିଛି ଜରୁରି ଫାଇଲ ଥାଏ, ତେବେ ତାକୁ ଦେଖି ଅର୍ଡ଼ର ଦେଇ ଆସିବ । ମୋତେ ଆଜି ମୋଟେ ଭଲ ଲାଗୁନି । ମୁଁ ଟିକିଏ ଶୋଇ ରହେ ।"

ଗୀତାଦେବୀ ସ୍ୱାମୀଙ୍କର କ'ଣ ହେଲା ଭାବି ତାଙ୍କ ଦେହରେ ହାତ ବୁଲାଇ ଆଣୁ ଆଣୁ ଚମକିପଡ଼ି କହିଲେ, "ଆଁ, ତୁମ ଦେହରେ କ'ଣ ଏତେ ତାତି ?"

"ହଁ, ଗୀତା, ମୋତେ ଜ୍ୱର ହେଲାଭଳି ଲାଗୁଛି । ହାଡ଼ ମଧ୍ୟ ଭୟାନକ ଭାବରେ ବିନ୍ଧୁଛି ।"

"କେଉଁ ହାଡ଼ ?"

"ବାମହାତର ହାଡ଼ ।"

"ହାଡ଼ବିନ୍ଧା କ'ଣ ଆଜି ଆରମ୍ଭ ହୋଇଛି ?"

"ନା, ଗୀତା, କାଲି ସନ୍ଧ୍ୟାବେଳେ ଅଳ୍ପ ଅଳ୍ପ ବିନ୍ଧୁଥିଲା । ମୁଁ ଭାବିଲି କିଛି ନୁହେଁ । ବର୍ତ୍ତମାନ ଅତି ଜୋରରେ ବିନ୍ଧୁଛି, ଅସହ୍ୟ ଭାବରେ ।"

"ଆଁ, ଅସହ୍ୟ ଭାବରେ ?" ଗୀତାଦେବୀ ହାତକୁ ଆଉଁଶି ଦେଉ ଦେଉ ପଚାରିଲେ ।

"କାଲି ତ କହିଥିଲେ, ଡାକ୍ତରଙ୍କୁ ଡକାଇ ପାରିଥାନ୍ତେ ।"

"କାଲି ସନ୍ଧ୍ୟାବେଳେ ବିନ୍ଧାଟା ବିଶେଷ ଜଣାପଡୁ ନ ଥିଲା । ସେଥିପାଇଁ ଡାକ୍ତରଙ୍କୁ ଡାକିବା କଥା ମନେକଲିନି । ରାତି ଭିତରେ ଦେହଟା କେମିତି ବେଶୀ ବିଗିଡ଼ିଗଲା । କାଶିଲାବେଳକୁ କାହିଁକି କଷ୍ଟ ହେଉଛି । ଠିଆ ହେଲେ କାଳେ ଆହୁରି କଷ୍ଟ ହେବ, ସେହି ଭୟରେ ଠିଆ ହେଉନି ।"

"ଡାକ୍ତରଙ୍କୁ ଫୋନ୍ କରିବି ?"

"ନାଇଁ, ଏତେ ସକାଳୁ କାହିଁକି ? ମୁଁ ଦେଖେ ଯଦି ବେଶୀ କଷ୍ଟ ହେବ, ଡାକ୍ତରଙ୍କୁ ଫୋନ୍ କରିବ ।"

ଗୀତାଦେବୀ ସ୍ୱାମୀଙ୍କ ପାଖରେ ବସି ଦେହରେ ହାତ ବୁଲାଇଲେ । ଦେହରେ ତାତି ଥିବା ଦେଖି ବଡ଼ ବ୍ୟସ୍ତ ହୋଇପଡ଼ିଲେ । ହାତରେ ଯେଉଁଠି ବିନ୍ଧୁଥିଲା, ସେଠି ଫୁଲିଲାଭଳି ଜଣାପଡୁଥାଏ ।

ଏହି ସମୟରେ ଦୋଳିରେ ପୁଅ କାନ୍ଦି ଉଠିଲା । ଦେବବାବୁ ବ୍ୟସ୍ତ ହୋଇପଡ଼ି କହିଲେ, "ଦୋଳିରେ ପୁଅ କାନ୍ଦିଲା ଯେ ଗୀତା । ପୁଅକୁ କୋଳକୁ ନେଇ ତା କାନ୍ଦ ବନ୍ଦ କର ।"

ଗୀତାଦେବୀ ସଙ୍ଗେ ସଙ୍ଗେ ଦୋଳିଠାକୁ ଯାଇ ପୁଅକୁ କୋଳକୁ ନେଇ ଆସିଲେ । ପୁଅକୁ କୋଳରେ ଧରି ଦେବବାବୁଙ୍କ ପାଖରେ ବସି ପୁଅକୁ ଲକ୍ଷ୍ୟ କରି କହିଲେ, "ତୋ ବାପାଙ୍କୁ ଜ୍ୱର ହୋଇଛିରେ ବାବୁ । ତାଙ୍କୁ ଟିକିଏ ଆଉଁଶି ଦେଲୁ, ତାଙ୍କ ଜ୍ୱର ଭଲ ହୋଇଯିବ ।"

"ହାଁ, ହାଁ, ଏ କ'ଣ କରୁଛ ଗୀତା । ପୁଅକୁ ମୋ ନିକଟକୁ ମୋଟେ ଆଣନି । ମୋତେ ଯଦି କିଛି ସଂକ୍ରାମକ ଜ୍ୱର ହୋଇଥାଏ, ତେବେ ପୁଅକୁ ଡେଇଁବ ଯେ ?

ବେଳକୁବେଳ ଜ୍ୱର ଓ ହାତର ହାଡ଼ବିନ୍ଧା ବଢ଼ିବାକୁ ଲାଗିଲା । ଗୀତାଦେବୀ ଆଉ ଧୈର୍ଯ୍ୟ ଧରି ନ ପାରି ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ଫୋନ୍ କଲେ । ଡାକ୍ତର ଫୋନ୍‌କଲ୍ ପାଇ ଆସି ପହଞ୍ଚିଗଲେ । ଦେବବାବୁଙ୍କୁ ପରୀକ୍ଷା କରି ଜ୍ୱର କମିବାପାଇଁ ଔଷଧ ଦେଲେ । ହାତବିନ୍ଧା କମିବା ପାଇଁ କେତେକ ବେଦନାନାଶକ ଔଷଧ ଦେଇ ପୂର୍ଣ୍ଣ ବିଶ୍ରାମ ପାଇଁ ପରାମର୍ଶ ଦେଇ ବିଦାୟ ହୋଇଗଲେ । ଡାକ୍ତରଙ୍କ ଧାରଣା ଥଣ୍ଡାଜନିତ ଜ୍ୱର ସଙ୍ଗେ ହାଡ଼ର ବେଦନା ଥଣ୍ଡା ଯୋଗୁଁ ହୋଇପାରି ଥାଏ । ଥଣ୍ଡାର ଲକ୍ଷଣ ଉପରକୁ ବିଶେଷ ଭାବରେ ଜଣାପଡୁ ନ ଥିଲେ ହେଁ ଏହା ଥଣ୍ଡା ଛଡ଼ା ଅନ୍ୟ କିଛି ନୁହେଁ ବୋଲି ଡାକ୍ତରଙ୍କ ଧାରଣା ହେଲା । ମିଷ୍ଟର ଅଗ୍ରଓ୍ୱାଲଙ୍କ ସେବା ଶୁଶ୍ରୂଷା ପାଇଁ ସଙ୍ଗେ ସଙ୍ଗେ ହସ୍‌ପିଟାଲରୁ ନର୍ସକୁ ଡକାଇ ଆଣି ଘରେ ଛାଡ଼ି ଦେଇଗଲେ ।

× × × × ×

"ଦେଖ ନର୍ସ, ସାହେବଙ୍କ ଜ୍ୱର ଯଦି ବଢ଼ିଯାଏ, କି ହାତ ଆହୁରି ଜୋରରେ ବିନ୍ଧେ, ତେବେ ଡାକ୍ତରଙ୍କୁ ସଙ୍ଗେ ସଙ୍ଗେ ଫୋନ୍ କରି ଡକାଇ ଆଣିବ । ସାହେବଙ୍କର କିଛି ଅସୁବିଧା ହେଲେ ମୋତେ ଫୋନ୍ କରିବ ।" ଅଫିସ୍‌କୁ ଗଲାବେଳେ ଗୀତାଦେବୀ ନର୍ସକୁ ସତର୍କ କରି କହିଦେଇଗଲେ ।

"ହଁ, ମେଡ଼େମ୍, ସେଥିରେ ମୁଁ ହେଳା କରିବିନି ।"

ସ୍ୱାମୀଙ୍କୁ ଲକ୍ଷ୍ୟ କରି ଗୀତାଦେବୀ ପଚାରିଲେ, "ତୁମ ଅଫିସ୍‌ରେ କିଛି ଜରୁରି ଫାଇଲ ଅଛି ନା କଅଣ ? ମୋତେ କ'ଣ ତୁମ ଅଫିସ୍‌କୁ ଯିବାକୁ ପଡ଼ିବ ?"

"ନା, ମୋ ଟେବୁଲ ଉପରେ କିଛି ବାକିଆ ଫାଇଲ ନ ଥାଏ । ତେବେ ଏହା ଭିତରେ ଯଦି କିଛି ଆସି ଯାଇଥିବ, ତେବେ ତୁମେ ଅଫିସ୍‌ରୁ ଫେରିଲାବେଳେ ମୋ ଅଫିସ୍ ଦେଇ ଟିକିଏ ଚାଲି ଆସିବ । ଯଦି କିଛି ଜରୁରି ଫାଇଲ ଥାଏ, ତେବେ ସେକ୍ରେଟେରୀ ନିଶ୍ଚୟ ତୁମକୁ ଦେଖାଇବ । ଯଦି କିଛି ଅସୁବିଧା ନ ହୁଏ, ତେବେ ସଂପୃକ୍ତ ମେନେଜରଙ୍କୁ ଡକାଇ ତାଙ୍କ ସହ ଆଲୋଚନା କରି ଫାଇଲ ଉପରେ ଆବଶ୍ୟକୀୟ ଅର୍ଡ଼ର ଦେଇଦେବ । ମୋତେ ପଚାରିବା ଦରକାର ନାହିଁ ।"

ସେଦିନ ସନ୍ଧ୍ୟାବେଳକୁ ସ୍ୱାମୀଙ୍କ ଉତ୍ତାପ ଆହୁରି ବଢ଼ିଯିବାର ଦେଖି ଗୀତାଦେବୀ ଧୈର୍ଯ୍ୟ ଧରି ରହି ପାରିଲେନି । ଜ୍ୱର ସହିତ ହାଡ଼ ଭିତର ବିନ୍ଧା ସାଙ୍ଘାତିକ ଭାବରେ ବଢ଼ି ଯାଇଥାଏ । ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ଡକାଇ ଆଣି ଏ ସମ୍ପର୍କରେ

ଆଲୋଚନା କଲେ । ଡାକ୍ତରଙ୍କ ଚିକିତ୍ସାରେ କିଛି ଉପଶମ ନ ହେବାରୁ ବୋମ୍ବେର ବିଶେଷଜ୍ଞମାନେ ଡକା ହୋଇ ଆସିଲେ । ସେମାନେ ପ୍ରଥମେ ଥଣ୍ଡାଜନିତ ରୋଗ ବୋଲି ସନ୍ଦେହ କରି ଚିକିତ୍ସା କଲେ । କିନ୍ତୁ କିଛିଦିନ ପରେ ଫଳ ନ ହେବାରୁ ଟାଟା କେନ୍‌ସର ଇନ୍‌ଷ୍ଟିଚିଉଟର ବିଶେଷଜ୍ଞମାନଙ୍କ ସହ ପରାମର୍ଶ କରିବା ପାଇଁ ମତ ଦେଲେ ।

ଯେଉଁଦିନ ଟାଟା କେନ୍‌ସର ଇନ୍‌ଷ୍ଟିଚିଉଟର ବିଶେଷଜ୍ଞମାନେ ମିଷ୍ଟର ଅଗ୍ରୱାଲଙ୍କୁ ପରୀକ୍ଷା କରି ତାଙ୍କର ଅସ୍ଥିକର୍କଟ ରୋଗ ହୋଇଛି ବୋଲି ନିଦାନ ଦେଲେ ଓ ଏହା ସାଙ୍ଘାତିକ ଭାବରେ ବଢ଼ି ଯାଇଥିବାରୁ ତାଙ୍କ ଜୀବନରକ୍ଷା ଭାରତରେ ସମ୍ଭବ ନୁହେଁ ବୋଲି କହିଲେ, ସେଦିନ ଗୀତାଦେବୀଙ୍କ ମୁଣ୍ଡରେ ବଜ୍ର ପଡ଼ିଲାଭଳି ବୋଧ ହେଲା । ତେବେ ଡାକ୍ତରମାନଙ୍କ ଆଶ୍ୱାସନା, ସେ ଯଦି ରୋଗୀକୁ ସଙ୍ଗେ ସଙ୍ଗେ ଆମେରିକା ନେଇ ଯାଇପାରନ୍ତି, ତେବେ ସେଠା ଡାକ୍ତରମାନେ ତାଙ୍କୁ କିଛି ଉନ୍ନତ ଚିକିତ୍ସା ପ୍ରଣାଳୀର ସୁବିଧା ଦେଇ ପାରନ୍ତି, ଯାହାକୁ କି ଭାରତରେ ପାଇବା ସମ୍ଭବ ନୁହେଁ । ଏହା ଅସ୍ଥିକର୍କଟ ରୋଗର ଏକାଧିକ ବିଶେଷଜ୍ଞ ଆମେରିକାରେ ଥିବାରୁ ଓ ଏହି ରୋଗ ପାଇଁ ନାନା ନୂଆ ନୂଆ ଚିକିତ୍ସା ସେ ଦେଶରେ ପ୍ରଚଳିତ ଥିବାରୁ ସେଠାକୁ ରୋଗୀକୁ ନେବାଛଡ଼ା ଅନ୍ୟ ଗତି ନାହିଁ । ଏ ଦେଶରେ ଏ ରୋଗର ଉପଯୁକ୍ତ ଚିକିତ୍ସା ପାଇବା ସମ୍ଭବପର ନୁହେଁ । ଏଠି ରହିଲେ, ଖାଲି ରୋଗ ବଢ଼ିବ ସିନା କିଛି ଚିକିତ୍ସା ହୋଇ ପାରିବନି ।

ଗୀତାଦେବୀ ସ୍ୱାମୀଙ୍କର ଏ ଦାରୁଣ ବ୍ୟାଧି କଥା ଶୁଣିଲା ଦିନଠାରୁ ଖିଆପିଆ, କାମଦାମ ଛାଡ଼ି ଏକ ପ୍ରକାର ମୂକ ହୋଇ ବସି ଯାଇଥାନ୍ତି । କ'ଣ କରିବେ, କ'ଣ ନ କରିବେ ଭାବିପାରୁ ନ ଥାନ୍ତି । ଯେଉଁଠି ବସିଲେ ଖାଲି ଭକୁଆ ହୋଇ ଅନାଇ ରହିଥାନ୍ତି, ଜାଣିପାରୁ ନ ଥାନ୍ତି, ସେ କେଉଁଠି ବସିଛନ୍ତି, କାହିଁକି ବସିଛନ୍ତି । ମନ ଭିତରେ ଚିନ୍ତା, ସେ କାହାର କି ଅନିଷ୍ଟ କରିଥିଲେ, ଯାହାପାଇଁ କି ଭଗବାନ ତାଙ୍କୁ ଏଭଳି ଶାସ୍ତି ଦେଲେ । ଭାରତୀୟ ଡାକ୍ତରମାନେ ଯେତେବେଳେ ବଞ୍ଚିବାର ଆଶା ଦେଖୁ ନାହାନ୍ତି, ଆମେରିକାନ୍ ଡାକ୍ତରମାନେ କ'ଣ ତାଙ୍କ ସ୍ୱାମୀଙ୍କୁ ସତରେ ବଞ୍ଚାଇ ଦେଇପାରିବେ ? ଖାଲି ମୋତେ ପ୍ରବୋଧନା ଦେବା ପାଇଁ ଏଠା ଡାକ୍ତରମାନେ ଏମିତି କହୁ ନାହାନ୍ତି ତ ? ବିଶେଷଜ୍ଞମାନଙ୍କ ବାରମ୍ବାର ତାଗିଦ୍, ଆମେରିକା ନେବା ଯେମିତି ଡେରି ନ ହୁଏ । ଯାହା ବା କିଛି ଜୀବନର ଆଶା ଅଛି, ଡେରି ହେଲେ ସେତକ ବି ଚାଲି ଯାଇପାରେ ।

ଗୀତାଦେବୀ ଆଉ କାଳବିଳମ୍ବ ନ କରି ନିର୍ଦ୍ଧାରିତ ତାରିଖ ଅନୁସାରେ ସ୍ୱାମୀଙ୍କୁ ଧରି ଆମେରିକା ଅଭିମୁଖେ ଯିବାପାଇଁ ବନ୍ଦୋବସ୍ତ କଲେ । ଉଡ଼ାଜାହାଜ କୋମ୍ପାନୀକୁ ବରାଦ କରି ଟିକଟ ଆଦି କଟା ହୋଇଗଲା । ବର୍ଷକର ପୁଅକୁ ସାଙ୍ଗରେ

ନ ନେଇ ତାରା ପାଖରେ ଛାଡ଼ିଦେଇ ଯିବା ଠିକ୍ ହୋଇଥାଏ । ପିଲାଟି ତାରାକୁ ଯେମିତି ଭାବରେ ଆଦରି ଯାଇଛି, ସେଥିରେ ସେ ଛାଡ଼ି ଦେଇଗଲେ ପିଲାର କିଛି ଅସୁବିଧା ହେବନି ବୋଲି ତାଙ୍କର ବିଶ୍ୱାସ । ହେବ ବା କାହିଁକି, ତାରା ଯେତେବେଳେ ତାର ଜନ୍ମିତ ମା, ତାକୁ ନ ଆଦରିବ କେମିତି ? କେଡ଼େ ହତଭାଗିନୀ ସେ । ଏତେଦିନ ପରେ ପିଲାଟି ହେଲା, ପିଲାଟିର ବର୍ଷେ ନ ପୁରୁଣୁ ସ୍ୱାମୀଙ୍କର ଏତେବଡ଼ ବିପତ୍ତି । ସେ କ'ଣ ସତରେ ଆଉ ଭଲ ହୋଇ ଫେରିବେ ? ଭାରତୀୟ ଡାକ୍ତରମାନେ ଯେତେବେଳେ ନିଜର ଅକ୍ଷମତା ଜଣାଇ ରୋଗୀକୁ ଫେରାଇ ଦେଲେଣି, ଆମେରିକାନ୍ ଡାକ୍ତରମାନେ କ'ଣ ତାଙ୍କୁ ସତରେ ଭଲ କରିପାରିବେ ? ଭଗବାନ ହିଁ ତାଙ୍କର ଏକମାତ୍ର ସାହାଭରସା ।

× × × × ×

ମା'ଙ୍କୁ ଏ ଘର ସେ ଘର ଖୋଜି ଶୋଇବାଘରେ ପହଞ୍ଚିଲାବେଳକୁ ମା ତକିଆ ଉପରେ ମୁଣ୍ଡମାଡ଼ି କଇଁ କଇଁ କାନ୍ଦୁଥିବାର ଦେଖି ତାରାର ଆଖିରେ ଲୁହ ରହିଲାନି । ବାବୁଙ୍କ ଘରେ ବାବୁ ଖଟ ଉପରେ ଶୋଇ ରହିଛନ୍ତି, ନର୍ସ ତାଙ୍କୁ ପାଖ ଚେୟାରରେ ଜଗି ବସିଛି । ବାବୁ ବେଳେବେଳେ କଷ୍ଟରେ ଚିତ୍କାର କଲାବେଳକୁ ନର୍ସ କ'ଣ କରିବ ଭାବି ନ ପାରି ଇତସ୍ତତଃ ହେଉଛି ।

ମା'ଙ୍କୁ ମୁହଁମାଡ଼ି କାନ୍ଦୁଥିବାର ଦେଖି ତାରା ଆଖିରେ ଲୁହ ରହିପାରିଲାନି । ସେ ମଧ୍ୟ ମା'ଙ୍କ ଦୁଃଖରେ ମ୍ରିୟମାଣ ହୋଇ ସୁଁ ସୁଁ ହୋଇ କାନ୍ଦିବାକୁ ଆରମ୍ଭ କଲା । ମା'ଙ୍କୁ ଡାକିବ କି କଅଣ ଭାବି ନ ପାରି ସେଠି ଠିଆହୋଇ ରହିଲା । ତାରାକୁ ମୁହଁ ପାଖରେ ଠିଆ ହୋଇ କାନ୍ଦୁଥିବାର ଅନୁଭବ କରି ଗୀତାଦେବୀ ତକିଆରୁ ମୁଣ୍ଡ ଉଠାଇ ତାରା ଆଡ଼କୁ ଅନାଇ କାନ୍ଦ କାନ୍ଦ ସ୍ୱରରେ ପଚାରିଲେ, "କ'ଣ ମୋ'ଠି କିଛି କାମ ଅଛି ତାରା ? କ'ଣ ପାଇଁ ଆସିଲୁ ଯେ ? ବାବୁ ରୁମ୍‌କୁ ଯାଇଥିଲୁ ? ବାବୁ କେମିତି ଅଛନ୍ତି ?"

"ହଁ, ଯାଇଥିଲି ମା । ବାବୁ ଶୋଇଛନ୍ତି, ନର୍ସ ଜଗି ବସିଛି ।" କାନ୍ଦ କାନ୍ଦ ସ୍ୱରରେ ଉତ୍ତର ଦେଲା ତାରା ।

"ମୋ ଭଳି ଅଭାଗିନୀ ସାରା ଦୁନିଆରେ କେଉଁଠି ନ ଥିବ ତାରା । ଦୁଃଖ ପରେ ଦୁଃଖ କେତେ ଯେ ଦୁଃଖ ମୋ କପାଳରେ ଅଛି ଭାବିପାରୁନି । ଭଗବାନ ମୋ ପ୍ରତି ଏତେ ନିର୍ଦ୍ଦୟ କାହିଁକି, ମୁଁ ଜାଣିପାରୁନି ତାରା । ମୁଁ ତ କେବେ ମୋ ଜୀବନରେ କାହା ପ୍ରତି ଅନ୍ୟାୟ କରିନି, କି କାହା ମନରେ କେବେ ଦୁଃଖ ଦେଇନି । କ'ଣ ପାଇଁ ଭଗବାନଙ୍କର ମୋ ପ୍ରତି ଏଭଳି ଦଣ୍ଡବିଧାନ ? ବାବୁ ଯଦି ଭଲ ନ ହୋଇପାରିବେ, ମୁଁ କ'ଣ କେବେ ବଞ୍ଚିପାରିବି ତାରା ?"

"ଛି, ମା, ଆପଣ ଏମିତି କଥା ମୁହଁରେ ଆଣୁଛନ୍ତି ? ବହୁ ଅସାଧ ରୋଗ ତ ପୁଣି ଭଲ ହୋଇଯାଉଛି । ବାବୁଙ୍କର ଏ ରୋଗ ଏମିତି କ'ଣ ଯେ ଭଲ ହୋଇ ପାରିବନି ?"

"ଖାଲି ମନକୁ ସେହି କଥା କହି ଆଶ୍ୱାସନା ଦେବା ଛଡ଼ା ଆଉ କିଛି ଉପାୟ ନାହିଁ ତାରା ।"

"ମା, ମୁଁ କ'ଣ କହୁଥିଲି କି, କାଲି ମୁଁ ଆମ ପାଞ୍ଚନମ୍ବର ସେକ୍ଟରକୁ ଯାଇଥିଲି । ସେଠି ମୋର ଜଣେ ଦୂରସମ୍ପର୍କୀୟା ମାଉସୀ ଝିଅ ଭଉଣୀ ରହେ । ସେଠି ସମସ୍ତେ ବାବୁଙ୍କ ରୋଗ କଥା ଶୁଣି ବହୁତ ଦୁଃଖ କରୁଥିଲେ । ସେଇ ପଡ଼ାର ସମସ୍ତଙ୍କ ମୁହଁରେ ବାବୁଙ୍କ ରୋଗ କଥା । ବାବୁ କେମିତି ଭଲ ହୋଇଯାନ୍ତୁ, ସେମାନେ ସମସ୍ତେ ଦିନରାତି ଦେବଦେବୀଙ୍କୁ ଡାକୁଛନ୍ତି । ମୁଁ ସେଠି ଗୋଟିଏ କଥା ଶୁଣି ଆସିଲି ମା । ଆମ ଏହି ସହରଠାରୁ ସାତ ଆଠମାଇଲ ଦୂରରେ ସଦାଶିବପୁର ବୋଲି ଗୋଟିଏ ଗାଁ ଅଛି । ଗାଁଟି ଏକ ବଣ ଭିତରେ । ସେହି ବଣ ଭିତରେ ଗୋଟିଏ ମହାଦେବ ମନ୍ଦିର ଅଛି । ସେହି ମହାଦେବ ମନ୍ଦିର ପାଖ ଏକ କୁଡ଼ିଆ ଘରେ ଜଣେ ସିଦ୍ଧପୁରୁଷ ଏଇ କେତେଦିନ ହେଲା ଆସି ରହୁଛନ୍ତି । ସେ ଆଗେ ହିମାଳୟ ପର୍ବତରେ ତପସ୍ୟା କରୁଥିଲେ । ସେଠି ତାଙ୍କୁ ଦିନେ ଶୂନ୍ୟବାଣୀ ହେଲା, ତୁମେ ଯାଇ ଲୋକମାନଙ୍କର ରୋଗବଇରାଗ ଦୂର କରି ସେମାନଙ୍କର ସେବା କର । ସେହି ଶୂନ୍ୟବାଣୀ ନିର୍ଦ୍ଦେଶରେ ସେ ସେଠି ଆସି ରହୁଛନ୍ତି । ପ୍ରଥମେ ପ୍ରଥମେ କେହି ତାଙ୍କ କଥା ଜାଣି ନ ଥିଲେ । ତାଙ୍କର ଏଭଳି ଐଶୀଶକ୍ତି ଅଛି ଯେ ଯେଉଁ ରୋଗୀକୁ ଛୁଇଁ ଦେଉଛନ୍ତି, ତାହାର ରୋଗ ଭଲ ହୋଇ ଯାଉଛି । ଦିନକୁଦିନ ତାଙ୍କ ପ୍ରସିଦ୍ଧି ଏତେ ବଢ଼ିଲା ଯେ ବର୍ତ୍ତମାନ ସେଠି ଲୋକାରଣ୍ୟ । ବାବାଙ୍କ ଔଷଧ ପାଇବାଲାଗି ସେଠି ପ୍ରତିଦିନ ହଜାର ହଜାର ରୋଗୀ ଗୁଣ୍ଡ ହେଉଛନ୍ତି । ପ୍ରତିଦିନ ଶହ ଶହ ରୋଗୀ ଭଲ ହୋଇ ଫେରି ଯାଉଛନ୍ତି । ପୁଣି ନୂଆ ରୋଗୀ ଆସୁଛନ୍ତି । ଦୋକାନ, ବଜାର ଅସ୍ଥାୟୀ ଘର ଆଦିରେ ସେ ସ୍ଥାନଟି ଏକ ସହର ଭଳି ହସି ଉଠୁଛି । ପାଞ୍ଚନମ୍ବର ସେକ୍ଟରରେ ଜଣକର ପେଟମରା ରୋଗ ଥିଲା । ଆମ ଡାକ୍ତର ରୋଗ ଦେଖି ଅପରେସନ ହୋଇ ପାରିବନି କହି ଫେରାଇଦେଲେ । ସେ ସେଠି ଯାଇ ବାବାଙ୍କ ଆଶ୍ରାରେ ରହିଲା । ଏବେ ସେ ପୂରାପୂରି ଭଲ ହୋଇ ଘରକୁ ଫେରି ଆସିଛି । ମୋ ଭଉଣୀ ଘରଠାରୁ ଦୁଇଟି ଘର ଛାଡ଼ି ଗୋଟିଏ ଘରେ ଜଣେ ବୁଢ଼ା ଥିଲେ । ତାଙ୍କ ପାଟିରେ କର୍କଟ ରୋଗ ହୋଇଥିଲା । ବୋମ୍ବେ ଡାକ୍ତରଖାନା ମନା କରିଦେଲା, କହିଲା ରୋଗ ଢେର୍ ବଢ଼ିଗଲାଣି, ଭଲ ହେବା ସମ୍ଭବ

ନୁହେଁ । ସେ ଯାଇ ସେଠି ବାବାଙ୍କ ଆଶ୍ରାରେ ପଡ଼ି ରହିଲା । ଏବେ ସେ ପୂରାପୂରି ଭଲ ହୋଇ ଘରକୁ ଫେରି ଆସିଛି । ସେଠା ଆଉଜଣେ ରାମବାବୁଙ୍କ ପୁଅର ମଥା ଠିକ୍ ନ ଥିଲା । ସେ ପୂରାପୂରି ପାଗଳ ହୋଇ ଯାଇଥିଲା କହିଲେ ଚଳେ । ସେ ସେଠାରେ କିଛିଦିନ ରହି ପୂରାପୂରି ଭଲ ହୋଇ ଫେରି ଆସିଛି । ସେହି ପଡ଼ାରେ ଜଣେ ଗୋଦର ରୋଗୀ ପୂରାପୂରି ଭଲ ହୋଇ ଘରକୁ ଫେରି ଆସିଛି । ମୁଁ କ'ଣ କହୁଥିଲି କି ମା, ଆମ ବାବୁଙ୍କୁ ସେଠାକୁ ନେଲେ କ'ଣ ସେ ଭଲ ହୋଇ ପାରନ୍ତେନି ?''

ହସିଲେ ଗୀତାଦେବୀ, ଏକ ଶୁଷ୍କ ହସ । କହିଲେ, ''ତୁ ଯାଇ ଏତେ ଖବର କେତେବେଳେ ନେଇ ଆସିଲୁ ତାରା ? ତୁ କ'ଣ ସେହିସବୁ ରୋଗୀଙ୍କୁ ଦେଖିଛୁ ? ସେମାନେ ପୂରାପୂରି ଭଲ ହୋଇଛନ୍ତି କି ନାହିଁ, ତୁ ଜାଣିଛୁ ? ନା ଖାଲି ସେ ମାଇପି ମହଲରେ ବସି ଏକଥା ସେକଥା ଶୁଣି ଏଠିସବୁ ବଖାଣୁଛୁ ?''

''ନା, ମା, ମୁଁ କୌଣସି ରୋଗୀକୁ ଦେଖିନି । ମିଛ କାହିଁକି କହିବି ? ତେବେ ସେମାନେ ସବୁ ଦେଖିଛନ୍ତି ବୋଲି କହୁଥିଲେ । ସେସବୁ ରୋଗୀ ସେମାନଙ୍କ ଘର ପାଖର । ସେମାନେ ସବୁ ଏମିତି ଭାବରେ ଭଲ ହୋଇଛନ୍ତି ବୋଲି ଜାଣିଛନ୍ତି । ଆମ ବାବୁଙ୍କୁ ସେଠାକୁ ନେଇ ଥରେ ଚେଷ୍ଟା କଲେ କ'ଣ ହୁଅନ୍ତାନି ମା ? ମୁଁ ଶୁଣିଛି, ସେ ବାବା ରୋଗ ଭଲ କରିବା ପାଇଁ କାହା ଘରକୁ ଆସନ୍ତିନି । ଯେତେ ବଡ଼ଲୋକ ହେଲେବି ତାଙ୍କଠାକୁ ଯିବାକୁ ପଡ଼େ । ତା ନ ହୋଇଥିଲେ, ଆମେ ତାଙ୍କୁ ଆମ ଘରକୁ ଡକାଇ ଆଣନ୍ତେ ।''

''ମୋର ଯାହା ମନେପଡୁଛି ତାରା, ସେହି ସଦାଶିବ୍‌ପୁର ବାବାଙ୍କ ରୋଗ ଭଲ କରିବା କଥା ଖବରକାଗଜରେ ବାହାରିଥିଲା । ସେଠାକୁ ବହୁ ରୋଗୀ ଭଲ ହେବା ଆଶାରେ ଆସୁଛନ୍ତି ବୋଲି ଖବରରେ ଲେଖାଥିଲା ।''

''ହଁ, ମା, ଖାଲି କ'ଣ ଆମ ଦେଶରୁ ଆସୁଛନ୍ତି ? ବିଲାତ, ଆମେରିକାରୁ ପରା ରୋଗୀସବୁ ଏଠାକୁ ଆସୁଛନ୍ତି । ବାବାଙ୍କର ଐଶ୍ୱରିକ ଶକ୍ତି ଅଛି ବୋଲି ସେ ଦେଶମାନଙ୍କରେ ମଧ୍ୟ ପ୍ରଚାରିତ ହୋଇଛି । ବହୁ ଅସାଧ୍ୟ ରୋଗୀ, ଯେଉଁମାନେ ସେମାନଙ୍କ ଦେଶରେ ଭଲ ହୋଇ ପାରିଲେନି, ଏଠାକୁ ଭଲ ହେବା ଆଶାରେ ଆସୁଛନ୍ତି । ସେମାନଙ୍କ ରହିବା ପାଇଁ ଖୁବ୍ ମୂଲ୍ୟବାନ ଆଧୁନିକ ଧରଣର ଅସ୍ଥାୟୀ ଘରସବୁ ତିଆରି ହୋଇଛି ।''

''ହଁ, ତାରା, ବାବାଙ୍କ ଅଲୌକିକ ଶକ୍ତି ଥିବା କଥା ସେମାନଙ୍କ ଦେଶର ଖବରକାଗଜରେ ବାହାରିବା କଥା ଶୁଣିଛି । ହେଲେ, ମୋର କାହିଁକି ମୋଟେ

ବିଶ୍ୱାସ ଆସୁନି । ବାବୁଙ୍କୁ ଯେ ସେଠାକୁ ନେଲେ, ସେ ଭଲ ହୋଇପାରିବେ, ଏ ବିଶ୍ୱାସ ମୋର ନାହିଁ ।''

''କେତେ କର୍କଟରୋଗୀ ଯେତେବେଳେ ଭଲ ହେଉଛନ୍ତି, ଆମ ବାବୁ ଯେ କାହିଁକି ଭଲ ନ ହୋଇପାରିବେ, ମୁଁ ବୁଝିପାରୁନି ମା ?''

''ସେଭଳି ଅସାଧ ରୋଗୀ ପ୍ରକୃତରେ ଭଲ ହୋଇଛନ୍ତି କି ନାହିଁ ତୁ କ'ଣ ନିଧାର୍ଯ୍ୟ ଭାବରେ ଜାଣିଛୁ ? ବାବୁଙ୍କର ଯେତେବେଳେ ଆମେରିକା ଯିବା ଠିକ୍ ହୋଇ ସାରିଛି, ଆମେ ସେଆଡ଼କୁ ନ ନେଇ ବାବାଙ୍କଠାକୁ ନେବା ଉଚିତ ହେବନି । ସେଠାକୁ ନେଲେ ରୋଗ ଖାଲି ବଢ଼ିବ ସିନା, ଭଲ ହେବନି । ବାବା ଯେ ଏଭଳି ରୋଗୀକୁ ନିଜର କୌଣସି ଅଲୌକିକ ଶକ୍ତି ସାହାଯ୍ୟରେ ଭଲ କରିଦେବେ, ସେ ବିଶ୍ୱାସ ମୋର ନାହିଁ । ବାବା ହୁଅନ୍ତୁ ବା ସିଦ୍ଧପୁରୁଷ ହୁଅନ୍ତୁ, ସେ ସମସ୍ତେ ମଣିଷ । ମଣିଷ ଶକ୍ତିର ଏକ ସୀମା ଅଛି । ସେ ସୀମା ବାହାରକୁ ଯାଇ ମଣିଷ ଯେ କିଛି ଅସାଧ ବା ଅଲୌକିକ କାର୍ଯ୍ୟ କରି ପାରିବ, ସେଥିରେ ମୋର ଘୋର ସନ୍ଦେହ ରହିଛି । ଆମ ଦେଶର ଅଜ୍ଞ ଲୋକମାନଙ୍କୁ ଠକିବାର ଇଏ ଏକ ଫନ୍ଦି ନୁହେଁ ତ ?''

''ନା, ମା, ଆପଣ ସେମିତି କହନ୍ତୁନି । ଇଏ ଯେଉଁ ବାବା ନା, ସିଏ କାହାଠାରୁ ପଇସାଟିଏ ନିଅନ୍ତିନି । ଖାଲି ଏମିତି ଔଷଧ ବିନାମୂଲ୍ୟରେ ବିତରଣ କରନ୍ତି । ତାଙ୍କୁ ପରା ସେଆଡୁ ନିର୍ଦ୍ଦେଶ ଅଛି । ହଁ, ଏମିତି ଠକବାବା ଢେର୍ ଅଛନ୍ତି, ଲୋକମାନଙ୍କୁ ଦୈବୀଶକ୍ତି ନାଁରେ ଠକି ପଇସା ରୋଜଗାର କରନ୍ତି । ଏ ବାବା କିନ୍ତୁ ସେମିତି ନୁହନ୍ତି । ଏ ଜଣେ ପ୍ରକୃତରେ ସିଦ୍ଧପୁରୁଷ । ଇଏତ ସବୁବେଳେ ନିଜ କୁଡ଼ିଆ ଭିତରେ ଧ୍ୟାନରତ ଥାନ୍ତି । ମାତ୍ର ଦୁଇଘଣ୍ଟା ପାଇଁ ଔଷଧ ବିତରଣ କରିବାକୁ ଯାହା ବାହାରକୁ ଆସନ୍ତି । ତା'ପରେ ପୁଣି ସେହି କୁଡ଼ିଆ ଭିତରେ । ସେ ଅନ୍ୟମାନଙ୍କ ସହ ଖୁବ୍ କମ୍ କଥାବାର୍ତ୍ତା କରନ୍ତି । ସେଭଳି ସିଦ୍ଧ ପୁରୁଷ ଏ ଖଣ୍ଡମଣ୍ଡଳରେ ନ ଥିବେ ମା । ବାବୁଙ୍କୁ ସେଠାକୁ— ।''

''ନା, ନା, ତାରା, ବାବୁଙ୍କର ଆମେରିକା ଯିବା କଥା ଯେତେବେଳେ ସ୍ଥିର ହୋଇଯାଇଛି, ତାହାକୁ ଘୁଞ୍ଚାଇ ତାଙ୍କୁ ବାବାଙ୍କ ପାଖକୁ ନେବା ମୁଁ ଉଚିତ ମଣୁନାହିଁ । ଏଠାକାର ଡାକ୍ତରମାନେ ଆମକୁ ଯେଉଁ ପଥ ଅନୁସରଣ କରିବାକୁ କହୁଛନ୍ତି, ଆମର ତାହା ହିଁ ଅନୁସରଣ କରିବା ଉଚିତ । ଇଏ ହେଲା ବିଜ୍ଞାନର ଯୁଗ । ବୈଜ୍ଞାନିକ ପଦ୍ଧତିରେ ଆମେ ଅଗ୍ରସର ନ ହୋଇ ଅବୈଜ୍ଞାନିକ ପଦ୍ଧତିରେ ବାବା, ମା, କି ସିଦ୍ଧ ପୁରୁଷଙ୍କ ପଛରେ ଗୋଡ଼ାଇ ରୋଗକୁ ବଢ଼ାଇବାରେ ସାହାଯ୍ୟ କରିବା ଉଚିତ ନୁହେଁ ।''

× × × × ×

"ତାରା, ତାରା, ଶୁଣିଲୁ । ଆଜି ଖବରକାଗଜରେ କ'ଣ ବାହାରିଛି, ଶୁଣିଛୁ ? ସେହି ସଦାଶିବପୁର ବାବାଙ୍କ ବିଷୟରେ କେତେ କ'ଣ ବାହାରିଛି ଦେଖିଲୁଣି ? ପୋଲିସ୍ ସେ ବାବାଙ୍କୁ ଆରେଷ୍ଟ କରି ଜେଲରେ ନେଇ ରଖିଛି । ଯେଉଁମାନେ ସେଠି ବାବାଙ୍କୁ ରଖି ତାଙ୍କର ଐଶ୍ୱରିକ ଶକ୍ତି କଥା ପ୍ରଚାର କରୁଥିଲେ, ସେମାନେ ସମସ୍ତେ ଧରାପଡ଼ି ବାବାଙ୍କ ସହିତ ଜେଲରେ ଅଛନ୍ତି । ତୁ ଯେଉଁ ବାବାଙ୍କ କଥା କହୁଥିଲୁ, ସେ ପ୍ରକୃତରେ ବାବା ନୁହନ୍ତି । ସେ କେରଳର ଏକ ସଂସ୍କୃତଟୋଲର ପଣ୍ଡିତ । ଏଠାକାର କେତେକ ଟୋକା ସଲାସୁତର କରି ଏହି ନିରୀହ ପଣ୍ଡିତକୁ ଅର୍ଥଲୋଭ ଦେଖାଇ କେରଳରୁ ଆଣି ଏଠି ବାବା ବନେଇ ରଖିଥିଲେ । ସେମାନେ ତାକୁ ଶିଖାଇଥିଲେ କାହାରିକୁ କିଛି ନ କହି କେବଳ ଔଷଧ ବିତରଣ କରିବା ପାଇଁ । ଏହି ଟୋକାମାନେ ପଇସା ଖରଚ କରି ବିଭିନ୍ନ ଖବରକାଗଜରେ ବାବାଙ୍କ ପ୍ରସିଦ୍ଧି ପ୍ରଚାର କରାଇଥିଲେ । ଏହି ସ୍ଥାନକୁ ଲୋକମାନେ କେମିତି ଯା'ଆସ କରିବେ, ସେଥିପାଇଁ କାର୍, ବସ୍ ଆଦି ଚଳାଇଥିଲେ । ରୋଗୀମାନେ ଏଠି ରହିବା ପାଇଁ ଭିନ୍ନ ଭିନ୍ନ ଧରଣର ଅସ୍ଥାୟୀ ଘରସବୁ ତିଆରି କରିଥିଲେ । ଯେଉଁ ଧନୀ ରୋଗୀମାନେ ଏଠି ଚିକିତ୍ସା ପାଇଁ ରହୁଥିଲେ, ସେମାନଙ୍କ ଠାରୁ ମୋଟା ଆକାରରେ ଘରଭଡ଼ା ଓ ଅନ୍ୟାନ୍ୟ ଏହିମାନେ ନେଉଥିଲେ । ବାବାଙ୍କ ଔଷଧରେ ଜଣେ ସୁଦ୍ଧା ରୋଗୀ ଭଲ ନ ହୋଇଥିଲେ ମଧ୍ୟ, ଏମାନେ ରୋଗୀମାନଙ୍କୁ ଅଜସ୍ର ଅର୍ଥ ଦେଇ ସେମାନଙ୍କଠାରୁ ମିଥ୍ୟା ବିବୃତିମାନ ଲେଖାଇ ନେଉଥିଲେ । ଭଲ ନ ହୋଇଥିବା ରୋଗୀ ଭଲ ହୋଇଛି ବୋଲି ତାର ଫଟୋ ଉଠାଇ ଖବରକାଗଜମାନଙ୍କରେ ପ୍ରଚାର କରୁଥିଲେ । ଏହା କରିବା ଫଳରେ ବାବାଙ୍କ ପ୍ରସିଦ୍ଧି ହୁ ହୁ ହୋଇ ବଢ଼ିଗଲା । ଏହି ଅଞ୍ଚଳର ବିଶିଷ୍ଟ ଲୋକମାନଙ୍କୁ ଅର୍ଥ ଦେଇ ବାବାଙ୍କ ରୋଗ ଚିକିତ୍ସା ସପକ୍ଷରେ ମିଥ୍ୟା ବିବୃତିମାନ ଘେନି ଆସି ପ୍ରଚାର କରୁଥିଲେ । ଏହିସବୁ କାଣ୍ଡକାରଖାନା ମୂଳରେ ଥିଲେ ବିଜ୍‌ନୋର ଗାଁର ଶେଠ ଧନୀକଲାଲଙ୍କ ଦୁଇ ଛତରାପୁଅ । ସେମାନେ ଅମଣିଷ ହେବାରୁ ବାପ ସେମାନଙ୍କୁ ଘରୁ ବାହାର କରିଦେଲା ପରେ ସେମାନେ ଅନ୍ୟ ଧନ୍ଦା ନ ପାଇ ଆଉ କେତେକ ଟୋକାଙ୍କୁ ଭେଳାଇ ଏହି ଧନ୍ଦା କଲେ । ଏହି ଧନ୍ଦା ଫଳରେ ସେମାନେ ଲାଭ କରିଥିଲେ ଷାଠିଏଲକ୍ଷ ଟଙ୍କା । ପୋଲିସ୍ ସେ ସମସ୍ତଙ୍କୁ ଆରେଷ୍ଟ କରି ସେମାନଙ୍କର ସମସ୍ତ ଧନକୁ ବାଜ୍ୟାପ୍ତ କରି ନେଇଛି । ଧନୀକଲାଲଙ୍କ ପୁଅ ସମେତ ସାତ ଆଠଜଣ ଟୋକା ବର୍ତ୍ତମାନ ଜେଲରେ । ପଣ୍ଡିତଜଣକ ବିଚାରା ନିର୍ଦ୍ଦୋଷ, ହେଲେ ଅର୍ଥଲୋଭରେ ସେମାନଙ୍କ ପ୍ରରୋଚନାରେ ଆସି

ଏଠି ଏ ଦୁଃଖ ଭୋଗ କରୁଛି । ସେଠାକାର ଦୋକାନ, ବଜାର, ଅସ୍ଥାୟୀ ଘରସବୁ ଉଠାଇ ଦିଆଯାଇଛି । ଲୋକମାନେ ବିଭିନ୍ନ ଖବରକାଗଜ ସଂସ୍ଥାକୁ ଅର୍ଥ ଦେଇ ସମ୍ବାଦଦାତାମାନଙ୍କୁ ହାତ କରି ଅସାଧୁ ଉପାୟରେ ହଜାର ହଜାର ଗରିବଲୋକଙ୍କୁ ଶୋଷଣ କରି କେମିତି ବଡ଼ଲୋକ ହେବାର ଚେଷ୍ଟା କରନ୍ତି, ଏହା ହେଲା ତାହାର ଜ୍ୱଳନ୍ତ ପ୍ରମାଣ । ଖବରକାଗଜବାଲାଙ୍କୁ ହାତରେ ରଖିଲେ ମଣିଷ କ'ଣ ନ କରିପାରେ ? ସେମାନଙ୍କୁ ସାହାଯ୍ୟ ମିଳିଲେ, ମିଛକୁ ସତ, ସତକୁ ମିଛ କରିବା ଅସମ୍ଭବ ନୁହେଁ । ବଡ଼ ଦୁଃଖ, ସେହି ପଣ୍ଡିତଟି ପାଇଁ । 'ଲୋଭ ବିନାଶର କାରଣ' ସମ୍ବନ୍ଧୀୟ ଶହ ଶହ କାହାଣୀ ସଂସ୍କୃତ ସାହିତ୍ୟରେ ପଢ଼ି ମଧ ନିଜେ କେମିତି ଏହାର ଶିକାର ହେଲେ ତାହା ହିଁ ହେଉଛି ଆଶ୍ଚର୍ଯ୍ୟ । ନିଜର ବିଚାରବୁଦ୍ଧି ନ ଖଟାଇ ସେମାନଙ୍କ ହାତରେ ଏକ କ୍ରୀଡ଼ା ପୁତ୍ତଳିକା ପାଲଟିଥିବାରୁ ସେ ଏ କଷ୍ଟ ପାଇବେ ନାହିଁ ତ ଆଉ କିଏ ପାଇବ ? ରକ୍ଷା ହୋଇଛି ପୋଲିସ ସେମାନଙ୍କ ଷଡ଼ଯନ୍ତ୍ରର ଟେର୍ ଶୀଘ୍ର ପାଇଯାଇଛି, ତା ନ ହୋଇଥିଲେ ଆହୁରି କେତେ ନିରୀହ ସରଳବିଶ୍ୱାସୀ ଲୋକ ସେମାନଙ୍କ ଷଡ଼ଯନ୍ତ୍ରର ଯେ ଶିକାର ହୋଇଥାନ୍ତେ ତାର କଳନା ନାହିଁ ।''

ତାରା ମା'ଙ୍କ ମୁହଁରୁ ଏସବୁ କଥା ଶୁଣି ଲଜ୍ଜାରେ ମ୍ରିୟମାଣ ହୋଇ କେତେବେଳୁ ତଳକୁ ମୁହଁ ପୋତିଲାଣି ।

× × × × ×

ନିଉୟର୍କର ରକ୍‌ଫେଲର୍ କେନ୍‌ସର ଇନ୍‌ଷ୍ଟିଚିଉଟ୍ । ସାରା ପୃଥିବୀରେ ସବୁଠାରୁ ଦକ୍ଷ କେନ୍‌ସର ଇନ୍‌ଷ୍ଟିଚିଉଟ୍ ଭାବରେ ବିଶ୍ୱପ୍ରସିଦ୍ଧ । ଲୋକେ କହନ୍ତି ଜୀବନର ଆଶା ନ ଥିବା ବହୁ ରୋଗୀ ଏଠାକୁ ଚିକିତ୍ସା ପାଇଁ ଆସି ଭଲ ହୋଇ ଫେରନ୍ତି । ନିଜ ରହିଥିବା ହୋଟେଲ ଏଷ୍ଟୋରିଆଠାରୁ ବେଶିଦୂର ନ ହେଲେହେଁ ଗୀତାଦେବୀ ସ୍ୱାମୀଙ୍କୁ ଧରି ସଅଳ ସଅଳ ଇନ୍‌ଷ୍ଟିଚିଉଟ୍ ଅଭିମୁଖେ ବାହାରି ପଡ଼ିଲେ । ଭାରତରୁ ଥାଇ ଏଠା ଡାକ୍ତରଙ୍କ ସହ ଏପଏଣ୍ଟମେଣ୍ଟ କରା ହୋଇ ସାରିଥାଏ । ଇନ୍‌ଷ୍ଟିଚିଉଟ୍‌ରେ ପହଞ୍ଚିଲାକ୍ଷଣି ଡାକ୍ତରମାନେ ଚିହ୍ନିଲା ଲୋକଙ୍କ ଭଳି ଭିତରକୁ ପାଛୋଟି ନେଇଗଲେ । କାଳବିଳମ୍ବ ନ କରି ସଙ୍ଗେ ସଙ୍ଗେ ପରୀକ୍ଷା ଆରମ୍ଭ କରି ଦେଲେ । ସାଙ୍ଗରେ ନେଇଥିବା ଏକ୍‌ସରେ ଓ ଅନ୍ୟାନ୍ୟ ରିପୋର୍ଟଗୁଡ଼ିକରୁ ସେମାନେ ତନ୍ନ ତନ୍ନ ପରୀକ୍ଷା କରିବାରେ ଲାଗିଗଲେ । ରୋଗ ପରୀକ୍ଷା କରିବା ପାଇଁ କଂପ୍ୟୁଟରକୁ ମଧ ଲଗାଇ ଦିଆଗଲା । ସବୁ ପ୍ରକାର ପରୀକ୍ଷା ସରୁ ସରୁ ପ୍ରାୟ ଦିନ ଗୋଟାଏ ହୋଇଗଲା । ପରୀକ୍ଷା ସାରି ସେମାନେ ଯାହା ନିଦାନ ଦେଲେ, ସେଥିରେ ଗୀତାଦେବୀଙ୍କର ମୁଣ୍ଡ ଘୂରିଗଲା । ସେମାନଙ୍କ ନିଦାନ

ହେଲା ମିଷ୍ଟର ଅଗ୍ରୱାଲ ସାଙ୍ଘାତିକ ଓଷ୍ଟିଓସାରକୋମା ରୋଗରେ ଆକ୍ରାନ୍ତ । ରୋଗ ପ୍ରାରମ୍ଭିକ ଅବସ୍ଥାରୁ ଯଥେଷ୍ଟ ଆଗେଇ ଯାଇଛି । ଏହା ଶରୀରର ବହୁ ଅଂଶକୁ ବ୍ୟାପିଯାଇ ପ୍ରଧାନ ପ୍ରଧାନ ଅସ୍ଥିକୁ ପ୍ରାୟ ଆକ୍ରାନ୍ତ କରି ସାରିଲାଣି । ରେଡ଼ିଓ ଆଇସୋଟୋପ୍ ପରୀକ୍ଷା ଓ ସ୍କେନିଙ୍ଗ୍ ସାହାଯ୍ୟରେ ଯାହା ଜଣାପଡୁଛି ଏହା ହାଡ଼କୁ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଅକାମୀ ଅବସ୍ଥାକୁ ଘେନି ଆସିଲାଣି । ପରିସ୍ରା ଆଦି ପରୀକ୍ଷା ଓ ଅନ୍ୟ ପରୀକ୍ଷାରୁ ଯାହା ଜଣାପଡୁଛି ରୋଗ ସାଙ୍ଘାତିକ ଅବସ୍ଥାକୁ ଚାଲି ଆସିଲାଣି । ଅସ୍ତ୍ରୋପଚାର ଦ୍ୱାରା ଏହାକୁ ଚିକିତ୍ସା କରିବା ମଧ୍ୟ ସମ୍ଭବ ନୁହେଁ । ରଶ୍ମି ଚିକିତ୍ସା କି ଭେଷଜ ଚିକିତ୍ସା ବର୍ତ୍ତମାନ ସେତେ ସାହାଯ୍ୟକାରୀ ହେବନି । ତେବେ ସେମାନେ ଏହି କେତେଦିନ ଉପରୋକ୍ତ ଚିକିତ୍ସା କରି ଦେଖିବେ, ରୋଗର ଅଭିବୃଦ୍ଧିକୁ ବନ୍ଦ କରି ହେଉଛି କି ନାହିଁ । ଯଦି ରୋକି ନ ହୁଏ, ରୋଗୀକୁ ସେମାନଙ୍କ ପକ୍ଷରେ ବଞ୍ଚାଇବା ଅସମ୍ଭବ ହୋଇପଡ଼ିବ । ମିଷ୍ଟର ଅଗ୍ରୱାଲ ସାତଦିନ ପାଇଁ ସେମାନଙ୍କ ଚିକିତ୍ସାରେ ରହିବା ଠିକ୍ ହେଲା ।

ଠିକ୍ ସାତଦିନ ପରେ ଗୀତାଦେବୀ ଚିକିତ୍ସା କରୁଥିବା ଡାକ୍ତରମାନଙ୍କୁ ଭେଟିବା କଥା । ମନରେ ବଡ଼ ଉଦ୍‌ବେଗ, ଡାକ୍ତରମାନେ କ'ଣ କହିବେ । ଗତ ରାତିସାରା ଗୀତାଦେବୀ ସ୍ୱାମୀଙ୍କ ରୋଗଶଯ୍ୟା ନିକଟରେ ଥିଲେ । ରୋଗର ପ୍ରକୋପରେ ଯେ ଯେଉଁ ଚିତ୍କାର କରୁଥିଲେ, ତାହା ତାଙ୍କ ସ୍ମୃତିପଟରୁ ଲିଭିନି । ମୃତ୍ୟୁ ପାଇଁ କି ବିକଳ ଆର୍ତ୍ତନାଦ । "ହେ ଭଗବାନ, ମୋତେ ଆଉ ଏତେ କଷ୍ଟ ଦିଅନି । ମୋତେ ଏ ସଂସାରରୁ ଘେନିଯାଅ ପ୍ରଭୁ ।" ସ୍ୱାମୀଙ୍କ ଆର୍ତ୍ତନାଦ ମନରେ ପଡ଼ିଲାକ୍ଷଣି ଗୀତାଦେବୀଙ୍କ ଚକ୍ଷୁ ଲୋତକରେ ଭରି ଉଠୁଥାଏ । ଓଷ୍ଟିଓସାରକୋମା ଏତେ କଷ୍ଟଦାୟକ ରୋଗ ଯେ ରୋଗର ଯନ୍ତ୍ରଣା ସହ୍ୟ କରିବା ଅସମ୍ଭବ । ରୋଗ ଯନ୍ତ୍ରଣାରେ ସେ ବେଳେବେଳେ ଅଚେତ ହୋଇ ପଡୁଥିଲେ । ଯେତେବେଳେ ଚେତା ଫେରି ଆସୁଥାଏ, କଷ୍ଟ ପାଇଁ ଫେର୍ ସେହି ଡହଳବିକଳ । ଶେଷରେ ଅନ୍ୟ ଉପାୟ ନ ପାଇ ଡାକ୍ତରମାନେ ନିଶା ଔଷଧ ଦେଇ ରୋଗୀକୁ ଶୁଆଇ ପକାଇବାକୁ ବାଧ୍ୟ ହେଉଥିଲେ ।

ଗୀତାଦେବୀ ଇନ୍‌ଷ୍ଟିଚିଉଟ୍‌ରେ ପହଞ୍ଚିଲାବେଳକୁ ସ୍ୱାମୀଙ୍କର ନିଦ୍ରା ଛାଡ଼ି ନ ଥାଏ । ସେ ସେହିଭଳି ଶୋଇ ରହିଥାନ୍ତି । ଗୀତାଦେବୀ ସ୍ୱାମୀଙ୍କର ନିଦ୍ରିତ ମୁହଁକୁ ଅନାଇ କେତେ କ'ଣ ଭାବି ଚାଲିଥାନ୍ତି । କେଡ଼େ ହତଭାଗିନୀ ସେ । କେତେ ସୋହାଗରେ ସେ ସ୍ୱାମୀଙ୍କ ହାତ ଧରି ନ ଥିଲେ ସତେ । କିନ୍ତୁ ତାଙ୍କ ଭାଗ୍ୟରେ କ'ଣ ଏତେ ଦୁଃଖ ଲେଖା ଥିଲା ? କେତେ କଷ୍ଟରେ ସେ

ସନ୍ତାନଟିଏ ପାଇଲେ । ଭାବିଥିଲେ ସେତିକିରେ ତାଙ୍କ ଦୁଃଖ ଶେଷ ହେଲା ବୋଲି । ସନ୍ତାନଟିକୁ ବର୍ଷେ ହୋଇଛି କି ନାହିଁ ସ୍ୱାମୀଙ୍କର ଏ ଅବସ୍ଥା ? ଭଗବାନ ତାଙ୍କ ଭାଗ୍ୟରେ ଆଉ କେତେ ଦୁଃଖ ରଖିଛନ୍ତି କେଜାଣି ?

ଗୀତାଦେବୀ ଏମିତି ଭାବି ଚାଲିଛନ୍ତି, ହଠାତ୍ ଡାକ୍ତରମାନେ ପହଞ୍ଚିଗଲେ । ଗୀତାଦେବୀ ଉଠିପଡ଼ି ସେମାନଙ୍କୁ ନମସ୍କାର ଜଣାଇଲେ । ଡାକ୍ତରମାନେ ରୋଗୀକୁ ନିଦ୍ରାବସ୍ଥାରେ ନାନା ପରୀକ୍ଷା କରି ଚାଲିଲେ । ଶେଷରେ ରୋଗୀକୁ ସ୍କେନିଙ୍ଗ୍ ରୁମ୍‌କୁ ପଠାଇଦେବା ପାଇଁ କହି ଚାଲି ଯାଉଥିଲେ । ଚାଲି ଯାଉ ଯାଉ ଗୀତାଦେବୀଙ୍କ ଆଡ଼କୁ ଅନାଇ କହିଲେ, "ଦେଖନ୍ତୁ ମିସେସ୍ ଅଗ୍ରୱାଲ, ଆଜି ପରୀକ୍ଷାରେ ଜଣାପଡ଼ିଯିବ ଆମ ଚିକିତ୍ସାର ସଫଳତା କେତେଦୂର । ଆଜି ଜଣାପଡ଼ିଯିବ ଆମେ ମିଷ୍ଟର ଅଗ୍ରୱାଲଙ୍କ ଜୀବନରକ୍ଷା କରିପାରିବୁ କି ନାହିଁ ।"

ପରୀକ୍ଷା ସରୁ ସରୁ ପ୍ରାୟ ଦିନ ଦୁଇଟା ହୋଇଗଲା । ଗୀତାଦେବୀ ସେହିଭଳି ସ୍ୱାମୀଙ୍କ ଶୂନ୍ୟଖଟକୁ ଅନାଇ ବସିଥାନ୍ତି । ପ୍ରାୟ ଦୁଇଟାବେଳକୁ ରୋଗୀ ପରୀକ୍ଷାକକ୍ଷରୁ ନିଜ ଶଯ୍ୟାକୁ ଫେରି ଆସିଲା । ସେତେବେଳକୁ ମିଷ୍ଟର ଅଗ୍ରୱାଲଙ୍କ ଚେତା ଫେରି ଆସିଲାଣି । ରୋଗର କଷ୍ଟକୁ ଲାଘବ କରିବା ପାଇଁ ଡାକ୍ତରମାନେ ନାନା ପ୍ରକାର ଔଷଧ ଦେଇଥିଲେହେଁ ମିଷ୍ଟର ଅଗ୍ରୱାଲଙ୍କୁ ଯେ କଷ୍ଟ ନ ହେଉଥିଲା ତା ନୁହେଁ, ତାଙ୍କର ମୁଖର ବିକୃତିରୁ ଜଣାପଡୁଥାଏ, ସେ ରୋଗ ଯନ୍ତ୍ରଣାରୁ କେତେ କଷ୍ଟ ପାଉଛନ୍ତି ।

ସ୍ୱାମୀଙ୍କୁ ଶଯ୍ୟାରେ ଶୁଆଇଦେଲାକ୍ଷଣି ଗୀତାଦେବୀ ସ୍ୱାମୀଙ୍କୁ ପଚାରିଲେ, "ବହୁତ କଷ୍ଟ ହେଉଛି ବୋଧହୁଏ ? ତୁମ ପରୀକ୍ଷା ସରିଲାପରେ ଡାକ୍ତରମାନେ କିଛି ରିପୋର୍ଟ ଦେଇ ନାହାନ୍ତି । ତୁମେ ଶୋଇଥାଅ, ମୁଁ ସେମାନଙ୍କୁ ଦେଖାକରି ରିପୋର୍ଟଟା ଘେନି ଆସେ ।"

"ଓଃ, ବଡ଼ କଷ୍ଟ ହେଉଛି ଗୀତା । ଟିକିଏ ପାଣି ଦେଲ ପିଏ । କଷ୍ଟରୁ ତଣ୍ଟି ଶୁଖି ଯାଉଛି ।" ଗୀତାଦେବୀ ଗିଲାସରେ କିଛି ପାଣି ନେଇ ତାଙ୍କ ଓଠ ପାଖରେ ଧରିଲେ ।

ପାଣି ପିଉ ପିଉ ମିଷ୍ଟର ଅଗ୍ରୱାଲ ପଚାରିଲେ, "ତୁମେ କ'ଣ ଭାବୁଛ ଗୀତା, ମୁଁ ଭଲ ହୋଇପାରିବି ? ଏ ଯେଉଁ ସାଙ୍ଘାତିକ ରୋଗ, ଏଥିରୁ କେହି ଭଲ ହୁଅନ୍ତିନି । ଯେତେଦିନ ବଞ୍ଚିବି, ଖାଲି କଷ୍ଟ ପାଇବା ହିଁ ସାର ହେବ । ମୋର ଯେତେ ଶୀଘ୍ର ମୃତ୍ୟୁ ହୋଇଯାଏ ସେତେ ଭଲ । ଭଲ ତ ହୋଇ ପାରିବିନି, ଖାଲି ବଞ୍ଚି ରହି କଷ୍ଟ ପାଇ ଲାଭ କଅଣ ?"

"ଛି, ଛି, ତୁମେ ଏମିତି କଅଣ ସବୁ କହୁଛ ? ଏମିତି ଅଲକ୍ଷଣା କଥା କ'ଣ ତୁଣ୍ଡରେ ଆଣନ୍ତି ? ମୋର ବିଶ୍ୱାସ ତୁମେ ନିଶ୍ଚୟ ଭଲ ହୋଇଯିବ । ତୁମେ ଶୋଇଥାଅ, ମୁଁ ଡାକ୍ତରମାନଙ୍କୁ ଦେଖାକରି ଆସେ ।"

ଗୀତାଦେବୀ ଡାକ୍ତର ବାର୍ଗମେନ୍ଙ୍କ ଅଫିସ୍ ଭିତରକୁ ପଶିଛନ୍ତି କି ନାହିଁ, ବାର୍ଗମେନ୍ କହିଲେ, "ଆସନ୍ତୁ, ଆସନ୍ତୁ ମିସେସ୍ ଅଗ୍ରୱାଲ । ଆମେ ବର୍ତ୍ତମାନ ଆପଣଙ୍କୁ ଡକାଇଥାନ୍ତୁ । ଏହି ଗତ କେଇଦିନ ଚିକିତ୍ସା ପରେ ଆମେ ବର୍ତ୍ତମାନ ପରୀକ୍ଷା କରି ଯାହା ଦେଖୁଛୁ, ଆମେ ଚଳାଇଥିବା ଭେଷଜ ଚିକିତ୍ସା, ହର୍‌ମୋନ୍ ଚିକିତ୍ସା, ଏଣ୍ଟିଜେନ୍ ଚିକିତ୍ସା, ରଶ୍ମି ଚିକିତ୍ସା, କୌଣସିଟି ରୋଗର ଅଗ୍ରଗତିକୁ ଅଟକାଇବା ପାଇଁ କ୍ଷମ ନୁହେଁ । ଏହି ରୋଗ ଭେଷଜ ଚିକିତ୍ସାରେ ହିଁ ଭଲ ହେବ । କିନ୍ତୁ ସେ ଭେଷଜ ଏ ପର୍ଯ୍ୟନ୍ତ ବାହାରି ନାହିଁ । ତେବେ ଏ ପର୍ଯ୍ୟନ୍ତ ଏହି ରୋଗ ପାଇଁ ଯେଉଁ କେତେକ ଭେଷଜ ବାହାରିଛି, କୌଣସିଟି ଏତେ ଫଳପ୍ରଦ ହେଲାଭଳି ଆମକୁ ଜଣାପଡୁନି । ରୋଗର ଅଗ୍ରଗତିକୁ ଅଟକାଇବା ଆମ ପକ୍ଷରେ ଆଉ ସମ୍ଭବ ନୁହେଁ । ଆମେ ଯାହାଦେଖୁଛୁ, ରୋଗୀ ଆଉ ମାସେ ଦୁଇମାସରୁ ଅଧିକ ଦିନ ବଞ୍ଚିବା ଆଶା କମ୍ । ଆପଣ ଯଦି ଚାହାନ୍ତି, ରୋଗୀକୁ ଘରକୁ ଫେରାଇ ନେଇ ଯାଇପାରନ୍ତି ମିସେସ୍ ଅଗ୍ରୱାଲ ।"

କିଛି ସମୟ ପାଇଁ ନିସ୍ତବ୍ଧତା ଖେଳିଗଲା ସେହି କକ୍ଷରେ । ଗୀତାଦେବୀଙ୍କ ଚକ୍ଷୁ ଦୁଇଟି ଲୋତକପୂର୍ଣ୍ଣ । ତାଙ୍କୁ ଡାକ୍ତରମାନଙ୍କ ମୁଖ ପରିଷ୍କାର ଦିଶୁ ନ ଥାଏ । ହତାଶାରେ ତାଙ୍କ ମୁହଁ କଳାକାଠ ପଡ଼ିଗଲାଣି । ସେ ବର୍ତ୍ତମାନ କ'ଣ କରିବେ, ଭାବିପାରୁ ନ ଥାନ୍ତି ।

ସେମାନଙ୍କ ଭିତରୁ ଜନୈକ ଯୁବକ ଡାକ୍ତର କଥା ଆରମ୍ଭ କରି କହିଲେ, "ଦେଖନ୍ତୁ, ମିସେସ୍ ଅଗ୍ରୱାଲ, ମିଷ୍ଟର ଅଗ୍ରୱାଲଙ୍କୁ ବଞ୍ଚାଇବା ପାଇଁ ମାତ୍ର ଗୋଟିଏ ଉପାୟ ଅଛି । ଏହି ଉପାୟଟି କେତେଦୂର ଫଳପ୍ରଦ ହେବ ମୂଳରୁ କହି ହେବନି । ତେବେ ସେହି ଉପାୟଟି ଛଡ଼ା ତାଙ୍କୁ ବଞ୍ଚାଇବାର ଆଉ କୌଣସି ଉପାୟ ଆମଠାରେ ନାହିଁ ।"

ଏଇ କଥା କେଇପଦରେ ଗୀତାଦେବୀଙ୍କ ବିଷାଦଭରା ମୁଖମଣ୍ଡଳ ପୁଣି ଉଜ୍ଜ୍ୱଳ ହୋଇ ଉଠିଲା । ଫେନିଳ ପ୍ଲାବିତ ବନ୍ୟାଜଳରେ ଅସହାୟ ହୋଇ ଭାସି ଯାଉଥିବାବେଳେ କ୍ଷୀଣ କୁଟାଖିଅଟେ ପାଇଲେ ଜୀବନର ଆଶା ଯେମିତି ଉଜ୍ଜ୍ୱଳି ଉଠେ, ଏହା ଠିକ୍ ସେଇମିତି । ସେ ଉତ୍ସୁକ ହୋଇ ସେହି ଯୁବକ ଡାକ୍ତରଙ୍କ ଆଡ଼କୁ ଅନାଇ ରହିଲେ ।

ଯୁବକ ଡାକ୍ତରଜଣକ ଆରମ୍ଭ କଲେ, "ମିଷ୍ଟର ଅଗ୍ରଓ୍ୱାଲଙ୍କ ପାଇଁ ଔଷଧ ବର୍ତ୍ତମାନ ପାଇଁ ବାହାରିନି ବୋଲି ଯେ ସେ ନିଃସହାୟ ହୋଇ ମୃତ୍ୟୁବରଣ କରିବେ, ଆମେ ତାହା ଚାହୁଁ ନାହୁଁ । ବର୍ତ୍ତମାନ ପାଇଁ ହୁଏତ ଏହାର ଔଷଧ ନାହିଁ, କିଏ କହିପାରେ ଏହାର ଅବ୍ୟର୍ଥ ଔଷଧ ଆଉ ପଚିଶ ତିରିଶ ବର୍ଷ ଭିତରେ ନ ବାହାରିବ ବୋଲି । ଆମେ ଯଦି ରୋଗୀକୁ ସେତେଦିନ ପର୍ଯ୍ୟନ୍ତ ବଞ୍ଚାଇ ରଖି ପାରିବା, ତେବେ ସେ ସେତେବେଳେ ସେହି ନୂତନ ଔଷଧ ଦ୍ୱାରା ଚିକିତ୍ସିତ ହୋଇ ଭଲ ହୋଇପାରିବେ ନିଶ୍ଚୟ ।"

"କିନ୍ତୁ ରୋଗୀକୁ ସେତେଦିନ ପର୍ଯ୍ୟନ୍ତ ବଞ୍ଚାଇ ରଖିବେ କେମିତି ? ଆପଣମାନେ ପରା ବର୍ତ୍ତମାନ କହିଲେ, ରୋଗୀ ଆଉ ମାସେ ଦୁଇମାସରୁ ଅଧିକଦିନ ବଞ୍ଚି ରହିପାରିବନି ।"

ହସିଲେ ଯୁବକ ଡାକ୍ତର ଜଣକ । କହିଲେ, "ହଁ, ରୋଗୀକୁ ରଖି ହେବ ପଚିଶ ତିରିଶବର୍ଷ, କିନ୍ତୁ ସାଧାରଣ ଜୀବିତାବସ୍ଥାରେ ନୁହେଁ । ସେଥିପାଇଁ ଅଲଗା ବ୍ୟବସ୍ଥା କରିବାକୁ ପଡ଼ିବ । ସେହି ବ୍ୟବସ୍ଥା କଥା କହୁଛି ଶୁଣନ୍ତୁ । ମଣିଷର ମୃତ୍ୟୁ ମଣିଷଠାକୁ ଆସେ ପରପର ଦୁଇଟି ପର୍ଯ୍ୟାୟରେ । ପ୍ରଥମ ପର୍ଯ୍ୟାୟ ହେଉଛି ଲାକ୍ଷଣିକ ମୃତ୍ୟୁ ଓ ଦ୍ୱିତୀୟ ପର୍ଯ୍ୟାୟଟି ହେଉଛି ଜୈବିକ ମୃତ୍ୟୁ । ଏଥିଭିତରୁ ଜୈବିକ ମୃତ୍ୟୁ ହେଉଛି ପ୍ରକୃତ ମୃତ୍ୟୁ । ଲାକ୍ଷଣିକ ମୃତ୍ୟୁ ପ୍ରକୃତ ମୃତ୍ୟୁ ନୁହେଁ । ଲାକ୍ଷଣିକ ମୃତ୍ୟୁ ପ୍ରଥମେ ଆସେ, ତା'ପରେ ଆସେ ଜୈବିକ ମୃତ୍ୟୁ । ଲାକ୍ଷଣିକ ମୃତ୍ୟୁରେ ମୃତ୍ୟୁର ସବୁ ପ୍ରକାର ଲକ୍ଷଣ ପ୍ରକାଶ ପାଏ । ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଯାଇ ଦେହରେ ରକ୍ତ ଚଳାଚଳ ହୁଏନି । ମଣିଷର ନାଡ଼ି ଚାଲିବା ବନ୍ଦ ହୋଇଯାଏ । ନିଃଶ୍ୱାସ ପ୍ରଶ୍ୱାସ ଚାଲେନି । ଦେହ ଧୀରେ ଧୀରେ ଥଣ୍ଡା ହୋଇଯାଏ । ଆଖିଡୋଳା ସ୍ଥିର ହୋଇଯାଏ ।

ଏହି ମୃତ୍ୟୁର ପ୍ରାୟ ଦଶମିନିଟ୍ ପରେ ପ୍ରକୃତ ଜୈବିକ ମୃତ୍ୟୁ ଆସେ । ନିଃଶ୍ୱାସ ପ୍ରଶ୍ୱାସ ନ ନେବା ଫଳରେ ଅମ୍ଳଜାନ ରକ୍ତରେ ମସ୍ତିଷ୍କକୁ ଯାଇପାରେନି, ଫଳରେ ମସ୍ତିଷ୍କ ସମେତ ଶରୀରର ସମସ୍ତ ଜୀବନ୍ତକୋଷ ଅମ୍ଳଜାନ ଅଭାବରୁ ବିଘଟିତ ହେବାକୁ ଆରମ୍ଭ କରେ । ଶରୀରର କୋଷଗୁଡ଼ିକ ବିଘଟିତ ହେବାକୁ ଆରମ୍ଭ କଲେ ଆଉ ରକ୍ଷା ନାହିଁ । ଥରେ ଏହି ବିଘଟନ ପ୍ରକ୍ରିୟା ଆରମ୍ଭ ହୋଇଗଲେ ସେହି ପ୍ରକ୍ରିୟାକୁ ଆଉ ଅଟକାଇ ହୁଏନି । ମଣିଷର ପ୍ରକୃତ ମରଣ ସେତେବେଳେ ଯାଇ ଆସେ । ଲାକ୍ଷଣିକ ମୃତ୍ୟୁବେଳେ ମଣିଷର ପ୍ରକୃତ ମୃତ୍ୟୁ ହୋଇ ନ ଥାଏ । ଲାକ୍ଷଣିକ ମୃତ୍ୟୁ ପରେ ରୋଗୀକୁ ମଧ୍ୟ ପୁଣି ଜୀବନ୍ତ ଅବସ୍ଥାକୁ ଫେରାଇ ଅଣାଯାଇପାରେ । ଆମେରିକାରେ ବହୁ ଲୋକ ହୃଦ୍‌ସ୍ପନ୍ଦନ

ବନ୍ଦ ହେତୁ ମରିଯାନ୍ତି । କିନ୍ତୁ ମରିବାର ଦଶ ମିନିଟ୍ ଭିତରେ ବନ୍ଦ ହୋଇଥିବା ହୃଦ୍‌ଯନ୍ତ୍ରକୁ ଯଦି ପୁଣି କୌଣସି ଉପାୟରେ ଚଳାଇ ହୁଏ, ତେବେ ମରି ଯାଇଥିବା ଲୋକ ପୁଣି ବଞ୍ଚି ଉଠେ । ତେଣୁ ଲାକ୍ଷଣିକ ମୃତ୍ୟୁକୁ ପ୍ରକୃତ ମୃତ୍ୟୁବୋଲି ଧରାଯାଏନି । ଖାଲି ଆମ ଦେଶ କାହିଁକି, ପୃଥିବୀର ବହୁ ଦେଶରେ ରୋଗୀମାନେ ଲାକ୍ଷଣିକ ମୃତ୍ୟୁଲାଭ କରିବା ପରେ ପୁଣି ନିଜ ଜୀବନ ଫେରି ପାଇଛନ୍ତି ।

ଲାକ୍ଷଣିକ ମୃତ୍ୟୁ ଓ ଜୈବିକ ମୃତ୍ୟୁ ମଧ୍ୟରେ ଯେଉଁ ଦଶ ମିନିଟ୍ ସମୟ ବ୍ୟବଧାନ, ତାହା କେବଳ ଆମର ସାଧାରଣ ତାପକ୍ରମରେ । ଆମେ ଯଦି ତାପକ୍ରମକୁ କମାଇଦେବା, ତେବେ ସମୟ ବ୍ୟବଧାନ ବଢ଼ି ଯାଇପାରେ । କୌଣସି ରୋଗୀର ଲାକ୍ଷଣିକ ମୃତ୍ୟୁ ପରେ ଆମେ ଯଦି ତାକୁ ବରଫ ଭିତରେ ପୋତି ପକାଉ, ତେବେ ଜୈବିକ ମୃତ୍ୟୁ ଆସୁ ଆସୁ ଚବିଶ ଘଣ୍ଟା ଲାଗି ଯାଇପାରେ । ଆମେ ଯଦି ଶୁଷ୍କ ବରଫରେ ପୋତିଦେବା, ତେବେ ସମୟ ବ୍ୟବଧାନ ସପ୍ତାହେ ପାଖାପାଖି ହୋଇଯିବ । ଆମେ ଯଦି ରୋଗୀର ନିଶ୍ଚଳ ଶରୀରକୁ ତରଳ ଯବକ୍ଷାରଜାନ ଭିତରେ ରଖିଦେଉ, ତେବେ ବହୁବର୍ଷ ଧରି ରୋଗୀଠାକୁ ଜୈବିକ ମୃତ୍ୟୁ ଆସିବନି ।''

''ତେବେ ମୋ ସ୍ୱାମୀଙ୍କ ସମ୍ବନ୍ଧରେ ଆପଣ କ'ଣ କହିବାକୁ ଚାହୁଁଛନ୍ତି, ମୋତେ ସ୍ପଷ୍ଟ କରି କୁହନ୍ତୁ ।''

ବାର୍ଗମେନ୍ କହି ଚାଲିଲେ, ''ଆମେ ଭାବୁଛୁ ମିଷ୍ଟର ଅଗ୍ରୱାଲଙ୍କଠାରେ ରୋଗକୁ ଆଉ ଅଧିକ ବଢ଼ିବାକୁ ନ ଦେଇ ତାଙ୍କର ଲାକ୍ଷଣିକ ମୃତ୍ୟୁ କରାଇଦେବା ଉଚିତ । ତଦୁପରେ ଏକ ସ୍ୱତନ୍ତ୍ର ବାୟୁନିବଦ୍ଧ କେବିନ୍ ଭିତରେ ତାଙ୍କ ଶରୀରକୁ ରଖି ନିବୁଜ କରି ବରଫ ଭିତରେ ରଖି ଦିଆଯିବ । ତଦୁପରେ ସେହି ଶୁଷ୍କ ବରଫ ଭିତରେ ଥୋଇ ତାଙ୍କ କେବିନ୍‌ଟିକୁ ଉଡ଼ାଜାହାଜରେ କଲରାଡ଼ୋ ରାଜ୍ୟକୁ ନିଆଯିବ । ସେଠାରେ ଯେଉଁ ନିମ୍ନତାପ ବିଜ୍ଞାନାଗାର ଅଛି, ସେଠି ତାଙ୍କ ଶରୀର ଥିବା କେବିନ୍‌କୁ ଶୁଷ୍କ ବରଫ ଭିତରୁ ବାହାର କରି ତରଳ ଯବକ୍ଷାରଜାନ ଭିତରେ ରଖି ଦିଆଯିବ । ତରଳ ଯବକ୍ଷାରଜାନ ତାପକ୍ରମରେ ମିଷ୍ଟର ଅଗ୍ରୱାଲଙ୍କ ଶରୀର ଅକ୍ଷତ ଅବସ୍ଥାରେ ଷାଠିଏ ସତୁରିବର୍ଷ ପର୍ଯ୍ୟନ୍ତ ରହି ପାରିବ । ମିଷ୍ଟର ଅଗ୍ରୱାଲଙ୍କର ଲାକ୍ଷଣିକ ମୃତ୍ୟୁ ହୋଇଥିଲେହେଁ ତାହାକୁ ମୃତ୍ୟୁ ବୋଲି ନ ଭାବି ଏକ ପ୍ରକାର ହିମଶୟନ ବୋଲି ଧରିବାକୁ ପଡ଼ିବ । କାହିଁକି ନା ଯେକୌଣସି ମୁହୂର୍ତ୍ତରେ ଆମେ ତାଙ୍କୁ ସେଥିରୁ ବାହାର କରି ପୁଣି ଜୀବିତ ଅବସ୍ଥାକୁ ନେଇ ଆସି ପାରିବା । ଏହି ଷାଠିଏ ସତୁରି ବର୍ଷ ଭିତରେ ଏହି ରୋଗର ଅବ୍ୟର୍ଥ ଔଷଧ ବାହାରିଲେ, ସେଠାରୁ ତାଙ୍କ ଶରୀରକୁ ବାହାର କରି ପୁଣି ଜୀବନ୍ତ ଅବସ୍ଥାକୁ ଆଣି ଚିକିତ୍ସା

କରାଯିବ, ଯାହାଫଳରେ ସେ ଭଲ ହୋଇ ପୁଣି ନିଜ ସଂସାରକୁ ଫେରି ଆସି ପାରିବେ । ତା'ଛଡ଼ା ସଙ୍ଗେ ସଙ୍ଗେ ଲାକ୍ଷଣିକ ମୃତ୍ୟୁ କରାଇଦେଲେ ମିଷ୍ଟର ଅଗ୍ରୱାଲଙ୍କ ରୋଗ ଆଉ ପ୍ରସାରଲାଭ କରି ପାରିବନି । ରୋଗ ଯେଉଁଠି ଅଛି ସେଇଠି ହିଁ ରହିବ ।''

''ଆପଣ ଯାହା କହୁଛନ୍ତି ଡାକ୍ତର, ତାହା କେଉଁଠି ହେଲାଣି ନା ଆପଣ ଏକ କଳ୍ପନା ରାଜ୍ୟରେ ଭାସିଯାଇ ମୋତେ ସେଭଳି କହୁଛନ୍ତି । ଆପଣଙ୍କ ଯୋଜନା ମୋତେ ଏକ କଳ୍ପନାବିଳାସ ଭଳି ପ୍ରତୀୟମାନ ହେଉଛି । ବୈଜ୍ଞାନିକ ଉପନ୍ୟାସର ଏକ ସୁନ୍ଦର ଅଧ୍ୟାୟ ଭଳି ଯେ କେହି ଲୋକକୁ ବୋଧ ହେବ ।''

''ନା, ନା, ମିସେସ୍ ଅଗ୍ରୱାଲ । ଆପଣ ସେଭଳି ଭାବନ୍ତୁନି । ଆମେ ଯାହା କହୁଛୁ, ତାହା ମୋଟେ କାଳ୍ପନିକ ନୁହେଁ । ଆପଣ ଚାଲନ୍ତୁ, କଲରାଡ଼ୋ ରାଜ୍ୟର ସେହି ଫୋନିକ୍ସ ସହରକୁ । ସେଠା ନିମ୍ନତାପ ବିଜ୍ଞାନାଗାରରେ ଦେଖିବେ କେମିତି ରୋଗୀମାନେ ଲାକ୍ଷଣିକ ମୃତ୍ୟୁ ପରେ ତରଳ ଯବକ୍ଷାରଜାନ ଭିତରେ ରହି ନିଜ ଜୀବନ ଫେରି ପାଇବା ଆଶାରେ ଅପେକ୍ଷା କରି ରହିଛନ୍ତି । ମୋ ଜାଣିବାରେ ଅନ୍ୟୂନ ଛ' ସାତଜଣ ରୋଗୀ ସେଠି ଏଭଳି ଅବସ୍ଥାରେ ବର୍ତ୍ତମାନ ରହିଛନ୍ତି । ସେମାନଙ୍କ ପରିବାର ଜ୍ଞାତିକୁଟୁମ୍ବଙ୍କ ଆଶା ସେମାନଙ୍କ ପାଇଁ ଦିନେ ନା ଦିନେ ଅବ୍ୟର୍ଥ ଔଷଧ ବାହାରିବ । ସେମାନେ ସେହି ଔଷଧ ଦ୍ୱାରା ଚିକିତ୍ସିତ ତଥା ରୋଗମୁକ୍ତ ହୋଇ ନିଜ ନିଜ ସଂସାରକୁ ଫେରିଆସି ପାରିବେ । ଆମେ ଯଦି ମିଷ୍ଟର ଅଗ୍ରୱାଲଙ୍କୁ ସେଠି ରଖୁ, ଆପଣ ନିଜେ ଦେଖିବେନି ସେଠି ଅନ୍ୟମାନେ କେମିତି ଜୀବନ ଫେରି ପାଇବା ଆଶାରେ ପଡ଼ି ରହିଛନ୍ତି ।''

''ଏଥିରେ ଅସୁବିଧା କିଛି ନାହିଁ ତ ଡାକ୍ତର ? ଆପଣମାନଙ୍କର କ'ଣ ପୂରା ବିଶ୍ୱାସ ଏହି ପଦ୍ଧତିରେ ମୋ ସ୍ୱାମୀ ଦିନେ ନା ଦିନେ ରୋଗମୁକ୍ତ ହୋଇ ସଂସାରକୁ ଫେରି ଆସି ପାରିବେ ?

''ଆପଣ ସେ ବିଷୟରେ ନିଶ୍ଚିତ ରହନ୍ତୁ ମିସେସ୍ ଅଗ୍ରୱାଲ ।'' ବାର୍ଗମେନ୍ କହି ଚାଲିଲେ, ''ବିଜ୍ଞାନ ଯେତେବେଳେ ଏଠି ହାର୍ ମାନିଛି, ଆଉ କି ବ୍ୟବସ୍ଥା କରାଯାଇ ପାରିବ ଆପଣଙ୍କ ସ୍ୱାମୀକୁ ବଞ୍ଚାଇବା ପାଇଁ ? ଆପଣ ନିଶ୍ଚିତ ରହନ୍ତୁ, ଆଉ ପଚିଶ ତରିଶ ବର୍ଷ ଭିତରେ ଏହି ରୋଗର ଅବ୍ୟର୍ଥ ଔଷଧ ନିଶ୍ଚୟ ବାହାରି ପଡ଼ିବ । ସେତେବେଳେ ମିଷ୍ଟର ଅଗ୍ରୱାଲ ନିଶ୍ଚୟ ଭଲ ହୋଇ ନିଜ ସଂସାରକୁ ଫେରି ଆସି ପାରିବେ । ଲାକ୍ଷଣିକ ମୃତ୍ୟୁକୁ ଆପଣମାନେ ମୃତ୍ୟୁ ବୋଲି ଯେମିତି ନ ଭାବନ୍ତି । ଏହାକୁ ଦୀର୍ଘ ହିମଶୟନ ବୋଲି ଧରାଯାଇପାରେ । ମୃତ୍ୟୁ ପରେ ଯେମିତି ଅନ୍ତ୍ୟେଷ୍ଟିକ୍ରିୟା, ଶ୍ରାଦ୍ଧ, ତର୍ପଣ ଆଦି ଆପଣମାନଙ୍କର

ସମାଜରେ କରାଯାଏ, ଏଠାରେ ସେସବୁ କିଛି ହେବନି । ସଂଜ୍ଞାହୀନ ହୋଇ ରୋଗୀମାନେ କୋଡ଼ିଏ ପଚିଶ ବର୍ଷ ଯେମିତି ବଞ୍ଚି ରହୁଛନ୍ତି, ଏହା ପ୍ରାୟ ସେହିଭଳି । ତେବେ ତଫାତ୍ ହେଉଛି ସେମାନଙ୍କ ହୃଦ୍‌ଯନ୍ତ୍ର ଚାଲୁଥାଏ, ଏମାନଙ୍କ ହୃଦ୍‌ଯନ୍ତ୍ରକୁ ବନ୍ଦ କରି ଦିଆଯାଇଛି । ଉଭୟ କ୍ଷେତ୍ରରେ ଶରୀରର ବିକୃତି ଘଟିବ ନାହିଁ, ଉଭୟେ ଯେକୌଣସି ମୁହୂର୍ତ୍ତରେ ଜୀବନ ଫେରି ପାଇ ପାରନ୍ତି ।''

''ତଥାପି ବି ଡାକ୍ତର, ଆପଣମାନଙ୍କ କଥାରେ ମୋ ମନ କେମିତି ମୋଟେ ମାନୁ ନାହିଁ । ମୋତେ ଯେମିତି ଜଣାପଡୁଛି ଆପଣମାନେ ଏକ କଳ୍ପନା ପଛରେ ଗୋଡ଼ାଇଛନ୍ତି । ବାସ୍ତବତା ଆପଣମାନଙ୍କଠାରୁ ଦୂରକୁ ଦୂରକୁ ଚାଲି ଯାଉଛି ।''

''ଆପଣ ସେଭଳି ଭାବନ୍ତୁନି ମିସେସ୍ ଅଗ୍ରୱାଲ । ଆପଣ ଜାଣିଛନ୍ତି, ଆମ ଦେଶର ବହୁ ଦୁର୍ଦ୍ଧର୍ଷ ରୋଗ ଚିକିତ୍ସା ପାଇଁ ଏହି ଯେଉଁ ନୂତନ ଚିକିତ୍ସା ପ୍ରଣାଳୀଟି ବାହାରିଛି ତାହାର ପ୍ରବର୍ତ୍ତକ କିଏ ?''

ଗୀତାଦେବୀ ଉତ୍ସୁକ ହୋଇ ଅନାଇ ରହିଲେ ।

''ଏହି ନୂଆ ପ୍ରଣାଳୀର ପ୍ରବର୍ତ୍ତକ ହେଉଛନ୍ତି ଆମେରିକାରେ ବାସ କରୁଥିବା ଜଣେ ଭାରତୀୟ ଡାକ୍ତର । ତାଙ୍କ ନାଁ ହେଉଛି ଡକ୍ଟର ଅତନୁ କୁମାର ପଟ୍ଟନାୟକ । ସେ ଜଣେ ଭାରତୀୟ ହେଲେହେଁ ତାଙ୍କର ଜନ୍ମ, ଶିକ୍ଷା, ଦୀକ୍ଷା ସବୁ ଏହି ଦେଶରେ । ସେ ବର୍ତ୍ତମାନ ଏଠାରୁ ଅଳ୍ପଦୂର ନିଉଜେର୍‌ସିସ୍ଥ କ୍ରାଏସ୍‌ଲର କେନ୍‌ସର ଅନୁଷ୍ଠାନର ନିର୍ଦ୍ଦେଶକ । ସେ ତାଙ୍କ ମା'ଙ୍କୁ ଏହି ଉପାୟରେ ସାଙ୍ଘାତିକ ଫୁସ୍‌ଫୁସ୍ କର୍କଟ ରୋଗରୁ ଭଲ କରି ପାରିଥିଲେ । ସେହିଦିନଠାରୁ ଆମ ଦେଶର ଚିକିତ୍ସା ପ୍ରଣାଳୀରେ ଏହି ନୂତନ ପଦ୍ଧତିଟି ଗୃହୀତ ହୋଇ ଆସିଛି । ସେ ତାଙ୍କର ଏହି ଅଭିନବ ଚିକିତ୍ସା ପ୍ରଣାଳୀ ଦ୍ୱାରା ଆମ ସମସ୍ତଙ୍କ ଆଖି ଖୋଲି ଦେଇଛନ୍ତି । ଆପଣ ଯଦି ତାଙ୍କଠାକୁ ଯାଇ ଏହି ବ୍ୟବସ୍ଥା ସହିତ ପୁଙ୍ଖାନୁପୁଙ୍ଖ ଆଲୋଚନା କରନ୍ତେ, ତେବେ ଆପଣଙ୍କ ସଂଶୟ ଦୂର ହୋଇପାରନ୍ତା । ଯେହେତୁ ସେ ଜଣେ ଭାରତୀୟ, ତାଙ୍କୁ ସାକ୍ଷାତ କରିବାରେ ଆପଣଙ୍କର କିଛି ଅସୁବିଧା ହେବନି ବୋଲି ଭାବୁଛି ।''

''ଆଁ, ଏଠି ଜଣେ ଭାରତୀୟ ଡାକ୍ତର ଏତେ ନାଁ କରିଛନ୍ତି ? ଏଇ ଯୁଗାନ୍ତକାରୀ ପଦ୍ଧତିର ପ୍ରଚଳକ ହେଉଛନ୍ତି ସିଏ ? ତା'ହେଲେ ତାଙ୍କୁ ମୋର ସାକ୍ଷାତ କରିବା ଏକାନ୍ତ ଉଚିତ । ଯେହେତୁ ସେ ଜଣେ ଭାରତୀୟ, ଆଉଜଣେ ଭାରତୀୟଙ୍କୁ ସେ ନିଶ୍ଚୟ ସହାନୁଭୂତି ଦେଖାଇବେ ।'' ମନେ ମନେ ଗୀତାଦେବୀ କହିଚାଲିଲେ ।

× × × × ×

"ନାଇଁ, ମିସେସ୍ ଅଗ୍ରୱାଲ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଡାକ୍ତର ବାର୍ଗମେନ୍ ଓ ତାଙ୍କର ସହକର୍ମୀମାନେ ଯେଉଁ ପଦ୍ଧତିରେ ଆପଣଙ୍କ ସ୍ୱାମୀଙ୍କୁ ରୋଗମୁକ୍ତ କରିବାକୁ ଚାହୁଁଛନ୍ତି, ସେହି ପଦ୍ଧତି ଆପଣଙ୍କ ସ୍ୱାମୀଙ୍କ ପାଇଁ ଏକାନ୍ତ ଉପଯୁକ୍ତ । ଏହି ପଦ୍ଧତିର ସାହାଯ୍ୟ ନେଇ କିଛିବର୍ଷ ତଳେ ମୁଁ ମୋ ମା'ଙ୍କୁ ଭଲ କରି ପାରିଥିଲି । ମୋ ମା'ଙ୍କର ଯେଉଁ ଫୁସ୍‌ଫୁସ୍ କର୍କଟ ରୋଗ ହୋଇଥିଲା, ସେତେବେଳେ ସେହି କର୍କଟରୋଗର କୌଣସି ଅବ୍ୟର୍ଥ ଔଷଧ ବାହାରି ନ ଥିଲା । ବହୁ କର୍କଟରୋଗୀଙ୍କୁ ମୁଁ ଚିକିତ୍ସା କରି ଭଲ କରିପାରି ଥିଲେହେଁ ମୋ ନିଜ ଜନନୀଙ୍କୁ ଭଲ କରି ପାରିଲିନି । ମୋରି ଆଖିଆଗରେ ସେ ଅସହାୟ ଅବସ୍ଥାରେ ଇହଧାମ ତ୍ୟାଗ କଲେ । ଆଧୁନିକ ବିଜ୍ଞାନ ତାଙ୍କୁ ଟିକିଏ ବି ସାହାଯ୍ୟ କରି ପାରିଲାନି । ଅନ୍ୟ କୌଣସି ଉପାୟ ନ ପାଇଁ ମା'ଙ୍କ ପାଇଁ ଶେଷରେ ଏହି ଉପାୟଟିର ସାହାଯ୍ୟ ନେଲି । ଫେନିକ୍‌ସର ସେହି ଶୀତଳୀକରଣ ବିଜ୍ଞାନାଗାରରେ ମୋ ମା'ଙ୍କୁ ନେଇ ରଖାଇଲି । ପଚିଶବର୍ଷ ପରେ ମା'ଙ୍କର ଔଷଧ ବାହାରିଲା । ତତ୍‌ପରେ ତାଙ୍କୁ ଶୀତଳାଗାରରୁ ବାହାରକରି ସେହି ଔଷଧ ସାହାଯ୍ୟରେ ଚିକିତ୍ସା କଲି । ସେ ପୂରାଭାବରେ ରୋଗମୁକ୍ତ ହୋଇ ଆମ ସଂସାରକୁ ପୁଣି ଫେରି ଆସିଲେ ।"

"ଆପଣଙ୍କ ମା ପଚିଶବର୍ଷ ପରେ ଜୀବନ ଫେରି ପାଇବାପରେ ଆଉକିଛି ରୋଗବ୍ୟାଧିର ସମ୍ମୁଖୀନ ହୋଇ ନାହାନ୍ତି ତ ?"

"ନା, ଏହା ଭିତରେ ତ ଢେର୍ ବର୍ଷ ବିତିଗଲାଣି । ସେ ବର୍ତ୍ତମାନ ବେଶ୍ ସୁସ୍ଥସବଳ ଅଛନ୍ତି । ତାଙ୍କୁ ବର୍ତ୍ତମାନ ଅଠାଅଶୀ ବର୍ଷ ବୟସ ହେଲାଣି । ମୋ ମା ବର୍ତ୍ତମାନ ବାପାଙ୍କ ଅପେକ୍ଷା କମ୍ ବୟସର ଦେଖା ଯାଉଛନ୍ତି ।"

"ମୁଁ ତାଙ୍କୁ ଟିକିଏ ସାକ୍ଷାତ କରିପାରେ କି ଡକ୍ଟର ପଟ୍ଟନାୟକ ? ତାଙ୍କୁ ଦେଖିଲେ ମୋ ସ୍ୱାମୀଙ୍କ ପାଇଁ ଡାକ୍ତରମାନେ ଯେଉଁ ବ୍ୟବସ୍ଥା କରିବାକୁ ଯାଉଛନ୍ତି, ତାହା ଉପରେ ମୋର ଆଉ ଟିକିଏ ଅଧିକ ଆସ୍ଥା ଆସନ୍ତା ।"

"ନିଶ୍ଚୟ, ନିଶ୍ଚୟ, ଆପଣଙ୍କର ସାକ୍ଷାତ କରିବା ଉଚିତ । ଆପଣ ତାଙ୍କୁ ଫୋନ୍ ଉପରେ ସାକ୍ଷାତ କରିବେ ନା ଆମ ଘରକୁ ଯାଇ ସାକ୍ଷାତରେ କଥାବାର୍ତ୍ତା କରିବେ ?"

"ଆପଣଙ୍କ ଘରକୁ ଯାଇ ତାଙ୍କୁ ସାକ୍ଷାତ କଲେ ଭଲ ହୁଅନ୍ତା । ଆପଣଙ୍କ ଘର ଏଠୁ କେତେ ଦୂର ?"

"ନାହିଁ, ବେଶିଦୂର ନୁହେଁ । ଏହି କେମ୍ପସ୍ ଭିତରେ । ଆପଣ ଟିକିଏ ବସନ୍ତୁ, ମୁଁ ମୋ ସ୍ତ୍ରୀଙ୍କୁ କହିଦିଏ, ଏହି ଦେଖା ସାକ୍ଷାତର ବ୍ୟବସ୍ଥା କରିବା ପାଇଁ ।"

ଏତକ କହି ଡକ୍ଟର ପଟ୍ଟନାୟକ ଭିଡିଓ ଫୋନ୍‌ର ସୁଇଚ୍ ଟିପିଲେ । ସଙ୍ଗେ ସଙ୍ଗେ ଭିଡିଓ ଫୋନ୍‌ର ପରଦା ଉପରେ ସ୍ତ୍ରୀ ତନୁଶ୍ରୀର ହସ ହସ ମୁହଁ ଫୁଟି ଉଠିଲା ।

ଡକ୍ଟର ପଟ୍ଟନାୟକ ସ୍ତ୍ରୀଙ୍କୁ ପଚାରିଲେ, "କ'ଣ ତନୁଶ୍ରୀ, ମା ଘରେ ଅଛନ୍ତି ତ ?"

"ହଁ, ଅଛନ୍ତି, କାହିଁକି ?"

"ଜଣେ ଭାରତୀୟ ମହିଳା ଆସିଛନ୍ତି, ସେ ତାଙ୍କୁ ସାକ୍ଷାତ କରିବାକୁ ଚାହାନ୍ତି । ତାଙ୍କ ସ୍ୱାମୀ ଏକ ସାଙ୍ଘାତିକ ଅଷ୍ଟିଓସାର୍‌କୋମା ରୋଗରେ ଆକ୍ରାନ୍ତ ହୋଇ ଆମେରିକା ଆସିଛନ୍ତି । ଏହି ରୋଗର ବର୍ତ୍ତମାନ ପାଇଁ କୌଣସି ଅବ୍ୟର୍ଥ ଔଷଧ ନ ଥିବାରୁ ଡାକ୍ତରମାନେ ତାଙ୍କର ଲାକ୍ଷଣିକ ମୃତ୍ୟୁ କରାଇ ଏହି ରୋଗର ଅବ୍ୟର୍ଥ ଔଷଧ ବାହାରିବା ପର୍ଯ୍ୟନ୍ତ ଫୋନିକ୍ସର ସେହି ଶୀତଳଭଣ୍ଡାରରେ ରଖି ଦେବାକୁ ଚାହୁଁଛନ୍ତି, ଯେଉଁଠି ମୋ ମା ଥିଲେ । ମୁଁ ମୋ ମା'ଙ୍କ ପାଇଁ ଯେଉଁ ଉପାୟ ଅବଲମ୍ବନ କରିଥିଲି, ଏହା ଠିକ୍ ସେହି ଉପାୟ । ମିସେସ୍ ଅଗ୍ରୱାଲଙ୍କର ଏହି ପଦ୍ଧତି ଉପରେ ଆସ୍ଥା ଆସୁନାହିଁ । ସେ ମା'ଙ୍କୁ ଅସ୍ଥିମାଂସ ଶରୀରରେ ଦେଖିଲେ ତାଙ୍କର ଏଇ ନୂଆ ପଦ୍ଧତି ଉପରେ ସମ୍ଭବତଃ ଆସ୍ଥା ଆସିବ । ମୁଁ ତାଙ୍କୁ ଆମ ଘରକୁ ପଠାଇ ଦେଉଛି । ମା'ଙ୍କ ସହିତ ଟିକିଏ ସାକ୍ଷାତ କରାଇଦେବ ।"

ମିସେସ୍ ଅଗ୍ରୱାଲ ହସ୍‌ପିଟାଲରୁ ଯାଇ ଡକ୍ଟର ପଟ୍ଟନାୟକଙ୍କ ଘରର ଗେଟ୍ ପାଖରେ ପହଞ୍ଚିଛନ୍ତି କି ନାହିଁ, ତନୁଶ୍ରୀ ଗେଟ୍ ପାଖକୁ ଆସି ତାଙ୍କୁ ଭିତରକୁ ପାଛୋଟି ନେଇଗଲେ । ତନୁଶ୍ରୀ ମିସେସ୍ ଅଗ୍ରୱାଲଙ୍କୁ ଡ୍ରଇଂରୁମ୍‌ରେ ବସାଇ ମା'ଙ୍କୁ ଡାକି ଆଣିବା ପାଇଁ ଘର ଭିତରକୁ ଚାଲିଗଲେ । ମା'ଙ୍କୁ ଡାକିଆଣି ମିସେସ୍ ଅଗ୍ରୱାଲଙ୍କ ସହିତ ପରିଚିତ କରାଇଦେଲେ । ତାଙ୍କ ସ୍ୱାମୀ କେମିତି ଏକ ସାଙ୍ଘାତିକ କର୍କଟରୋଗରେ ଆକ୍ରାନ୍ତ ହୋଇ ତାଙ୍କ ପଦ୍ଧତି ଅନୁସରଣ କରିବା ବ୍ୟବସ୍ଥାରେ ତାଙ୍କ ଡାକ୍ତରମାନେ ଅଛନ୍ତି ବୁଝାଇଦେଲେ ।

ମିସେସ୍ ଅଗ୍ରୱାଲ ଡାକ୍ତରଙ୍କ ମା'ଙ୍କ ସହିତ କଥାବାର୍ତ୍ତା କଲାପରେ ତାଙ୍କର ଏହି ନୂଆ ବ୍ୟବସ୍ଥା ପ୍ରତି ଆସ୍ଥା ଆସିଲା । ମନେ ମନେ ଭାବୁଥାନ୍ତି, "ଇଏ ଯଦି ସେହି ପଦ୍ଧତି ଅନୁସରଣ କରି ଭଲ ହୋଇ ପାରିଛନ୍ତି, ତେବେ ତାଙ୍କ ସ୍ୱାମୀ ଭଲ ନ ହେବେ କାହିଁକି ? ଏହି ପଦ୍ଧତି ଅବଲମ୍ବନ କରି ତାଙ୍କ ସ୍ୱାମୀଙ୍କୁ ଡାକ୍ତରମାନେ ନିଶ୍ଚୟ ରୋଗମୁକ୍ତ କରି ପାରିବେ ।"

ଡକ୍ଟର ପଟ୍ଟନାୟକ ମା'ଙ୍କ ସହିତ କିଛି ସମୟ କଥାବାର୍ତ୍ତା କରିସାରି ମିସେସ୍ ଅଗ୍ରୱାଲ ଉଠିଲେ । ତାଙ୍କ ମା'ଙ୍କୁ ଅଶେଷ ଧନ୍ୟବାଦ ଜଣାଇ ବାହାରି ଆସିଲେ ମିସେସ୍ ଅଗ୍ରୱାଲ । ତନୁଶ୍ରୀ ପଛେ ପଛେ ଆସିଲେ ଗେଟ୍ ପର୍ଯ୍ୟନ୍ତ ତାଙ୍କୁ ବାଟୋଇ ଦେବା ପାଇଁ । ତନୁଶ୍ରୀଙ୍କୁ ପଛେ ପଛେ ଆସୁଥିବା ଦେଖି ମିସେସ୍ ଅଗ୍ରୱାଲ କହିଲେ, ''ତୁମେ ମୋର ଯଥେଷ୍ଟ ଉପକାର କଲ ଭଉଣୀ । ତୁମ ମା'ଙ୍କ ସହିତ କଥାବାର୍ତ୍ତା କଲାପରେ ମୋର ଯେଉଁ ମାନସିକ ଦମ୍ଭ ଆସିଲା, ସେଥିପାଇଁ ତୁମକୁ ଧନ୍ୟବାଦ ନ ଦେଇ ରହିପାରୁନି । ଚିକିତ୍ସା ବିଜ୍ଞାନରେ ଡକ୍ଟର ପଟ୍ଟନାୟକ ଏହି ଯେଉଁ ଯୁଗାନ୍ତକାରୀ ପଦ୍ଧତି ପ୍ରଚଳନ କଲେ, ଏଥିପାଇଁ ସାରା ମଣିଷ ସମାଜ ତାଙ୍କଠାରେ ଚିର ଋଣୀ ହୋଇ ରହିବ । ଆପଣଙ୍କ ସ୍ୱାମୀଙ୍କୁ ଭଗବାନ କୋଟି ପରମାୟୁ ଦିଅନ୍ତୁ, ମୋର ଭଗବାନଙ୍କଠାରେ ଏତିକି ମାତ୍ର ପ୍ରାର୍ଥନା ଭଉଣୀ ।

''କିନ୍ତୁ ଗୋଟିଏ ସନ୍ଦେହ ମୋର ରହିଗଲା ଭଉଣୀ, ତମକୁ ନ ପଚାରି ରହିପାରୁନି । ଡକ୍ଟର ପଟ୍ଟନାୟକ କହିଲେ, ତାଙ୍କ ମା ଏହି ପଦ୍ଧତିରେ ରୋଗମୁକ୍ତ ହେଲେ ବୋଲି । ଆପଣ ମୋତେ ଯାହାଙ୍କ ସହିତ ସାକ୍ଷାତ କରାଇଦେଲେ ସେ ତ ଡାକ୍ତର ପଟ୍ଟନାୟକଙ୍କ ମା' ନୁହନ୍ତି ।''

ହସିଲେ ତନୁଶ୍ରୀ, ''ଆପଣ ଠିକ୍ ଲକ୍ଷ୍ୟ କରିଛନ୍ତି ମିସେସ୍ ଅଗ୍ରୱାଲ । ଆପଣ ଯାହାଙ୍କୁ ପୁରୁଷ ରୂପରେ ଦେଖୁଛନ୍ତି, ସେ ହେଉଛନ୍ତି ଡକ୍ଟର ପଟ୍ଟନାୟକଙ୍କ ଜନ୍ମିତ ମା ଓ ମୋର ପ୍ରକୃତ ଶାଶୁ । ଅବସ୍ଥାଚକ୍ରରେ ପଡ଼ି ସେ କେମିତି ପୁରୁଷ ହେଲେ, ସେ ଏକ ବିରାଟ ଇତିହାସ । ଆଉ କେବେ ଆସିଲେ କହିବି ।''

''ଶୀତଳୀକରଣ ବିଜ୍ଞାନାଗାରରେ ରହିଲେ ଏଭଳି ପରିବର୍ତ୍ତନ ହୁଏ ନାହିଁ ତ ଭଉଣୀ ?'' ମିସେସ୍ ଅଗ୍ରୱାଲ ପଚାରିଲେ ।

ହସିଲେ ତନୁଶ୍ରୀ, ''ନା, ନା, ତାଙ୍କୁ ରୋଗ ହେବା ପୂର୍ବରୁ ତାଙ୍କର ଏତାଦୃଶ ପରିବର୍ତ୍ତନ ହୋଇ ସାରିଥିଲା । ଡକ୍ଟର ପଟ୍ଟନାୟକଙ୍କୁ ଜନ୍ମ ଦେବାର ଅଳ୍ପ କେଇଦିନ ପରେ ତାଙ୍କର ଏହି ପରିବର୍ତ୍ତନ ଘଟିଲା ଫଳରେ ସେ ପୁରୁଷ ପାଲଟିଗଲେ । ଶୀତଳୀକରଣ ପଦ୍ଧତି ସହିତ ତାହାର କୌଣସି ସମ୍ପର୍କ ନାହିଁ ।''

× × × × ×

ମିଷ୍ଟର ଅଗ୍ରୱାଲଙ୍କ ରୋଗ ବଢ଼ି ଚାଲିଛି । ରୋଗର ଅଗ୍ରଗତିକୁ ରୋକିବା ପାଇଁ ତାଙ୍କର ଲାକ୍ଷଣିକ ମୃତ୍ୟୁ କରାଇଦେବା ହିଁ ଉଚିତ । ଲାକ୍ଷଣିକ ମୃତ୍ୟୁ କରାଇବା ପୂର୍ବରୁ ମିସେସ୍ ଅଗ୍ରୱାଲଙ୍କ ସମ୍ମତି ନିଆଗଲା । ଖାଲି ମୌଖିକ

ସମ୍ମତି ଦେଲେ ହେବନି । ମାର୍କିନ୍ ଆଇନ୍ ଅନୁଯାୟୀ ତାଙ୍କୁ ଏକ ସରକାରୀ ସମ୍ମତିପତ୍ରରେ ଦସ୍ତଖତ କରିବାକୁ ପଡ଼ିଲା । ସେସବୁ ଆଇନଗତ ପଦ୍ଧତି ଶେଷ ହେବାପରେ ମିଷ୍ଟର ଅଗ୍ରୱାଲଙ୍କ ଲାକ୍ଷଣିକ ମୃତ୍ୟୁ କରିଦେବାକୁ ପଡ଼ିଲା । ଏଥିପୂର୍ବରୁ ଅଗ୍ରୱାଲଙ୍କ ଶରୀର ସଂରକ୍ଷଣ ପାଇଁ ଫୋନିକ୍ସରୁ ଏକ ବିଶେଷ ଧରଣର କେବିନ୍ ଓ ତାଲିମପ୍ରାପ୍ତ ଇଞ୍ଜିନିଅରମାନେ ଆସି ପହଞ୍ଚି ଯାଇଥିଲେ । ସଙ୍ଗେ ସଙ୍ଗେ ତାଙ୍କର ସେହି ନିର୍ଜୀବ ଶରୀରକୁ କେବିନ୍ ଭିତରେ ପୂରାଇ କେବିନ୍‌ଟିକୁ ଶୁଷ୍କ ବରଫ ଭିତରେ ପୋତି ଉଡ଼ାଜାହାଜ ଯୋଗେ କଲରାଡ଼ୋ ରାଜ୍ୟର ଫୋନିକ୍ସ ସହରକୁ ଘେନିଗଲେ । ସେଠାରେ ପହଞ୍ଚି ସଙ୍ଗେ ସଙ୍ଗେ ତାଙ୍କ ଶରୀର ଥିବା କେବିନ୍‌କୁ ତରଳ ଯବକ୍ଷାରଜାନରେ ବୁଡ଼ାଇ କ୍ରାୟୋଟୋରିୟମ୍‌ରେ ରଖି ଦିଆଗଲା । ସ୍ୱାମୀଙ୍କ ନିର୍ଜୀବ ଶରୀରକୁ ନେଇ ଯାଉଥିବା ଉଡ଼ାଜାହାଜରେ ମିସେସ୍ ଅଗ୍ରୱାଲ ଫୋନିକ୍ସ ସହରର ସେହି ବିଜ୍ଞାନାଗାରକୁ ମଧ୍ୟ ଯାଇଥିଲେ । ସ୍ୱାମୀଙ୍କ ଶରୀର ଠିକ୍ ଭାବରେ ସଂରକ୍ଷିତ ହୋଇ ରହିଲାପରେ ସେ ନିଉୟର୍କ ଫେରି ଆସିଲେ । ଯୁବକ ଡାକ୍ତର ବାର୍ଗମେନ୍ ମଧ୍ୟ ତାଙ୍କ ସହିତ ଫୋନିକ୍ସ ଯାଇଥିଲେ । ସେଠା ରେଜିଷ୍ଟରରେ ମିସେସ୍ ଅଗ୍ରୱାଲଙ୍କ ଦସ୍ତଖତ ସହ ଚିକିତ୍ସାକାରୀ ଡାକ୍ତରଙ୍କ ଦସ୍ତଖତ ମଧ୍ୟ ରହିଲା । ଚୁକ୍ତି ହେଲା ତାଙ୍କ ରୋଗର ଔଷଧ ବାହାରିବାକ୍ଷଣି ସେମାନେ ମିଷ୍ଟର ଅଗ୍ରୱାଲଙ୍କୁ ଏହି ଶୀତଳାଗାରରୁ ବାହାର କରି ଚିକିତ୍ସା କରି ପାରିବେ ।

## ସାତ

ଯେଉଁଦିନ ଗୀତାଦେବୀ ଆମେରିକାରୁ ନିଜ ଶିଳ୍ପନଗରୀକୁ ଏକା ଫେରି ଆସିଲେ, ସେଦିନ ସାରା ସହରରେ ଶୋକର ଛାୟା ଖେଳିଗଲା । ମିଷ୍ଟର ଅଗ୍ରୱାଲ ଆମେରିକାରେ ରହି ଭଲ ହେଉଛନ୍ତି, ସେ ପୁଣି କିଛିଦିନ ପରେ ଆମେରିକା ଯିବେ । ଏହି ଆଶା ଦେଖାଇବା ଛଡ଼ା ଆଉ କ'ଣ ବା ଅଧିକ ସେ କହି ପାରିଥାନ୍ତେ । ତେବେ ତାଙ୍କର ଯେ ଲାକ୍ଷଣିକ ମୃତ୍ୟୁ ହୋଇଯାଇଛି ଓ ସେ ଭଲ ହେଉ ହେଉ ଆହୁରି ତିରିଶ ଚାଳିଶ ବର୍ଷ ଲାଗି ଯାଇପାରେ, ସେକଥା ତାରା ଛଡ଼ା ସେ ଆଉ କାହାକୁ କହି ନ ଥିଲେ । ସ୍ୱାମୀଙ୍କ ଅନୁପସ୍ଥିତିରେ ଏତେବଡ଼ ଶିଳ୍ପ ସାମ୍ରାଜ୍ୟକୁ କେମିତି ସମ୍ଭାଳିବେ, ସେଇ ଥାଏ ତାଙ୍କର ପ୍ରଧାନ ଚିନ୍ତା । ଏଣେ ଛୋଟ ପିଲାଟିକୁ କେମିତି ମଣିଷ କରିବେ, ସିଏ ତାଙ୍କର ଆଉ ଏକ ବଡ଼ ଚିନ୍ତା । ତେବେ ପିଲାଟିର ଲାଳନପାଳନରେ ତାରାର ବ୍ୟସ୍ତତା ତାଙ୍କଠାରୁ ବେଶୀ । ତାରା ଭଳି ଜଣେ ଉପଯୁକ୍ତା ସାହାଯ୍ୟକାରିଣୀ ପାଇଥିବାରୁ ପିଲା ପାଇଁ ବା

ନିଜ ଘର ପାଇଁ ତାଙ୍କର ଚିନ୍ତା ସେତେ ନ ଥାଏ । ସେ ତାଙ୍କର ପୂରା ସମୟ ଦେଇ ନିଜ ସ୍ୱାମୀଙ୍କ ଶିଳ୍ପ ସାମ୍ରାଜ୍ୟକୁ ଚଳାଇବାରେ ଲାଗିପଡ଼ିଲେ ।

ଗୀତାଦେବୀଙ୍କ ପରିଚାଳନାରେ ତାଙ୍କ ଶିଳ୍ପ ସାମ୍ରାଜ୍ୟ ବେଶ୍ ଆଗେଇ ଚାଲିଲା । ତାଙ୍କ କଡ଼ା ପରିଚାଳନା ସମ୍ବନ୍ଧରେ କର୍ମଚାରୀମାନେ ଆଗରୁ ବେଶ୍ ପରିଚିତ ଥିଲେ । ମାଲିକଙ୍କ ପରିଚାଳନା ଭଳି ଉଦାର ନ ହେଲେହେଁ ଏହା ଯେ ବେଶ୍ ଦକ୍ଷ, ସମସ୍ତେ ହୃଦୟଙ୍ଗମ କରି ପାରିଥିଲେ । କାରଖାନାର ବଡ଼ ବଡ଼ ଅଫିସରମାନେ କାର୍ଯ୍ୟରେ କେଉଁଠି ଖିଲାପ କଲେ ଗୀତାଦେବୀ ସଙ୍ଗେ ସଙ୍ଗେ ଧରି ପକାଉଥିଲେ । ତେଣୁ ସେ ଦାୟିତ୍ୱ ନେବା ଦିନଠାରୁ ଅଫିସରମାନେ କାମରେ କେଉଁଠି ଅବହେଳା କରୁ ନ ଥାନ୍ତି । ମିଷ୍ଟର ଅଗ୍ରୱାଲଙ୍କ ସମୟରେ ଯେମିତି ଗତିବିଧି ନେଇ ଚଳି ଆସୁଥିଲେ ଏବେ ଏଣିକି ତାହା ମାଲିକାଣୀଙ୍କୁ ସୁହାଇବନି ବୋଲି ଭାବି ସେଗୁଡ଼ାକ ବଦଳାଇବାକୁ ବାଧ ହେଲେ । ମିଷ୍ଟର ଅଗ୍ରୱାଲଙ୍କ ସମୟରେ ଭୁଲ ତ୍ରୁଟି ପାଇଁ ଯେଉଁ କ୍ଷମା ଥିଲା, ଗୀତାଦେବୀଙ୍କ ଅମଳରେ ଆଉ ସେସବୁ ରହିଲା ନାହିଁ । ଦକ୍ଷତା ନ ଦେଖାଇଲେ ତଳକୁ ଖସିଯିବାର ଭୟ, ସେମାନଙ୍କୁ ଠିକ୍ ବାଟରେ ରଖି ପାରିଲା । ସ୍ୱାମୀଙ୍କ ଶ୍ରମିକ ନୀତିକୁ ସେ ଅତୁଟ ଭାବରେ ରଖିଥିବାରୁ ତାଙ୍କର କୌଣସି କାରଖାନାରେ ଶ୍ରମିକ ଅଶାନ୍ତି ଦେଖାଦେଲା ନାହିଁ । ଶ୍ରମିକ ଓ ଅଫିସରମାନଙ୍କ ଦକ୍ଷତା ବଢ଼ାଇବା ପାଇଁ ସେମାନଙ୍କୁ ନାନାପ୍ରକାର ପୁରସ୍କାର ଦେବାର ବ୍ୟବସ୍ଥା କରିଥିବାରୁ ଉଭୟ ଶ୍ରମିକ ଓ ଅଫିସରମାନଙ୍କ ଭିତରେ ଦକ୍ଷତା ଆଶାତୀତ ଭାବରେ ବଢ଼ିଗଲା । ସେମାନେ ଆଗ ଅପେକ୍ଷା ଅଧିକ ମନଃପ୍ରାଣ ଦେଇ କାରଖାନାର ଉତ୍ପାଦନ ବଢ଼ାଇବାରେ ଲାଗିପଡ଼ିଲେ ।

ଗୀତାଦେବୀଙ୍କ ଦକ୍ଷ ପରିଚାଳନା ଶିଳ୍ପପତି ମହଲରେ ଖାଲି ପ୍ରଚାରିତ ହେଲାନି, ସେମାନେ ଏଥିରେ ଆତଙ୍କିତ ହୋଇପଡ଼ିଲେ । ଏପରିକି ତାଙ୍କ ବାପା-ଦାଦା ଏଥିରୁ ବାଦ୍ ଗଲେନି । ଶିଳ୍ପ ପରିଚାଳନାରେ ନିଜ ଜାମାତାଙ୍କ ସଚ୍ଚୋଟ ନୀତି ଶ୍ୱଶୁରଙ୍କୁ ଭଲ ଲାଗୁ ନ ଥିଲା, ଏବେ ନିଜ କନ୍ୟାଙ୍କ ସଚ୍ଚୋଟ ନୀତି ନିଜ ବ୍ୟବସାୟ ରାଜ୍ୟରେ ଏକ ଆତଙ୍କ ସୃଷ୍ଟି କଲା । ପୁଅମାନଙ୍କୁ ବାରମ୍ବାର ପଠାଇ ନିଜ କନ୍ୟାଙ୍କୁ ଏ ନୀତି ଛାଡ଼ି ସେମାନଙ୍କ ନୀତି ଧରିବା ପାଇଁ ଯେତେ ପ୍ରବର୍ତ୍ତାଇଲେ ହେଁ ଫଳ କିଛି ହେଲାନି । ଶ୍ରମିକମାନଙ୍କୁ ଶିଳ୍ପ ପରିଚାଳନାରେ ଏତେ ସ୍ଥାନ ଦେଲେ ସେହିମାନେ ଯେ ଦିନେ ନିଜର କାଳହୋଇ ଠିଆହେବେ ଯେତେ ବୁଝାଇଲେହେଁ ସେ ବୁଝିବାକୁ ନାରାଜ । ଅର୍ଦ୍ଧମୃତ ଅବସ୍ଥାରେ ପଡ଼ି ରହିଥିବା ନିଜ ସ୍ୱାମୀଙ୍କ ନୀତି ପ୍ରତି ସମ୍ମାନ ଦେଖାଇ ସେ ଏହାକୁ ଅନୁସରଣ କରିବାକୁ ବଦ୍ଧପରିକର ହେଲେ । ସ୍ୱାମୀଙ୍କ ଶିଳ୍ପନୀତି ବାପା-ଦାଦାଙ୍କ ନୀତି ଅପେକ୍ଷା ଯେ ଢେର୍ ଉଦାର,

ଉତ୍କୃଷ୍ଟ ଓ ଆଦର୍ଶସ୍ଥାନୀୟ ସେ ଏହା ସ୍ପଷ୍ଟଭାବରେ ହୃଦୟଙ୍ଗମ କରି ପାରିଥିଲେ । ତାଙ୍କର ପୂର୍ଣ୍ଣ ବିଶ୍ୱାସ, ଦେଶର ସବୁ ଶିଳ୍ପପତି ଯଦି ତାଙ୍କର ନୀତିକୁ ଗ୍ରହଣ କରନ୍ତେ, ତେବେ ଦେଶରେ ଶିଳ୍ପ ଅଶାନ୍ତି ମୋଟେ ଦେଖାଯା'ନ୍ତା ନାହିଁ, ଉତ୍ପାଦନ ଢେର୍ ବଢ଼ନ୍ତା, ଦେଶ ଢେର୍ ଆଗେଇପାରନ୍ତା, ଲୋକମାନେ ଭଲରେ ରହନ୍ତେ । ଆମ ଦେଶର ସରକାର ମଧ୍ୟ ଯଥେଷ୍ଟ ଲାଭବାନ ହୁଅନ୍ତେ । ଶିଳ୍ପ ମାଲିକମାନଙ୍କ ଶ୍ରମିକ ତଥା ସରକାରଙ୍କୁ ଠକିବା ନୀତି ହିଁ ଶ୍ରମିକ ତଥା ସରକାରଙ୍କ କ୍ଷତି ପାଇଁ ଦାୟୀ । ଏହାମଧ୍ୟ ଶ୍ରମିକ ଅଶାନ୍ତିର ମୂଳ କାରଣ । ଶିଳ୍ପ ପରିଚାଳନାରେ ଶ୍ରମିକମାନଙ୍କୁ ଅଂଶୀଦାର କଲେ ସେ ଠକିବା ନୀତି ଚାଲି ପାରିବନି ବୋଲି ଶିଳ୍ପ ମାଲିକମାନେ ଶ୍ରମିକମାନଙ୍କୁ ଶିଳ୍ପ ପରିଚାଳନାଠାରୁ ଦୂରରେ ରଖିବାକୁ ଚେଷ୍ଟା କରୁଥାନ୍ତି । ଶିଳ୍ପପତିମାନେ ଶ୍ରମିକ ସଂଗଠନଙ୍କୁ ଭାଗ ଭାଗ କରି, ଶ୍ରମିକ ନେତାମାନଙ୍କୁ ଲାଞ୍ଚଦ୍ୱାରା ହାତକରି, ଶ୍ରମିକମାନଙ୍କୁ ଯେଉଁଭଳି ଭାବରେ ପ୍ରତାରଣା କରନ୍ତି, ଗୀତାଦେବୀଙ୍କୁ ତାହା ଭଲ ଲାଗୁ ନ ଥାଏ । ପ୍ରଥମେ ପ୍ରଥମେ ଅଭିଜ୍ଞତା ନ ଥିବାରୁ ବାପା-ଦାଦାଙ୍କ ଶିଳ୍ପନୀତି ଠିକ୍ ବୋଲି ମନେ ହେଉଥିଲା, କିନ୍ତୁ ଏବେ କାର୍ଯ୍ୟକ୍ଷେତ୍ରରେ ନିଜ ସ୍ୱାମୀଙ୍କ ନୀତି ଅଧିକ ଉତ୍ପାଦନରେ ସହାୟକ ହୋଇଥିବାରୁ ସେ ସ୍ୱାମୀଙ୍କ ନୀତିକୁ ଅଧିକ ଉତ୍କୃଷ୍ଟ ବୋଲି ମଣୁଥାନ୍ତି ।

× × × × ×

ଗୀତାଦେବୀ ଦିନେ ସନ୍ଧ୍ୟାବେଳେ ନିଜ ନଅରର ଶୋଇବାଘରର ବାରଣ୍ଡାରେ ବସି ସେଦିନର ଖବରକାଗଜ ଓଲଟାଉ ଥିଲେ । ଛୋଟପୁଅ ରାମ ପାଖରେ ବସି ଗୋଟିଏ ଜାପାନୀ ଖେଳନା ନେଇ ଖେଳୁଥିଲା । ହଠାତ୍ ବିଜୁଳି ଆଲୁଅ ଲିଭିଗଲା, ଚାରିଆଡ଼ ଅନ୍ଧାର ହୋଇଗଲା । ଛୋଟ ପୁଅ ଅନ୍ଧାର ହୋଇଯିବାକ୍ଷଣି ବଡ଼ପାଟିରେ କାନ୍ଦି ଉଠିଲା । ପୁଅର କ'ଣ ହେଲା ଭାବି ଗୀତାଦେବୀ ପୁଅକୁ କୋଳକୁ ନେବା ପାଇଁ ହାତ ବଢ଼ାଇଦେଲେ । ପୁଅ ଗୀତାଦେବୀଙ୍କ କୋଳକୁ ସଙ୍ଗେ ସଙ୍ଗେ ଚାଲିଯାଇ ତାଙ୍କୁ କୁଣ୍ଢାଇ ଧରିଲା । ପୁଅ ହଠାତ୍ ଏମିତି ଡରିଯାଇ ତାଙ୍କୁ କାହିଁକି କୁଣ୍ଢାଇ ଧରିଲା, ଆଶ୍ଚର୍ଯ୍ୟ ଲାଗିଲା । ପୁଅକୁ ସେହିଭଳି ଛାତିରେ ଭିଡ଼ି ଧରି ପଚାରିଲେ, "ତୁ ଏମିତି ହାଉଳି କାହିଁକି ଖାଇଗଲୁ ରାମ ? ତୋର କ'ଣ ହେଲା କି ?"

"ମା ଭୂତଆସିବ । ଅନ୍ଧାରରେ ମୋତେ ନେଇଯିବ ।"

"ଆଁ, ଭୂତ ଆସିବ ? କେଉଁଠୁ ଆସିବ ?"

"ସେହି ଗଛରେ ପରା ଭୂତ ଅଛି ।" ହାତ ବଢ଼ାଇଦେଇ ପୁଅ ଦୂରରେ ଥିବା ଗୋଟିଏ ଗଛକୁ ଚିହ୍ନାଇ ଦେଲା । "ଅନ୍ଧାର ହେଲେ ଭୂତ ତଳକୁ ଆସି ମୋତେ ନେଇଯିବ ।"

"ତୋତେ ସେକଥା କିଏ କହିଲା ?"

"ଧାଈମା କହୁଥିଲା ।"

ହଠାତ୍ ଅନ୍ଧାର ହୋଇଯିବା ଦେଖି ମା କାଳେ ଅନ୍ଧାରରେ ବସିଥିବେ, ତାରା ଏମରଜେନ୍‌ସି ଲାଇଟ୍‌ଟା ଆଣି ସେଠି ଥୋଇ ଦେଇଗଲା ।

ଗୀତାଦେବୀ ତାରାକୁ ଲକ୍ଷ୍ୟ କରି ପଚାରିଲେ, "ପୁଅ ଯାହାକହୁଛି ତାହା କ'ଣ ସତ ତାରା ?" ତୁ କାଳେ ତାକୁ ଭୂତକଥା କହି ଡରାଇ ଦେଉଛୁ ?

"ହଁ, ମା, କିଛିଦିନ ତଳେ ପୁଅ କ'ଣ ଗୋଟାଏ ପାଇଁ ଭାରି ଅଝଟ ଲଗାଇଲା । ଆପଣ ଘରେ ନ ଥିଲେ । ମୁଁ ତା'ର ସେ ଅଝଟ ଛଡ଼ାଇବା ପାଇଁ ତାକୁ ଭୂତ କଥା କହି ଡରାଇ ଦେଇଥିଲି ।"

"ଦେଖ, ତାରା, ଯାହା କଲୁ କଲୁ, ଆଉ କେବେ ପୁଅକୁ ଭୂତ ପ୍ରେତ କଥା କହି ଡରାଇବୁ ନାହିଁ । ଭୂତ ପ୍ରେତ ସବୁ ତ ଡାହାମିଛ, ସେଭଳି ମିଛକଥା କହି ପିଲାଙ୍କୁ ଡରାଇବା ମୋତେ ଭଲ ନୁହେଁ ।"

"ମା, ଭୂତ ପ୍ରେତ କ'ଣ ସବୁ ମିଛ ?" ଛୋଟ ପୁଅ ରାମ ପଚାରିଲା ।

"ହଁ, ବାପ, ଏସବୁ ଅତି ପୁରୁଣାକାଳିଆ କଥା । ଡାହା ମିଛ । ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ, ପିତାଶୁଣୀ, ବ୍ରହ୍ମରାକ୍ଷସ ଆଦି ପୂରାପୂରି ମିଛ, ମନଗଢ଼ା କଥା । ପ୍ରକୃତରେ ସେଭଳି କିଛି କେଉଁଠି ନାହିଁ ।"

"ମୋତେ ତ ଧାଈମା, ସନ୍ଧ୍ୟାବେଳେ କେତେ ଭୂତ ଗପ କହେ । ଡାହାଣୀ ଗପ କହେ । ସେ କୁହେ, ରାତିରେ କାଳେ ଭୂତ ଲୋକଙ୍କୁ ଡାକିନେଇ ଯାଏ । ସେମାନଙ୍କୁ ଡାକି ନେଇ ବାଟରେ ପିଟି ଖଣ୍ଡିଆଖାବରା କରି ପକାଏ । ଡାହାଣୀ ପିଲାଙ୍କ ଦେହରୁ ରକ୍ତ ଶୋଷିନିଏ । ବ୍ରହ୍ମରାକ୍ଷସ ଛୋଟ ଛୋଟ ପିଲାଙ୍କୁ ଗିଳି ପକାଏ ।"

"ଏସବୁ ମିଛ କଥା ବାପ, ପୂରାପୂରି ମିଛ କଥା । ଭୂତ ପ୍ରେତ ଆଦି କିଛି ନାହିଁ ।"

"ନା, ମା ଭୂତ ପ୍ରେତ ସବୁ କାଳେ ମଶାଣିଭୂଇଁରେ ଥାଆନ୍ତି । ବେଳେ ବେଳେ ଘରପାଖ ଗଛକୁ ଚାଲିଆସି ଗଛରେ ରହନ୍ତି ।"

"ନାରେ ବାପ, ଏସବୁ ଡାହା ମିଛ କଥା । ପିଲାମାନଙ୍କୁ ଡରାଇବା ପାଇଁ ଏଭଳି ଗପ ସବୁ ସୃଷ୍ଟି କରାଯାଇଛି । ଆଈମା ଅସୁରୁଣୀ ଗପ ଯାହା, ଏ ଭୂତ ପ୍ରେତ ଗପ ଠିକ୍ ସେଇଆ ।"

"ମଣିଷ କାଳେ ମରିଗଲେ ଭୂତ ହୁଏ ମା ?" ଧାଈମା ସେଦିନ କହୁଥିଲା ।

"ନା, ବାପ, ମଣିଷ ତ ମରିଗଲେ ସବୁ ଶେଷ ହୋଇଗଲା । ଭୂତ ପ୍ରେତ ଆଉ ଆସିବେ କୁଆଡୁ ? ଇଏସବୁ ମନଗଢ଼ା କଥା । ମଣିଷ ମରିଗଲା ପରେ ତା'ର ଆଉକିଛି ରହେନି ।"

"ଦେଖ, ତାରା, ତୁ ପୁଅକୁ ଏମିତି ଆଉ ଭୂତ ପ୍ରେତ ଗପ କହିବୁ ନାହିଁ । ଏହା ଅତି ଖରାପ କଥା । ଭୂତ ପ୍ରେତ କଥା ଶୁଣି ଶୁଣି ପିଲାମାନଙ୍କର ଭୂତ ପ୍ରେତ ପ୍ରତି ବିଶ୍ୱାସ ହୋଇଯାଏ । ସେମାନେ ଅନ୍ଧାର ହେଲେ, କି ଏକାଟିଆ ହେଲେ ଭାବନ୍ତି, ଭୂତ ପ୍ରେତ ଆସି ସେମାନଙ୍କୁ ନେଇଯିବ । ଏହାଫଳରେ ପିଲାମାନେ ଡରୁଆ ହୋଇଯାନ୍ତି । ସେମାନେ ସାହସୀ ହୋଇ ପାରନ୍ତିନି ।"

ତୁ କ'ଣ ଚାହୁଁଛୁ ତାରା, ଆମ ପୁଅ ସାହସୀ ନ ହୋଇ ଡରୁଆ ହୋଇଯିବ ? ପୁଅକୁ ତୁ ଯେତେବେଳେ ଗପ କହିବୁ, ଭୂତ, ପ୍ରେତ କି ଅସୁର, ଅସୁରୁଣୀ ଗପ ନ କହି ଆମ ଦେଶର ସାହସୀ, ବୀରମାନଙ୍କ କଥା କହିବୁ । ସେସବୁ ଗପ ଶୁଣିଲେ ଆମ ଦେଶର ପିଲାମାନେ ସାହସୀ ହେବେ, ଆଉ ଡରକୁଳା ହେବେନି ।

× × × × ×

"ତାରା, ତାରା, ଏଆଡ଼କୁ ଆସିଲୁ । ଦେଖିଲୁ, ପୁଅର କେତେ ଜର ? ଡାକ୍ତରଙ୍କୁ ଟିକିଏ ଫୋନ୍ କଲୁ । କହିଦେ, ସେ ଯେପରି ଖୁବ୍ ଶୀଘ୍ର ଆସନ୍ତି । କାଳେ ଡାକ୍ତରଖାନା ଗାଡ଼ି ନ ଥିବ, ଆମ ଗାଡ଼ି ପଠାଇଦେ ।"

ପୁଅର ହଠାତ୍ ଜ୍ୱର କଥା ଶୁଣି, ତାରା ଫୋନ୍ କରିବ କ'ଣ, ତା' ଦେହ ଚାଉଁକିନା ହୋଇଗଲା । ସେ ପୁଅ ପାଖକୁ ଦୌଡ଼ି ଆସି ପୁଅ ଦେହରେ ହାତ ବୁଲାଇ ଆଣି କହିଲା, "ହଁ, ମା, ପୁଅ ଦେହରେ ଢେର୍ ତାତି । କାଲି ସନ୍ଧ୍ୟାବେଳେ ତ ଭଲ ଥିଲା । ହଠାତ୍ ଏ ରାତିକ ଭିତରେ ଏତେ ଜ୍ୱର ହେଲା କେମିତି ?"

"ହଁ ତାରା, ମୋଟେ ଆଖି ଫିଟାଉନି । ମୁଁ ଜାଣିପାରୁନି, ଏତେ ଜ୍ୱର କାହିଁକି ହେଲା ।"

କାଲି ସନ୍ଧ୍ୟାବେଳେ ଖେଳିବାକୁ ଯାଇଥିଲା । ବୋଧେ ଥଣ୍ଡା ଲାଗିଗଲା । ସେ ଖେଳିବାକୁ ସାଇକେଲରେ ଯାଇଥିଲା, ଖେଳିସାରି ଜୋର୍‌ରେ ସାଇକେଲ ଚଳାଇ ଚାଲି ଆସିଛି, ସେଥିପାଇଁ ଥଣ୍ଡା ଲାଗିଯାଇଛି ବୋଧେ ।"

"ତୁ ଭାବୁଛୁ, ପୁଅର କ'ଣ ଥଣ୍ଡାଜର ?"

"ଆଉ କି ଜର ହୋଇପାରେ ମା ?" ମୁଁ ଡାକ୍ତରଙ୍କୁ ଫୋନ୍ କରି ଗାଡ଼ି ପଠାଇ ଦେଉଛି । ସେ ଆସନ୍ତୁ ଦେଖିବେ ।

କିଛି ସମୟ ପରେ ଡାକ୍ତରଙ୍କୁ ଧରି ତାରା ଘର ଭିତରକୁ ପଶି ଆସିଲା । ସେ ପର୍ଯ୍ୟନ୍ତ ଗୀତାଦେବୀ ପୁଅର ଖଟ ପାଖରେ ବସି ପୁଅକୁ ଆଉଁଶୁଥାନ୍ତି ।

ଡାକ୍ତରଙ୍କୁ ଆସିଯିବା ଦେଖି ପୁଅକୁ ଛାଡ଼ିଦେଇ ଅଲଗା ହୋଇଗଲେ ସେ । ଡାକ୍ତର ପୁଅକୁ ନାନା ଭାବରେ ପରୀକ୍ଷା କଲେ । ପରୀକ୍ଷା କରିସାରି କହିଲେ, "ନା, ଇଏ ଥଣ୍ଡା ଜ୍ୱର ନୁହେଁ । ଏହା ଟାଇଫଏଡ୍ ଜ୍ୱର । ତେବେ ମୁଁ ବୋମ୍ବେରୁ ବିଶେଷଜ୍ଞ ଡାକ୍ତରଙ୍କୁ ଡକାଉଛି । ସେ ଆସିଲେ ପ୍ରକୃତ କଥା କହିବେ । ତେବେ ଖୁବ୍ ସାବଧାନ ହୋଇ ରୋଗୀର ଚିକିତ୍ସା କରିବାକୁ ପଡ଼ିବ । ବିଶେଷଜ୍ଞ ଆସିଲା ପର୍ଯ୍ୟନ୍ତ ସାମାନ୍ୟ କିଛି ଔଷଧ ପଠାଇ ଦେଉଛି । ସେଥିସହିତ ଜଣେ ନର୍ସକୁ ମଧ । ବିଶେଷଜ୍ଞ ଆସିଲେ ମୁଁ ତାଙ୍କୁ ସଙ୍ଗରେ ନେଇ ଆସିବି ।"

ରାତି ଦୁଇଟା । ପୁଅର ଜ୍ୱର ମୋଟେ କମିବାକୁ ନାହିଁ । ସନ୍ଧ୍ୟାବେଳକୁ ନର୍ସ ପୁଅ ପାଖରେ ଜଗି ବସିଛି । ଥରକୁଥର ଶରୀରର ଉତ୍ତାପ ନିଆଯାଉଛି । କାଗଜରେ ରେକର୍ଡ଼ କରା ହେଉଛି । ଥରକୁଥର ଔଷଧ ଦିଆ ଚାଲିଛି । ନର୍ସ ପୁଅକୁ ଜଗି ବସିଥାଏ । ତାରା ଆଖିକୁ ନିଦ ମୋଟେ ନାହିଁ । ସେ ଖାଲି ବିଛଣାରେ ପଡ଼ି ଭାବୁଥାଏ, ଡାକ୍ତରମାନଙ୍କ ଏତେ ଚେଷ୍ଟା ସତ୍ତ୍ୱେ ପୁଅର ଜ୍ୱର କମିବାକୁ ନାହିଁ କାହିଁକି ? ଏ କିଛି ସାଙ୍ଘାତିକ ଜ୍ୱର ନୁହେଁ ତ ? ଟାଇଫଏଡ୍ ହୋଇଥିଲେ ଏତେବେଳକୁ ଶରୀରର ଉତ୍ତାପ କମି ଆସନ୍ତାଣି । ଉତ୍ତାପ ନ କମୁଛି କାହିଁକି ? ତାରା ଯେଭଳି ଭାବୁଛି ଗୀତାଦେବୀ ମଧ ଠିକ୍ ସେଇମିତି ଭାବୁଥାନ୍ତି । ଦୁଇଜଣଙ୍କ ଆଖିକୁ ନିଦ ନାହିଁ । ତାରା ଭାବିଲା, ବିଚାରୀ ନର୍ସଟି ପୁଅକୁ ରାତିସାରା ଜଗି ଜଗି କ୍ଲାନ୍ତ ହୋଇ ପଡ଼ିବଣି । ଯାଏଁ ନିଜେ ଜଗି ତାକୁ ଟିକିଏ ବିଶ୍ରାମ ନେବାକୁ କୁହେ ।

ତାରା ନର୍ସକୁ ବିଶ୍ରାମ ନେବା ପାଇଁ କହିଦେଇ ନିଜେ ପୁଅ ପାଖରେ ଜଗି ବସିଲା । ପୁଅର ଜ୍ୱର ଛାଡ଼ିବା ଯେତେ ଡେରି ହେଉଥାଏ, ତା'ର ଧୈର୍ଯ୍ୟ ସେତେ କମୁଥାଏ । ପୁଅର ଜ୍ୱର କମିବା ପାଇଁ ସେ କେତେ ଦିଅଁ ଦେବତାଙ୍କୁ ଡାକି ସାରିଲାଣି । ପୁଅର ଜ୍ୱର ସହିତ ନିଜ ଜୀବନକୁ ମଧ ପଣ କରି ସାରିଲାଣି । ସିଏ ସେହିଭଳି ପୁଅକୁ ଜଗି ବସିଛି, କେତେବେଳୁ ଚାରିଟା ବାଜିଲାଣି, ତା'ର ଖିଆଲ ନାହିଁ । ଗୀତାଦେବୀ ହଠାତ୍ ପୁଅ ଶୋଇବାଘରକୁ ପଶି ଆସିଲେ । ଦେଖିଲେ ତାରା ପୁଅକୁ ଜଗି ବସିଛି ।

"ତୁ କ'ଣ ପୁଅକୁ ଜଗି ବସିଚୁ ତାରା ? ନର୍ସ କୁଆଡ଼େ ଗଲା କି ?"

"ନାଇଁ ମା, ନର୍ସ ସାରାରାତି ବସି ବସି ଥକି ପଡ଼ିଥିଲା, ତାକୁ ଟିକିଏ ବିଶ୍ରାମ ନେବା ପାଇଁ ପଠାଇଦେଇ ମୁଁ ବସିଛି ।"

"ତୁ କ'ଣ ରାତିସାରା ଏମିତି ଅନିଦ୍ରା ହୋଇ ବସିଥିବୁ ତାରା ?"

"ମା, ଆପଣ ତ ରାତିସାରା ଅନିଦ୍ରା ହୋଇ ବସିଛନ୍ତି । ମୁଁ ବସିଲି କ'ଣ ହୋଇଗଲା ? ପୁଅର ଉତ୍ତାପ କାହିଁକି ନ କମୁଛି, ସେଇ ମୋର ଚିନ୍ତା । ଦୁଇରାତି ହେଲା ମୁଁ ଶୋଇବାକୁ ଯେତେ ଚେଷ୍ଟା କରୁଛି ଶୋଇପାରୁନି ମା । ନିଦ କ'ଣ ଆସୁଛି ଯେ ମୁଁ ଶୋଇବି ?"

"ମୋର ଠିକ୍ ସେଇ ଅବସ୍ଥା ତାରା । ପୁଅର ଜ୍ୱର ନେଇ କେତେ ପାପ କଥା ମନକୁ ଘାଣ୍ଟୁଛି । ବାପ ତେଣେ ଶକ୍ତ ବେମାରରେ ଆମେରିକାରେ, ପୁଅର ଏଠି ଏମିତି ଅବସ୍ଥା । ମୁଁ ଏଭଳି ଅବସ୍ଥାରେ କେମିତି ବଞ୍ଚିବି କହିଲୁ ?"

"ଆପଣ ଏତେ ଅଧୈର୍ଯ୍ୟ ହେଲେ କ'ଣ ଚଳିବ ମା ? କ'ଣ ଆଉ କରିବେ ? ବେଳ ଯେତେବେଳେ ଖରାପ ପଡ଼ିଛି, ସବୁ ସହ୍ୟ କରିବାକୁ ପଡ଼ିବ । ଏଇ ଦୁଃଖ ସୁଖ ଭିତରେ ତ ସଂସାର । ସବୁକୁ ତ ସହିବାକୁ ପଡ଼ିବ ମା ।"

"ତୁ ଏବେ ଯା, ତାରା । ମୁଁ ପୁଅକୁ ଜଗି ବସିଛି । ତୁ ରାତିସାରା ଅନିଦ୍ରା ହୋଇ ବସିଛୁ, ଏଥର ଟିକିଏ ବିଶ୍ରାମ କର । ନର୍ସ ଉଠିଲା ପର୍ଯ୍ୟନ୍ତ ମୁଁ ପୁଅ ପାଖରେ ବସିଛି ।"

"ସକାଳ ହେଲେ ଆପଣଙ୍କର କେତେ କାମ । ସାରା ଦୁନିଆଟାଯାକର ଦାୟିତ୍ୱ ଆପଣଙ୍କ ଉପରେ । ସକାଳେ ପୁଣି ଅଫିସ୍ ଯିବେ । କେତେଲୋକ ଆସୁଛନ୍ତି ସାକ୍ଷାତ ପାଇଁ । କେତେଲୋକଙ୍କ କେତେ କଥା ବୁଝିବାକୁ ପଡ଼ିବ । ଆପଣ ଏଭଳି ରାତି ଅନିଦ୍ରା ହେଲେ ସମ୍ଭାଳି ପାରିବେନି ମା । ଆପଣ ଯାଆନ୍ତୁ ଶୋଇବେ, ମୁଁ ବସିଛି ।"

ନର୍ସ ଆରଘରେ ଶୋଇଥିଲା, ହଠାତ୍ ଚଟ୍‌କିନା ତା'ର ନିଦ ଭାଙ୍ଗିଗଲା । ସେ ଦୌଡ଼ିଆସି ପୁଅ ଦେହର ଉତ୍ତାପ ନେଲା । ଯାନ୍ତ୍ରିକ ଥର୍ମୋମିଟର ଯନ୍ତ୍ରକୁ ଅନାଇ ଦେଇଛି କି ନାହିଁ, ତା ମୁହଁରୁ ହସ ବାହାରି ଆସିଲା । ଅଳ୍ପ ହସି କହିଲା, "ପୁଅର ଉତ୍ତାପ ଏଥର କମି ଆସିଲାଣି ମା । ବର୍ତ୍ତମାନ ଏଇ ଦେଖନ୍ତୁ, ପୁଅ ଦେହରେ ମୋଟେ ଜ୍ୱର ନାହିଁ ।"

ପୁଅର ଜ୍ୱର କମିଯିବା ଦେଖି ତାରା ଓ ଗୀତାଦେବୀଙ୍କ ମନ ଆନନ୍ଦରେ ନାଚି ଉଠିଲା । ଗୀତାଦେବୀଙ୍କ ମୁହଁରୁ ବାହାରି ପଡ଼ିଲା, "ଆଁ, ଜ୍ୱର ନାହିଁ ? ଯାହାହେଉ, ଭଗବାନ ଏତେବେଳେ ମୋ ଡାକ ଶୁଣିଲେ ।"

ସେତେବେଳକୁ ରାତି ପାହି ଆସିଲାଣି । ମନ ଆନନ୍ଦ । ଯାହାହେଉ, ପୁଅ ଏଥର ଭଲ ହୋଇଯିବ । ନର୍ସ ଡାକ୍ତରଙ୍କୁ ଜ୍ୱର କମିବା କଥା ଜଣାଇ ସାରିଲାଣି । ଡାକ୍ତର ସଙ୍ଗେ ସଙ୍ଗେ ପହଞ୍ଚିଯିବେ । ସେ ସଙ୍ଗେ ସଙ୍ଗେ ପ୍ରାତଃକର୍ମ ଶେଷ କରିବା ପାଇଁ ବାହାରିଗଲେ ।

× × × × ×

ସେଦିନ ଗୀତାଦେବୀ, ପୁଅ ରାମକିଷନ୍ ଓ ତାରା ବୋମ୍ବେରୁ ଫେରୁ ଫେରୁ ପ୍ରାୟ ସନ୍ଧ୍ୟା ହୋଇଗଲାଣି । ସେମାନେ କାର୍‌ରେ ଫେରୁଥାନ୍ତି । ସେମାନଙ୍କ କାର୍ ପ୍ରଧାନ ଫାଟକ ଦେଇ ଶିଳ୍ପନଗରୀରେ ପଶୁ ପଶୁ ଦେଖିଲେ ଗୋଟିଏ ବରଗଛ ମୂଳରେ ଗୁଡ଼ାଏ ଲୋକ ଜମା ହୋଇଛନ୍ତି । ବାଜା ବାଜୁଛି । ଶଙ୍ଖ, ହୁଳହୁଳି, ଘଣ୍ଟା ଧ୍ୱନି ହେଉଛି । କିଏ ଗୋଟାଏ ଅଧାଲଙ୍ଗଳା ହୋଇ କୁହାଟମାରି ଏ ମୁଣ୍ଡରୁ ସେ ମୁଣ୍ଡକୁ ଦୌଡୁଛି । ଗୀତାଦେବୀ ଜାଣିପାରିଲେନି, ଏ କ'ଣ ହେଉଛି । ତାରାକୁ ପଚାରିଲେ, ''ସେଠି କ'ଣ ହେଉଛି ତାରା ? ଏତେଗୁଡ଼ାଏ ଲୋକ ସେଠି ଜମା ହୋଇଛନ୍ତି କାହିଁକି ?''

''ସେଠି ମା ଠାକୁରାଣୀ ମାଜଣା ହେଉଛି । କାଳିଶି ଲାଗିଛି ।''

''ବରଗଛ ମୂଳରେ କାହିଁକି ? ଠାକୁରାଣୀଙ୍କ ପାଇଁ କ'ଣ ମନ୍ଦିର ନାହିଁ ?''

''କାଳିଶି କ'ଣ ଧାଈମା ?''

କାଳିଶି ହେଉଛନ୍ତି ଠାକୁରାଣୀଙ୍କ ଭକ୍ତ । ଠାକୁରାଣୀ ତାକୁ ପ୍ରସନ୍ନ ହୁଅନ୍ତି । ଠାକୁରାଣୀଙ୍କ ମନକଥା କ'ଣ କାଳିଶି ଜରିଆରେ ସେ କହନ୍ତି । ଗାଁରେ ରୋଗବ୍ୟାଧି ହେଲେ, ମଡ଼କ ପଡ଼ିଲେ ଲୋକେ ଠାକୁରାଣୀଙ୍କୁ ସନ୍ତୋଷ କରିବା ପାଇଁ ଠାକୁରାଣୀ ମାଜଣା କରନ୍ତି, କାଳିଶି ଡାକନ୍ତି, ବଳି ପକାନ୍ତି । ଠାକୁରାଣୀ ଖୁସି ହୋଇଗଲେ ଗାଁରୁ ରୋଗ, ବ୍ୟାଧି, ମଡ଼କ ଦୂର ହୋଇଯାଏ । ଏହି ପାଖଆଖ ପଡ଼ାରେ କାହା ଘରେ କ'ଣ କିଛି ରୋଗ ହୋଇଛି, ସେଥିପାଇଁ ଏଠି ଠାକୁରାଣୀ ମାଜଣା ଚାଲିଛି ।''

''ଏ କ'ଣ ସତ ମା, ଠାକୁରାଣୀଙ୍କୁ ପୂଜା କଲେ ରୋଗବ୍ୟାଧି ସବୁ ଭଲ ହୋଇଯିବ ?'' ପୁଅ ପଚାରିଲା ।

ଗୀତାଦେବୀ ବରଗଛ ମୂଳରେ ଗାଡ଼ିକୁ ଅଟକାଇ ଗାଡ଼ିରୁ ଓହ୍ଲାଇଲେ । ତାଙ୍କ ପଛେ ପଛେ ତାରା ଓ ପୁଅ । ହଠାତ୍ ମା'ଙ୍କୁ ଦେଖି ସମବେତ ଲୋକମାନଙ୍କ ଭିତରୁ ମୁଖିଆ ମୁଖିଆମାନେ ମା'ଙ୍କୁ ନମସ୍କାର ଜଣାଇ ମା'ଙ୍କ ପାଖକୁ ଦୌଡ଼ି ଆସିଲେ । ଗୀତାଦେବୀ ଠିଆ ହୋଇ କାଳିଶି ପକା ଦେଖିଲେ । କାଳିଶି କେମିତି ପାଟି ମେଲା କରି ଝୁଣାଧୂଆଁକୁ ପିଇ ନାନା କଥା କହୁଛି ସେ ଶୁଣି

ତାଟଙ୍ଗା । ବରଗଛ ମୂଳରେ ବ୍ରାହ୍ମଣ କେତୋଟି ପଥର ଦେହରେ ଚନ୍ଦନ, ସିନ୍ଦୂର ଲଗାଇ ପୂଜା କରି ଚାଲିଥାଏ । ଦେବୀଙ୍କ ପାଖରେ ଦୁଇ ତିନୋଟି କୁକୁଡ଼ା ବଳି ପଡ଼ିଥାଏ । ଗୋଟିଏ ପିଲାର ଦେହ ଖରାପ ହୋଇଥିବାରୁ ସେଠି ତାକୁ ଶୁଆଇ ଦିଆଯାଇଥାଏ । ସମସ୍ତେ ଦେବୀଙ୍କୁ ପ୍ରାର୍ଥନା କରୁଥାନ୍ତି, ପିଲାଟିକୁ କେମିତି ଭଲ କରିଦେବା ପାଇଁ । କାଳିଶି ଗୋଟିଏ ବେତରେ ଭୂଇଁକୁ ଦୁଇ ଚାରିଥର ପିଟି ବଡ଼ପାଟିରେ କହୁଥାଏ, "ତୁ ମୋତେ ଆହୁରି ପଣା ଦେ, କୁକୁଡ଼ା ବଳି ଦେ, ନ ହେଲେ ଏ ଗାଁରୁ ଆହୁରି ଦି' ଚାରି ମୁଣ୍ଡ ନେବି ।"

ଗୀତାଦେବୀ ଏସବୁ ଦେଖି ମନେ ମନେ ହସିଲେ । ଠିଆ ହୋଇଥିବା ଲୋକଙ୍କ ଭିତରୁ କେତେଜଣଙ୍କୁ ଡାକି କହିଲେ, "ତୁମ୍ଭେମାନେ ମୋତେ କାଲି ଅଫିସ୍‌ରେ ଦେଖା କରିବ ।" ଏତକ କହି ଛୋଟ ପୁଅ ଓ ତାରାକୁ ଧରି ଗାଡ଼ିରେ ବସି ଘର ଅଭିମୁଖେ ଚାଲିଗଲେ ।

ବାଟରେ ଯାଉ ଯାଉ ପୁଅ ପଚାରିଲା, "ଏ କ'ଣ ମା, ସେ ଯେଉଁ ବେମାର ପଡ଼ିଥିବା ପିଲାଟା ସେଠି ଶୋଇଥିଲା, ଠାକୁରାଣୀ କ'ଣ ତାକୁ ଭଲ କରିଦେବେ ?"

"ନା, ବାପା, ଇଏସବୁ ଅନ୍ଧବିଶ୍ୱାସ । ରୋଗ ହେଲେ ଔଷଧ ଖାଇଲେ ରୋଗ ଭଲ ହେବ । ଡାକ୍ତରଙ୍କ ଚିକିତ୍ସାରେ ନ ରହି, ଔଷଧ ନ ଖାଇ ଏମିତି ଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ିଲେ କି ଠାକୁରାଣୀ ମାଜଣା କଲେ, କି ବଳି ଦେଲେ ରୋଗ ଭଲ ହୁଏନି । ଇଏସବୁ ଅତି ପୁରୁଣାକାଳିଆ କଥା । ଆଗଯୁଗରେ ଲୋକେ ତ ଅଜ୍ଞ ଥିଲେ, ଜାଣିପାରୁ ନ ଥିଲେ ରୋଗର କାରଣ କଅଣ । ସେମାନେ ଭାବୁଥିଲେ ଦେବଦେବୀ ଅସନ୍ତୋଷ ହେଲେ ରୋଗ ଦେଖା ଦିଏ । ଦେବୀଙ୍କୁ ଏହିଭଳି ଭାବରେ ସନ୍ତୋଷ କରିଦେଲେ ରୋଗ ଭଲ ହୋଇଯିବ । ଏ ସବୁ ନିହାତି ମିଛ ଓ ମନଗଢ଼ା କଥା ।"

"ଇଏ ସବୁ ମିଛକଥା ବୋଲି କ'ଣ ଏହି ଲୋକମାନେ ଜାଣି ନାହାନ୍ତି ମା ? ସେମାନେ ଠାକୁରାଣୀ ମାଜଣା କରୁଛନ୍ତି କେମିତି ?"

"ଆରେ, ଏ ଲୋକଗୁଡ଼ାକ ନିହାତି ଅଜ୍ଞ । ସେମାନଙ୍କ ବିଶ୍ୱାସ ଠାକୁରାଣୀ ମାଜଣା କଲେ ରୋଗ ଭଲ ହୋଇଯାଏ । ରୋଗର ପ୍ରକୃତ କାରଣ ଉପରେ ଏମାନଙ୍କର ଆସ୍ଥା ନାହିଁ । ଏମାନଙ୍କ ଧାରଣା ଡାକ୍ତର କି ଔଷଧ ରୋଗ ଭଲ କରି ପାରିବେନି । ଏଇ ଠାକୁରାଣୀ ରୋଗ ଭଲ କରି ଦେବେ । ଇଏ ହେଉଛି ସେହି ଯୁଗର କଥା, ଯେଉଁ ଯୁଗରେ ଡାକ୍ତର କି ବୈଦ୍ୟ ନ ଥିଲେ କି ଔଷଧ ନ ଥିଲା ।"

× × × × ×

"କ'ଣ ମଦନ ଆସିଲ ? ଗୋପୀନାଥ ବି ଆସିଛ ? ହଁ, ତୁମେସବୁ କାଲି ସନ୍ଧ୍ୟାବେଳେ ସେହି ବରଗଛ ମୂଳେ କ'ଣ ଠାକୁରାଣୀ ମାଜଣା କରୁଥିଲ ? କାଳିଶି ପକାଉଥିଲ ? କ'ଣ ହୋଇଥିଲା କି କାଲି ?"

"ହଁ, ମା, ଆମ ପଡ଼ାର ଗୋବିନ୍ଦର ପୁଅକୁ ଏମିତି ଗୋଟାଏ ଜ୍ୱର ହୋଇଛି ଯେ ସେ ମୋଟେ ଆଖି ଫିଟାଉ ନାହିଁ । ଏତେଦିନ ହୋଇଗଲାଣି, ଜ୍ୱର ଟିକିଏ ବି ଓହ୍ଲାଇବାକୁ ନାହିଁ । ଢେର୍ ପ୍ରକାର ଔଷଧ ଖାଇଲାଣି, ମୋଟେ ଭଲ ହେବାକୁ ନାହିଁ । ମଙ୍ଗଳାଦେବୀଙ୍କ ପୂଜକ କହିଲା, ମା'ଙ୍କ ପାଖରେ ମାଜଣା କଲେ ବଳି ଦେଲେ, କାଳିଶି ପକାଇଲେ ତା ପୁଅ ଭଲ ହୋଇଯିବ ।"

"କାଲି ସେସବୁ ତ କଲ, ପିଲା କ'ଣ ଭଲ ହୋଇଗଲା ?"

"ନା ମା, ସେମିତି ଅଛି ।"

"ଦେଖ ମଦନ, ଇଏସବୁ ଅତି ପୁରୁଣାକାଳିଆ କଥା । ଯେଉଁ ଯୁଗରେ ଡାକ୍ତର, ବୈଦ୍ୟ ନ ଥିଲେ, ରୋଗର କାରଣ ଜଣା ନ ଥିଲା, ଲୋକେ ରୋଗବ୍ୟାଧି ପାଇଁ ଦେବଦେବୀଙ୍କ ଶରଣାପନ୍ନ ହେଉଥିଲେ । ରୋଗ ଯଦି ସାଧାରଣ ହୋଇଥାଏ, ଭଲ ହୋଇ ଯାଉଥିଲା । ସାଙ୍ଘାତିକ ହୋଇଥିଲେ, ରୋଗୀ ମରୁଥିଲା । ସେ ଯୁଗ ତ ବର୍ତ୍ତମାନ ଆଉ ନାହିଁ । ଇଏ ହେଲା ବିଜ୍ଞାନର ଯୁଗ । ବହୁ ପ୍ରକାର ରୋଗର କାରଣ କ'ଣ ଜଣାପଡ଼ିଲାଣି । ସେସବୁ ରୋଗର ଅବ୍ୟର୍ଥ ଔଷଧ ବାହାରିଲାଣି । ଡାକ୍ତରଙ୍କ ପାଖକୁ ରୋଗୀକୁ ନେଇ ରୋଗ ଦେଖାଇଲେ, ସେ ରୋଗ ଚିହ୍ନି ଔଷଧ ଦେବେ, ରୋଗୀ ଭଲ ହୋଇଯିବ । ତୁମେ ତା ନ କରି ଠାକୁରାଣୀଙ୍କ ପାଖରେ ଏସବୁ କଲେ କ'ଣ ହେବ ? ତା'ଛଡ଼ା ଦେବଦେବୀ ହେଲେ ଆମର ଆରାଧ୍ୟ ଦେବତା । ଆମେ ତାଙ୍କୁ ପୂଜା ଅର୍ଚ୍ଚନା କରିବା ମନରେ ସାହସ, ଦମ୍ଭ ପାଇବା ପାଇଁ । ରୋଗୀଟି ମଧ୍ୟ ମନରେ ଦମ୍ଭ ପାଇବ, ସେ ଭଲ ହୋଇଯିବ ବୋଲି । ତେଣୁ ସେହି ଠାକୁରାଣୀଙ୍କୁ ଏମିତି ବରଗଛ ମୂଳେ ଅପନ୍ତରାରେ ଖରାବର୍ଷାରେ ପକାଇ ଠାକୁରାଣୀଙ୍କୁ ଅପମାନ ଦେଉଛ ସିନା, କିନ୍ତୁ କିଛି ଲାଭ ହେଉନି । ତୁମ୍ଭେମାନେ ଯଦି ଚାହୁଁଛ, କୁହ, ମୁଁ ସେଠି ଦେବୀଙ୍କ ପାଇଁ ଗୋଟିଏ ମନ୍ଦିର କରି ଦେବି । ସେହି ମନ୍ଦିରରେ ଦେବୀଙ୍କର ଏକ ସୁନ୍ଦର ମୂର୍ତ୍ତି ରହିବ, ଯାହାକୁ ଦେଖିଲେ ଆମ ମନରେ ଭକ୍ତି ଆସିବ । ବାଟଘାଟରେ ପଡ଼ିଥିବା ପଥରକୁ ଗୋଟାଇ ଆଣି ସେଥିରେ ସିନ୍ଦୂର, ଚନ୍ଦନ ଲେପି ଦେଇ ଠାକୁରାଣୀ ବୋଲି ପୂଜା କରନି । ଏହା ଆମ ଠାକୁରାଣୀଙ୍କ ପ୍ରତି ଅସମ୍ମାନ । ତା'ଛଡ଼ା ବଳି ଦେବା, କାଳିଶି ପକାଇବା ଆହୁରି ଖରାପ ।

ଦେବୀ ତ ଆମ ସମସ୍ତଙ୍କର ମାଆ । କୁକୁଡ଼ାର ବି ତ ସେ ମା । ମା କେବେ କ'ଣ କହିବ, ସେ ତା ସନ୍ତାନର ରକ୍ତ ପିଇବ ? ତେଣୁ ବଳି ଦେବା ଭାରି ଖରାପ କଥା । ବଳି, କାଳିଶି ମାଜଣାରେ ରୋଗ ଭଲ ହୁଏନି । ଡାକ୍ତରୀ ଚିକିତ୍ସା କଲେ ରୋଗ ଭଲ ହେବ । ତୁମେ ରୋଗୀକୁ ଆମ ଡାକ୍ତରଖାନାକୁ ନେଇଥିଲ ?''

''ନା, ମା, ନେଇନୁ ।''

''ଆରେ, ନେଇଥିଲେ ଏତେବେଳକୁ ପିଲାଟା ଭଲ ହୋଇ ସାରନ୍ତାଣି । ତାକୁ ଟାଇଫଏଡ୍ କି ଆଉକିଛି ଜ୍ୱର ହୋଇଥାଇପାରେ । ଡାକ୍ତର ଔଷଧ ଦେଲେ ଭଲ ହୋଇଯିବ । ତା ନ କରି ବଳି, କାଳିଶି ପକାଇ ପିଲାଟାକୁ ହନ୍ତସନ୍ତ କରୁଛ କାହିଁକି ? ଆଜିକାଲି ଏ ସଭ୍ୟ ବିଜ୍ଞାନଯୁଗରେ ସେକାଳର ପୁରୁଣା କଥା କ'ଣ ଅଛି ? ତୁମେ ଆଜି ଯାଅ ସେ ପିଲାକୁ ନେଇ ଡାକ୍ତରଖାନାକୁ ଯିବ । ଦେଖିବ ସେ ଶୀଘ୍ର ଭଲ ହୋଇଯିବ । କୋମ୍ପାନୀ ତରଫରୁ ତ ମାଗଣା ଔଷଧ ଦିଆଯାଉଛି । ପଛାଉଛ କାହିଁକି ଯେ ?''

ହଁ, ଶୁଣ, ସେଠି ମା ମଙ୍ଗଳାଙ୍କ ପାଇଁ ମନ୍ଦିରଟିଏ କରି ଦେଉଛି । ପ୍ରତିଦିନ ସେଠି ପୂଜା ଅର୍ଚ୍ଚନା କର, କିଛି ବଳି, କାଳିଶି ଆଦି ପକାଅ ନାହିଁ । ଏହା ଦେବଦେବୀଙ୍କ ପ୍ରତି ନିନ୍ଦା, ଅପମାନ । ମୋ କଥା ମନେ ରହିଲା ତ ? ଏବେ ଯାଅ ।

× × × × ×

''ଧାଈମା, ଧାଈମା, ଦେଖିଲୁ, ଦେଖିଲୁ, କିଏ ଜଣେ କାଳିଆ ଅପରିଷ୍କାର, ଅପରିଚ୍ଛନ୍ନ ସ୍ତ୍ରୀଲୋକ ଆମ ଘର ଭିତରକୁ ଚାଲି ଆସିଲା । ଗେଟ୍‌ରେ କେହି ନାହାନ୍ତି ନା କ'ଣ ? ଏଭଳି ଅପରିଷ୍କାର ସ୍ତ୍ରୀ ଲୋକଟାକୁ ସେମାନେ ଗେଟ୍ ଭିତରକୁ ଛାଡ଼ିଲେ କେମିତି ? ସେ କ'ଣ ମା'ଙ୍କ ଘର ଭିତରକୁ ପଶିଗଲା ନା କଅଣ ?''

ପୁଅର ଡାକ ଶୁଣି ତାରା ହଠାତ୍ ଚମକି ପଡ଼ିଲା । ଆଁ, ଘର ଭିତରକୁ ବାହାରୁ ଅପରିଷ୍କାର ସ୍ତ୍ରୀ ଲୋକଟାଏ ପଶି ଆସିଲା ? ପୁଣି ଆଉ କେଉଁଠିକି ନୁହେଁ, ଖୋଦ୍ ମା'ଙ୍କ ଶୋଇବା ଘର ଭିତରକୁ ?

ତାରା ଦୁଆରପାଖକୁ ଯାଇ ଦେଖେ ତ ମା ଡ୍ରେସିଂ ଟେବୁଲର ଦର୍ପଣ ସମ୍ମୁଖରେ ଠିଆ ହୋଇଛନ୍ତି । ମା'ଙ୍କୁ ଏମିତି ଦେଖି ସେ ନିଜେ ଚମକି ପଡ଼ିଲା । ତା' ପାଟିରୁ ବାହାରି ପଡ଼ିଲା, ''ଆଜି କ'ଣ ଫେର୍ କାରଖାନା ଭିତରକୁ ଯାଇଥିଲେ ?''

"ହଁ, ତାରା, ପଲିଏଷ୍ଟର କାରଖାନାର ଗୋଟିଏ ଯନ୍ତ୍ର ଅଚଳ ହୋଇ ପଡ଼ିଥିଲା, ମୁଁ ତାହାକୁ ଖୋଲି ସଜାଡ଼ିଦେଲାରୁ ଠିକ୍ ଚାଲିଲା ।"

"ଆମ ଇଞ୍ଜିନିଅରମାନେ କ'ଣ କରୁଛନ୍ତି ଯେ ? ଆପଣ ତ ଏସବୁ କରିବେ, ସେମାନେ କ'ଣ ଖାଲି ବସି ବସି ଦରମା ନେଉଥିବେ ?"

"ନା, ତାରା, ସେମାନଙ୍କର କିଛି ଦୋଷ ନାହିଁ । ସେମାନେ କୋମ୍ପାନୀ ସିଲ୍‌କୁ ଭାଙ୍ଗି ତା ଭିତର ତ ଦେଖି ପାରିବେନି । ସେହି ଆମେରିକାନ୍ କୋମ୍ପାନୀର କନ୍‌ସଲଟେନ୍‌ସି ମୋତେ ମିଳିଥିବାରୁ ମୁଁ ସେହି ସିଲ୍‌କୁ ଭାଙ୍ଗି ଯନ୍ତ୍ର ଭିତରେ ଖୋଲି ଯନ୍ତ୍ରଟିକୁ ସଜାଡ଼ି ଦେଇପାରିଲି । ଆମେରିକାକୁ ଖବର ପଠାଇ ସେଠୁ ଇଞ୍ଜିନିଅରମାନେ ଆସୁ ଆସୁ ଦୁଇ ତିନିମାସ ଡେରି ହୋଇ ଯାଇଥାନ୍ତା । ତେଣୁ ସେହି ଅସୁବିଧାକୁ ଏଡ଼ିବା ପାଇଁ ନିଜେ ସଜାଡ଼ିଦେଲି ।"

"ମା, ସତେ ଆପଣ କେତେ କଷ୍ଟ କରୁଛନ୍ତି ? ଏମିତି କେଉଁ ଶିଳ୍ପ ମାଲିକ ଯେ କରୁଥିବେ ମୋର ବିଶ୍ୱାସ ନୁହେଁ ।"

"କିଏ, ସେହି ସ୍ତ୍ରୀ ଲୋକ, ଆମ ଘର ଭିତରକୁ ପଶି ଆସିଲା ଧାଈମା ? ସେ ଗଲା କୁଆଡ଼େ ? ସେ ଏଇ ଘର ଭିତରକୁ ଆସିଲା ପରା ? ଇମିତି ଯିଏ ପାରି ସିଏ ମା'ଙ୍କ ଘର ଭିତରକୁ ପଶି ଯାଉଛି, ତୁମେ ଦେଖୁନ ?" ଏତକ କହି ପୁଅ ଘର ଭିତରକୁ ଅନାଇଦେଲା ।

ଗୀତାଦେବୀଙ୍କୁ ଦର୍ପଣ ସମ୍ମୁଖରେ ଠିଆ ହୋଇଥିବାର ଦେଖି କହିଲା, "ହଁ, ହଁ, ଏଇ ସେହି ସ୍ତ୍ରୀଲୋକ ଧାଈମା । ସେ କ'ଣ ଆସି ମା'ଙ୍କ ଶୋଇବାଘରେ ଦର୍ପଣ ଆଗରେ ଠିଆ ହେଲାଣି । କମ୍ ସାହସ ତ ନୁହେଁ ତା'ର ?"

"ସେ କିଏ, ଚିକିଏ ଚିହ୍ନ ବାବୁ । ଏତେ ଅଧୈର୍ଯ୍ୟ ହୋଇପଡୁଛ କାହିଁକି ?"

"ଏଁ, ଏଁ, ଏ ଯେ ମୋ ମା । ମା, ତୁମେ କ'ଣ ଏମିତି ହୋଇଛ ? ତୁମର ଏ କ'ଣ ହେଲା ।" କହୁ କହୁ ପୁଅ ଗୀତାଦେବୀଙ୍କୁ କୁଣ୍ଢାଇ ପକାଇଲା ।

"ହାଁ, ହାଁ, ଏ କ'ଣ କରୁଛୁ ବାପ । ମୋତେ ଛୁଅଁନାରେ ବାବୁ । ମୋ ଦେହର କଳା ଯେ ତୋ ଦେହରେ ଲାଗିଯିବ । ମୁଁ କେତେ ଅପରିଷ୍କାର ହୋଇଛି ଦେଖୁନୁ ? ତୋତେ ଘୃଣା ଲାଗୁନି ମୋତେ ଛୁଇଁବାକୁ ?"

"ମା, ତୁମେ ଏମିତି କେମିତି ହେଲ ? ତୁମକୁ ତ ଚିହ୍ନି ହେଉନି । ତୁମ ମୁହଁ, ହାତ, ଲୁଗାପଟା ସବୁଥିରେ କଳା ଆଉ ତେଲ ଚିକିଟା ଲାଗିଲା କେମିତି ?"

"ମା ପରା କାରଖାନା ଭିତରେ ପଶି ଗୋଟିଏ ବଡ଼ ଯନ୍ତ୍ର ଖୋଲି ସଜାଡୁ ଥିଲେ । କାରଖାନା ଇଞ୍ଜିନିଅରମାନେ ଯାହା ପାରନ୍ତିନି, ମା ତାକୁ ସଜାଡ଼ି ଦେଇ ପାରନ୍ତି ।

"ସତରେ କ'ଣ ମା, ତୁମେ କାରଖାନାରେ ଯନ୍ତ୍ରକୁ ସଜାଡୁ ଥିଲ ?"

"ହଁ, ବାପ, ନ ସଜାଡ଼ିଲେ କାରଖାନା ବନ୍ଦ ହୋଇଯିବ । ଆମ ଶ୍ରମିକ ଓ ଇଞ୍ଜିନିଅରମାନେ ବେକାର ହୋଇ ବସିଯିବେ । ଆମର ବହୁତ କ୍ଷତି ହେବ ।"

"ତୁମେ ସଜାଡ଼ି ପାରିଲ, ଅଥଚ ଆମ ଇଞ୍ଜିନିଅରମାନେ ପାରିଲେନି । ସେମାନେ କାହିଁକି ଅଛନ୍ତି ଯେ ?"

"ନା, ସେମାନଙ୍କର ଦୋଷ ନାହିଁ । ଏହି ଯନ୍ତ୍ର ଏମିତି ଯେ ଏହାକୁ କୋମ୍ପାନୀ ଇଞ୍ଜିନିଅର ଛଡ଼ା ଅନ୍ୟମାନେ ପାରିବେନି । ମୁଁ ପାରିବି, କାରଣ ମୋର ସେହି କମ୍ପାନୀର ଅନୁମତି ଅଛି ।"

"ମା ତୁମେ କେତେ ଭଲ ।" ଏତକ କହି ପୁଅ ଗୀତାଦେବୀଙ୍କୁ ଆହୁରି ଜୋରରେ ଜାବୁଡ଼ି ଧରିଲା ।

"ମା ଇଞ୍ଜିନିଅର ପାଠ ପଢ଼ିଛନ୍ତି ବୋଲି ସିନା ଆଜି ଏସବୁ କରି ପାରୁଛନ୍ତି । ତୁ ବାପ ପାଠ ପଢ଼ିଲେ ବଡ଼ କାଳକୁ ଏମିତି କେତେ କ'ଣ କରି ପାରିବୁ ।" ତାରା କହିଲା ।

"ମୁଁ, ମାଆ ଭଳି ପାଠ ପଢ଼ିବି । ମୁଁ ବି ଇଞ୍ଜିନିଅର ହେବି । ସେତେବେଳେ ଆମ କାରଖାନାର ଯାହାକିଛି ଖରାପ ହେବ, ମୁଁ ନିଜେ ସଜାଡ଼ି ଦେବି । ମା'ଙ୍କୁ ଆଉ କଷ୍ଟ କରିବାକୁ ପଡ଼ିବନି ।"

× × × × ×

"ଆସନ୍ତା ସପ୍ତାହରେ ଆମେ ଆମେରିକା ଯିବା ବାପ । ତୋ ବାପାଙ୍କୁ ଆମେ ଢେର୍ ଦିନ ହେଲା ଦେଖି ନାହାନ୍ତି । ତାଙ୍କ ଚିକିତ୍ସା ଦିଗରେ କ'ଣ ବ୍ୟବସ୍ଥା ହେଲା ଆମେ ଜାଣିପାରୁ ନାହାନ୍ତି । ସେଠାକୁ ନ ଗଲେ କିଛି ଜାଣି ହେବନି । ତୁ ଆଉ ମୁଁ ଆସନ୍ତା ମଙ୍ଗଳବାର ଦିନ ଆମେରିକା ଯିବା ।"

"ଧାଈମା କ'ଣ ଆମ ସାଙ୍ଗରେ ଯିବନି ମା ?" ପୁଅ ପଚାରିଲା ।

"ନା, ଧାଈମା ଗଲେ ଆମ ଘର ଏଠି ଚଳିବ କେମିତି ? ଏତେ ଚାକର, ପୂଝାରୀ, ଚପରାସୀ, ମାଳୀ, ଦରୁଆନ ଆଦିଙ୍କୁ ଚଳାଇବ କିଏ ? ଆମେ ତ ତିନି ଚାରିଦିନ ପରେ ଫେରି ଆସିବା । ଧାଈମା ଏଠି ଥାଉ ।"

"ନା, ଧାଈମା ନ ଗଲେ ମୁଁ ଯିବିନି ।"

ତାରା ସେଠି ଠିଆ ହୋଇଥିଲା, କହିଲା, "ତୋର ସବୁକଥାରେ ଜିଦ୍ ବାପ ? ସବୁକଥାରେ ଏମିତି ଅଝଟ ଲଗାଇଲେ ଆମେ ଚଳିବା କେମିତି କହିଲୁ ?

ମା'ତ ଯାଉଛନ୍ତି, ମୋ ଯିବା କ'ଣ ଦରକାର ? ମା ଆଉ ମୁଁ ଚାଲିଗଲେ, ଏଠିକା ଘରକଥା କିଏ ବୁଝିବ କହିଲୁ ?''

× × × × ×

''ମା, ବାପା ଏମିତି ଆଖିବୁଜି ଶୋଇ ରହିଛନ୍ତି, କାହିଁକି ? ଆମକୁ କାହିଁକି ଅନାଉ ନାହାନ୍ତି ?'' ବାପାଙ୍କ ଦେହ ଭଲ ନାହିଁ ବୋଲି କ'ଣ ଅନାଉ ନାହାନ୍ତି ?

''ହଁ, ବାପାଙ୍କ ଦେହ ଭଲ ନାହିଁ । ସେ ବେମାର । ତୁ ତାଙ୍କୁ ଏଠି ମୁଣ୍ଡିଆ ମାର । ତାଙ୍କ ଆଶୀର୍ବାଦ ତୋତେ ଭବିଷ୍ୟତରେ ବଡ଼ ମଣିଷ କରି ତୋଳିବ ବାପ ।''

''ଇଏ ତ ଡାକ୍ତରଖାନା ନୁହେଁ ମା । ଏହା ତ ଡାକ୍ତରଖାନା ଭଳି ଦିଶୁନି । ରୋଗୀ, ଡାକ୍ତର ତ କେହି ନାହାନ୍ତି । ଏହି ମାତ୍ର ସାତ ଆଠଜଣ ରୋଗୀ ଏମିତି ନିବୁଜ ଯନ୍ତ୍ର ଭିତରେ ଶୋଇଛନ୍ତି । ଡାକ୍ତରଖାନା ହୋଇଥିଲେ ତ କେତେ ଗହଳ ଚହଳ ଲାଗିଥାନ୍ତା ।''

''ହଁ, ବାପ, ଠିକ୍ କହିଛୁ । ଇଏ ଡାକ୍ତରଖାନା ନୁହେଁ । ଇଏ ହେଉଛି କ୍ରାଏଟୋରିୟମ୍ । ଯେଉଁ ରୋଗୀମାନେ ଭଲ ହୋଇପାରନ୍ତିନି, ଭବିଷ୍ୟତରେ ସେମାନଙ୍କ ଔଷଧ ବାହାରିବା ପର୍ଯ୍ୟନ୍ତ ସେମାନେ ଏଠି ରହନ୍ତି । ସେମାନଙ୍କ ଔଷଧ ବାହାରିଲେ, ସେମାନଙ୍କୁ ଏଠୁ ବାହାର କରି ଭଲ କରାଯାଏ । ଏଠାରେ ଏମାନେ ଏମିତି ପଡ଼ି ରହିଛନ୍ତି, ସେହିଦିନକୁ ଅପେକ୍ଷା କରି, ଯେଉଁଦିନ ସେମାନଙ୍କ ଔଷଧ ବାହାରିବ, ସେମାନେ ଚିକିତ୍ସିତ ହୋଇ ଭଲ ହୋଇ ପୁଣି ନିଜ ନିଜ ସଂସାରକୁ ଫେରି ଆସିବେ ।''

''ଆମ ବାପାଙ୍କ ଔଷଧ କେବେ ବାହାରିବ ମା ? ସେ କେବେ ଭଲ ହୋଇ ଘରକୁ ଫେରିବେ ?''

''ଚାଲ, ଆଜି ଡାକ୍ତରଙ୍କୁ ପଚାରିବା । ବାପାଙ୍କ ଔଷଧ ବାହାରିଲାଣି କି କଅଣ ? ସମ୍ଭବତଃ ବାହାରିନି । ବାହାରିଥିଲେ ସେ ନିଶ୍ଚୟ ଆମକୁ ଜଣାଇ ସାରନ୍ତେଣି ।''

''ବାପା ଭଲ ହୋଇ ଆସିଲେ, ମୋତେ କେତେ ସ୍ନେହ କରିବେ ମା । ତୁମଭଳି ମୋତେ ଏତେ ଗାଳି ଦେବେନି ।''

× × × × ×

''କ'ଣ ମା, ଆମେରିକାରୁ ତ ଫେରି ଆସିଲ । ବାବୁଙ୍କ ଭଲ ହେବା କଥା କେତେଦୂର ଗଲା, କାହିଁ ସେ କଥା ତ କିଛି କହିଲ ନାହିଁ ।''

"ନା, ତାରା, ବାବୁଙ୍କୁ ଭଲ କଲାଭଳି ଔଷଧ ଏ ପର୍ଯ୍ୟନ୍ତ ବାହାରିନି । କେବେ ବାହାରିବ ଡାକ୍ତରମାନେ ସଠିକ୍ ଭାବରେ କିଛି କହିପାରୁ ନାହାନ୍ତି । ସମ୍ଭବତଃ ଆହୁରି କିଛିବର୍ଷ ଲାଗିଯିବ । ମୋ ପୋଡ଼ା କପାଳରେ ଆହୁରି କେତେ ଦୁଃଖ ଅଛି କେଜାଣି ? ସତରେ କ'ଣ ମୁଁ ତାଙ୍କୁ ଏ ଜୀବନରେ ଦେଖି ପାରିବି ?"

"ଯୋଗ ନ ଆସିଲା ପର୍ଯ୍ୟନ୍ତ କିଛି ହୋଇପାରିବନି ମା । ବାବୁଙ୍କ ଭଲ ହେବା ଯୋଗ ଆସିଲେ ବଳେ ବଳେ ସେ ଔଷଧ ବାହାରିବ । ବାବୁ ସେ ଔଷଧ ଖାଇ ଭଲ ହୋଇ ଘରକୁ ଫେରି ଆସିବେ ।"

"ସେଇ ଆଶାରେ ତ ମୁଁ ବଞ୍ଚି ରହିଛି ତାରା । କିଏ ଜାଣେ କେବେ ସେ ଯୋଗ ଆସିବ ? ଏ ପୋଡ଼ା କପାଳରେ ବାବୁଙ୍କ ସହିତ କେବେ ଦେଖା ହେବ, ଦୟାମୟ ହିଁ ଜାଣନ୍ତି । ଆଉ କେତେ ଦୁଃଖ ସହିବି ଜାଣିପାରୁନି ତାରା । କିଏ ଜାଣେ ତାଙ୍କ ସହିତ ମୋର ଦେଖାହେବ କି କଅଣ ? ହୋଇପାରେ, ତାଙ୍କ ଔଷଧ ବାହାରିଲା ବେଳକୁ ମୁଁ ଇହଧାମରେ ନ ଥିବି ।"

"ଛି, ଆପଣ ଏମିତି ଅଲକ୍ଷଣା କଥା କ'ଣ ମୁହଁରେ ଆଣୁଛନ୍ତି ମା ? ଆଉ କେଇଟା ଦିନ ପରେ ଔଷଧ ବାହାରି ପଡ଼ିବ, ଆପଣ ଏମିତି ନିଜକୁ ହୀନିମାନ କରି କ'ଣ କହି ପକାଉଛନ୍ତି ?"

"ତୋ ତୁଣ୍ଡ ସୁତୁଣ୍ଡ ହେଉଲୋ ତାରା । ଭଗବାନ କେବେ ମୋ ଦୁଃଖ ନେବେ, ସେଇଆ ତାଙ୍କଠାରେ ମାଗୁଣି ।"

"ଆମ ଛୋଟବାବୁ ତ ବଡ଼ ହେଲେ ଆମର ଦୁଃଖ ଯିବ ମା । ଆପଣ ଆଉ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ଆଉ ବର୍ଷ କେତୁଟାରେ ତାଙ୍କ ପାଠପଢ଼ା ସରିଗଲେ ସେ ତ ବ୍ୟବସାୟର ଦାୟିତ୍ୱ ନେବେ । ଆପଣଙ୍କୁ ଏତେ ହଇରାଣ ହେବାକୁ ପଡ଼ିବନି ।"

× × × × ×

"ମା, ମା, ଶୁଣିଲଣି, ଶୁଣିଲଣି, ମୁଁ ଉଡ଼ାଜାହାଜ ଚଳା ଶିଖିବି । ବୋମ୍ବେ ଫ୍ଲାଇଙ୍ଗ୍ କ୍ଲବ୍‌ରେ ମେମ୍ବର ହେବି । ମୋତେ ଗୋଟିଏ ଦି'ଜଣିଆ ଉଡ଼ାଜାହାଜ କିଣିଦିଅ ।" ଏତକ କହୁ କହୁ ପୁଅ ରାମକିଷନ୍ ମା'ଙ୍କୁ ହଲାଇ ଦେଲେ ।

ପୁଅ ମୁହଁରୁ ଉଡ଼ାଜାହାଜ ଚଳା କଥା ଶୁଣି ଗୀତାଦେବୀଙ୍କର ହଲକ ଶୁଖିଗଲା । ପୁଅ ସ୍କୁଲପଢ଼ା ସାରୁ ନ ସାରୁଣୁ ଉଡ଼ାଜାହାଜ ଚଳା ପ୍ରତି ଝୁଙ୍କ୍ ଦେଖି ସେ ତାଟଙ୍ଗା । ଗୋଟିଏ ବୋଲି ପୁଅ, ଉଡ଼ାଜାହାଜ ଚଳାରେ ଯେଉଁ ବିପତ୍ତି, ସେ

ତାକୁ କେମିତି ଛାଡ଼ିଦେବେ ଭାବି ପାରିଲେନି । ପୁଅ ଯଦି ଏମିତି କହୁ କହୁ ଜିଦ୍ ଧରେ, ତେବେ ସେ କ'ଣ କରିବେ, ସେଇ ହେଲା ତାଙ୍କର ବଡ଼ ଚିନ୍ତା । ପୁଅକୁ ସେଥିରୁ ନିବର୍ତ୍ତାଇବା ପାଇଁ କହିଲେ, "ଆରେ ବାପ, ଆମର ଉଡ଼ାଜାହାଜ ଚଳା କ'ଣ ଦରକାର, ଯେ ତୁ ଉଡ଼ାଜାହାଜ ଚଳା ଶିଖିବୁ । ତୁ ତ ଭବିଷ୍ୟତରେ ପାଇଲଟ ହେବୁନି, ତେବେ ତୋର ଉଡ଼ାଜାହାଜ ଚଳା ଶିକ୍ଷା କ'ଣ ଦରକାର ? ତୁ ମନଦେଇ ପାଠ ପଢ଼, ବଡ଼ ହେଲେ ଇଞ୍ଜିନିଅର ହେବୁ, ଆମ ଶିଳ୍ପ କାରଖାନା ସମ୍ଭାଳିବୁ । ମୁଁ କ'ଣ ସବୁଦିନେ ଏମିତି ସମ୍ଭାଳୁଥିବି । ତୁ ବଡ଼ ହେଲେ, ତୋ ହାତରେ ଏସବୁ ଦେଇ ମୁଁ ନିଶ୍ଚିନ୍ତ ହେବି ।"

"ତୁ, ଦେଖୁନୁ ମା, ଜେ.ଆର୍.ଡି. ଟାଟା କେମିତି ପିଲାଦିନେ ଉଡ଼ାଜାହାଜ ଚଳାଉଥିଲେ, ବଡ଼ କାଳକୁ ପୁଣି ବ୍ୟବସାୟରେ ଭର୍ତ୍ତି ହୋଇ ଏତେବଡ଼ ଶିଳ୍ପପତି ହେଲେ । ମୁଁ ସେମିତି ହେବି । ମୋ ପାଇଁ ତୁମକୁ ଗୋଟିଏ ଉଡ଼ାଜାହାଜ କିଣି ଦେବାକୁ ପଡ଼ିବ ।"

"ନା, ବାପ, ତୁ ଦେଖ, ତୋ ବାପା ଏଠି ନାହାନ୍ତି । ସେ ଆମେରିକାରେ ଭଲ ହେଉଛନ୍ତି । କେବେ ଭଲ ହୋଇ ଆସିବେ, ଠିକ୍ ନାହିଁ । ଆମ ଶିଳ୍ପସଂସ୍ଥାକୁ ଦେଖିଲାଭଳି ଆଉ କେହି ଲୋକ ନାହାନ୍ତି । ଯେତେହେଲେ ମୁଁ ସ୍ତ୍ରୀ ଲୋକଟିଏ । ଏତେଗୁଡ଼ିଏ ଶିଳ୍ପ କାରଖାନାକୁ କ'ଣ ସମ୍ଭାଳି ପାରୁଛି ? ତୋ ବାପା ଥିଲେ, ସବୁ ଦାୟିତ୍ୱ ତାଙ୍କ ମୁଣ୍ଡରେ ଥିଲା । ତାଙ୍କରି ନାଁରେ ସବୁ ଚାଲୁଥିଲା । ତୋ ବାପାଙ୍କ ଅନୁପସ୍ଥିତିରେ ମୁଁ କ'ଣ ଏକା ଚଳାଇପାରୁଛି ? ତୁ କେମିତି ବଡ଼ ହେବୁ, ବଡ଼ ହେଲେ ମୋ ହାତରୁ ଏସବୁ ଦାୟିତ୍ୱ ନେବୁ, ସେହି ମୋର ଚିନ୍ତା । ତୁ ମନ ଦେଇ ପାଠ ପଢ଼ ବାବା, ଆମର ଉଡ଼ାଜାହାଜ ଚଳାରୁ କ'ଣ ମିଳିବ ? ତୁ ଟିକିଏ ମୋ ଅବସ୍ଥା ବୁଝ୍, ଏମିତି ଛୋଟପିଲାଙ୍କ ଭଳି ଅଝଟ ଲଗାନା ।"

"ମୁଁ ଏସବୁ କିଛି ଶୁଣିବିନି । ତୁ ଯଦି ଶିଳ୍ପ କାରଖାନାଗୁଡ଼ାକ ସମ୍ଭାଳି ନ ପାରୁଛୁ, ମାମୁଁଙ୍କୁ ଡାକୁନୁ, ସେ ବୁଝାସୁଝା କରିବେ ।"

"ଆରେ, ମାମୁଁମାନେ ସେମାନଙ୍କ କଳ କାରଖାନା କଥା ବୁଝିବେ, ନା ଆମ କଳ କାରଖାନା କଥା ବୁଝିବେ ?"

"ମୁଁ ସେସବୁ କିଛି ଶୁଣିବିନି । ମୁଁ ନିଶ୍ଚେ ଉଡ଼ାଜାହାଜ ଚଳା ଶିଖିବି ।"

"ହେଉ, ଅପେକ୍ଷା କର, ତୋ ବାପା ଭଲ ହୋଇ ଆସନ୍ତୁ । ସେ ଆସିଲେ ତୋତେ ଉଡ଼ାଜାହାଜ କିଣି ଦେବେ ।"

"ନା, ତା ହେବନି । ତୁମକୁ କିଣି ଦେବାକୁ ପଡ଼ିବ । ତୁମେ ଯଦି କିଣି ନ ଦେବ, ତେବେ ମୁଁ ଅଜାଘରକୁ ପଳାଇବି । ଅଜା ମୋତେ ଉଡ଼ାଜାହାଜ କିଣି ଦେବେ କହିଛନ୍ତି । ମୁଁ ଫ୍ଲାଇଙ୍ଗ୍ କ୍ଲବ୍‌ରେ ଉଡ଼ାଜାହାଜ ଚଳା ଶିଖିବି ।"

"ମୋର ମାନସିକ ଅବସ୍ଥା ଯାହା, ସେଥିରେ ତୋର ଅଝଟ, ମୋତେ ପାଗଳ କରି ପକାଇବ ବାପ । ଅଜାଙ୍କ ଘରକୁ କାହିଁକି ଯିବୁ ? ଅପେକ୍ଷା କର, ତୋ ବାପା ଆସନ୍ତୁ, ତୋତେ ଉଡ଼ାଜାହାଜ କିଣି ଦେବେ ।"

"ବାପା କେବେ ଆସିବେ, ମୁଁ କ'ଣ ଅପେକ୍ଷା କରି ବସିଥିବି ? ତୁମେ ମୋତେ ଏବେ କିଣିଦିଅ ମା । ନ ହେଲେ ମୁଁ ଆଜି ସ୍କୁଲ ଯିବିନି ।"

"ତୁ ଉଡ଼ାଜାହାଜ ଚଳା ଶିଖିଲେ ମୁଁ ବଞ୍ଚି ପାରିବିନି ବାପ । ତୋ କଥା ଚିନ୍ତା କରି ମୁଁ ପାଗଳ ହୋଇଯିବି । ତୋ ବାପାଙ୍କ କଥା ଚିନ୍ତା କରି କରି ମୋ ମଥାର ଅଧେ ଯାଇଛି । ବାକି ଅଧକ ତୋ ଅଝଟପଣିଆ ଖାଇବ ।" ଏତକ କହୁ କହୁ ଗୀତାଦେବୀ କାନ୍ଦି ପକାଇଲେ ।

ସେହି ବାଟ ଦେଇ ଯାଉଥିଲା ତାରା । ଗୀତାଦେବୀଙ୍କୁ କାନ୍ଦୁଥିବାର ଦେଖି ଦୌଡ଼ି ଆସି ତାଙ୍କ ଆଖିରୁ ଲୁହ ପୋଛି ଦେଉ ଦେଉ କହିଲା, "ପିଲାଟା ତ ଅଝଟ ହୋଇଛି, ତାକୁ ବୁଝାଇ ସୁଝାଇ ବାଟକୁ ଆଣିବେ, ନା ଏମିତି କାନ୍ଦିବେ ? ଆପଣ ଯଦି ଏମିତି କାନ୍ଦିବେ, ତେବେ ପିଲାଟାକୁ ମଣିଷ କରିବ କିଏ ? ପୁଅଆଡ଼କୁ ଅନାଇ ତାରା କହିଲା, "ଦେଖ୍, ବାପ, ତୁ ଏମିତି ଅଝଟ ହେଲେ ମା କେମିତି ତୋତେ ସମ୍ଭାଳିବେ କହି ମା କେମିତି କାନ୍ଦୁଛନ୍ତି, ଦେଖୁଛୁ ତ ? ମା'ଙ୍କୁ କନ୍ଦାଇବା କ'ଣ ତୋର ଉଚିତ ବାପ ?"

"ତୁ ଟିକିଏ ମା'ଙ୍କୁ ବୁଝାଇଦେଲୁ ଧାଈମା, ସେ ମୋତେ ଗୋଟିଏ ଉଡ଼ାଜାହାଜ କିଣିଦେବ । ମୁଁ ଉଡ଼ାଜାହାଜ ଚଳା ଶିଖିଲେ, ତୋତେ ଉଡ଼ାଜାହାଜରେ ନିତି ବୁଲାଇ ଆଣିବି ଧାଈମା ।"

"ମୋତେ ଖାଲି ନେବୁ ? ମା'ଙ୍କୁ ନେବୁନି ?"

"ମା'ତ ଖାଲି କାନ୍ଦୁଛି । ତାକୁ ନେବି କେମିତି ? ସେ ତ ଉଡ଼ାଜାହାଜରେ ବସିଥିବ, ଏଣେ କାନ୍ଦୁଥିବ ।"

ହେଉ, ଟିକିଏ ଧୈର୍ଯ୍ୟଧର, ସୁବିଧା ହେଲେ ମା କିଣିଦେବେ । ତୁ ଆଗେ ମନଦେଇ ପାଠ ପଢ଼, ପରେ ଉଡ଼ାଜାହାଜ ଚଳା ଶିଖିବୁ ।"

"ମା ମୋତେ କିଣିଦେବ ତ ? ତୁ ସତ କହୁଛୁ ଧାଈମା ?"

"ହଁ, ହଁ, ମା କିଣିଦେବେ । ମାଙ୍ଗ ସାଙ୍ଗରେ ଆଉ ଅଝଟ ଲଗାନା । ତୁ ଏବେ ସ୍କୁଲ ଯା । ମୁଁ ତୋ ଉଡ଼ାଜାହାଜ କିଣା କଥା ବୁଝିବି ।"

ପୁଅ ଚାଲିଗଲା ପରେ ଗୀତାଦେବୀ କହିଲେ, "ତୁ କ'ଣ ଏମିତି ପୁଅକୁ କହିଦେଲୁ ତାରା, ମୁଁ କ'ଣ ତାକୁ ସତରେ ଉଡ଼ାଜାହାଜ କିଣିଦେଇ ପାରିବି ? ତାକୁ ଉଡ଼ାଜାହାଜ କିଣିଦେଲେ ତୁ କ'ଣ ଭାବୁଛୁ ମୁଁ ବଞ୍ଚି ପାରିବି ?"

"ଆପଣ ବ୍ୟସ୍ତ ହୁଅନ୍ତୁନି ମା । ସତରେ ତାକୁ ଉଡ଼ାଜାହାଜ କିଣିଦେବେ ନା କଅଣ ? ପିଲାଟା ଏକ୍ଷଣି ଅଝଟ ଲଗାଉଛି, ଆଉ କିଛି ସମୟପରେ ଭୁଲିଯିବନି ସେ । ପିଲାଟିକୁ ହଁ, ହାଁ କରିଦେଲେ ଗଲା ।"

## ଆଠ

ଯେଉଁଦିନ ପୁଅ ବଡ଼ ହୋଇ ଗୀତାଦେବୀଙ୍କ ସବୁ କଳକାରଖାନା, ଶିଳ୍ପ ବ୍ୟବସାୟର ଦାୟିତ୍ୱ ବୁଝି ନେଲା, ସେଦିନ ଗୀତାଦେବୀଙ୍କ ଆନନ୍ଦ କହିଲେ ନ ସରେ । ତାରାକୁ କୁଣ୍ଢାଇ ପକାଇ ବାଷ୍ପ ଗଦ୍‌ଗଦ କଣ୍ଠରେ କହିଲେ, "ଆଜି ମୋ ଜୀବନରେ ଗୋଟିଏ ବଡ଼ଦିନ ତାରା । ପୁଅ ଯେ ଦିନେ ବଡ଼ ହୋଇ ମୋ ଦୁଃଖ ଲାଘବ କରିବ, ଏ ଆଶା ମୋର ନ ଥିଲା । ତା ବାପା ଆଜକୁ ବେମାର ପଡ଼ିବା ପଚିଶବର୍ଷ ହୋଇଗଲାଣି । ଏଇ ପଚିଶବର୍ଷ ଭିତରେ କଳକାରଖାନା, ଶିଳ୍ପ ବ୍ୟବସାୟ ନେଇ ମୁଁ ଯେ କି ହନ୍ତସନ୍ତ ହେଲିଣି, ତା ଭଗବାନଙ୍କୁ ଜଣା ।"

"ବାବୁ ଏମିତି ସାଙ୍ଘାତିକ ରୋଗରେ ପଡ଼ିବେ ବୋଲି କ'ଣ କିଏ ଜାଣିଥିଲା ମା ? ସେ ଆଜି ଯଦି ରୋଗରେ ପଡ଼ି ନ ଥାନ୍ତେ, ଆପଣ ଏତେ ହଇରାଣ ହରକତ କାହିଁକି ହୋଇଥାନ୍ତେ ? ବାବୁ କେବେ ଭଲ ହୋଇ ଫେରିବେ ମା ? ବାବୁ ଆସିଲେ ପିଲାଟାକୁ ଟିକିଏ କଳକାରଖାନା ପରିଚାଳନାରେ ସାହାଯ୍ୟ କରନ୍ତେ । ଆପଣଙ୍କର ଏହି ଯେଉଁ ଏତେବଡ଼ ଶିଳ୍ପ ସାମ୍ରାଜ୍ୟ, ତାକୁ କ'ଣ ଏତେ କମ୍ ବୟସର ପିଲାଟା ସମ୍ଭାଳି ପାରିବ ମା ?"

"ମୋର ବି ତ ସେଇ ଚିନ୍ତା ତାରା । ହେଲେ ପୁଅ ଇଞ୍ଜିନିଅରିଂ ପାସ୍ କରିଛି, ଏଣେ ବ୍ୟବସାୟ ପରିଚାଳନାରେ ବଡ଼ ଡିଗ୍ରୀ ନେଇଛି । ସେ କ'ଣ ପାରିବନି ବୋଲି ତୁ ଭାବୁଛୁ ? ତା'ଛଡ଼ା ମାମୁଁ ଅଜାଙ୍କ ପାଖରେ ରହି ଶିଳ୍ପ ପରିଚାଳନା ଶିଖିଛି, ଆଉ ନ ପାରିବ କାହିଁକି ? ତେବେ ମୋର ଗୋଟିଏ ଚିନ୍ତା ତାରା, ବାପ ନୀତି ସହିତ ତ ସେ ପରିଚିତ ହୋଇନି । ସେ ଯଦି ନିଜ ବାପାଙ୍କ ନୀତି ଛାଡ଼ି ମାମୁଁ ଅଜାଙ୍କ ନୀତି ଧରେ, ତେବେ ସବୁ ଗଲା ।

ତା ବାପା ରୋଗମୁକ୍ତ ହୋଇ ଫେରି ଆସିଲେ ଦେଖି କେତେ ମନ କଷ୍ଟ ନ କରିବେ ସତେ ?''

''ଆପଣ ତାକୁ ମାମୁଁଘରକୁ ପଠାଇଦେଲେ, ଶିଳ୍ପ ପରିଚାଳନା ଶିଖିବା ପାଇଁ । ଆପଣ ଯଦି ନିଜ ପାଖରେ ରଖି ଶିଖାଇଥାନ୍ତେ, ସେ ସିନା ବାବୁଙ୍କ ନୀତି ସହିତ ପରିଚିତ ହୋଇ ପାରିଥାନ୍ତା ।''

''ମୋର ଡର ହେଲା ତାରା, ମୁଁ ତାକୁ ସବୁ ଠିକ୍ ଭାବରେ ଶିଖାଇ ପାରିବି କି କଅଣ । ବାପା ଭାଇମାନେ ତ ଏଥିରେ ଦକ୍ଷ । ତେଣୁ ସେମାନଙ୍କ ପାଖକୁ ଶିଖିବା ପାଇଁ ପଠାଇଦେଲି । ଭାବିଲି ପିଲାଂଟା ଆଗେ ଶିଳ୍ପ ପରିଚାଳନା ଶିଖୁ, ପରେ ବାପାଙ୍କ ନୀତି ସହିତ ପରିଚିତ ହେବ । ଅବଶ୍ୟ ଦାୟିତ୍ୱ ଦେଲାବେଳେ ବାପା ନୀତି କଥା ତାକୁ ବୁଝାଇ ଦେଇଛି । ତା ବାପା କେମିତି ଏ ନୀତିକୁ ଭଲ ପାଆନ୍ତି ଏ ନୀତିରୁ ତିଳେମାତ୍ର ଟଳନ୍ତି ନାହିଁ, ତା ବି ବୁଝାଇ ଦେଇଛି । ଏହି ନୀତିଠାରୁ ଯେମିତି ଟିକିଏ ବି ଦୂରେଇ ନ ଯାଏ, ସେଥିପ୍ରତି ତାଗିଦ୍ କରି ଦେଇଛି ମଧ୍ୟ ।

''ହେଲେ ସେ ମାମୁଁଘରେ ଯେଉଁ ନୀତି ସହିତ ଅଭ୍ୟସ୍ତ ହୋଇଯାଇଛି ତାକୁ ଛାଡ଼ି କ'ଣ ବାବୁଙ୍କ ନୀତି ଧରି ପାରିବ ? ଆପଣ ସଙ୍ଗେ ସଙ୍ଗେ ସବୁ ଦାୟିତ୍ୱ ହସ୍ତାନ୍ତର ନ କରି ଧୀରେ ଧୀରେ ହସ୍ତାନ୍ତର କରିଥିଲେ ଭଲ ହୋଇଥାନ୍ତା । ପ୍ରଥମରୁ କେତୋଟି କାରଖାନାକୁ ନେଇ ସେ କେମିତି ପରିଚାଳନା କରୁଛି ଦେଖିସାରି ଅନ୍ୟଗୁଡ଼ିକ ହସ୍ତାନ୍ତର କରିଥିଲେ ଭଲ ହୋଇଥାନ୍ତା । ଆପଣଙ୍କ ଟ୍ରେନିଂ ପାଇ ସେ ଧୀରେ ଧୀରେ ଆପଣଙ୍କ ନୀତି ସହିତ ଅଭ୍ୟସ୍ତ ହୋଇ ପଡ଼ିଥାନ୍ତା ।

''ଠିକ୍ କହିଛୁ ତାରା, ମୋର ତାହା ହିଁ କରିବା ଉଚିତ ଥିଲା । ସତ ଲୋ ତାରା, ମୋର ଆଉ ଏତେ ଧୈର୍ଯ୍ୟ ନାହିଁ । ତୋ ବାବୁଙ୍କ କଥା ଚିନ୍ତା କରିବି ନା ଏହି ଶିଳ୍ପ କାରଖାନା କଥା ଚିନ୍ତା କରିବି ? ମୋତେ ଆଉ କିଛି ଭଲ ଲାଗୁନି । ପୁଅ ତା'ର ଯାହା କରୁଛି କରୁ, ମୁଁ ଯାଉଛି ଆମେରିକାରେ ରହି ତାଙ୍କ ଖବର ବୁଝିବି । ଯେଉଁଦିନ ସେ ଭଲ ହେବେ, ସେହିଦିନ ତାଙ୍କୁ ନେଇ ଫେରିବି ।''

''ନା, ମା, ଆପଣ ଚାଲିଗଲେ କେମିତି ହେବ ? ପୁଅ ତ ଦାୟିତ୍ୱ ନେଇଛି, ଶିଳ୍ପ ପରିଚାଳନା ସେ କେମିତି କରୁଛି ଦେଖନ୍ତୁ, ତା ପରେ ପୁଅକୁ ପୁଣି ହାତକୁ ଦି'ହାତ କରିବାକୁ ପଡ଼ିବ । ସେସବୁ ନ ହେଲା ପର୍ଯ୍ୟନ୍ତ ଯିବେ କୁଆଡ଼େ ? ସେମିତି ମଝିରେ ମଝିରେ ଦୁଇ ଚାରିଦିନ ପାଇଁ ଯାଉଥାନ୍ତୁ, ବାବୁଙ୍କୁ ଦେଖାଚାହାଁ କରି ଠିକ୍ ଔଷଧ ବାହାରିବା କଥା ବୁଝି ଆସୁଥାନ୍ତୁ ।''

"ହଁ, ଠିକ୍ କହିଛୁ ତାରା, ପୃଥିର ତ ଆହୁରି ଢେର୍ କାମ ବାକି ଅଛି । ସେସବୁ କାମ ଶେଷ ନ କରି ମୁଁ କ'ଣ ଆମେରିକା ଯାଇ ନିଶ୍ଚିନ୍ତରେ ରହିପାରିବି ?"

× × × × ×

"କ'ଣ ବାପ, ମୁଁ କିଛି ବୁଝିପାରୁନି । ଆମ ସିମେଣ୍ଟ କାରଖାନା, ପଲିଏଷ୍ଟର କାରଖାନା, କାଗଜ କାରଖାନା, ଚିନି କାରଖାନା, ରୋଲିଂ ମିଲ୍‌ସରେ କ'ଣ ଧର୍ମଘଟ ଚାଲିଛି । ଶ୍ରମିକମାନେ କ'ଣ କାମରେ ଯୋଗ ଦେଉ ନାହାନ୍ତି ? ତୁ ସେସବୁ କାରଖାନାରେ କ'ଣ ତାଲା ପକାଇଦେଇଛୁ ? ମୋ ଜୀବନକାଳ ଭିତରେ ଯାହାଦିନେ ନ ଥିଲା, ଆଜି ତୁ ଦାୟିତ୍ୱ ନେଉ ନେଉ ଏସବୁ କ'ଣ ଆରମ୍ଭ ହୋଇ ଗଲାଣି ?"

"ହଁ, ମା, ଆମ ଶ୍ରମିକମାନଙ୍କୁ ବାହାର ଟାଉଟରମାନେ ମତାଇଦେଇ ଏହି ଧର୍ମଘଟ ଆରମ୍ଭ କରିଛନ୍ତି । ସେମାନଙ୍କୁ ଯେତେ ବୁଝାଇଲେହେଁ ସେମାନେ କ'ଣ ଆମ କଥା ଶୁଣୁଛନ୍ତି ? ସେମାନେ କହୁଛନ୍ତି, ସେମାନଙ୍କ ଇଙ୍ଗିତରେ ଆମ କଳ କାରଖାନା ଚାଲିବ । ସେମାନେ କାରଖାନା ପରିଚାଳନାରେ ଭାଗ ନେବେ, ଏହା କ'ଣ କେଉଁଠି ହେଲାଣି ? ସେମାନେ ଯଦି କାରଖାନା ପରିଚାଳନାରେ ଭାଗ ନେବେ, ତେବେ ଆମେସବୁ ଅଛୁ କ'ଣ ପାଇଁ ?"

"କାହିଁ ବାପ, ମୁଁ ଏତେଦିନ କଳ କାରଖାନା ଚଳାଇ ଆସିଲି, କାହିଁ କେଉଁଦିନ ତ ସେମାନେ ଧର୍ମଘଟ କରୁ ନ ଥିଲେ । କେଉଁ ଟାଉଟର ତ ଦିନେ ହେଲେବି ସେମାନଙ୍କୁ ଶିଖାଉ ନ ଥିଲା । ଆଜି ତୋରି ବେଳକୁ ସବୁ ଟାଉଟର ଜୁଟିଗଲେ କୁଆଡୁ ? ତୋ ପରିଚାଳନାରେ କେଉଁଠି ଭୁଲ୍‌ଭଟକା ରହିଯାଇ ନାହିଁ ତ ବାପ ? ତୋ ବାପା ତ ସେମାନଙ୍କୁ ଶିଳ୍ପ ପରିଚାଳନାରେ ଅଂଶୀଦାର କରିଥିଲେ ତୁ ତାକୁ ଭାଙ୍ଗି ଦେଉଛୁ କାହିଁକି ? ମୁଁ ତ ତୋ ବାପାଙ୍କ ବ୍ୟବସ୍ଥାକୁ ମାନୁ ନ ଥିଲି ?"

ଏହି ସମୟରେ ଦରୱାନ୍ ଆସି ମା'ଙ୍କୁ ସଲାମ୍ ବଜାଇ ଖବର ଦେଇ କହିଲା, "କାରଖାନାର କେତେଜଣ ଶ୍ରମିକ ଆପଣଙ୍କୁ ସାକ୍ଷାତ କରିବାକୁ ଚାହୁଁଛନ୍ତି ମା ।"

"ମା'ଙ୍କୁ ଦେଖା କରିବେ କାହିଁକି ? ସେମାନଙ୍କୁ ମୋତେ ଦେଖା କରିବାକୁ କହିଦେ । ସେମାନେ ମୋ ଅଫିସ୍‌ରେ ଅପେକ୍ଷା କରନ୍ତୁ । ମୁଁ ଯାଏ ମା' ସେମାନଙ୍କୁ ସାକ୍ଷାତ କରି ପାରିବେନି । ସେମାନଙ୍କର ଯାହା ଅଭିଯୋଗ ମୋ ଠାରେ କରନ୍ତୁ । ସାଙ୍ଗେ ସାଙ୍ଗେ ମା'ଙ୍କ ପାଖକୁ ଆସି ଯାଉଛନ୍ତି । ଏମାନଙ୍କୁ ପାନେ ଲେଖାଏଁ ନ ଦେଲେ ହେବନି ।"

"ନା, ନା, ପୁଅ ତୁ ସେମାନଙ୍କୁ ମନା କରନା । ସେମାନେ ଯେତେବେଳେ ଦେଖା କରିବାକୁ ଆସିଛନ୍ତି, ଆସନ୍ତୁ । ସେମାନେ ମୋ ସହିତ କଥାବାର୍ତ୍ତା କରୁଛନ୍ତି, ମୁଁ ଦେଖେ । ତୁ ପରେ ସେମାନଙ୍କ ସହ କଥାବାର୍ତ୍ତା କରିବୁ ।"

ମା'ଙ୍କଠାରୁ ଅନୁମତି ପାଇ ଶ୍ରମିକ ନେତାମାନେ ମା'ଙ୍କ ଗୁହାରି ଶୁଣିବା ପ୍ରକୋଷ୍ଠରେ ଆସି ଜମା ହେଲେ । ରାମକିଷନବାବୁ ନିଜ କଥା ନ ରହିଲା ବୋଲି ମା'ଙ୍କ ଉପରେ ବିରକ୍ତ ହୋଇ ସେଠୁ ଚାଲିଗଲେ । ଗୀତାଦେବୀ ଶ୍ରମିକ ନେତାମାନଙ୍କୁ ସମ୍ମାନର ସହିତ ଅଭିଯୋଗ ପ୍ରକୋଷ୍ଠରେ ବସାଇ ସେମାନଙ୍କ ଆପତ୍ତି ଅଭିଯୋଗ ମନଦେଇ ଶୁଣିଲେ ।

"ମା, ଆପଣ ଆଉ ବଡ଼ବାବୁ ଯାହାସବୁ କରି ଯାଇଥିଲେ, ସେସବୁକୁ ସାନବାବୁ ଭାଙ୍ଗି ଦେଉଛନ୍ତି । ପ୍ରତ୍ୟେକ କାରଖାନାର ପରିଚାଳନା ନେଇ ବଡ଼ବାବୁ ଯେଉଁ ପରାମର୍ଶଦାତା କମିଟି ଗଠନ କରିଥିଲେ, ଯେଉଁଥିରେ ଶ୍ରମିକ, ଅଫିସର ଉଭୟେ ମେମ୍ବର ଥିଲେ, ସେହି କମିଟି ବର୍ତ୍ତମାନ ଆଉ ନାହିଁ । ଶ୍ରମିକମାନଙ୍କ ସ୍ୱାର୍ଥ, କାରଖାନାର ହାନିଲାଭ ବୁଝିବା ପାଇଁ ସେମାନେ ଥିଲେ । କାରଖାନାର ଉତ୍ପାଦନ, ବିକ୍ରୟ, ଲାଭକ୍ଷତି ସବୁକିଛି ଏହି କମିଟି ବୁଝୁଥିଲା । ଶ୍ରମିକମାନଙ୍କୁ କେତେ ବୋନସ ମିଳିବ, ଶ୍ରମିକମାନଙ୍କ କଲ୍ୟାଣ ପାଇଁ କ'ଣ କ'ଣ କରାଯିବ, ତାହା ଏହି କମିଟି ଠିକ୍ କରୁଥିଲା । ଏହି କମିଟିର ଚେୟାରମେନ୍ ବଡ଼ବାବୁ ଥିଲେ । ବଡ଼ବାବୁଙ୍କ ପରେ ଆପଣ ରହିଲେ । ସାନବାବୁ ସେ କମିଟିକୁ ଭାଙ୍ଗିଦେଇ ସେସବୁ ବିଷୟକୁ ନିଜ ଅକ୍ତିଆରକୁ ଘେନି ଆସିଛନ୍ତି । ଶ୍ରମିକମାନଙ୍କ ସ୍ୱାର୍ଥ ଓ କାରଖାନାର ଉତ୍ପାଦନ ନେଇ ଆମେ ପୂରାପୂରି ଅନ୍ଧକାରରେ ଅଛୁ । ସାନବାବୁ କହୁଛନ୍ତି ଅନ୍ୟ କୌଣସି ଶିଳ୍ପପତି ଯେତେବେଳେ ଶ୍ରମିକମାନଙ୍କୁ ଏତେ ଅଧିକାର ଦେଉ ନାହାନ୍ତି, ସେ ଦେବେ କାହିଁକି ? ବଡ଼ବାବୁ ତ ବହୁତ ଭାବିଚିନ୍ତି ଆମକୁ ଏହି ଅଧିକାର ଦେଇଥିଲେ ମା । ବଡ଼ବାବୁ ତ କେତେଥର କହିଛନ୍ତି, ଏହାଫଳରେ କାରଖାନାର ଉତ୍ପାଦନରେ ଉନ୍ନତି ଘଟିଛି । ଆପଣ ବି ତ ସେଇଆ ଏତେଦିନ ଧରି ରଖି ଆସିଥିଲେ । ତା'ଛଡ଼ା ଶ୍ରମିକମାନଙ୍କ କଲ୍ୟାଣ ପାଇଁ ଗତ ଦୁଇବର୍ଷ ଧରି ଯେଉଁ ଟଙ୍କା ଆପଣ ରଖି ଯାଇଥିଲେ, ସେ ଟଙ୍କାକୁ ଅନ୍ୟତ୍ର ଖରଚ କରିଦେବା ପାଇଁ ସାନବାବୁ ଆଦେଶ ଦେଇଛନ୍ତି । ଆମ ଶିଳ୍ପବସ୍ତିମାନଙ୍କରେ ଆଉ କେତେଟା ସ୍କୁଲ, ଚିକିତ୍ସାଳୟ ଆଦି ହେବାର ଥିଲା, ସେସବୁକୁ ସାନବାବୁ ବାତିଲ କରି ଦେଇଛନ୍ତି । ସେସବୁ ସମ୍ପର୍କରେ ଅନ୍ୟ ଶିଳ୍ପନଗରୀରେ କ'ଣ ହେଉଛି, କ'ଣ ନ ହେଉଛି ତହିଁର ଉଦାହରଣ ଦେଇ ଆମ ନଗରୀର ସମସ୍ତ ଉନ୍ନୟନ କାମ କାଟି ଦେଉଛନ୍ତି । ବଡ଼ବାବୁ ଯଦି ଥାଆନ୍ତେ, ତେବେ ସେ

ସାନବାବୁଙ୍କର କୌଣସି କାମକୁ ମୋଟେ ପସନ୍ଦ କରି ନ ଥାନ୍ତେ ମା । ଆପଣ ଯଦି ଆମ ଗୁହାରି ନ ଶୁଣିବେ ତେବେ ଆମ ଗୁହାରି କିଏ ଶୁଣିବ ମା ?''

''ଦେଖ, ତୁମ୍ଭେମାନେ ଯେତେଦିନ ପର୍ଯ୍ୟନ୍ତ ଆମ ଶାସନରେ ଥିଲ, ସେକଥା ନିଆରା । ବାବୁ ତ ଏତେଦିନ ଧରି ଆମେରିକାରେ ରୋଗଶଯ୍ୟାରେ ପଡ଼ିଛନ୍ତି । ସେ କେବେ ଭଲ ହୋଇ ଫେରିବେ, ତା'ର ଠିକଣା ନାହିଁ । ମୁଁ ବି ତ ଆଉ ବେଶିଦିନ ଏଠି ରହିପାରୁନି । ବାବୁଙ୍କ ଚିକିତ୍ସାଆଦିର ତତ୍ତ୍ୱ ନେବାପାଇଁ ମୁଁ ଆମେରିକା ଯାଇ ସେଠାରେ ରହିବା ପାଇଁ ଠିକ୍ କରିଛି । ବାବୁ ଭଲ ହେଲେ ଯାଇ ବାବୁଙ୍କୁ ସାଙ୍ଗରେ ଧରି ଭାରତ ଫେରିବି । ବର୍ତ୍ତମାନ ପୁଅ ହେଲା ଏ ସଂସ୍ଥାର ମାଲିକ । ବର୍ତ୍ତମାନ ତୁମ୍ଭେମାନେ ତା' ସହିତ କଥାବାର୍ତ୍ତା କରି କଳକାରଖାନା କେମିତି ଠିକ୍ ଭାବରେ ଚାଲିବ ତହିଁର ବ୍ୟବସ୍ଥା କର । ତୁମ୍ଭମାନଙ୍କୁ ନେଇ ସିଏ, ତାକୁ ନେଇ ତୁମ୍ଭେମାନେ । ଏହି କଳକାରଖାନାଗୁଡ଼ାକୁ ନିଜର ବୋଲି ଭାବି ସାନବାବୁଙ୍କୁ ନିଜର ଶୁଭାକାଙ୍କ୍ଷୀ ବୋଲି ଗ୍ରହଣ କରି କାମ କରିଯାଅ । ମୁଁ ତାକୁ ବୁଝାଇଦେବି, ସେ ତୁମ୍ଭମାନଙ୍କ ସହିତ ଭଲ ବ୍ୟବହାର ଦେଖାଇବ, ତୁମ ଉନ୍ନୟନ ବ୍ୟବସ୍ଥାକୁ କାଟି ଦେବନି । ଆଉ ଏ ଧର୍ମଘଟ ସବୁ କରନି । ବାହାର ଶିଳ୍ପନଗରୀମାନଙ୍କରେ ଆମର ଯେଉଁ ସୁନାମ ଥିଲା, ତାହା କ୍ଷୁଣ୍ଣ ହେବାକୁ ବସିଛି । ହେଉ, ତୁମ୍ଭେମାନେ ଯାଅ, କାମରେ ଯୋଗଦିଅ, ମୁଁ ସାନବାବୁଙ୍କୁ ସବୁକଥା ବୁଝାଇଦେବି ।''

ଶ୍ରମିକ ନେତାମାନେ ଚାଲିଗଲା ପରେ ଗୀତାଦେବୀ ଘରକୁ ଆସିଲେ ପୁଅ ସହିତ କଥାବାର୍ତ୍ତା କରିବା ପାଇଁ । ସେଇବାଟେ ଚାକର ଯାଉଥିଲା । କହିଲେ ପୁଅ କେଉଁଠି ଅଛି, ତାଙ୍କଠାକୁ ଡାକି ଦେବାପାଇଁ ।

ପୁଅ ଆସିଲାରୁ ଗୀତାଦେବୀ ଶ୍ରମିକ ନେତାମାନଙ୍କ ଗୁହାରି କଥା ପୁଅକୁ କହିଲେ । ସେ କହିଲେ, ଦେଖ ବାପ ରାମ, ତୁ ଶିଳ୍ପ ପରିଚାଳନାରେ ତୋ ବାପାଙ୍କ ନୀତିକୁ ଛାଡ଼ି ଯେଉଁ ନୀତି ଧରିଛୁ, ତୋ ବାପା ଦେଖିଲେ ବଡ଼ ମନ କଷ୍ଟ କରିବେ । ତୋ ବାପା ଯେତେବେଳେ ଭଲ ହୋଇ ଫେରି ଆସିବେ, ତୋର ଏ ନୀତି ପାଇଁ ପ୍ରଥମେ ଦୋଷ ଦେବେ ମୋତେ । କହିବେ, ତୁମେ ଥାଉଁ ଥାଉଁ ପୁଅ କେମିତି ଆମ ବାଟ ଛାଡ଼ି ଅନ୍ୟ ବାଟରେ ଗଲା, ତୁମେ କ'ଣ କରୁଥିଲ ? ମୁଁ ସେତେବେଳେ ତାଙ୍କୁ କ'ଣ ଉତ୍ତର ଦେବି କହିଲୁ ? ଯା'କହ ବାପ, ତୋ ନୀତି ମୋ ମନକୁ ମୋଟେ ପାଉନି । ତୁ ସେ ନୀତି ଛାଡ଼, ଆମ ନୀତି ଅନୁସାରେ ପରିଚାଳନା କର ।''

"ତୁମର ଭୁଲ ଧାରଣା ମା, ମୁଁ କିଛି ଅଲଗା ନୀତି ଧରିନି । ଅନ୍ୟ ଶିଳ୍ପପତିମାନେ ଯେଉଁ ନୀତିରେ ସେମାନଙ୍କ ଶିଳ୍ପ ପରିଚାଳନା ଚଳାଇଛନ୍ତି, ତା'ଠାରୁ ଆମ ନୀତି ଢେର୍ ଉଦାର । ଆମ ଶ୍ରମିକମାନଙ୍କୁ ଆମେ ସେମାନଙ୍କ ଅପେକ୍ଷା ଢେର୍ ଅଧିକ ସୁବିଧା ସୁଯୋଗ ଦେଉଛୁ । ତୁମେ ଭାରତର ବଡ଼ ବଡ଼ ଶିଳ୍ପପତିମାନଙ୍କ ନୀତି ଦେଖ, ତା'ଠାରୁ ଢେର୍ ଉଦାର ଆମ ନୀତି । ଏଇଆ ହୋଇପାରେ, ବାପା ଆଉ ତମେ ଶ୍ରମିକମାନଙ୍କୁ ଯେଉଁସବୁ ଅଧିକ ସୁବିଧା ଦେଇଥିଲ, ସେତେଟା ଅବଶ୍ୟ ମୁଁ ଦେଇନି । ମୋ ଧାରଣା ବାପା ଆଉ ତୁମେ ଶ୍ରମିକମାନଙ୍କୁ ବହୁତ ଅଧିକ ସୁବିଧା ଦେଇ ସେମାନଙ୍କ ମୁହଁ ବଢ଼ାଇ ଦେଇଛ । ସେମାନଙ୍କୁ ତୁମେ ଯେତେ ସୁବିଧା ଦେଇଛ, ସାରା ପୃଥିବୀରେ କେଉଁ ଶିଳ୍ପପତି ସେମାନଙ୍କ ଶ୍ରମିକଙ୍କୁ ଏତେ ସୁବିଧା ଦେଇ ନ ଥିବେ । ତୁମେ ଚିନ୍ତା କରନି ମା, ମୁଁ ଠିକ୍ ଭାବରେ କାରଖାନାଗୁଡ଼ିକୁ ଚଳାଇବି । ଶ୍ରମିକମାନଙ୍କ ଧର୍ମଘଟକୁ କେମିତି ଭାଙ୍ଗିବାକୁ ହୁଏ, ମୋତେ ବେଶ୍ ଭଲ ଭାବରେ ଜଣା । ତୁମେ ଶିଳ୍ପ କାରଖାନା ନେଇ ମୋତେ ଚିନ୍ତା କରନି । ମୁଁ ଠିକ୍ ଭାବରେ ଚଳାଉଛି ।"

ପୁଅର ନିର୍ଭର ବାଣୀ ଶୁଣି ରୀତାଦେବୀ ଚୁପ୍ ରହିଲେ । ମନେ ମନେ ଭାବିଲେ ମୁଁ ଆଉ କେତେଦିନ ? ବାପ ସମ୍ପତ୍ତି ପୁଅ ଭୋଗ କରିବ । ଯଦି ଚଳାଇ ପାରିଲା ଭଲ ହେଲା, ଯଦି ଚଳାଇ ନ ପାରିଲା ସେ ତା'ର ଫଳ ପାଇବ । ମୁଁ ଅଯଥା ଚିନ୍ତା କରି ଲାଭ କ'ଣ ?

× × × × ×

"କ'ଣ ବାପ ରାମ, ଫେର୍ ସାଂଶ୍ଳେଷିକ ରଙ୍ଗ କାରଖାନାରେ କ'ଣ ହରତାଳ ଚାଲିଛି । ଆମ ଏହି ଶିଳ୍ପ ନଗରୀରୁ କ'ଣ ହରତାଳ କେବେ ବନ୍ଦ ହେବନି ?"

"ନା, ମା, ରଙ୍ଗ କାରଖାନାର ଗୋଟିଏ ଅଂଶ ଢେର ଦିନ ହେବ କାମ କରୁନି । ଫଳରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭେଟରଙ୍ଗ ସେକସନ ବନ୍ଦ ହୋଇଯାଇଛି । ଅନେକଦିନ ହେଲା ଆମେରିକାର ସେହି କୋମ୍ପାନୀପାଖକୁ ଲେଖା ହେଲାଣି । ସେମାନେ ଇଞ୍ଜିନିଅର ପଠାଇବେ ପଠାଇବେ କହି ଆଉ ପଠାଇ ନାହାନ୍ତି । କେବେ ପଠାଇବେ ତା'ର ଖବର ମଧ୍ୟ ନାହିଁ । ମୁଁ ଭାବୁଛି ମା, ରଙ୍ଗ କାରଖାନା ପୂରାପୂରି ଉଠାଇଦେଇ ତା ଜାଗାରେ ଆଉ କିଛି... ?"

"ତୋତେ ଏ ଦୁର୍ବୁଦ୍ଧି କିଏ ଦେଲାରେ ପୁଅ ? ରଙ୍ଗ କାରଖାନା ଆମର ଏକ ପୁରାତନ କାରଖାନା । ତାକୁ ଉଠାଇଦେବୁ କାହିଁକି ? ଭେଟ୍‌ରଙ୍ଗ ଆମର ସାରା ଦେଶରେ ସବୁଠାରୁ ଅଧିକ କାଟ୍‌ତି । ଇଞ୍ଜିନିଅରମାନେ ନ ଆସିଲେ ବୋଲି କାରଖାନା ବନ୍ଦ କରିଦେବୁ ?"

"ଆଉ କ'ଣ ଉପାୟ ଅଛି ମା ?"

ହସିଲେ ଗୀତାଦେବୀ, "ତୋ ମା କ'ଣ ବୁଢ଼ୀ ହୋଇଗଲାଣି କିରେ ପୁଅ ? ମୁଁ ଯେତେଦିନ ପର୍ଯ୍ୟନ୍ତ ବଞ୍ଚିଛି, ତୋତେ ଏଭଳି ଅସୁବିଧାର ସମ୍ମୁଖୀନ ହେବାକୁ ଦେବିନି ବାପ । ମୁଁ ଆଗଭଳି ଏତେ କାର୍ଯ୍ୟକ୍ଷମ ନ ହୋଇପାରିଲେ ବି, ଏବେବି ରେଞ୍ଚ୍ ଧରି ପାରୁଛି । ଇଞ୍ଜିନିଅରମାନେ ଆମେରିକାରୁ ନ ଆସିଲେହେଁ ମୁଁ ସେମାନଙ୍କ କାମ କରିଦେଇ ପାରିବି । ଏବେବି ମୋ ହାତରେ ବଳ ଅଛି ପୁଅ । ଭାବନା, ତୋ ମା ପୂରାପୂରି ଅକର୍ମଣ୍ୟ ହୋଇଗଲାଣି ବୋଲି ।"

"ତୁମେ ଏ ଅବସ୍ଥାରେ କ'ଣ କାରଖାନାକୁ ଯାଇ ଯନ୍ତ୍ରକୁ ସଜାଡ଼ିପାରିବ ମା ? ରଙ୍ଗ କାରଖାନାଟା ବନ୍ଦ ହୋଇଗଲେ ଆମର ବିଶେଷ କିଛି କ୍ଷତି ହେବନି ମା । ଆଉ କିଛିଦିନ ପରେ ତ ଇଣ୍ଡିଗୋର ଚାହିଦା କମିଯିବ । ସେତେବେଳେ ତ ବାଧ୍ୟ ହୋଇ କାରଖାନା ବନ୍ଦ କରିଦେବାକୁ ପଡ଼ିବ ।"

"ନା, ବାପ, ଇଣ୍ଡିଗୋର ଚାହିଦା କମିଯିବା ପାଇଁ ଆହୁରି ଢେର୍ ଦିନ ବାକି ଅଛି । ଇଣ୍ଡିଗୋର ଚାହିଦା କମି ଆସିଲେ, ଦେଖିବା ଆଉ କ'ଣ କରି ହେବ । ବର୍ତ୍ତମାନ ପାଇଁ ସେ ସେକ୍ସନ ଚାଲୁ । ବନ୍ଦ କରନା । ଚାଲିଲୁ, କାରଖାନାକୁ, ମୁଁ ଯନ୍ତ୍ରକୁ ଖୋଲି ଦେଖେ କେଉଁଠି କ'ଣ ହୋଇଛି ।"

"ଆପଣ କ'ଣ ଏବେ ପୁଣି କାରଖାନା ଭିତରକୁ ଯିବେ ମା ?" ଠିଆ ହୋଇଥିଲା, ତାରା ପଚାରିଲା । "ଆପଣ ଆଗରୁ ଢେର୍ କାର୍ଯ୍ୟକ୍ଷମ ଥିଲେ, କରି ପାରୁଥିଲେ । ଏବେ କ'ଣ ସେଇ କଷ୍ଟ ସହ୍ୟ କରି ସେ ଯନ୍ତ୍ରକୁ ସଜାଡ଼ି ପାରିବେ ଆପଣ ? ଆପଣଙ୍କର ଏ ବୟସରେ ସେସବୁ ନ କଲେ କ'ଣ ଚଳିବନି ? ଆପଣ ପରା ଆମେରିକା ଯିବା ପାଇଁ ବାହାରିଥିଲେ ? ଆମେରିକା ନ ଯାଇ ଆପଣ କାରଖାନାକୁ କ'ଣ ବାହାରିଲେଣି ? ସେକଥା ପୁଅ ବୁଝିବେ କି ତା ଇଞ୍ଜିନିଅରମାନେ ବୁଝିବେ ? ଆପଣ ଏ ବୟସରେ ଏତେ ହନ୍ତସନ୍ତ ହେଉଛନ୍ତି କାହିଁକି ?

"ତୁ ବୁଝୁନୁ ତାରା, ମୁଁ ଯଦି ଏହାକୁ ଠିକ୍ ନ କରୁଛି, ଆଉ କେହି କରି ପାରିବେନି । କାରଖାନା ପୁରୁଣା ହୋଇ ଯାଇଥିବାରୁ କୋମ୍ପାନୀ ଏହାକୁ ସଜାଡ଼ିବା ନାଁ ଧରୁନି । ଆମେରିକାରୁ ଇଞ୍ଜିନିଅରମାନେ ନ ଆସିବାରୁ ପୁଅ କାରଖାନା ବନ୍ଦ କରିଦେବାକୁ ବସିଛି । କାରଖାନା ବନ୍ଦ ହେବା ଭୟରେ ଶ୍ରମିକମାନେ ହରତାଳ କରିବାକୁ ଯାଉଛନ୍ତି । ମୁଁ ଯଦି ଏହାକୁ ନ ସଜାଡୁଛି, କେତେଗୁଡ଼ିଏ ଶ୍ରମିକ ବେକାର ହୋଇଯିବେ କହ ତ ? ସେମାନଙ୍କ ପିଲାଛୁଆ ବଞ୍ଚିବେ କେମିତି କହିଲୁ ?"

"ଆପଣ ନିଜେ ନ କରି ଇଞ୍ଜିନିଅରମାନଙ୍କୁ ବତେଇଦେଲେ କ'ଣ ହେବନି ?"

ହସିଲେ ଗୀତାଦେବୀ, "ତା କେମିତି ହେବ ତାରା ? ମୁଁ ଯନ୍ତ୍ରର ସିଲ୍ ଭାଙ୍ଗି ନ ଖୋଲିଲେ ଜାଣିବି କେମିତି କେଉଁଠି ଖରାପ ହୋଇ ଯାଇଛି । ବେଶିକିଛି କଷ୍ଟ କାମ ନୁହେଁ । ଏଇ ସାମାନ୍ୟ କାମଟା ପାଇଁ କାରଖାନାର ଏହି ଅଂଶଟା ବନ୍ଦ ହୋଇଯିବ, ଶ୍ରମିକଗୁଡ଼ାକ ବେକାର ହୋଇଯିବେ ମୁଁ ଏହା ଚାହେଁନି ? ତୁ ଆଉ ବାରଣ କରନା ତାରା, ମୁଁ ଯାଇ ସଙ୍ଗେ ସଙ୍ଗେ ତିଆରି କରିଦେଇ ଆସୁଛି । ମୁଁ ଆଗେ ସଜାଡ଼ିଦିଏ, ତା'ପରେ ସେ କମ୍ପାନୀକୁ ଖଣ୍ଡିଏ କଡ଼ା ଚିଠି ଲେଖିବି ଏତାଦୃଶ ଅବହେଳା ପାଇଁ ।"

× × × × ×

ଗୀତାଦେବୀ ଆମେରିକା ଯିବା ପୂର୍ବରୁ ପୁଅ ରାମକିଷନର ବିଭାଘର କରାଇ ଦେଲେ । ବୋହୂକୁ ଏକ ଶିଳ୍ପପତି ପରିବାରରୁ ନ ଆଣି ଏକ ସାଧାରଣ ସମ୍ଭ୍ରାନ୍ତ ପରିବାରରୁ ଆଣିଲେ । ନିଜେ ଏକ ଶିଳ୍ପପତି ପରିବାରରୁ ଆସିଥିବାରୁ ପ୍ରଥମେ ପ୍ରଥମେ କେମିତି ସ୍ୱାମୀଙ୍କ ସହ ମନୋମାଳିନ୍ୟ ହୋଇଥିଲା, ସେହି ଭୟରେ ବିଭିନ୍ନ ଶିଳ୍ପପତି ପରିବାରରୁ ବହୁ ପ୍ରସ୍ତାବ ଆସିଥିଲେହେଁ ସେ କୌଣସିଟି ଗ୍ରହଣ ନ କରି ଏକ ଶିକ୍ଷିତ ପରିବାରରୁ ଉଚ୍ଚଶିକ୍ଷିତା କନ୍ୟାଟିଏ ଆଣିଲେ । ଝିଅଟି ଅତ୍ୟନ୍ତ ସୁନ୍ଦରୀ, ମିଷ୍ଟଭାଷିଣୀ ଓ ପତିପରାୟଣା । ସ୍ୱଭାବ ଚରିତ୍ର ଅତି ଉଚ୍ଚକୋଟୀର । ଗୀତାଦେବୀ ସବୁବେଳେ ଭାବନ୍ତି ଭାଗ୍ୟରେ ଥିଲେ ଏମିତି ବୋହୂ ମିଳେ । ବୋହୂର କଥାବାର୍ତ୍ତା, ଚାଲିଚଳନ ଗୀତାଦେବୀଙ୍କ ମନକୁ ବେଶ୍ ପାଇଥାଏ । ଉପଯୁକ୍ତା ସୁନ୍ଦରୀ ସ୍ତ୍ରୀଟିଏ ପାଇ ପୁଅ ମଧ୍ୟ ଭାରି ଖୁସି । ବୋହୂଟି ପ୍ରତି ତାରା ମଧ୍ୟ ଖୁବ୍ ପ୍ରସନ୍ନ । ତାରା ଯଦିଚ ଧାଈମା, କିନ୍ତୁ ତାରାକୁ ନିଜ ଶାଶୁଭଳି ଦେଖେ ଓ ସେହିଭଳି ସମ୍ମାନ ଦିଏ ମଧ୍ୟ । ବୋହୂ ଘରକୁ ଆସିବାର ଦିନ କେଇଟା ମଧ୍ୟରେ ତାରା ମୁଣ୍ଡରୁ ଘରର ବହୁ ଦାୟିତ୍ୱ ସେ ନିଜେ ନେଲାଣି । ବର୍ତ୍ତମାନ ତାରା ଘରର ବାହାର ଖବର ବୁଝେ ଓ ବୋହୂ ଘର ଭିତରର ଯାବତୀୟ ଖବର ବୁଝେ । ଶାଶୁଙ୍କର ହାନିଲାଭ ସବୁ ବୋହୂ ବୁଝେ । ଗୀତାଦେବୀ ବେଳେବେଳେ ମନ କଷ୍ଟ କରନ୍ତି ଶ୍ୱଶୁର ଥିଲେ କେତେ ଖୁସି ହୋଇ ନ ଥାନ୍ତେ ସତେ ଏଭଳି ବୋହୂଟିଏ ପାଇ ? କେତେ ହତଭାଗିନୀ ସେ । ପୁଅ ବୋହୂଙ୍କ ମୁଖ ଶ୍ୱଶୁର ଦେଖି ପାରିଲେନି । ବୋହୂ ଆସିଲାପରେ ଗୀତାଦେବୀ ଠିକ୍ କଲେ କଳ କାରଖାନାର ପୂରାପୂରି ଦାୟିତ୍ୱ ପୁଅ ଉପରେ ଓ ଘରର ଯାବତୀୟ ଦାୟିତ୍ୱ ବୋହୂ ଓ ତାରା ଉପରେ ଦେଇ ସେ ଆମେରିକା ଚାଲିଯିବେ । ସ୍ୱାମୀ ଭଲ ହୋଇ ସଂସାରକୁ ଫେରି ଆସିଲେ ସେ ସ୍ୱାମୀଙ୍କୁ ନେଇ ଦେଶକୁ

ଫେରିବେ । ସ୍ୱାମୀ ଯଦି ନ ଫେରନ୍ତି, ତେବେ ସେ ସେହି ଦେଶରେ ହିଁ ଶେଷ ନିଃଶ୍ୱାସ ତ୍ୟାଗ କରିବେ । ଏ ଅଲୋଡ଼ା ମୁହଁ ଦେଖାଇବାକୁ ସେ ଆଉ ଭାରତ ଆସିବେନି ।

## ନଅ

ଗୀତାଦେବୀ ଆମେରିକା ଚାଲିଯିବା ପରେ ରାମକିଷନବାବୁ ନିଜ ସ୍ୱାଧୀନ ମନୋଭାବ ନେଇ ଶିଳ୍ପ ପରିଚାଳନା କଲେ । ସେ ଜାଣିଲେ ତାଙ୍କୁ ବାଧା ଦେବା ପାଇଁ ଆଉ କେହି ନାହିଁ । ବେଳେବେଳେ ଧାଇମା ଚେତାଇ ଦିଏ । ହେଲେ ଧାଇମା କଥାକୁ ପଚାରେ କିଏ ? ରାମକିଷନବାବୁ ଦିନେ ଶ୍ରମିକ ନେତାମାନଙ୍କୁ ଡାକି ବୁଝାଇଦେଲେ ସେମାନେ ବାପା ମା'ଙ୍କ ସମୟରେ ଯେଉଁସବୁ ସୁବିଧାସୁଯୋଗ ପାଉଥିଲେ, ତାହା ଅତି ବେଶି ଥିଲା । ଅନ୍ୟ ଶିଳ୍ପପତିମାନେ ଶ୍ରମିକମାନଙ୍କୁ ଯେଉଁ ସାହାଯ୍ୟ ସୁବିଧା ଦେଉଛନ୍ତି, ତାହାଠାରୁ କିଛି ଅଧିକ ସେ ଦେଇପାରିବେ ନାହିଁ । ଯେଉଁମାନଙ୍କର ଇଚ୍ଛା ହେଉଛି, କାମ କରନ୍ତୁ, ଯେଉଁମାନଙ୍କର ଇଚ୍ଛା ନାହିଁ ସେମାନେ କାରଖାନା ଛାଡ଼ି ଅନ୍ୟତ୍ର ଚାଲିଯାଆନ୍ତୁ । ଧର୍ମଘଟ ଆଦି କଲେ ଆଇନ ଅନୁସାରେ ଯାହା କରାଯିବା କଥା, ସେ ତାହା ବାଧହୋଇ କରିବେ ।

ଶ୍ରମିକମାନେ ବୁଝିଗଲେ ସାନବାବୁଙ୍କ ଅମଳରେ ବଡ଼ବାବୁ କି ମା'ଙ୍କ ସୁବିଧାସୁଯୋଗ ଆଶା କରିବା ବୃଥା । ଅନ୍ୟ କଳକାରଖାନାରେ ଶ୍ରମିକମାନେ ଯେଉଁ ସୁବିଧା ସୁଯୋଗ ପାଇ ଚଳୁଛନ୍ତି, ସେତିକିରେ ସେମାନେ ସନ୍ତୁଷ୍ଟ ରହିବା ଉଚିତ ।

ରାମକିଷନବାବୁ ଅନ୍ୟ ଶିଳ୍ପପତିମାନଙ୍କ ନୀତି ଧରି ସରକାର ତଥା ଶ୍ରମିକମାନଙ୍କୁ ଆଖିବୁଜା ଠକିବାକୁ ଲାଗିଲେ । କାରଖାନାରେ, ଘରେ, ଦୁଇ ତିନିଟା ଲେଖାଏଁ ଅସଲି ନକଲି ହିସାବଖାତାର ବ୍ୟବସ୍ଥା ଚାଲିଲା । ଜାଲ୍ ଜୁଆଚୋରି ଖାତାପତ୍ର ତିଆରି କରି ଯେଉଁମାନେ ସରକାର ତଥା ଶ୍ରମିକମାନଙ୍କୁ ଠକିବାରେ ଦକ୍ଷ, ସେହିଭଳି ଲୋକଙ୍କୁ ଆଣି ଉଚ୍ଚ ଦରମା ଦେଇ ଆୟବ୍ୟୟ ବିଭାଗରେ ରଖାଗଲା । ସେମାନେ ଏମିତି ତ୍ରୁଟିଶୂନ୍ୟ ହିସାବ ସରକାରଙ୍କୁ ଦେଇ ଜାଣନ୍ତି ଯେ ସରକାରଙ୍କର କୌଣସି ଅଫିସରଙ୍କ ପକ୍ଷେ ତାହାକୁ ଧରିବା ସମ୍ଭବପର ନୁହେଁ । ପୂରାପୂରି ଉପରକୁ ନିର୍ମଳ ,ଦେଖାଯାଉଥିଲେହେଁ ଏହା ଭିତରେ କେତେ ଗଲତି ଅଛି କାହାରି ଆଖିକୁ ଜଣାପଡ଼ିବାର ଭୟ ନ ଥାଏ । ଶ୍ରମିକମାନେ ଜାଣୁଛନ୍ତି, ଉତ୍ପାଦନ ଭଲ ଭାବରେ ଚାଲିଛି, ବିକ୍ରୟ ମଧ ବଢ଼ିବାରେ ଲାଗିଛି, କିନ୍ତୁ ସରକାରଙ୍କୁ ଦେଖା ହେଲାବେଳକୁ ଆୟ ଖୁବ୍ କମ୍, ଶ୍ରମିକମାନଙ୍କ ବୋନସ୍ ସେହି ହାରରେ

କମ୍ । ଶ୍ରମିକମାନେ ଜାଣୁଛନ୍ତି, କେତୋଟି ଶିଳ୍ପ ଖୁବ୍ ଭଲ ଚାଲିଛି, କିନ୍ତୁ ସରକାରଙ୍କୁ କୁହାଯାଇଛି ଏଗୁଡ଼ିକ ରୁଗ୍‌ଣ ଶିଳ୍ପ, ପୂରାପୂରି କ୍ଷତିରେ ଚାଲୁଛି । ମନ୍ତ୍ରୀ ଓ ଅଫିସରମାନଙ୍କୁ ଖୁସି କରିବା ପାଇଁ ସେମାନଙ୍କୁ ଯେତେ ପ୍ରକାର ଉପହାର ଦିଆଯିବା କଥା, ତାହା ଦିଆଚାଲିଛି, ସେଥିରେ କାର୍ପଣ୍ୟ ନାହିଁ । ଆୟକର, ବିକ୍ରୀକର, ପଣ୍ୟକର, ସମ୍ପତ୍ତି କର ଅଫିସରମାନଙ୍କ ପାଇଁ ମାସିକିଆ ବ୍ୟବସ୍ଥା । ପ୍ରତି ମାସର ପହିଲା ହେଲାବେଳକୁ ସେମାନଙ୍କ ପଣି ସେମାନଙ୍କଠାରେ ଅତି ଗୋପନୀୟ ଭାବରେ ପହଞ୍ଚିଯାଉଛି । ମନ୍ତ୍ରୀମାନେ କୌଣସି ଉନ୍ନୟନ କାର୍ଯ୍ୟ ପାଇଁ ପାଞ୍ଚଲକ୍ଷ ଟଙ୍କା ଚାନ୍ଦା ମାଗିଲେ, ଦଶଲକ୍ଷ ଟଙ୍କା ପହଞ୍ଚିଯାଉଛି । ସମସ୍ତଙ୍କ ମୁହଁରେ ପ୍ରଶଂସା ରାମକିଷନବାବୁଙ୍କ ଭଳି ଦାତା ସାରା ଦେଶରେ ବିରଳ । ବଡ଼ ବଡ଼ ତୀର୍ଥସ୍ଥାନମାନଙ୍କରେ ଧର୍ମଶାଳା, ପାନ୍ଥଶାଳା ଆଦି କୋଟି କୋଟି ଟଙ୍କା ଖରଚରେ ତିଆରି ଚାଲିଛି, ଲୋକମାନଙ୍କୁ ଦେଖାଇବା ପାଇଁ ରାମକିଷନବାବୁଙ୍କ ଭଳି ଦାନୀ ଧର୍ମପରାୟଣ ଶିଳ୍ପପତି ଆଉ ଦୁନିଆରେ କେହି ନାହାନ୍ତି । ଏସବୁ ଖରଚବାଦେ ଯେଉଁସବୁ କଳାଧନ ବଳିପଡୁଛି, ସେଗୁଡ଼ିକୁ ସୁନାଇଟା ଆକାରରେ ନିଜର ଭୂମିତଳ ସୁଡ଼ଙ୍ଗମାନଙ୍କରେ, ମୋଟା ମୋଟା ଇସ୍ପାତ ଆଲମାରିରେ ଭର୍ତ୍ତି କରି ରଖାଯାଉଛି, ଯେମିତିକି ତା'ର ଟେର୍ ତାଙ୍କ ଛଡ଼ା ଅନ୍ୟ କାହାରିକୁ ଜଣା ନ ପଡ଼େ ।

ଆମ ଦେଶକୁ ଯେତେ ସୁନା ଚୋରା ଚାଲାଣ ହେଉଛି, ସେଗୁଡ଼ିକ ଏହି କଳାଧନକୁ ସାଇତି ରଖିବା ପାଇଁ ସୁନାଇଟା ଆକାରରେ ଆସୁଛି । ସୁନାଇଟା ରଖିବା ସ୍ଥାନ ଏମିତି ଭାବରେ ତିଆରି ହୋଇଛି ଯେ ଆୟକର କି ବିକ୍ରୀକରବାଲା ଯଦି କେବଳ କଳାଧନ ପାଇଁ ତାଙ୍କ ଘର ଖାନତଲାସ କରନ୍ତି, ତେବେ ସେମାନେ ସେସବୁ ସ୍ଥାନର ଟେର୍ ମୋଟେ ପାଇପାରିବେନି । କୌଣସି ଅଫିସର ଯଦି ନିଜ କଳାଧନର କିଞ୍ଚିତ ଇସାରା ପାଇଗଲେ, ତେବେ ସଙ୍ଗେ ସଙ୍ଗେ ଟଙ୍କା ଦେଇ ତାଙ୍କ ମୁହଁବନ୍ଦ କରି ଦିଆଯାଉଛି । କେହି ଯଦି ଲାଞ୍ଚନେବାକୁ ମନା କରିଦେଲା, ତେବେ ମନ୍ତ୍ରୀଙ୍କୁ କହି ତାଙ୍କୁ ସେଠୁ ବଦଳି କରି ଦିଆଯାଉଛି । ବିଭିନ୍ନ ସାଧାରଣ କାର୍ଯ୍ୟରେ ରାମକିଷନବାବୁଙ୍କ ସାହାଯ୍ୟ ସହଯୋଗ ସର୍ବପ୍ରଥମ । ସେ ପ୍ରଥମେ ଏତେ ମୋଟା ଆକାରର ସାହାଯ୍ୟ ଦେଇଦିଅନ୍ତି ଯେ ଅନ୍ୟ ଶିଳ୍ପପତିମାନେ ବାଧ୍ୟ ହୋଇ ଅଧିକ ପରିମାଣରେ ଦିଅନ୍ତି । ଲାଭର ପରିମାଣ ବଢ଼ିବା ଅନୁସାରେ କାରଖାନାର ପ୍ରସାର ମଧ୍ୟ ବଢ଼ିବାକୁ ଲାଗିଲା । ଧୀରେ ଧୀରେ କାରଖାନାର ସଂଖ୍ୟା ମଧ୍ୟ ବଢ଼ି ଚାଲିଲା । ନିଜ ଶିଳ୍ପନଗରୀ ଛାଡ଼ି ଦେଶର ବଡ଼ ବଡ଼ ସହରରେ ତାଙ୍କର କଳକାରଖାନା ସବୁ ଗଢ଼ି ଉଠିଲା ।

ବିଭିନ୍ନ ବଡ଼ ବଡ଼ ନଗରୀ ଓ ସହରରେ ନିଜ କଳକାରଖାନା ସଂଖ୍ୟା ବୃଦ୍ଧି ଦେଖି ଶିଳ୍ପପତି ମହଲରେ ତାଙ୍କ ଖ୍ୟାତି ମଧ୍ୟ ବଢ଼ିବାରେ ଲାଗିଲା । ଅଜା, ମାମୁଁଙ୍କ ଟ୍ରେନିଂ, ଏଣେ ନିଜ ବ୍ୟବସାୟୀ ବୁଦ୍ଧି ଯୋଗୁଁ ତାଙ୍କ ଧନ ହୁ ହୁ ହୋଇ ବଢ଼ି ଚାଲିଲା । ଉଭା ଧନ ଯେତିକି, ପୋତା ଧନ ତା'ଠାରୁ ଢେର୍ ଅଧିକ । ବଡ଼ବାବୁଙ୍କ ସମୟରେ ମେନେଜରମାନଙ୍କ ସମ୍ମିଳନୀରେ ଚା' ଜଳଖିଆ ଛଡ଼ା ଅନ୍ୟ କିଛିର ବ୍ୟବସ୍ଥା ନ ଥିଲା, କିନ୍ତୁ ରାମକିଷନବାବୁଙ୍କ ଅମଳରେ ବିନା ମଦରେ କୌଣସି ସମ୍ମିଳନୀ ବସିଲାନି । ବିଦେଶରୁ ଚୋରାରେ ମଦ ନ ଆସିଲେ ନ ହୁଏ । ରାମକିଷନବାବୁ ନିଜେ ମଦପ୍ରିୟ ନ ହେଲେହେଁ ନିଜ ମେନେଜର ଓ ବଡ଼ ବଡ଼ ଅଫିସରମାନଙ୍କୁ ଦାମିକା ମଦ ଦେଇ ଖୁସ୍ ମିଜାଜ୍‌ରେ ରଖିବାକୁ ଭଲ ପାଆନ୍ତି । ଶ୍ରମିକ ନେତାମାନେ ଯଦି ଅକ୍ତିଆରକୁ ନ ଆସୁଛନ୍ତି, କେଉଁଠି ଭୟ ଦେଖାଇ, କେଉଁଠି ଲାଞ୍ଚ ଦେଇ ସେମାନଙ୍କୁ ହାତରେ ରଖାଯାଉଛି । ଫଳରେ କାରଖାନାମାନଙ୍କରେ ଶ୍ରମିକ ଅଶାନ୍ତି ନାହିଁ । ଯଦି କଦବା କେମିତି ହେଲା, ତେବେ ସରକାରୀ ଚାପ ପକାଇ ଦବାଇ ଦିଆଯାଉଛି ।

ରାମକିଷନ ଅଗ୍ରୱାଲ ବର୍ତ୍ତମାନ ଶିଳ୍ପପତିମାନଙ୍କ ଭିତରେ ଅଗ୍ରଗଣ୍ୟ । ଦିନକୁଦିନ ଶିଳ୍ପ ସାମ୍ରାଜ୍ୟର ପ୍ରସାର ବଢ଼ି ବଢ଼ି ଚାଲିଛି । ଆମ ଦେଶରେ ଏମିତି କୌଣସି ରାଜ୍ୟ ନାହିଁ, ଯେଉଁଠି ଶେଠ୍‌ଙ୍କର କଳକାରଖାନା ନାହିଁ । କୌଣସି ରାଜ୍ୟରେ ଖଣି କି ଜଙ୍ଗଲଜାତ ପଦାର୍ଥ କି ସାମୁଦ୍ରିକ ପଦାର୍ଥର ପ୍ରାଚୁର୍ଯ୍ୟ ଦେଖିଲେ ସଙ୍ଗେ ସଙ୍ଗେ ତଜ୍ଜନିତ କାରଖାନା ବସାଇବା ପାଇଁ ସେ ପହଞ୍ଚିଯାନ୍ତି । ଏତେ ଅଳ୍ପ ବୟସରୁ ତାଙ୍କର ଶିଳ୍ପ ସାମ୍ରାଜ୍ୟର ଏତାଦୃଶ ଅଭିବୃଦ୍ଧି ଅନ୍ୟମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରେ ।

ଗୀତାଦେବୀ ଆମେରିକାରେ ରହିଲାଦିନୁଁ ନିଉୟର୍କରେ ଏକ ଘରଭଡ଼ା ନେଇ ରହୁଥିଲେ । ରାମକିଷନବାବୁ ଏ ମଧ୍ୟରେ ତାଙ୍କ ପାଇଁ ଏକ ବିରାଟ ପ୍ରାସାଦ ନିଉୟର୍କରେ ଖରିଦ କରାଇ ସେଠାରେ ଚାକର, ପୂଜାରୀ ଆଦି ଭାରତରୁ ନେଇ ଖଞ୍ଜି ଦେଇଛନ୍ତି । ପ୍ରତି ଦୁଇ ତିନିମାସରେ ଥରେ ସସ୍ତ୍ରୀକ ମା'ଙ୍କୁ ଯାଇ ଦେଖି ନ ଆସିଲେ ନ ହୁଏ । ନିଉୟର୍କରେ ମଧ୍ୟ ତାଙ୍କ ବ୍ୟବସାୟ ପାଇଁ ଏକ ଅଫିସ୍ ଖୋଲାଯାଇଛି । ତାଙ୍କ ଶିଳ୍ପଜାତ ଦ୍ରବ୍ୟ ଆମେରିକାରେ ଯେମିତି ଭଲ ଭାବରେ କଟିବ, ତାହାର ବ୍ୟବସ୍ଥା ପାଇଁ ଏଭଳି ଅଫିସ୍ ନ ହେଲେ ନ ହୁଏ । ପୁଅ ଯେ ଶିଳ୍ପ ସାମ୍ରାଜ୍ୟକୁ ବଢ଼ାଇ ଏତେବଡ଼ କରି ସାରିଲାଣି, ଗୀତାଦେବୀଙ୍କୁ ଜଣା ନାହିଁ । ନିଉୟର୍କରେ ଯେଉଁଦିନ ନିଜ ଅଫିସ ଖୋଲିଲା, ମା'ଙ୍କ ଦ୍ୱାରା ଅଫିସ୍‌ର ଶୁଭାରମ୍ଭ କରାଇବା ପାଇଁ ମା'ଙ୍କୁ ସେ ନେଇ ଯାଇଥିଲେ । ସେଠାରେ

ଉପସ୍ଥିତ ବଡ଼ ବଡ଼ ମାର୍କିନ୍ ଶିଳ୍ପପତି ଓ ବ୍ୟବସାୟୀଙ୍କୁ ଦେଖି ଗୀତାଦେବୀ ତାଟଙ୍ଗା । ସେ କେବେ ଆଶା କରି ନ ଥିଲେ ତାଙ୍କ ପୁଅ ନିଜ ଶିଳ୍ପ ସାମ୍ରାଜ୍ୟକୁ ବଢ଼ାଇ ଆମେରିକା ପର୍ଯ୍ୟନ୍ତ ଘେନି ଆସିବ । ନିଜ କାରଖାନାଜାତ ପଦାର୍ଥ ଆମେରିକାରେ କେତେ ଲୋକପ୍ରିୟ ଓ ତାହାର ଚାହିଦା ଆମେରିକାରେ କେତେ ବେଶି, ସେଦିନର ଅତିଥିମାନଙ୍କର ଭାଷଣରୁ ସେ ଜାଣି ଚକିତ ହୋଇ ଯାଇଥିଲେ । ପୁଅର ଶିଳ୍ପ ପ୍ରସାରର ଏତାଦୃଶ ପଟୁତା ଦେଖି ସେଦିନ ତାଙ୍କ ଆଖିରୁ ଆନନ୍ଦାଶ୍ରୁ ବହି ଆସିଥିଲା ।

ରାମକିଷନବାବୁ ସସ୍ତ୍ରୀକ ଆମେରିକା ଗଲେ, ସ୍ତ୍ରୀ ସର୍ବଦା ଶାଶୁଙ୍କ ପାଖରେ ରହି ଶାଶୁଙ୍କର ସେବା ଶୁଶ୍ରୁଷା କରନ୍ତି, ରାମକିଷନବାବୁ ଅଫିସ୍ ତଦାରଖ କରନ୍ତି । ନିଜ ଶିଳ୍ପଜାତ ପଦାର୍ଥର ଆହୁରି କାଟ୍‌ତି ବଢ଼ାଇବା ପାଇଁ ନାନା ଚେଷ୍ଟା କରନ୍ତି । ବୋହୂର ସେବା ଶୁଶ୍ରୁଷାରେ ଗୀତାଦେବୀ ଅତ୍ୟଧିକ ପ୍ରୀତ । ଶାଶୁପ୍ରତି ଏତାଦୃଶ ମମତା ଦେଖି ଭାବନ୍ତି, ଆଜି ଶ୍ୱଶୁର ଥିଲେ ସେ କେତେ ଖୁସି ହୋଇ ନ ଥାନ୍ତେ ଏଭଳି ଯୋଗ୍ୟ ବୋହୂଟିଏ ପାଇ । କେଡ଼େ ହତଭାଗିନୀ ସେ ।

ରାମକିଷନବାବୁ ଯେତେବେଳେ ଅଫିସ୍‌ସବୁ ତଦାରଖ କରି ମା'ଙ୍କଠାକୁ ଫେରି ଆସନ୍ତି, ମା ନିଜ ଶିଳ୍ପନଗରୀର ହାଲଚାଲ ପଚାରନ୍ତି । ସେଠାରେ ଶ୍ରମିକମାନେ କେମିତି ଅଛନ୍ତି, ସେମାନଙ୍କ ଯତ୍ନ କେମିତି ନିଆଯାଉଛି ପୁଅଠାରୁ ପଚାରି ବୁଝନ୍ତି । ଶ୍ରମିକ ବସ୍ତିମାନଙ୍କରେ କି କି ଉନ୍ନୟନ କରାଯାଇଛି, ପୁଅଠାରୁ ବୁଝିବାକୁ ଭୁଲନ୍ତି ନାହିଁ ଗୀତାଦେବୀ । ପୁଅଠାରୁ ଯେତେବେଳେ ଶିଳ୍ପ ପ୍ରସାର କଥା ଶୁଣନ୍ତି, ତାଙ୍କ ଆଖି ଖୋସି ହୋଇଯାଏ ।

ରାମକିଷନବାବୁ ନିଜ ଛୋଟପୁଅକୁ ସଙ୍ଗରେ ଆମେରିକା ଆଣିବାକୁ ଭୁଲନ୍ତିନି । ମା ବାପା ଯେତେବେଳେ ଆମେରିକା ଆସୁଛନ୍ତି, ଛୋଟ ପୁଅଟିକୁ ନ ଆଣିବେ ବା କେମିତି ? ଗୀତାଦେବୀଙ୍କ ସବୁଠାରୁ ପ୍ରିୟ ହେଉଛି ଏହି ପୁଅଟି । ନାତି ସହିତ ନାନା ଖେଳନା ନେଇ ଖେଳିବା ତାଙ୍କର ଏକ ଅଭ୍ୟାସ ହୋଇଗଲାଣି । ପିଲାଙ୍କ ପାଇଁ ଯେତେ ପ୍ରକାର ଖେଳନା ସାରା ଯୁକ୍ତରାଷ୍ଟ୍ରରେ କି ଜାପାନରେ ମିଳୁଛି, ସେସବୁ କିଣାଯାଇ ଗୋଟିଏ ଘରେ ଭର୍ତ୍ତି କରାଯାଇଛି । ଗୋସେଇଁ ମା ନାତିକୁ ସେହି ଖେଳନାରେ ଖେଳିବାର ଦେଖିଲେ ମନ ଆନନ୍ଦରେ ପୂରି ଉଠେ । ନାତିକୁ ଖେଳାଇବାରେ ତାଙ୍କର ଯେଉଁ ଅପାର ଆନନ୍ଦ ଭାଷାରେ ବର୍ଣ୍ଣନା କରି ହେବନି । ନାତି ସହିତ ଖେଳିବାବ୍ୟତୀତ ଦିନରେ ତାଙ୍କର ଆଉ ଏକ କାମ ହେଉଛି ନିଜ ପ୍ରତିଷ୍ଠିତ ଆରାଧ୍ୟଦେବତା ମଦନମୋହନଙ୍କ ମନ୍ଦିରରେ ପୂଜାଅର୍ଚ୍ଚନା କରିବା । ପ୍ରତିଦିନ ଦୁଇ ତିନିଘଣ୍ଟା ଠାକୁରଙ୍କ ପୂଜାରେ ନ କଟାଇଲେ

ତାଙ୍କୁ କିଛି ଭଲ ଲାଗେନି । ପୂଜାପାଠ କରିବା ପାଇଁ ଏକ ଶୁଦ୍ଧ ବ୍ରାହ୍ମଣକୁ ଭାରତରୁ ଅଣାଯାଇ ସେଠାରେ ରଖାଯାଇଥିଲେହେଁ ଗୀତାଦେବୀ ମନ୍ଦିରରେ ପ୍ରତିଦିନ କିଛି ସମୟ ନିଜେ ଭାଗବତ ଅଧ୍ୟୟନ ନ କଲେ ତାଙ୍କ ମନରେ ସନ୍ତୋଷ ଆସେନି । ନିଜ ସ୍ୱାମୀ କେମିତି ଶୀଘ୍ର ଭଲ ହୋଇ ତାଙ୍କ ପରିବାରକୁ ଫେରି ଆସନ୍ତୁ, ଏଇଆ ଥାଏ ତାଙ୍କର ସଦାସର୍ବଦା ମାଗୁଣି ନିଜ ଆରାଧ୍ୟଦେବତା ମଦନମୋହନଙ୍କଠାରେ । ନିଜ ଘରେ ପୁଅ, ବୋହୂ, ନାତି ଥାଇ ମଧ୍ୟ ସେ ସବୁବେଳେ ଉପଲବ୍ଧି କରନ୍ତି ସେ ଯେମିତି ଏକୁଟିଆ ଓ ନିଃସହାୟ । ନିଜ ଅନୁଗତ ପୁଅ, ବୋହୂ ଓ ସେମାନଙ୍କ ସେବା ଶୁଶ୍ରୂଷା ତାଙ୍କୁ ପରମ ଆନନ୍ଦ ଦେଇପାରେନି । ମଦନମୋହନଙ୍କଠାରେ ମନ ଦେଇ ଭଜନ କୀର୍ତ୍ତନ କଲେ କି ଭାଗବତ ପାରାୟଣ ଶୁଣିଲେ ସେ ପରମ ଆନନ୍ଦ ପାଇପାରନ୍ତିନି । ତାଙ୍କୁ ବୋଧହୁଏ, ତାଙ୍କର ସତେ ଯେମିତି କେଉଁଠି କିଛି ବଡ଼ ଅଭାବ ରହି ଯାଇଛି । ବେଳେବେଳେ ଏକାଟିଆ ଥିଲେ ଭାବନ୍ତି, ଭଗବାନ ତାଙ୍କୁ ତ ସବୁ ଦେଇଛନ୍ତି, କେଉଁଥିରେ କିଛି ତ ଅଭାବ ନାହିଁ, ହେଲେ ସେ ଆନନ୍ଦ ପାଇପାରୁ ନାହାନ୍ତି କାହିଁକି ? ସ୍ତ୍ରୀମାନଙ୍କ ସବୁଠାରୁ ବଡ଼ ଆନନ୍ଦ ହେଲା ସ୍ୱାମୀ । ସ୍ୱାମୀ ଯେତେବେଳେ ନାହାନ୍ତି, ଆନନ୍ଦ ଆସିବ କୁଆଡୁ ? ସ୍ୱାମୀ ଯେତେଦିନ ପର୍ଯ୍ୟନ୍ତ ରୋଗମୁକ୍ତ ହୋଇ ନାହାନ୍ତି, ସବୁଥିରେ ପରିପୂର୍ଣ୍ଣ ଥିଲେ ମଧ୍ୟ, ସେ ପରମ ଆନନ୍ଦ ପାଇବେ କେଉଁଠୁ ? ସବୁଥାଇ, ତାଙ୍କର କିଛି ନ ଥିଲାଭଳି ସେ ଅନୁଭବ କରିବେ ସବୁବେଳେ ।

ରାମକିଷନବାବୁ ଆମେରିକା ଆସିଲେ ସେ ଆଉ ଯାହା କରନ୍ତୁ ବା ନ କରନ୍ତୁ, ମା ଓ ପରିବାରବର୍ଗଙ୍କୁ ନେଇ ଫୋନିକ୍ସ ଯାଆନ୍ତି । ସେଠା କ୍ରାୟୋଟୋରିୟମ୍‌ରେ ବାପାଙ୍କୁ ଦେଖି ନିଉୟର୍କରେ ଡାକ୍ତରଙ୍କଠାକୁ ଫେରି ଆସନ୍ତି । ବାପାଙ୍କ ଔଷଧ କେବେ ବାହାରିବ, ସେଇକଥା ଆଲୋଚନା କରି ନିଜ ପ୍ରାସାଦକୁ ଫେରି ଆସନ୍ତି । ମା ଯେତେବେଳେ ମନ କଷ୍ଟ କରନ୍ତି, ତାଙ୍କୁ କେତେ ପ୍ରବୋଧନା ଦିଅନ୍ତି, ବୁଝାନ୍ତି । ଔଷଧ ବାହାରିଲେ ବାପା କେମିତି ଭଲ ହୋଇ ଘରକୁ ଆସିବେ ଓ ଡାକ୍ତର ଏଥିରେ କେତେ ଆଶାବାନ୍ ମା'ଙ୍କୁ ବୁଝାଇବାକୁ ଭୁଲନ୍ତିନି ।

× × × × ×

ନିଉୟର୍କରେ ରକ୍‌ଫେଲର କେନ୍‌ସର ଇନ୍‌ଷ୍ଟିଚିଉଟ୍‌ର କେନ୍‌ସର ବିଶେଷଜ୍ଞ ଡକ୍ଟର ବାର୍ଗମେନ୍‌ଙ୍କର ଯେଉଁଦିନ ତିରୋଧାନ ହୋଇଗଲା, ଗୀତାଦେବୀଙ୍କ ମୁଣ୍ଡରେ ବଜ୍ରପଡ଼ିଲା ଭଳି ସେ ଅନୁଭବ କଲେ । ସ୍ୱାମୀଙ୍କୁ ଫୋନିକ୍ସର ଶୀତଳାଗାରରେ ରଖିବା ପ୍ରାୟ ପଇଁଚାଳିଶବର୍ଷ ହୋଇଗଲାଣି । ଡାକ୍ତର ବାର୍ଗମେନ୍ ଇତିମଧ୍ୟରେ ବୁଢ଼ା

ହୋଇ ଅଶୀବର୍ଷ ବୟସରେ ଇହଧାମ ତ୍ୟାଗ କରି ସାରିଲେଣି । ଗୀତାଦେବୀଙ୍କ ମୁଣ୍ଡରେ ଚିନ୍ତା ପଶିଲା, ଡାକ୍ତର ତ ଚାଲିଗଲେ, ଔଷଧ ବାହାରିଲେ ତାଙ୍କ ସ୍ୱାମୀଙ୍କୁ ଚିକିତ୍ସା କରି ଭଲ କରିବ କିଏ ? ଡାକ୍ତର ବାର୍ଗମେନ୍ ମରିବା ପୂର୍ବରୁ କାର୍ଯ୍ୟରୁ ଅବସର ନେଇ ସାରିଥିଲେ ଓ ସେଥିପାଇଁ ମିଷ୍ଟର ଅଗ୍ରୱାଲଙ୍କ ଦାୟିତ୍ୱ ତାଙ୍କ ଶିଷ୍ୟ ଯୁବକ ଡାକ୍ତର ଜେମସ୍ ଟମ୍ପସନ୍‌ଙ୍କୁ ଦେଇ ଯାଇଥିଲେ । ଜେମସ୍ ଟମ୍ପସନ୍ ଯୁବକ ହେଲେ କ'ଣ ହେବ, ଦେଶର ବଡ଼ ବଡ଼ କେନ୍‌ସର ବିଶେଷଜ୍ଞମାନଙ୍କ ଭିତରୁ ଜଣେ । ହେଲେ ଗୀତାଦେବୀଙ୍କ ବିଶ୍ୱାସ ବାର୍ଗମେନ୍‌ଙ୍କ ଉପରେ ଥିଲା ବେଶି । ମିଷ୍ଟର ଅଗ୍ରୱାଲଙ୍କ ଲାକ୍ଷଣିକ ମୃତ୍ୟୁ ପରେ ତାଙ୍କରି ତତ୍ତ୍ୱାବଧାନରେ ମିଷ୍ଟର ଅଗ୍ରୱାଲଙ୍କ ଶରୀର ଫୋନିକ୍‌ସର ଶୀତଳଭଣ୍ଡାରରେ ରଖାଯାଇଥିଲା । ମିଷ୍ଟର ଅଗ୍ରୱାଲଙ୍କ ରୋଗର ଅବ୍ୟର୍ଥ ଔଷଧ କେବେ ବାହାରିବ, ତା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ସେ । ଏହି ଔଷଧ ତିଆରି ଦିଗରେ କେମିତି ବୈଜ୍ଞାନିକମାନେ ଅଗ୍ରସର ହେଉଛନ୍ତି, ସେକଥା ସେ ଚିକିନିଖି କରି ବୁଝାନ୍ତି ଗୀତାଦେବୀଙ୍କୁ । ସେହିସବୁ ବର୍ଣ୍ଣନା ଗୀତାଦେବୀଙ୍କୁ ସାନ୍ତ୍ୱନା ଦିଏ, ମନରେ ବଳଦିଏ ମଧ୍ୟ । ଏସବୁ ତାଙ୍କ ଚିନ୍ତିତ ମନ ପ୍ରତି ଟନିକ୍ ଭଳି କାର୍ଯ୍ୟ କରେ । ଗୀତାଦେବୀଙ୍କ ଚିନ୍ତା ହେଲା ସ୍ୱାମୀଙ୍କ ଔଷଧ ବାହାରିବା ଦିଗରେ କେମିତି ଚେଷ୍ଟା ଚାଲିଛି, ତହିଁର ବିବରଣୀ ଥରକୁଥର ତାଙ୍କୁ ଶୁଣାଇବ କିଏ ? ସେ ତାହା ନ ଶୁଣିଲେ ଆଶ୍ୱାସନା ପାଇବେ କେମିତି ?

ଡାକ୍ତର ଟମ୍ପସନ୍ ଡାକ୍ତର ବାଗମେନ୍‌ଙ୍କ ତିରୋଧାନ ପରେ ନିଜେ ଫୋନିକ୍‌ସ ସହରକୁ ଯାଇ ମିଷ୍ଟର ଅଗ୍ରୱାଲଙ୍କୁ ପରୀକ୍ଷା କରି ଫେରି ଆସିଛନ୍ତି ଓ ସେଠା କାଗଜପତ୍ରରେ ଦସ୍ତଖତ କରି ଆସିଛନ୍ତି । ଲାକ୍ଷଣିକ ମୃତ୍ୟୁ ହେବାର ଦୀର୍ଘ ପଇଁଚାଳିଶ ବର୍ଷ ପରେ ତାଙ୍କ ଶରୀରର କୋଷଗୁଡ଼ିକ ବେଶ୍ ସତେଜଥିବା ଦେଖି ସେ ଭାରି ଆଶାବାଦୀ ହୋଇ ପଡ଼ିଥାନ୍ତି । କୌଣସିଟି ଟିକିଏ ବି ସୁଦ୍ଧା ବିକୃତ ହେବାକୁ ଆରମ୍ଭ କରିନି । କେମିତି ବା ହେବ ? ତରଳ ଯବକ୍ଷାରଜାନରେ ସେସବୁ ହେବା ମୋଟେ ସମ୍ଭବ ନୁହେଁ । ଜୀବନ୍ତ ଅବସ୍ଥାରେ ଯେମିତି ଥିଲା, ଏବେବି ଠିକ୍ ସେମିତି ଅଛି । କେତେଜଣ ବିଶେଷଜ୍ଞ ଏହି କେତେଦିନ ତଳେ ଯେଉଁ ମନ୍ତବ୍ୟ ଦେଇଥିଲେ ଯେ ଲାକ୍ଷଣିକ ମୃତ୍ୟୁ ପରେ ରୋଗୀକୁ ତରଳ ଯବକ୍ଷାରଜାନରେ ରଖିଦେଲେ ଶରୀରର କୋଷସ୍ଥ ଜୀବରସ ବରଫ ପାଲଟି ଯାଇ କୋଷ ପ୍ରାଚୀ ଫଟାଇଦେବ, ଯେଉଁ ତଥ୍ୟକୁ କ୍ରାଏସଲର୍ କେନ୍‌ସର ଇନ୍‌ଷ୍ଟିଚିଉଟ୍‌ର ଡିରେକ୍ଟର ଡକ୍ଟର ପଟ୍ଟନାୟକ ଖୁବ୍ ତୀବ୍ର ଭାବରେ ବିରୋଧ କରିଛନ୍ତି, ସେହି ମତ ପ୍ରକୃତରେ ଭୁଲ, ଡକ୍ଟର ଟମ୍ପସନ୍ ମିଷ୍ଟର ଅଗ୍ରୱାଲଙ୍କ ଶରୀରକୁ ପରୀକ୍ଷା

କରି ଜାଣି ପାରିଥିଲେ । ରୋଗୀ ଏତେବର୍ଷ ଧରି ଯେଉଁକି ଅବସ୍ଥାରେ ଅଛି, ପୁନର୍ବାର ଜୀବନ୍ତ ଅବସ୍ଥାକୁ ଫେରାଇ ଆଣିବା କଷ୍ଟକର ହେବନି । ସେ ମତାମତ ଦେବାପାଇଁ ଯେଉଁଦିନ ଗୀତାଦେବୀଙ୍କ ଘରକୁ ଯାଇଥିଲେ, ଗୀତାଦେବୀ ତାଙ୍କଠାରୁ ସ୍ୱାମୀଙ୍କ ଜୀବନ ଫେରି ପାଇବାର ନିର୍ଭର ପ୍ରତିଶ୍ରୁତି ପାଇ ନିଶ୍ଚିନ୍ତ ହେଲେ । ଡାକ୍ତର ବାର୍ଗମେନ୍‌ଙ୍କ ତିରୋଧାନ ପରେ ତାଙ୍କର ଯେଉଁ ଆଶଙ୍କା ଥିଲା ଡାକ୍ତର ଟମ୍ପସନ୍ ତାଙ୍କ ସ୍ୱାମୀଙ୍କ ଚିକିତ୍ସା ଠିକ୍ ରୂପେ କରିପାରିବେ କି କଅଣ ତାହା ଦୂର ହେଲା ।

## ଦଶ

ଟ୍ରିଂ, ଟ୍ରିଂ, ଟ୍ରିଂ । ଫୋନ୍ ବାଜି ଉଠିଲା । ଗୀତାଦେବୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ମିସ୍ ବେରୀୱାଟର ଫୋନ୍ ଧରିଲେ । ‘‘ହଁ, ହଁ, ମୁଁ ମିସ୍ ବେରୀୱାଟର, ଗୀତାଦେବୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ । ଆପଣ କାହାକୁ ଖୋଜୁଛନ୍ତି ?’’

‘‘ଆଁ, ଗୀତାଦେବୀଙ୍କୁ ? ସେ ତ ବର୍ତ୍ତମାନ ଠାକୁର ମନ୍ଦିରରେ ଅଛନ୍ତି । ସେଠି ଭାଗବତ ପାରାୟଣ ଚାଲିଛି । ଆପଣଙ୍କର କ’ଣ ତାଙ୍କ ସହିତ କଥାବାର୍ତ୍ତା କରିବା ଏକାନ୍ତ ଦରକାର । ପରେ ହେଲେ କ’ଣ ଚଳିବନି ? କ’ଣ ଅତି ଜରୁରୀ ?’’

‘‘ହଁ, ଖୁବ୍ ଜରୁରୀ । ତାଙ୍କୁ ସଙ୍ଗେ ସଙ୍ଗେ ଖବର ଦିଅ ।’’ ଡକ୍ଟର ଟମ୍ପସନ୍ ଆରପାଖରୁ କହୁଥିଲେ ।

‘‘ହେଉ, ତାହାହେଲେ ଆପଣ ଫୋନ୍ ଧରିଥାନ୍ତୁ, ମୁଁ ତାଙ୍କୁ ଫୋନ୍ ଦେଉଛି ।’’ ଏତକ କହି ମିସ୍ ବେରୀୱାଟର ଫୋନ୍‌ଟା ଚିପିଦେଇ ମନ୍ଦିର ପାଖକୁ ନେଇଯାଇ ମନ୍ଦିର ପାଖ ଟେଲିଫୋନ୍‌ର ରିସିଭରଟା ଗୀତାଦେବୀଙ୍କ ହାତକୁ ବଢ଼ାଇ ଦେଉ ଦେଉ କହିଲେ, ‘‘ଡାକ୍ତର ଟମ୍ପସନ୍ ଆପଣଙ୍କ ସହ କ’ଣ ଏକ ଜରୁରୀ କଥାବାର୍ତ୍ତା ହେବାକୁ ଚାହୁଁଛନ୍ତି ।’’

‘‘ଆଁ, ଜରୁରୀ କଥା ?’’ ଗୀତାଦେବୀ ଚମକି ପଡ଼ିଲେ ।

ଫୋନ୍ ଧରି କହିଲେ, ‘‘ହଁ, ହଁ, ମୁଁ ଗୀତା । କିଏ ଡାକ୍ତର ଟମ୍ପସନ୍ ? ହଁ, କ’ଣ କି ? ହଠାତ୍....’’

‘‘ହଁ, ହଁ, ଗୀତାଦେବୀ ଆପଣଙ୍କୁ ଏକ ବଡ଼ ଶୁଭ ଖବର ଜଣାଉଛି ।’’

‘‘ଆଁ, ଶୁଭ ଖବର ? କି ଶୁଭ ଖବର ?’’

"ମିଷ୍ଟର ଅଗ୍ରୱାଲଙ୍କ ରୋଗ ଭଲ ହେବା ପାଇଁ ଏବେ ଜର୍ମାନୀରେ ଏକ ଔଷଧ ଆବିଷ୍କୃତ ହୋଇଛି । ସେହି ଔଷଧର ନାଁ ହେଉଛି ଷ୍ଟେରିଟୋମାଇସିନ୍ । ସେହି ଔଷଧ ମିଷ୍ଟର ଅଗ୍ରୱାଲଙ୍କ ପାଇଁ ଏକ ଅବ୍ୟର୍ଥ ଔଷଧ । ଜର୍ମାନୀର ବହୁ ଓଷ୍ଟିଓସାରକୋମା ରୋଗୀ ଏହାଦ୍ୱାରା ଅଳ୍ପ କେଇଦିନ ଭିତରେ ଭଲ ହୋଇ ଯାଉଛନ୍ତି । ମୁଁ ଡାକ୍ତର ବାର୍ଗମେନ୍‌ଙ୍କ ଲିଖିତ ମିଷ୍ଟର ଅଗ୍ରୱାଲଙ୍କ ରୋଗ ସମ୍ବନ୍ଧୀୟ ରିପୋର୍ଟକୁ ପରୀକ୍ଷା କରି ଦେଖୁଥିଲି । ମିଷ୍ଟର ଅଗ୍ରୱାଲଙ୍କ ରୋଗ ଯେଉଁ ଅବସ୍ଥାରେ ଥିଲା ଠିକ୍ ସେହି ଅବସ୍ଥାରେ ଥିବା କେତେକ ରୋଗୀ ଜର୍ମାନୀରେ ପୂର୍ଣ୍ଣ ଆରୋଗ୍ୟ ଲାଭ କରିଛନ୍ତି । ଆମେରିକାର ଡେମ୍ପଷ୍ଟର କୋମ୍ପାନୀ ହେଉଛି ସେହି ଔଷଧର ମାର୍କିନ୍ ବିତରକ । ଆମେ ଆଉ ଅପେକ୍ଷା ନ କରି ଏହି ଔଷଧ ସାହାଯ୍ୟରେ ମିଷ୍ଟର ଅଗ୍ରୱାଲଙ୍କ ଚିକିତ୍ସା ଆରମ୍ଭ କରିଦେଲେ ସେ ନିଶ୍ଚୟ ଭଲ ହୋଇପାରିବେ । ମୁଁ ଯାହା ରିପୋର୍ଟରୁ ଦେଖୁଛି ମିଷ୍ଟର ଅଗ୍ରୱାଲଙ୍କ ଲାକ୍ଷଣିକ ମୃତ୍ୟୁ ପ୍ରାୟ ପଞ୍ଚାବନ ବର୍ଷ ହୋଇଗଲାଣି । ଆଉ ଅଧିକ ଡେରି କରିବାର ଆବଶ୍ୟକତା ନାହିଁ । କ'ଣ କହୁଛନ୍ତି ଆପଣ ?"

"ଡାକ୍ତର ଟମ୍ପସନ୍‌ଙ୍କ ଫୋନ୍‌ବାର୍ତ୍ତା ଶୁଣି ଗୀତାଦେବୀ ଆନନ୍ଦରେ ପାଗଳପ୍ରାୟ ହୋଇ ଉଠିଲେ । ଏତେଦିନ ତାଙ୍କ ଗୁହାରି ପ୍ରଭୁ ମଦନମୋହନ ଶୁଣିଲେ । କ'ଣ ସେ କରିବେ, କାହାକୁ କେମିତି ଏହି ଶୁଭ ଖବର ଦେବେ, ତାଙ୍କ ମନ ଚଞ୍ଚଳ ହୋଇ ଉଠିଲା । ସଙ୍ଗେ ସଙ୍ଗେ ମିସ୍ ବେରୀୱାଟରକୁ କହିଲେ ଟେଲିଫୋନ୍‌ରେ ପୁଅ ସହିତ ସଂଯୋଗ ସ୍ଥାପନ କରିବା ପାଇଁ । ଏତକ କହିଦେଇ ସେ ପ୍ରଭୁ ମଦନମୋହନଙ୍କ ଗୋଡ଼ତଳେ ପଡ଼ି ନିଜ ସ୍ୱାମୀଙ୍କ ଜୀବନ ଭିକ୍ଷା କଲେ । ହେ ପ୍ରଭୋ, ଏତେବର୍ଷ ପରେ ଆପଣ ମୋ ଡାକ ଶୁଣିଲେ । ମୋ ସ୍ୱାମୀଙ୍କୁ ମୋ'ଠାକୁ ଫେରାଇ ଆଣନ୍ତୁ ପ୍ରଭୁ ।"

ସେତେବେଳକୁ ଦ୍ୱି'ପ୍ରହର ଧୂପ ଓ ଆରତି ବେଳ ହୋଇଗଲାଣି । ଘଣ୍ଟା, ଶଙ୍ଖଧ୍ୱନି ଆରତି ପାଇଁ ବାଜି ଉଠିଲା । ପୁରୋହିତ ଆଳତି ଧରି ମଦନମୋହନଙ୍କୁ ବନ୍ଦାଇବାକୁ ଲାଗିଲେ । ଗୀତାଦେବୀ ଉଠିପଡ଼ି ମଦନମୋହନଙ୍କ ଆଳତିକୁ ଅନାଇ ରହିଲେ । ତାଙ୍କ ଆଖିରୁ ଲୋତକସ୍ରୋତ ଅବାରିତ ଧାରାରେ ବହି ଚାଲିଥାଏ ।

× × × × ×

ଫୋନିକ୍ସର ଶୀତଳାଗାର । ଡାକ୍ତର ଟମ୍ପସନ୍, ଗୀତାଦେବୀ, ପୁଅ ରାମକିଷନ, ବୋହୂ ଓ ନାତି ସମସ୍ତେ ସେଠି ହାଜର । ସମସ୍ତଙ୍କ ମୁହଁ ଆନନ୍ଦରେ ଭରି ଉଠିଥାଏ । ପ୍ରାୟ ପାଖାପାଖି ଷାଠିଏବର୍ଷ ପରେ ମିଷ୍ଟର ଅଗ୍ରୱାଲ ନିଜ ଜୀବନ ଫେରି ପାଇବେ । ତା'ପରେ ନବାବିଷ୍କୃତ ଔଷଧ ଦ୍ୱାରା ଚିକିତ୍ସିତ ହୋଇ ରୋଗମୁକ୍ତ

ହେବେ । ଡାକ୍ତର ଟମ୍ପସନ୍, ତାଙ୍କ ସହକାରୀ ଶୀତଳାଗାରର ଇଞ୍ଜିନିୟରମାନଙ୍କ ସହାୟତାରେ ଶୀତଳାଗାରରୁ କେବିନ୍‌କୁ ବାହାର କଲେ । ଏହା ତରଳ ଯବକ୍ଷାରଜାନ ଭିତରୁ ବାହାର କରା ହୋଇ ଶୁଷ୍କ ବରଫ ଭିତରେ କିଛି ସମୟ ରଖାଗଲା । ତାହାପରେ କେବିନ୍‌କୁ ଖାଲି ବରଫ ଭିତରେ ରଖାଗଲା । ଧୀରେ ଧୀରେ ବରଫର ଉତ୍ତାପକୁ ବଢ଼ାଇ ଖୁବ୍ ଧୀର ବେଗରେ ସାଧାରଣ ପ୍ରକୋଷ୍ଠ ତାପକ୍ରମକୁ ଅଣାଗଲା । ଏହି ସାଧାରଣ ତାପକ୍ରମକୁ ଆଣିବାକୁ ଲାଗିଲା ବାଇଶି ଘଣ୍ଟା । ଏହି ତାପକ୍ରମକୁ ଖୁବ୍ ଧୀରବେଗରେ ଜମାଇବା ଦାୟିତ୍ୱରେ ଥାଏ ଏକ କଂପ୍ୟୁଟର । ମଣିଷ ପରିଚାଳନାରେ ରହିଲେ କାଳେ କୋଉଠି ଭୁଲଭଟକା ହୋଇଯାଇ ରୋଗୀ ଶରୀରର କୌଣସି ଅଂଶ ନଷ୍ଟ ହୋଇଯିବ ଏହି ଭୟରେ ମଣିଷ ଦାୟିତ୍ୱରେ ନ ରଖି ଏକ ଜଟିଳ କଂପ୍ୟୁଟର ଦାୟିତ୍ୱରେ ରଖାଯାଇଥାଏ । ମଣିଷର ଭୁଲ ହେବା ସମ୍ଭବ, କିନ୍ତୁ କଂପ୍ୟୁଟରର ଭୁଲ ହେବା ସମ୍ଭବ ନୁହେଁ । ତଥାପି କାଳେ କେଉଁଠି ଭୁଲ ହୋଇଯିବ, ଏହି ଭୟରେ ତାକୁ ଜଗିଥାଏ ଆଉ ଏକ କଂପ୍ୟୁଟର । ପ୍ରଥମ କଂପ୍ୟୁଟରରେ ଯଦି କିଛି ଗୋଳମାଳ ହୁଏ ତେବେ ଦ୍ୱିତୀୟ କଂପ୍ୟୁଟରଟି ତାହା ଜଣାଇଦେଇ ନିଜେ ସେ ଦାୟିତ୍ୱରେ ରହିଯିବ । ସମସ୍ତଙ୍କର ଭୟ ଏଥିରେ କାଳେ କେଉଁଠି ବ୍ୟତିକ୍ରମ ହୋଇଗଲେ ସବୁକିଛି ଗୋଳମାଳ ହୋଇଯିବ । ଯାହାହେଉ ଇଞ୍ଜିନିଅର ଓ କଂପ୍ୟୁଟରର ମିଳିତ ଚେଷ୍ଟାଫଳରେ ମିଷ୍ଟର ଅଗ୍ରୱାଲଙ୍କ କେବିନ୍‌ଟି ସାଧାରଣ ତାପକ୍ରମର ପାଖେଇ ଆସିଲା । ଡାକ୍ତରମାନେ ସଙ୍ଗେ ସଙ୍ଗେ କେବିନ୍‌ଟିକୁ ଖୋଲି ମିଷ୍ଟର ଅଗ୍ରୱାଲଙ୍କ ନିର୍ଜୀବ ଶରୀରଟିକୁ ସେଥିରୁ ବାହାର କରି ଶୀତତାପ ନିୟନ୍ତ୍ରକ ଅପରେସନ୍ ଗୃହର ଅପରେସନ ଟେବୁଲ ଉପରେ ଶୁଆଇଦେଲେ । ସଙ୍ଗେ ସଙ୍ଗେ ହୃଦ୍‌ଯନ୍ତ୍ରଟିକୁ କୃତ୍ରିମ ଉପାୟରେ ଚଳାଇଲାକ୍ଷଣି ଏହା ଚାଲିବାକୁ ଆରମ୍ଭ କଲା । ହୃଦଯନ୍ତ୍ର ଚାଲିବାକ୍ଷଣି ସାରା ଶରୀରରେ ରକ୍ତ ସଞ୍ଚାଳନ ଆରମ୍ଭ ହୋଇଗଲା । ଡାକ୍ତର ଟମ୍ପସନ୍‌ଙ୍କ ଡର ଥିଲା ହୃଦ୍‌ଯନ୍ତ୍ରରେ କିମ୍ବା ହୃଦ୍‌ଯନ୍ତ୍ରୀୟ ଶିରା କି ଧମନୀରେ ରକ୍ତ ଜମାଟ ବାନ୍ଧିଯାଇ ରକ୍ତ ସଞ୍ଚାଳନରେ ବାଧା ସୃଷ୍ଟି କରିପାରେ । ଯାହାହେଉ, ଈଶ୍ୱରଙ୍କ ଦୟାରୁ ସେଭଳି କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲାନି । ଉତ୍ତରା ଓ ଅଧରା ମହାଶିରାଠାରୁ ଆରମ୍ଭ କରି କ୍ଷୁଦ୍ରାତିକ୍ଷୁଦ୍ର ଜାଲକ ଶିରା ପର୍ଯ୍ୟନ୍ତ ରକ୍ତ ଚାରିଆଡ଼କୁ କ୍ଷିପ୍ରବେଗରେ ଧାବମାନ ହେବାକୁ ଲାଗିଲା । କଂପ୍ୟୁଟରର ତତ୍ତ୍ୱାବଧାନରେ ଏସବୁ ଚାଲିଥାଏ । କେଉଁଠି କିଛି ବ୍ୟତିକ୍ରମ ହେଲେ କଂପ୍ୟୁଟର ସଙ୍ଗେ ସଙ୍ଗେ ସଙ୍କେତ ଦେଇ ଜଣାଇଦେବ । ଯାହାହେଉ, କିଛି ଅସୁବିଧା କେଉଁଠି ହେଲା ନାହିଁ । ସବୁ ଠିକ୍ ଭାବରେ ଚାଲିଥାଏ । ଅନାଉଁ ଅନାଉଁ ରକ୍ତଚାପ ସାଧାରଣ ଅବସ୍ଥାକୁ ଚାଲି ଆସିଲା । ଡାକ୍ତର ଟମ୍ପସନ୍

ଯେତେବେଳେ ଦେଖିଲେ ସବୁଆଡୁ ଠିକ୍ ଭାବରେ ଶରୀର ପ୍ରକ୍ରିୟା ଚାଲିଛି, କଂପ୍ୟୁଟର ସବୁ ଅଂଶ ଠିକ୍ ଅଛି ବୋଲି ସଙ୍କେତ ଦେଉଛି, ମସ୍ତିଷ୍କ ଆଉ କିଛି ସମୟ ପରେ କାର୍ଯ୍ୟ କରିବା ଆଶା ବଢ଼ ବିଚିତ୍ର, ଶରୀରର କ୍ରିୟା ଏତେ ସମୟ ଧରି ଆରମ୍ଭ ହୋଇଥିଲେ ମଧ୍ୟ ମସ୍ତିଷ୍କ କାମ କରିବା ଆରମ୍ଭ କରି ନାହିଁ । ରୋଗୀ ଯେଭଳି ଚେତାହୀନ ଥିଲା, ଏବେବି ଠିକ୍ ସେମିତି ଚେତାଶୂନ୍ୟ ହୋଇ ପଡ଼ି ରହିଛି । ତେବେ ଶେଥା ପଡ଼ି ଯାଇଥିବା ମୁଖମଣ୍ଡଳ, ଶରୀରର ଅବୟବ ଆଦି ରକ୍ତ ସଞ୍ଚାଳନ ଯୋଗୁ ଜୀବନ୍ତ ଶରୀର ଭଳି ଆରକ୍ତ ହୋଇ ଉଠିଲାଣି । ଡାକ୍ତର ଟମ୍ପସନ୍‌ଙ୍କ ଚିନ୍ତା ସବୁ ତ ଠିକ୍ ଚାଲିଛି, ମସ୍ତିଷ୍କ କାମ କରୁ ନାହିଁ କାହିଁକି ? ମସ୍ତିଷ୍କର କୌଣସି ଅଂଶ ନଷ୍ଟ ହୋଇଯାଇ ନାହିଁ ତ ? ସଙ୍ଗେ ସଙ୍ଗେ ସ୍କେନ୍‌ର ସାହାଯ୍ୟରେ ମସ୍ତିଷ୍କର ସ୍କେନିଙ୍ଗ୍ ଆରମ୍ଭ କରିଦେଲେ । ସ୍କେନାର ଦାୟିତ୍ୱରେ ଥିବା କଂପ୍ୟୁଟର ଜଣାଇଦେଲା, ମସ୍ତିଷ୍କର ସବୁ ଅଂଶ ଠିକ୍ ଅଛି, କେଉଁଠି କିଛି କ୍ଷତି ହୋଇନି ।

ଅପରେସନ ଥିଏଟର ବାହାରେ ଅପେକ୍ଷା କରିଥିବା ଗୀତାଦେବୀ, ପୁଅ, ବୋହୂ ସମେତ ଅନ୍ୟମାନେ ଏତେ ବିଳମ୍ବ ହେବା ଦେଖି ବ୍ୟତିବ୍ୟସ୍ତ ହୋଇ ପଡ଼ିଥାନ୍ତି । ତେବେ ସେମାନେ ଖବର ପାଇ ସାରିଲେଣି ଯେ ମିଷ୍ଟର ଅଗ୍ରୱାଲଙ୍କ ହୃଦ୍‌ଯନ୍ତ୍ର ଠିକ୍ ରୂପେ କାମ ଆରମ୍ଭ କରିଛି, ରକ୍ତ ସଞ୍ଚାଳନ ଠିକ୍ ରୂପେ ଚାଲିଛି, କେବଳ ତାଙ୍କର ସଂଜ୍ଞା ଫେରି ଆସିପାରିନି ।

ବିଳମ୍ବ ହେବା ଦେଖି ଗୀତାଦେବୀ ନିଜ ଇଷ୍ଟଦେବ ମଦନମୋହନଙ୍କୁ ମନେ ମନେ ଶତ ନମସ୍କାର ଜଣାଇ ନୀରବ ପ୍ରାର୍ଥନା ଆରମ୍ଭ କରି ଦେଇଥାନ୍ତି । ମନେ ମନେ ସେ ଡାକୁଥାନ୍ତି, ''ହେ ପ୍ରଭୋ, ଏତେବାଟ ଆଣି ଆଉ ଅଧବାଟରେ ପୁଣି ହନ୍ତସନ୍ତ କାହିଁକି ? ଦୟାର ସାଗର କାହିଁକି ଏତିକିବେଳେ ଦୟାର କାର୍ପଣ୍ୟ ଦେଖାଉଛନ୍ତି ? ଆଜକୁ ଷାଠିଏବର୍ଷ ଧରି ଏହି ଅଭାଗିନୀକୁ ଏତେ କଷ୍ଟ ଦେଲେଣି, ଆଉ କେତେ କଷ୍ଟ ଦେବେ ପ୍ରଭୋ ।'' ସେ ଏହିଭଳି ମନେ ମନେ କାତର ହୋଇ ପ୍ରଭୁଙ୍କୁ ଜଣାଣ କରି ଚାଲିଛନ୍ତି, ହଠାତ୍ ତାଙ୍କ କାନ ପାଖରେ ପ୍ରତିଧ୍ୱନିତ ହେଲା ଇଷ୍ଟଦେବ ମଦନମୋହନଙ୍କ ସାନ୍ଧ୍ୟକାଳୀନ ଘଣ୍ଟାଧ୍ୱନି । ସେଥିସହିତ ପ୍ରତିଧ୍ୱନିତ ହେଉଥାଏ ପୂଜକର ସଂସ୍କୃତ ସ୍ତୁତି । ଗୀତାଦେବୀଙ୍କ ଶରୀରରେ ଏକ ଅପୂର୍ବ ଶିହରଣ ଖେଳିଗଲା, ''ଏ କ'ଣ, ନିଉୟର୍କ ଏଠୁ କେତେଦୂର । ସେଠା ମଦନମୋହନଙ୍କ ସାନ୍ଧ୍ୟକାଳୀନ ଘଣ୍ଟାଧ୍ୱନି ତାଙ୍କୁ ଏଠି ଶୁଭୁଛି କିପରି ? ପ୍ରଭୁଙ୍କର ଏହା ନିଶ୍ଚୟ ଏକ କୃପା ବୋଧହୁଏ ?''

ଏହି ସମୟରେ ଅପରେସନ କକ୍ଷରୁ ଜଣୈକା ନର୍ସ ହସ ହସ ମୁଖରେ ବାହାରି ଆସି ଅପେକ୍ଷା କରିଥିବା ଗୀତାଦେବୀଙ୍କୁ ଲକ୍ଷ୍ୟ କରି କହିଲା, ''ମିଷ୍ଟର

ଅଗ୍ରୱାଲଙ୍କ ମସ୍ତିଷ୍କ କାମ କରିବା ଆରମ୍ଭ କରିଛି ଗୀତାଦେବୀ । ଅସ୍ପଷ୍ଟ ସ୍ୱରରେ ସେ ପିଇବା ପାଇଁ ପାଣି ମାଗୁଛନ୍ତି । ଆପଣ ବଡ଼ ଭାଗ୍ୟବତୀ ଗୀତାଦେବୀ, ମିଷ୍ଟର ଅଗ୍ରୱାଲ ଏଥର ନିଶ୍ଚୟ ଭଲ ହୋଇଯିବେ ।''

ନର୍ସର ଏହି କଥା କେଇପଦରେ ଅପେକ୍ଷା କରିଥିବା ରାମକିଷନବାବୁ, ତାଙ୍କ ସ୍ତ୍ରୀ, ପୁଅ ଆନନ୍ଦରେ ନାଚି ଉଠିଲେ । ରାମକିଷନବାବୁଙ୍କ ଯୁବକପୁଅ ଶାମକିଷନ ନାଚି ନାଚି କହିଲା, ''ଯାହାହେଉ, ଏଥର ଆମ ଜେଜେ ଭଲ ହୋଇଯିବେ । ଗୀତାଦେବୀଙ୍କ ପାଟିରୁ ଭାଷା ବାହାରୁ ନ ଥାଏ, ସେ ନୀରବରେ ଆଖିରୁ ଅବାରିତ ରୀତିରେ ଆନନ୍ଦାଶ୍ରୁ ଗଡ଼ାଇ ଚାଲିଥାନ୍ତି ।

ମିଷ୍ଟର ଅଗ୍ରୱାଲଙ୍କ ଚେତା ଫେରି ଆସିଲା ପରେ ସେ ଅନୁଭବ କଲେ ଶରୀରରେ ଜ୍ୱାଳାମୟୀ କଷ୍ଟ । ସେହି କଷ୍ଟରେ ସେ ମ୍ରିୟମାଣ ହୋଇପଡ଼ି ଅସ୍ପଷ୍ଟ ସ୍ୱରରେ କହୁଥାନ୍ତି, ''ଓଃ, କି କଷ୍ଟ, ଆଉ ବଞ୍ଚିପାରିବିନି ଏ କଷ୍ଟରେ ।''

ଡାକ୍ତର ଟମ୍ପସନ୍ ଜାଣିପାରିଲେ ରୋଗୀ ଏଥର ପୂର୍ବ ଅବସ୍ଥାକୁ ପୂରାପୂରି ଫେରି ଆସିଲାଣି । ଲାକ୍ଷଣିକ ମୃତ୍ୟୁ ହେବାର ଅବ୍ୟବହିତ ପୂର୍ବରୁ ଯେଉଁ ଅବସ୍ଥା ଥିଲା, ଏ ଠିକ୍ ସେଇ ଅବସ୍ଥା । କିଛି ସମୟ ଚେତା ଓ କିଛି ସମୟ ଅଚେତ ଭିତରେ ରହି ସେ ଯେଉଁ କଷ୍ଟ ଅନୁଭବ କରୁଥିଲେ, ଇଏ ସେହି କଷ୍ଟ । ଡାକ୍ତର ଟମ୍ପସନ୍ ଆଉ କାଳବିଳମ୍ବ ନ କରି ନୂଆ ଔଷଧଟିକୁ ଇଞ୍ଜେକ୍ସନ୍ ସାହାଯ୍ୟରେ ଶରୀର ଭିତରକୁ ପ୍ରବେଶ କରାଇଲେ । ପ୍ରତି ଛଅ ଘଣ୍ଟାରେ ଏହି ଇଞ୍ଜେକ୍ସନ୍ ଦିଆଯିବା କଥା । ନର୍ସମାନଙ୍କ ଦାୟିତ୍ୱରେ ନ ଦେଇ ଇଞ୍ଜେକ୍ସନ୍ ଦେବା ଦାୟିତ୍ୱ ନିଜେ ବହନ କଲେ ଡାକ୍ତର ଟମ୍ପସନ୍ । ପ୍ରତି ଇଞ୍ଜେକ୍ସନ୍ ପରେ ରୋଗୀର ପ୍ରତିକ୍ରିୟା କ'ଣ ହେଉଛି, ତାକୁ ଲକ୍ଷ୍ୟ କରିବାକୁ ପଡ଼ିବ । ସେଥିରୁ ସେ ଜାଣିପାରିବେ, ଔଷଧ ଠିକ୍ ରୂପେ କାର୍ଯ୍ୟ କରୁଛି କି ନାହିଁ ।

ମିଷ୍ଟର ଅଗ୍ରୱାଲଙ୍କ ଚିକିତ୍ସା ଅବିରାମ ଗତିରେ ଚାଲିଲା । ଏହି ଚିକିତ୍ସା ଫଳରେ ମିଷ୍ଟର ଅଗ୍ରୱାଲଙ୍କ ଶରୀରରେ ଯେଉଁ ଅସହ୍ୟ ଯନ୍ତ୍ରଣା ହେଉଥିଲା ତାହା ଧୀରେ ଧୀରେ କମିବାକୁ ଲାଗିଲା । ଚିକିତ୍ସାର ଅଷ୍ଟମଦିନ ବେଳକୁ ସେ କଷ୍ଟ ଆଉ ପ୍ରାୟ ନାହିଁ । ତାଙ୍କର ଚେତା ପୂରାପୂରି ଫେରି ଆସିଲାଣି । ଆଉ ପୂର୍ବଭଳି ମଝିରେ ମଝିରେ ଅଚେତ ହେଉ ନାହାନ୍ତି । ଡାକ୍ତର ଟମ୍ପସନ୍ ଲକ୍ଷ୍ୟ କଲେ ଯଦିଚ ମିଷ୍ଟର ଅଗ୍ରୱାଲଙ୍କ ମସ୍ତିଷ୍କ କାର୍ଯ୍ୟ କରିଛି, କିନ୍ତୁ ସେ ପୂର୍ବ ସ୍ମୃତିଶକ୍ତି ଫେରି ପାଇପାରି ନାହାନ୍ତି । ସେ କେଉଁଠି, ତାଙ୍କର କି ଚିକିତ୍ସା ହେଉଛି, ତାଙ୍କର କିଏ ଅଛି, ସେ କିଛି ମନେପକାଇ ପାରୁ ନ ଥାନ୍ତି । ସେ ଚେତାଯୁକ୍ତ ସତ, କିନ୍ତୁ କିଛି ପ୍ରତିକ୍ରିୟା ପ୍ରକାଶ କରିପାରୁ ନାହାନ୍ତି । ଡାକ୍ତର

ଟମ୍ପସନ୍ ରୋଗୀର ହାବଭାବ ପର୍ଯ୍ୟବେକ୍ଷଣ କରୁଥାନ୍ତି । ରୋଗ ଯେ ଧୀରେ ଧୀରେ କମି ଆସୁଛି ଓ ରୋଗୀ ସୁସ୍ଥତା ଆଡ଼କୁ ଗତି କରୁଛି, ଏଥିରେ ତାଙ୍କର ସନ୍ଦେହ ନ ଥାଏ । ସ୍ମୃତିଶକ୍ତି ଫେରି ନ ଆସିବା ହିଁ ତାଙ୍କୁ ଆଶ୍ଚର୍ଯ୍ୟ କରୁଥାଏ । ତାଙ୍କର ଆଶା ଆଉ କିଛିଦିନ ପରେ ଅତୀତର ସ୍ମୃତି ସେ ଫେରି ପାଇବେ । ପ୍ରାୟ ଷାଠିଏବର୍ଷ ଧରି ତାଙ୍କ ମସ୍ତିଷ୍କର କୋଷରାଜି ଶୀତଳାବସ୍ଥାରେ ଅକ୍ରିୟ ହୋଇ ରହିବା ଫଳରେ ତାଙ୍କର ସ୍ମୃତିଶକ୍ତି ପ୍ରାୟ ଲୋପ ପାଇ ଯାଇଥିଲା କହିଲେ ଚଳେ । ସେ କାହାକୁ ନ ଖୋଜିବା, ନିଜ ବିଷୟରେ ଜାଣିବା ପାଇଁ ଇଚ୍ଛା ପ୍ରକାଶ କରୁ ନ ଥିବା ଏହାର ଫଳ । ତାଙ୍କର ସ୍ମୃତିଶକ୍ତି ଜାଗରୁକ ହେଲେ ସେ କେଉଁଠି ବା ତାଙ୍କ ପରିବାରର କାହାକୁ କାହାକୁ ସେ ଖୋଜି ପାରନ୍ତି । ଡାକ୍ତର ଟମ୍ପସନ୍ ସବୁବେଳେ ସ୍ମୃତିକୋଷଗୁଡ଼ିକୁ ଏକ ଯନ୍ତ୍ର ସହିତ ତୁଳନା କରନ୍ତି । କୌଣସି ଯନ୍ତ୍ର ବ୍ୟବହୃତ ନ ହୋଇ ବହୁତ ଦିନ ପଡ଼ି ରହିଲେ ଯେମିତି ପ୍ରଥମେ ପ୍ରଥମେ କାମ କରେନି, ତାକୁ ସଫାସୁତୁରା କରି ତେଲ ଆଦି ଦେଇ ଚଳାଇଲେ ବେଶ୍ କାମ କରେ, ମସ୍ତିଷ୍କର ସ୍ମୃତିକୋଷଗୁଡ଼ିକ ଠିକ୍ ସେଇମିତି ।

ଗୀତାଦେବୀ ଇତିମଧ୍ୟରେ ରୋଗୀପାଖକୁ ଯିବା ଆରମ୍ଭ କଲେଣି । ଅନ୍ୟମାନଙ୍କୁ ଯିବାକୁ ଅନୁମତି ମିଳି ନ ଥାଏ । ରୋଗୀର ତ ସ୍ମୃତିଶକ୍ତି ଜାଗରୁକ ହୋଇନି, ଏତେ ଲୋକ ଯାଇ ସେଠି ଭିଡ଼ ଜମାଇ କ'ଣ ଲାଭ ? ରୋଗୀ ଯାହାକୁ ଦେଖିଲେ ଖାଲି ବଲବଲ କରି ଅନାଉଛି ସିନା, କିନ୍ତୁ କିଛି ପ୍ରତିକ୍ରିୟା ପ୍ରକାଶ କରିପାରୁନି । ଗୀତାଦେବୀ ଯାଆନ୍ତି, ସ୍ୱାମୀଙ୍କ ଖଟ ପାଖରେ କିଛି ସମୟ ବସନ୍ତି, ସ୍ୱାମୀ ଖାଲି ବଲବଲ କରି ଅନାଉଥିବାର ଦେଖି ମନରେ ବିଶେଷ କଷ୍ଟ ଅନୁଭବ କରନ୍ତି, ମନ ଭିତରେ ଇଷ୍ଟଦେବତା ମଦନମୋହନଙ୍କୁ ପ୍ରାର୍ଥନା କରନ୍ତି, ସ୍ୱାମୀଙ୍କୁ କେମିତି ଶୀଘ୍ର ଭଲ କରିଦେବା ପାଇଁ । ପୁଅ, ବୋହୂ, ନାତି, ସମସ୍ତଙ୍କର ଚିନ୍ତା ସ୍ମୃତିଶକ୍ତି ଜାଗରୁକ ହେଉନି କାହିଁକି ? ହେବାକୁ ଆଉ କେତେଦିନ ଲାଗିବ ? ସ୍ମୃତିଶକ୍ତି ଯଦି ନ ଫେରେ, ତେବେ ଜୀବନ ଫେରିପାଇ ଲାଭ କଅଣ ? ଡାକ୍ତର ଟମ୍ପସନ୍ ସବୁବେଳେ ଗୀତାଦେବୀ ଓ ତାଙ୍କ ପରିବାରବର୍ଗଙ୍କୁ ବୁଝାଉଥାନ୍ତି ଯେ ମିଷ୍ଟର ଅଗ୍ରୱାଲ ସ୍ମୃତିଶକ୍ତି ନିଶ୍ଚୟ ଫେରି ପାଇବେ । ହୁଏତ ବିଳମ୍ବ ହୋଇପାରେ । ଡାକ୍ତରଙ୍କ ଆଶ୍ୱାସନା ସମସ୍ତେ ଶୁଣନ୍ତି, ବିଶ୍ୱାସ ନ ଆସିଲାଭଳିଆ ତୁନି ହୋଇ ରହନ୍ତି ।

ଚିକିତ୍ସାର ଚତୁର୍ଦ୍ଦଶ ଦିନ । ପୂର୍ବଭଳି ଗୀତାଦେବୀ ଯାଇ ସ୍ୱାମୀଙ୍କ ଖଟ ପାଖରେ ତୁନି ହୋଇ ବସିଥାନ୍ତି । ସ୍ୱାମୀ ଆଖିବୁଜି ପଡ଼ି ରହିଥାନ୍ତି । ଡାକ୍ତର, ନର୍ସମାନେ

ପାଖରୁମ୍‌ରେ ଥାନ୍ତି । ଏହି ସମୟରେ ମିଷ୍ଟର ଅଗ୍ରୱାଲ ଆଖି ଖୋଲି ଚାରିଆଡ଼କୁ ଅନାଇ କାହାକୁ ଖୋଜିଲା ଭଳି ଲାଗିଲେ । ଏହି ସମୟରେ ସେ ଖୁବ୍ ଧୀର ସ୍ୱରରେ ଗୀ-ତା, ଗୀ-ତା ଡାକୁଥିବାର ଶୁଣାଗଲା । ସ୍ୱାମୀଙ୍କ ମୁହଁରେ ନିଜ ନାଁ ଶୁଣି ଗୀତାଦେବୀ ଆନନ୍ଦରେ ନାଚି ଉଠିଲେ । ସେ ପାଖ କୋଠରିକୁ ଦୌଡ଼ିଯାଇ ଡାକ୍ତରଙ୍କୁ ଆନନ୍ଦ ଗଦ୍‌ଗଦ ଚିତ୍ତରେ କହିଲେ, ''ଡାକ୍ତର, ରୋଗୀ ଏଥର ସ୍ମୃତିଶକ୍ତି ଫେରି ପାଇଛି । ସେ ମୋ ନାଁ ଧରି ଡାକୁଛି ।''

ଗୀତାଦେବୀଙ୍କ କଥାରେ ଡାକ୍ତର ଓ ନର୍ସମାନେ ଉତ୍ସାହିତ ହୋଇ ରୋଗୀଠାକୁ ଦୌଡ଼ି ଆସିଲେ । ଗୀ-ତା, ଗୀ-ତା ଡାକ ଶୁଣି ଡାକ୍ତର ଟମ୍ପସନ୍ ତାଙ୍କ ଉପରକୁ ଝୁଙ୍କିପଡ଼ି କହିଲେ, ''କ'ଣ ଗୀତାଦେବୀଙ୍କୁ ଡାକି ଦେବି ? ସେ ଏଇଠି ଆପଣଙ୍କ ପାଖରେ ବସିଛନ୍ତି ପରା । ରୋଗୀକୁ ମୁଣ୍ଡ ଟୁଙ୍ଗାରିବା ଦେଖି ଡାକ୍ତରଙ୍କ ଇଙ୍ଗିତରେ ଗୀତାଦେବୀ ମିଷ୍ଟର ଅଗ୍ରୱାଲଙ୍କ ସାମନାକୁ ଆସିଲେ । ସାମନାପଟରୁ ଠିଆ ହୋଇ ମୁଣ୍ଡ ଆଉଁଶୁ ଆଉଁଶୁ କହିଲେ, ''ମୁଁ ପରା ଗୀତା, କ'ଣ କହୁଛ ?''

ଗୀତାଦେବୀଙ୍କୁ କିଛି ସମୟ ଅନାଇ ମିଷ୍ଟର ଅଗ୍ରୱାଲ ପୁଣି ଆଖି ବୁଜିଲେ । ସମ୍ଭବତଃ ଚିହ୍ନି ପାରିଲେନି ଗୀତାଦେବୀଙ୍କୁ । ତାଙ୍କ ସ୍ମୃତିରାଜ୍ୟରେ ଯେଉଁ ଗୀତାଦେବୀ ଥିଲେ, ଏ ଗୀତାଦେବୀ ଯେ ତା'ଠାରୁ ଢେର୍ ପୃଥକ୍ । ତେଣୁ ଚିହ୍ନିବେ ବା କେମିତି ? ପଞ୍ଚାବନବର୍ଷ ତଳର ଚବିଶ ପଚିଶ ବର୍ଷ ବୟସ୍କା ଗୀତାଦେବୀ ବର୍ତ୍ତମାନର ଅଶୀ, ଏକାଅଶୀ ବର୍ଷର ଗୀତାଦେବୀ ମଧ୍ୟରେ ପାର୍ଥକ୍ୟ ଢେର୍ । ମିଷ୍ଟର ଅଗ୍ରୱାଲଙ୍କ ମନରେ ଯୁବତୀ ଗୀତାଦେବୀଙ୍କ ରୂପ ରହିଥିଲା ବେଳେ ବର୍ତ୍ତମାନ ସମ୍ମୁଖରେ ବୃଦ୍ଧା-ଗୀତାଦେବୀଙ୍କୁ ସେ ଚିହ୍ନିବେ ବା କେମିତି ? ପଞ୍ଚାବନବର୍ଷର ବ୍ୟବଧାନ ତାଙ୍କୁ ଗୀତାଦେବୀଙ୍କୁ ଚିହ୍ନିବାରେ ଅନ୍ତରାୟ ସୃଷ୍ଟି ନ କରିବ କେମିତି ? ସ୍ୱାମୀଙ୍କୁ ଆଖିବୁଜିବା ଦେଖି ଗୀତାଦେବୀଙ୍କ ଖୁସି ହୋଇ ଆସୁଥିବା ମନ ପୁଣି ବିଷାଦରେ ଭରିଗଲା । ତାଙ୍କ ଆଖି ପୁଣି ଆର୍ଦ୍ର ହୋଇ ଆସିଲା ।

ଗୀତାଦେବୀଙ୍କର ଆଉ ଏକ ଚିନ୍ତା ତାଙ୍କ ମନରେ ବିଷାଦ ଭରି ଦେଇଥାଏ । ସ୍ୱାମୀଙ୍କୁ ଦେଖିଲାଦିନୁ ତାଙ୍କ ମନରେ ଏକ ସନ୍ଦେହ ଘାରି ରହିଥାଏ ଯେ ସେ ବୟସରେ ଯଥେଷ୍ଟ ଆଗେଇଯାଇ ଥିଲେହେଁ ସ୍ୱାମୀ ମୋଟ ବୟସରେ ଆଗେଇ ନାହାନ୍ତି । ଲାକ୍ଷଣିକ ମୃତ୍ୟୁ ବେଳେ ତାଙ୍କୁ ଯେଉଁ ପଚିଶ ଛବିଶ ବର୍ଷ ବୟସ ହୋଇଥିଲା ବର୍ତ୍ତମାନ ଠିକ୍ ସେଇଆ ଅଛି । ଇତିମଧ୍ୟରେ ଦୀର୍ଘ ପଞ୍ଚାବନ ବର୍ଷ ବିତି ଯାଇଥିଲେହେଁ ତାଙ୍କ ଉପରେ ଏହି ସମୟର ପ୍ରଭାବ କିଛି ପଡ଼ିନି । ଗୀତାଦେବୀ ବର୍ତ୍ତମାନ ବାର୍ଦ୍ଧକ୍ୟର ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲେହେଁ ସ୍ୱାମୀ ଯୁବକତ୍ୱର ପ୍ରଥମ ପାଦ ଟପି ନାହାନ୍ତି । ତାଙ୍କ ନିଜ ଜନ୍ମିତ ପୁଅ ରାମକିଷନ

ସ୍ୱାମୀଙ୍କଠାରୁ ଢେର୍ ବଡ଼ ଦିଶୁଛି । ତାଙ୍କ ନାତି ଶାମ ବର୍ତ୍ତମାନ ସ୍ୱାମୀଙ୍କ ବୟସର ଦେଖାଯାଉଛି । ଦୁହେଁ ଦିଶୁଛନ୍ତି ଯାଆଁଳା ଭାଇ ପରି । ଏହା କେମିତି ହେଲା ଜାଣି ନ ପାରି ସେ ଦିନେ ଡାକ୍ତରଙ୍କୁ ପଚାରିବା ପାଇଁ ଠିକ୍ କଲେ । ଏହି ପଞ୍ଚାବନ ବର୍ଷ ଭିତରେ ତାଙ୍କର ଓ ତାଙ୍କ ପରିବାର ଲୋକଙ୍କର ଏତେ ପରିବର୍ତ୍ତନ ହୋଇ ଯାଇଥିଲାବେଳେ ସ୍ୱାମୀ ସେମିତି ଅପରିବର୍ତ୍ତିତ ରହିଗଲେ କେମିତି ?

ଗୀତାଦେବୀଙ୍କ ପ୍ରଶ୍ନରେ ଡାକ୍ତର ଟମ୍ପସନ୍ ହସିଲେ, "ହଁ, ଏହା ହିଁ ତ ହେବା କଥା । ନ ହେଲେ ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଥାନ୍ତୁ । ଡାକ୍ତର ବାର୍ଗମେନ୍ କ'ଣ ଆପଣଙ୍କୁ ଏ କଥା ଆରମ୍ଭରୁ କହି ନ ଥିଲେ ? ତରଳ ଯବକ୍ଷାରଜାନର ନିମ୍ନ ତାପକ୍ରମରେ ଲାକ୍ଷଣିକ ମୃତ୍ୟୁ ପରେ ଶରୀରର କୋଷ ବିଭାଜନ ପୂରାପୂରି ବନ୍ଦ ହୋଇଯାଏ । ଜୀବନ୍ତ ଅବସ୍ଥାରେ କୋଷ ବିଭାଜନ ସିନା ଚାଲେ, ଲାକ୍ଷଣିକ ମୃତ୍ୟୁ ପରେ ଚାଲେନି । ଶରୀରର କୋଷଗୁଡ଼ିକ ତରଳ ଯବକ୍ଷାରଜାନର ନିମ୍ନ ତାପକ୍ରମରେ କେବଳ ଜୀବନ୍ତ ହୋଇ ରହନ୍ତି ସିନା, ସେମାନଙ୍କ ବିଭାଜନ ପ୍ରକ୍ରିୟା ବନ୍ଦ ହୋଇଯାଏ । ଫଳରେ ବୟସ ବୃଦ୍ଧି ଘଟେନି । ମୂଳରୁ ତାଙ୍କର ଯେଉଁ ବୟସ ଥିଲା, ପଚିଶ ଛବିଶ ବର୍ଷ, ତାହା ଠିକ୍ ସେମିତି ରହିଲା । ଅଥଚ ଆପଣଙ୍କ କୋଷ ବିଭାଜନ ପ୍ରାକୃତିକ ରୀତିରେ ଚାଲିଥିବାରୁ ଆପଣଙ୍କ ବୟସ ବଢ଼ି ଚାଲିଲା । ତେଣୁ ଆପଣଙ୍କ ବୟସ ଅଶୀବର୍ଷ ହେଲାବେଳକୁ ଆପଣଙ୍କ ସ୍ୱାମୀଙ୍କ ବୟସ ସେହି ପଚିଶ ଛବିଶରେ ରହିଛି । ଏହା କିଛି ନୂଆ କଥା ନୁହେଁ ଗୀତାଦେବୀ । ଆମେ ଦେଖୁଛୁ ଯଦି ଗୋଟିଏ ନିଷିକ୍ତ ଡିମ୍ବାଣୁକୁ ଏମିନୋଟିକ୍ ତରଳ ଭିତରେ ରଖି ତରଳ ଯବକ୍ଷାରଜାନରେ ରଖି ଦିଆଯାଏ, ତେବେ ସେହି ନିଷିକ୍ତ ଡିମ୍ବାଣୁର ମୋଟେ ଅଭିବୃଦ୍ଧି ଘଟେନି । ଏମିତିକି ନିଷିକ୍ତ ଡିମ୍ବାଣୁଟିକୁ ବର୍ଷ ବର୍ଷ ଧରି ସେହି ଅବସ୍ଥାରେ ରଖାଯାଇପାରେ । କିନ୍ତୁ ଏହାକୁ ଯଦି ଆମେ ସାଧାରଣ ତାପକ୍ରମରେ ରଖିବା, ସେ ଆଠ ନଅମାସ ଭିତରେ ବଢ଼ି ବଢ଼ି ଏକ ସୁସ୍ଥ ଶିଶୁରେ ପରିଣତ ହୋଇଯିବ । କୋଷର ଅଭିବୃଦ୍ଧି ପାଇଁ କିଛି ଉତ୍ତାପ ଦରକାର । ଉତ୍ତାପ ନ ପାଇଲେ କୋଷବୃଦ୍ଧି ସମ୍ଭବ ନୁହେଁ । ଆପଣଙ୍କ ସ୍ୱାମୀଙ୍କୁ ଶୀତଳାଗାରରେ ରଖିବା ପୂର୍ବରୁ ଡାକ୍ତର ବାର୍ଗମେନ୍ ଆପଣଙ୍କୁ ଏହା ସମ୍ବନ୍ଧରେ କିଛି କହିଥିବେ ବୋଲି ମୋର ବିଶ୍ୱାସ ।"

"ନା, ଡାକ୍ତର, ସେତେବେଳେ ଜୀବନ ବଞ୍ଚାଇବା ଥିଲା ବଡ଼ କଥା । ଏହି ବୟସ ତାରତମ୍ୟ ପ୍ରତି କାହାରି ଦୃଷ୍ଟି ନ ଥିଲା ।

"ଡାକ୍ତର ବାର୍ଗମେନ୍ ଏହା ଜାଣିଥିଲେ; ସମ୍ଭବତଃ ଆପଣଙ୍କୁ କହିବାକୁ ଭୁଲି ଯାଇଥିଲେ ।"

"ସେଥିରେ କିଛି ଯାଏ ଆସେନି ଡାକ୍ତର । ରୋଗୀ କେମିତି ସୁସ୍ଥ ହୋଇ ଫେରି ଆସୁ, ବୟସ ତାରତମ୍ୟ ଯାହା ହେଉପଛକେ ।"

ଅଳ୍ପ କେଇଦିନ ଭିତରେ ମିଷ୍ଟର ଅଗ୍ରୱାଲ ପୂରାପୂରି ଭଲ ହୋଇଗଲେ । ତାଙ୍କର ପୂର୍ବ ସ୍ମୃତି ଠିକ୍ ଭାବରେ ଫେରି ଆସିଲା । ସେ ନିଜ ସ୍ତ୍ରୀ, ପୁଅ, ପରିବାର, ବନ୍ଧୁବାନ୍ଧବ, କଳକାରଖାନା, ଘରଦ୍ୱାର କଥା ସବୁ ମନେ ପକାଇ ପାରିଲେ । ଅସ୍ଥିକେନ୍‌ସର ରୋଗରେ ତାଙ୍କର କିପରି ମୃତ୍ୟୁ ହୋଇଥିଲା ଓ ସେଥିରୁ ସେ କେମିତି ଭଲ ହୋଇ ବଞ୍ଚି ପାରିଲେ, ତାହା ତାଙ୍କୁ ଅତି ଆଶ୍ଚର୍ଯ୍ୟ ଲାଗୁଥିଲା । ତାଙ୍କୁ ଯେତେବେଳେ ସ୍ତ୍ରୀ ଗୀତାଦେବୀଙ୍କୁ ଚିହ୍ନାଇ ଦିଆଗଲା ସେ ଚିହ୍ନି ପାରିଲେନି । ନିଜ ପୁଅ ରାମକିଷନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ଘଡ଼ିଏକାଳ ଅନାଇ ରହିଲେ । ନିଜ ପୁଅକୁ ଶୁଭ୍ରକେଶ ଛପନବର୍ଷ ବୟସର ବୃଦ୍ଧ ଦେଖି ନିଜ ଆଖିକୁ ବିଶ୍ୱାସ କରି ପାରିଲେନି । ଗୀତାଦେବୀଙ୍କୁ ନ ଚିହ୍ନିବାର କାରଣ ହେଉଛି ପଞ୍ଚାବନ ବର୍ଷ ତଳେ ସେ ଗୀତାଦେବୀଙ୍କୁ ଯେମିତି ଦେଖିଥିଲେ ତାଙ୍କରି ପ୍ରତିମା ହିଁ ତାଙ୍କ ମାନସପଟରେ ରହିଥିଲା । ତାଙ୍କର ହସ ହସ ମୁହଁ, ଘନକୃଷ୍ଣ କେଶରାଜି, ମୁକ୍ତାନିନ୍ଦୀ ଦନ୍ତପନ୍ତି, ହରିଣୀବିଲୋଳ ନୟନ ତାଙ୍କ ମାନସପଟରେ ଭାସି ବୁଲୁଥିଲା । କିନ୍ତୁ ସେ ଯେତେବେଳେ ଗୀତାଦେବୀଙ୍କୁ ଦେଖନ୍ତି, ସେସବୁ କିଛି ନାହିଁ । ଗୀତାଦେବୀ ଠିକ୍ ତାର ଓଲଟା । ଶୁଭ୍ରକେଶୀ, ଦନ୍ତହୀନା, କୁଞ୍ଚିତ ଚର୍ମା, ଅଶୀବର୍ଷର ଏକ ବୃଦ୍ଧା । ସେ ପରିସ୍ଥିତିରେ ସେ ତାଙ୍କୁ ଚିହ୍ନିବେ କିପରି ? ମିଷ୍ଟର ଅଗ୍ରୱାଲ ସହଜରେ ବିଶ୍ୱାସ କରିପାରୁ ନ ଥାନ୍ତି ଏହି ଶୁଭ୍ରକେଶୀ, ଦନ୍ତହୀନା, କୁଞ୍ଚିତ ଚର୍ମା ବୃଦ୍ଧା ସ୍ତ୍ରୀଲୋକଟି ହେଉଛି ତାଙ୍କର ମାନସରାଣୀ ଅତି ଆଦରର ସ୍ତ୍ରୀ ଗୀତାଦେବୀ । ପୁଅକୁ ଦେଖି ସେ ଭାବୁଥାନ୍ତି ଇଏ କ'ଣ ସେହି ଆଦରର ଧନ ରାମ, ଯାହାକୁ ପ୍ରତିଦିନ ଅଫିସ୍‌ରୁ ଫେରି କୋଳ ନ କଲେ ଭଲ ଲାଗେନି । ସେ କ'ଣ ବାର୍ଦ୍ଧକ୍ୟର ପ୍ରଥମ ପାଦରେ ଗୋଡ଼ ଦେଲାଣି ? ଗୀତାଦେବୀ ସ୍ୱାମୀଙ୍କୁ ଦେଖି ଯେତିକି ଆଶ୍ଚର୍ଯ୍ୟ ହେଉଥାନ୍ତି, ମିଷ୍ଟର ଅଗ୍ରୱାଲ ଗୀତାଦେବୀ, ନିଜ ପୁଅକୁ ଦେଖି ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ହେଉଥାନ୍ତି । ଗୀତାଦେବୀଙ୍କର ସବୁଠାରୁ ବିସ୍ମୟ ସ୍ୱାମୀ ଯେମିତି ଦିଶୁଛନ୍ତି, ଠିକ୍ ସେମିତି ଦିଶୁଛି ତାଙ୍କ ନାତି ଶାମ । ଏକା ବୟସ, ଏକା ସ୍ୱାସ୍ଥ୍ୟ, ଏକା ଚେହେରା, ସତେ ଯେମିତି ଦୁଇଜଣଯାକ ଯାଆଁଳା ଭାଇ । ଜଣକୁ ଲୁଚାଇ ଆରଜଣକୁ ଆଣି ହେବ । ମିଷ୍ଟର ଅଗ୍ରୱାଲ ନାତିଠାରେ ନିଜର ପ୍ରତିରୂପ ଦେଖି ଚମକି ପଡ଼ିଥିଲେ । ଗୀତାଦେବୀ ସ୍ୱାମୀ ଓ ନାତିକୁ ଅନାଇ ଭାବୁଥିଲେ ସେ ଦୁହେଁ ସତେ ଯେମିତି ଅଭିନ୍ନ ଯମଜ, କିଏ ସ୍ୱାମୀ କିଏ ନାତି ଠିକ୍ କରିବା କଷ୍ଟକର । ଜଣକୁ ଲୁଚାଇ ଆରଜଣକୁ ନେଚ ହେବ ।

ଗୀତାଦେବୀଙ୍କ ମନରେ ବର୍ତ୍ତମାନ ବଡ଼ ଦ୍ୱନ୍ଦ୍ୱ, ନାତିସଦୃଶ ଦିଶୁଥିବା ସ୍ୱାମୀଙ୍କୁ ନେଇ ସେ ଘର କରିବେ କେମିତି ? ନିଜେ ବୃଦ୍ଧା, ଅକର୍ମଣ୍ୟ ହୋଇ ଯାଇଥିଲେହେଁ ସ୍ୱାମୀ ଯୁବକ ଥିବାରୁ ସେ ତାଙ୍କୁ ନେଇ କି ସଂସାର କରିବେ ? ଏତେ କମ୍ ବୟସର ଯୁବକଙ୍କୁ ନିଜ ସ୍ୱାମୀ ବୋଲି କହିବାକୁ ତାଙ୍କୁ କ'ଣ କମ୍ ସଂକୋଚ ଲାଗିବ ? ସ୍ୱାମୀ-ସ୍ତ୍ରୀ ଭାବରେ ସେମାନେ କ'ଣ କାହା ଆଗରେ ଠିଆ ହୋଇ ପାରିବେ ? ଭାରତ ଫେରିଗଲେ ସେ ନିଜ ନାତି ଭଳି ଦିଶୁଥିବା ସ୍ୱାମୀଙ୍କୁ ନେଇ ଚଳିବେ କେମିତି ? ସ୍ୱାମୀ-ସ୍ତ୍ରୀ ସମ୍ପର୍କ ରହିବା ତ ସମ୍ଭବ ନୁହେଁ । ମୋର ଏ ବୃଦ୍ଧାବସ୍ଥା ଦେଖି ସେ କ'ଣ ମୋତେ ନିଜ ସ୍ତ୍ରୀ ବୋଲି ପୂର୍ବଭଳି ସୋହାଗ କରି ପାରିବେ ? ଆମେ ଦୁହେଁ ଖାଲି କାଗଜ କଲମରେ ସ୍ୱାମୀ-ସ୍ତ୍ରୀ ହୋଇ ରହିବୁ ସିନା, କିନ୍ତୁ ପ୍ରକୃତ ସ୍ୱାମୀ-ସ୍ତ୍ରୀ ହୋଇ ରହିବା ସମ୍ଭବ ନୁହେଁ । ମୋ କଥା ତ ଛାଡ଼, ପୁଅ ରାମକୁ ଦେଖିଲେ ସେ କ'ଣ ନିଜ ପୁଅ ବୋଲି ମାନିନେବେ । ବାପଙ୍କୁ ବୟସ ପଚିଶ ଛବିଶ ହୋଇଥିବା ସ୍ଥଳେ ପୁଅ ଷାଠିଏବର୍ଷ ପାଖାପାଖି ବୟସର ହେଲାଣି । ଦୁହିଁଙ୍କ ଭିତରେ କି ବାପ-ପୁଅ ସମ୍ପର୍କ ରହି ପାରିବ ? ବାପ ଓଲଟି ପୁଅ ଭଳି ଦିଶୁଛି । ସେଭଳି ପୁଅ ଏଭଳି ବାପକୁ କିଭଳି ଭକ୍ତି ଦେଖାଇପାରିବ ସିଏ ଏକ କଥା ? ଏ କ'ଣ ହେଲା ସତେ ? ସ୍ୱାମୀଙ୍କୁ ସିନା ସେ ଫେରି ପାଇଲେ, ତାଙ୍କ ପରିବାରର ସବୁକିଛି ଯେ ଓଲଟପାଲଟ ହୋଇଗଲା ।

ତେଣେ ନିଜ ସ୍ତ୍ରୀ ଗୀତାଦେବୀ ଓ ପରିବାରର ଅନ୍ୟ ସମସ୍ତଙ୍କୁ ଦେଖି ମିଷ୍ଟର ଅଗ୍ରୱାଲ ଅତ୍ୟଧିକ ବିବ୍ରତ । ମନେ ମନେ ଭାବୁଥାନ୍ତି, ଏ କ'ଣ ହେଲା ସତେ ? ତାଙ୍କ ପ୍ରିୟ ଗୀତାର ଏ କି ଅବସ୍ଥା ? ସେ ନିଜେ ଯୁବକତ୍ୱର ପ୍ରଥମ ପାଦ ଡେଇଁ ନ ଥିଲେହେଁ ନିଜ ବିବାହିତା ପତ୍ନୀ ବାର୍ଦ୍ଧକ୍ୟର ଶେଷ ପର୍ଯ୍ୟାୟରେ କ'ଣ ଗୋଡ଼ ଦେଲେଣି ? ନିଜ ପୁଅ ରାମକିଷନ ପୁଅ ଭଳି ନ ଦିଶି ଓଲଟି ସେ ତା'ର ପୁଅ ଭଳି ଦିଶୁଛନ୍ତି ? ନିଜ ନାତି ଶାମ ସମବୟସ । ଏମାନଙ୍କୁ ନେଇ ସେ କି ଘର ସଂସାର କରିବେ । ସେ ତ ମରି ଯାଇଥିଲେ, ଯାଇଥିଲେ, ତାଙ୍କୁ ପୁଣି ବଞ୍ଚାଗଲା କ'ଣ ପାଇଁ ? ସେ ତ ମରି ଯାଇଥିଲେ, ଆଉ ଫେରିବା କ'ଣ ଦରକାର ଥିଲା ? ଫେରି କ'ଣ ଲାଭ ହେଲା ? ନିଜ ସ୍ତ୍ରୀ ଜୀବିତ ଥାଉ ଥାଉ ତାଙ୍କୁ ହରାଇବାକୁ ପଡୁଚି । ସେ ଆଉ କେଉଁ ସୁଖରେ ଘର ସଂସାର କରିବେ ?

× × × × ×

ଯେଉଁଦିନ ମିଷ୍ଟର ଅଗ୍ରୱାଲ ପୂରାପୂରି ସୁସ୍ଥ ହୋଇ ନିଜ ସ୍ତ୍ରୀ, ପୁତ୍ର, ନାତି ପୁତ୍ରବଧୂ ସହିତ ନିଉୟର୍କସ୍ଥିତ ନିଜ ବାସଭବନରେ ଆସି ପହଞ୍ଚିଲେ, ନିଉୟର୍କ ନଗରୀରେ ନିଜର ଏତେ ବଡ଼ ବାସଭବନ ଦେଖି ଚକିତ ହେଲେ । ନିଉୟର୍କ ନଗରୀରେ ନିଜ ଘରର ସାଜସଜ୍ଜା, ଚାକର, ଚାକରାଣୀ, ପୋଇଲୀ ପରିବାରୀ ଦେଖି ସେ ତାଟଙ୍ଗା । ଅତି ଧନୀ ନ ହେଲେ ନିଉୟର୍କ ନଗରୀରେ କୌଣସି ଲୋକ ଏତେ ଜାକଜମକ ଓ ଆଭିଜାତ୍ୟ ସହ ଚଳି ପାରିବନି । ସେ ଭାବିଲେ ସମ୍ଭବତଃ ତାଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ଭାରତରେ ଥିବା ସମସ୍ତ ସମ୍ପତ୍ତିବାଡ଼ି, କଳକାରଖାନା ବିକି ଦେଇ ଏଠି ମୋତେ ଭଲ କରିବା ଆଶାରେ ପଡ଼ି ରହିଛନ୍ତି । ପୁଅ ଆମେରିକାରେ କିଛି ଗୋଟାଏ ବ୍ୟବସାୟ କରି ପରିବାରକୁ ଚଳାଉଛି । ଘରେ ପହଞ୍ଚିଲା ପରେ ସେ ଗୀତାଦେବୀଙ୍କୁ ଏକାନ୍ତକୁ ଡାକି ନେଇ ପଚାରିଲେ, "ଏ କ'ଣ ଗୀତା, ଏହାକୁ କ'ଣ ତୁମେ ନିଜର ଘର ବୋଲି କହୁଛ ? ମୋର ତ ନିଉୟର୍କରେ ଘର ନ ଥିଲା । ଏ ଘର ତୁମର ଆସିଲା କେଉଁଠୁ ? ଭାରତରେ ମୋର ଥିବା ସବୁ କଳକାରଖାନା, ସମ୍ପତ୍ତିବାଡ଼ି ବିକ୍ରୟ କରି ଦେଇ ଏଠାରେ ଆସି ଘର କରି ରହିଛ ନା କ'ଣ ?"

ହସିଲେ ଗୀତାଦେବୀ । ମୁଖରେ ତାଙ୍କର କୃତ୍ରିମ ଦନ୍ତପନ୍ତିରେ ଈଷତ୍ ହାସ୍ୟରେଖା ଖେଳାଇ କହିଲେ, "ଭାରତରେ ତୁମର ଯେଉଁ କଳକାରଖାନା, ସମ୍ପତ୍ତିବାଡ଼ି ଥିଲା ସେସବୁ ଠିକ୍ ସେମିତି ଅଛି । ଭାରତରେ ତୁମ କଳକାରଖାନା ସଂଖ୍ୟା ବଢ଼ିଛି ସିନା କମିନି । ସେସବୁ ବଢ଼ିବା ବ୍ୟତୀତ ତୁମର ସମସ୍ତ ସମ୍ପତ୍ତିବାଡ଼ି ବଢ଼ି ବଢ଼ି ପଞ୍ଚାବନ ବର୍ଷ ଭିତରେ ଯୁକ୍ତରାଷ୍ଟ୍ର ଆମେରିକା ପର୍ଯ୍ୟନ୍ତ ମାଡ଼ି ଆସିଲାଣି । ତୁମ କାରଖାନାର ବହୁ ଜିନିଷ ଆମେରିକାରେ ଖୁବ୍ ଲୋକପ୍ରିୟ । ସେଥିପାଇଁ ତୁମ୍ଭ ବ୍ୟବସାୟ ଅନୁଷ୍ଠାନର ଏକ ବଡ଼ ଅଫିସ୍ ଏଠି ଅଛି । ତା'ଛଡ଼ା ଆମ ପରିବାର ପାଇଁ ଏହି ପ୍ରାସାଦଟି ଏଇ କେତେବର୍ଷ ତଳେ ତିଆରି କରାଯାଇଛି ।"

"ଏହିସବୁ ପ୍ରସାର ମୂଳରେ କିଏ ତୁମେ ? ମୋ ମୃତ୍ୟୁ ପରେ ତୁମେ ଏହିସବୁ ପ୍ରସାର କରିଛ ନା କ'ଣ ?"

"ନା, ନା, ସେ ଦକ୍ଷତା ମୋର ନାହିଁ । ତୁମ ଲାକ୍ଷଣିକ ମୃତ୍ୟୁ ପରେ ମୁଁ ଯେତେଦିନ ତୁମ ଶିଳ୍ପ ପରିଚାଳନାରେ ଥିଲି, ସେମିତି କିଛି ବଢ଼ାଇ ପାରି ନ ଥିଲି । ପୁଅ ବଡ଼ ହେଲାପରେ, ତା' ହାତରେ ସମସ୍ତ କାର୍ଯ୍ୟଭାର ଦେଇ ମୁଁ ଆମେରିକାରେ ଆସି ରହିଲି, ତୁମେ କେମିତି ଭଲ ହେବ, ତାହାରି ପ୍ରତୀକ୍ଷାରେ । ପୁଅର ପଇଁତିରିଶ ବର୍ଷ ପରିଚାଳନାରେ ଏସବୁ ବୃଦ୍ଧି ପାଇଛି ।"

"ତା'ହେଲେ ମୋ ଶିଳ୍ପନୀତି ଆଉ ଚାଲୁ ନାହିଁ ତୁମ କଳକାରଖାନାମାନଙ୍କରେ ବୋଧେ ? ତାହା ହୋଇଥିଲେ ଏହି କେତେବର୍ଷ ଭିତରେ ତୁମ ଶିଳ୍ପ ଅଭିବୃଦ୍ଧି କଦାପି ଏତେ ହୋଇପାରି ନ ଥାନ୍ତା ଗୀତା ।" ଏତକ କହିଲାବେଳେ ଦେବବାବୁ ବିଶେଷ ଦୁଃଖିତ ହେଲା ଭଳି ଜଣା ପଡୁଥାନ୍ତି ।

"ମୁଁ ପୁଅକୁ ସବୁବେଳେ ତୁମ ଶିଳ୍ପନୀତି ଅନୁସରଣ କରିବାକୁ କହି ଆସିଥିଲି ।"

"କିନ୍ତୁ ପୁଅ ଅନୁସରଣ କରୁଥିଲା କି କଅଣ ଦେଖିଥିଲ କି ?"

"ହଁ, ହଁ, ନା, ନା, କହି ରହିଗଲେ ଗୀତାଦେବୀ ।"

"ପୁଅକୁ ଶିଳ୍ପ ପରିଚାଳନା ସମ୍ବନ୍ଧରେ ତୁମେ ତାଲିମ ଦେଇଥିଲ ତ ?"

"ନା, ନା, ସେ ମୋ ବାପା, ଭାଇଙ୍କଠାରୁ ତାଲିମ ପାଇଥିଲା । ମାମୁଁ, ଅଜାଙ୍କ ଶିଳ୍ପନୀତି ତାକୁ ଅଧିକ ଭଲ ଲାଗୁଥିଲା ।"

"ତୁମେ ତାକୁ ପଛଆଡ଼େ ରହି ଉତ୍ସାହ ଦେଉଥିଲ । ଏଇଆ ନା ଆଉ କିଛି ? ପିଲାଟାକୁ ତୁମେ ନଷ୍ଟ କରିଦେଲ ଗୀତା । ମୋ ଶିଳ୍ପ ସାମ୍ରାଜ୍ୟକୁ ମଧ ଧ୍ୱଂସ କରି ଦେଲ । ମୋତେ କ'ଣ ବଞ୍ଚାଇଲ ଏହି ଧ୍ୱଂସସବୁ ଦେଖିବା ପାଇଁ ।"

"ତୁମେ ଯେଉଁ ପୁଅକୁ ପିଲା ବୋଲି କହି ହେୟଜ୍ଞାନ କରୁଛ, ସେ ବର୍ତ୍ତମାନ ପରିଣତ ବୟସର । ତା'ର ଶିଳ୍ପ ପରିଚାଳନା ଅଭିଜ୍ଞତା ତୁମଠାରୁ ଢେର୍ ବେଶି । ଭାରତର ବଡ଼ ବଡ଼ ଶିଳ୍ପପତିମାନଙ୍କ ଭିତରୁ ସେ ଜଣେ ଓ ଏକ ସୁଦକ୍ଷ ଶିଳ୍ପପତି ଭାବରେ ସାରା ଦେଶରେ ଖ୍ୟାତି ଅର୍ଜନ କରିଛି ।"

"ମୁଁ ପୁଅର ଦକ୍ଷତାକୁ ହେୟଜ୍ଞାନ କରୁନି ଗୀତା । ମୁଁ ଖୁବ୍ ତାରିଫ୍ କରୁଛି, ସେ ମୋ ଶିଳ୍ପ କାରଖାନାର ଏହି ଅଭୂତପୂର୍ବ ପ୍ରସାର କରିଛି ବୋଲି । କିନ୍ତୁ ତୁମର ଯେଉଁମାନେ ଏହି ଶିଳ୍ପ ଉତ୍ପାଦନ କରନ୍ତି, ଯେଉଁ ଶିଳ୍ପଜାତ ଦ୍ରବ୍ୟକୁ ବିକ୍ରୟ କରି ତୁମେ ଆଜି ଏତେ ଧନୀ ହୋଇଛ, ସେମାନଙ୍କର ଅବସ୍ଥାର ଉନ୍ନତି ପାଇଁ ତୁମେ କି ତୁମ ପୁଅ କେବେ ଧ୍ୟାନ ଦେଇଛ କି ? ତୁମ୍ଭେମାନେ ଧ୍ୟାନ ଦେଇଥିଲେ, ଆଜି ଅବସ୍ଥା ଏମିତି ହୋଇ ନ ଥାନ୍ତା । ଶ୍ରମିକମାନଙ୍କୁ ଯେଉଁ ଅନୁପାତରେ ଠକିଛ, ସରକାରଙ୍କୁ ସେହି ଅନୁପାତରେ ଠକିଛ । ଏହି ଉଭୟଙ୍କୁ ନ ଠକିଲେ ତୁମ ବ୍ୟବସାୟର ଏତାଦୃଶ ପ୍ରସାର କେବେ ହୋଇପାରି ନ ଥାନ୍ତା ଗୀତା ।"

"ତୁମେ ଏହିସବୁ ପ୍ରସାର ଦେଖି ଶ୍ରମିକମାନଙ୍କ ଅବସ୍ଥା ଯେତେ ଖରାପ ହୋଇଛି ବୋଲି କଳ୍ପନା କରିଯାଉଛ, ତା' ଠିକ୍ ନୁହେଁ । ପୁଅ ତୁମ ନୀତିକୁ

ଯେ ପୂରାପୂରି ତ୍ୟାଗ କରିଛି, ତା' ନୁହେଁ । ତୁମ ନୀତି ଓ ଏଣେ ଅନ୍ୟ ଶିଳ୍ପପତିଙ୍କ ନୀତିକୁ ମିଶ୍ରଣ କରି ସେ ତା'ର ଗୋଟିଏ ନୂଆ ନୀତି ବାହାର କରିଛି । ଯାହାଯୋଗୁ ତୁମେ ଦେଖୁଥିବା ଏହିସବୁ ପ୍ରସାର ସମ୍ଭବ ହୋଇଛି । ଅନ୍ୟ ଶିଳ୍ପପତିମାନଙ୍କ ଭଳି ପୁଅ ଶ୍ରମିକମାନଙ୍କୁ ଶୋଷଣ କରିନି । ସେମାନଙ୍କ ବିକାଶ ପାଇଁ ଅର୍ଥବ୍ୟୟ କରିଛି, ହୁଏତ ତୁମ ବ୍ୟୟ ଭଳି ନୁହେଁ ।''

''ହେଉ, ହେଲା । ଆଉ କେତେଦିନ ଆମେ ଆମେରିକାରେ ରହବା ଶୁଣେ ? ଆମ ଦେଶକୁ ଫେରିଯିବା କେବେ ?''

''ନା, ନା, ଆଉ ଡେରି ନାହିଁ । ତୁମେ ତ ପୂରାପୂରି ସୁସ୍ଥ ହୋଇଗଲଣି । ମୁଁ ଆଜି ଡାକ୍ତର ଟମ୍ପସନ୍‌ଙ୍କ ସହିତ ଆମ ଆମେରିକା ଛାଡ଼ିବା କଥା ଆଲୋଚନା କରେ । ତାଙ୍କ ଅନୁମତି ମିଳିଲାକ୍ଷଣି ଆମେ ଭାରତ ଅଭିମୁଖେ ରମାନା ହୋଇଯିବା ।

## ଏଗାର

ଯେଉଁଦିନ ମିଷ୍ଟର ଅଗ୍ରୱାଲ ନିଜ ସ୍ତ୍ରୀ, ପୁଅ, ବୋହୂ, ନାତି ଆଦିଙ୍କୁ ଧରି ନିଜ ଶିଳ୍ପନଗରୀରେ ପହଞ୍ଚିଲେ, ସେଦିନ ଶିଳ୍ପନଗରୀରେ ଯେଉଁ ଆନନ୍ଦ ଉତ୍ସବ ତାହା କହିଲେ ନ ସରେ । ସମସ୍ତେ ନିଜ ସଂସ୍ଥାର ବଡ଼ ମାଲିକଙ୍କୁ ଦେଖିବାପାଇଁ ଧାଇଁ ଆସିଥାନ୍ତି । ଏହି ବଡ଼ ମାଲିକ ପଞ୍ଚାବନବର୍ଷ ତଳେ ରୋଗାକ୍ରାନ୍ତ ହୋଇ ଆମେରିକା ଯାଇଥିଲେ ଚିକିତ୍ସା ପାଇଁ । ଆଜି ସେ ଭଲ ହୋଇ ଫେରୁ ଥିବାରୁ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଶିଳ୍ପନଗରୀର ଆବାଳବୃଦ୍ଧବନିତା ପାଗଳ । ସେମାନେ ବଡ଼ ମାଲିକଙ୍କୁ କେବେ ଦେଖି ନାହାନ୍ତି, କିନ୍ତୁ ଲୋକମୁଖରୁ ଶୁଣିଛନ୍ତି, ତାଙ୍କ ଉଦାରତା । ସେ ଥିଲାବେଳେ ଶିଳ୍ପନଗରୀରେ ଚାଲୁଥିଲା ସୁବର୍ଣ୍ଣଯୁଗ, ଶ୍ରମିକମାନେ ବେଶ୍ ହସଖୁସି ଭିତରେ ଭଲ ଅବସ୍ଥାରେ ଥିଲେ । କଳକାରଖାନାମାନଙ୍କରେ ଶ୍ରମିକମାନଙ୍କର କର୍ତ୍ତୃତ୍ୱ ଥିଲା, ଯାହା ସାରା ଦେଶର ଅନ୍ୟ କୌଣସି କଳକାରଖାନାରେ ଦେଖା ଯାଏନି । ସେମାନଙ୍କ ସାନ ମାଲିକ ଅନ୍ୟ ଶିଳ୍ପପତିମାନଙ୍କ ତୁଳନାରେ ଢେର୍ ଉଦାର, ତାଙ୍କଠାରୁ ଆହୁରି ଢେର୍ ଉଦାର ହେଉଛନ୍ତି ବଡ଼ ମାଲିକ । କିନ୍ତୁ ବଡ଼ ମାଲିକ ଓ ସାନ ମାଲିକଙ୍କୁ ଦେଖି ଲୋକେ ତାଟଙ୍ଗା । ବାପ ପୁଅକୁ ଦେଖିଲେ ଲୋକେ ଯାହା ଧାରଣା କରନ୍ତି, ଏ ଠିକ୍ ତା'ର ଓଲଟା । ଯିଏ ଦେଖିବ, ସେ ବାପକୁ କହିବ ପୁଅ, ପୁଅକୁ କହିବ ବାପ । ଏମିତି ଓଲଟପାଲଟ ହୋଇଗଲା କେମିତି ? ବାପ ପୁଅଙ୍କୁ ଦେଖିସାରି ସମସ୍ତଙ୍କ ମୁହଁରେ ଗୋଟିଏ ପ୍ରଶ୍ନ, ରାମକିଷନ୍ ବାବୁ ତ

ଆସି ବୁଢ଼ା ହେଲେଣି, ତାଙ୍କ ବାପା ଆହୁରି ବୁଢ଼ା ହେବା କଥା, ତା ନ ହୋଇ ସେ କ'ଣ ଏତେ କମ୍ ବୟସର ଟୋକାଟାଏ ଭଳି ଦିଶୁଛନ୍ତି ।

ମିଷ୍ଟର ଅଗ୍ରୱାଲ ଚାରିଆଡ଼କୁ ଅନାଉଥାନ୍ତି । ଜଣେସୁଦ୍ଧା ଚିହ୍ନିଥିବା ଲୋକ ଦେଖିବାକୁ ପାଉ ନ ଥାନ୍ତି । ଇଞ୍ଜିନିଅର, ଅଫିସରମାନଙ୍କଠାରୁ ଫୋରମେନ୍, ଶ୍ରମିକ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ନୂଆ ଦିଶୁଥାନ୍ତି । ପଞ୍ଚାବନ ବର୍ଷ ତଳେ ସେ ଯେଉଁ ସଂସ୍ଥା ଛାଡ଼ି ଚାଲି ଯାଇଥିଲେ, ସେହି ସଂସ୍ଥାର ଲୋକେ କ'ଣ ଏତେକାଳ ବଞ୍ଚିଥାନ୍ତେ ? ଯେଉଁମାନେ ଅବା ବଞ୍ଚିଥିବେ, ସେମାନେ କାରଖାନାରୁ ଅବସର ନେବାପରେ ନିଜ ନିଜ ଗାଁକୁ ଚାଲି ଯାଇଥିବେ । ତେଣୁ ସେମାନଙ୍କୁ ସେ ଭେଟିବେ କେମିତି ?

ଏଣେ ତାଙ୍କ ଶିଳ୍ପନଗରୀର ରୂପ ପୂରାପୂରି ବଦଳି ଯାଇଛି । ଏହି ପଞ୍ଚାବନ ବର୍ଷ ଭିତରେ ଏହା ଏତେ ବଦଳିଯାଇଛି ଯେ ତାଙ୍କ ପ୍ରତିଷ୍ଠିତ କାରଖାନା କେଉଁଠି ଚିହ୍ନିବା କଷ୍ଟକର । ସେ ନିଜ ଶିଳ୍ପନଗରୀର ରାସ୍ତାଘାଟ ମଧ୍ୟ ଚିହ୍ନିପାରୁ ନ ଥାନ୍ତି ।

ତେବେ କାରଖାନାର ବଡ଼ ମାଲିକ କେମିତି ଥିଲେ, ତାଙ୍କ ସମୟରେ ଶିଳ୍ପନୀତି କେତେ ଉଦାର ଥିଲା, ତହିଁର ବର୍ଣ୍ଣନା ଯେଉଁମାନେ ସେମାନଙ୍କ ବାପ ଦାଦାଙ୍କଠାରୁ ଶୁଣିଥିବେ, ସେମାନେ ଜାଣୁଛନ୍ତି ଯେ ଆଜି ସେହି ବଡ଼ ମାଲିକ ଆସିଛନ୍ତି, ଯାହାଙ୍କୁ ସେମାନେ ନ ଦେଖି ତାଙ୍କ କୃତି ଖାଲି ଶୁଣି ଶୁଣି ଆସୁଥିଲେ । କାରଖାନାର ପୁରୁଣା ପୁରୁଣା କର୍ମଚାରୀଙ୍କ ଖେଦୋକ୍ତି ବଡ଼ ମାଲିକ ଥିଲେ କ'ଣ ଏଇଆ ହୋଇଥାନ୍ତା । ଯୁବ ଶ୍ରମିକମାନଙ୍କୁ ମନେ ପକାଇ ଦେଉଛି ଏହି ବଡ଼ ମାଲିକ କିଏ ? ବଡ଼ ମାଲିକ ଯେ ଦୟାର ଏକ ଅବତାର ଶ୍ରମିକର ଏକ ବଡ଼ ସାହା, ଅନ୍ୟାୟ ଅତ୍ୟାଚାରର ଏକ ଶତ୍ରୁ, ଆଜି ତାଙ୍କୁ ସ୍ୱଚକ୍ଷୁରେ ଦେଖି କୃତକୃତ୍ୟ ହେଲେ । ଅନେକେ ବଡ଼ ମାଲିକଙ୍କ ସମ୍ପର୍କରେ ଯାହା ଶୁଣିଥିଲେ, ସେ ଯଦି ବର୍ତ୍ତମାନ ଶିଳ୍ପ ପରିଚାଳନା ହାତକୁ ନେବେ ତେବେ ଶିଳ୍ପନଗରୀରେ ପୁଣି ରାମରାଜ୍ୟ ଫେରି ଆସିବ ।

ଯେଉଁଦିନ ମା ଓ ପୁଅକୁ ଧରି ରାମକିଷନ୍‌ବାବୁ ବାପାଙ୍କ ପାଖକୁ ଆସିଲେ, ବାପା ନିଜ ପୁଅକୁ ଘର ଭିତରକୁ ପାଛୋଟି ନେଲେ ପୁଅ ଯେମିତି ବାପକୁ ପାଛୋଟି ନିଏ, ଠିକ୍ ସେହିଭଳି । ରାମକିଷନ୍‌ବାବୁଙ୍କର ବାପାଙ୍କୁ ଏକାନ୍ତ ଅନୁରୋଧ, ସେ ବର୍ତ୍ତମାନ ଶିଳ୍ପ ପରିଚାଳନା ହାତକୁ ନିଅନ୍ତୁ । ଅଧିକ ବୟସ ହୋଇ ଯାଇଥିବାରୁ ଓ ନିଜ ସ୍ୱାସ୍ଥ୍ୟ ସର୍ବଦା ଭଲ ରହୁ ନ ଥିବାରୁ ସେ ଆଉ ପରିଚାଳନା ଦାୟିତ୍ୱରେ ରହିବାକୁ ଚାହୁ ନାହାନ୍ତି । ସଂସ୍ଥାର ମାଲିକ ଯେତେବେଳେ ଆସି ଯାଇଛନ୍ତି,

ସେ ନିଜେ ପରିଚାଳନା ଦାୟିତ୍ୱ ନିଜ ହାତକୁ ନିଅନ୍ତୁ ଓ ତାଙ୍କୁ ଏଥିରୁ ଛୁଟି ମିଳୁ । ଗୀତାଦେବୀ ମଧ୍ୟ ପୁଅ ପକ୍ଷ ନେଇ ସ୍ୱାମୀଙ୍କୁ ବହୁତ ବୁଝାଇଲେ । ଯଦି ସେ ଚାହାନ୍ତି, ତେବେ ନାତି ଶାମକିଷନଙ୍କର ସାହାଯ୍ୟ ସେ ନେଇ ପାରନ୍ତି । ସେ ଜଣେ ଇଞ୍ଜିନିଅର, ପୁଣି ଶିଳ୍ପ ପରିଚାଳନାରେ ଉଚ୍ଚ ଡିଗ୍ରୀପ୍ରାପ୍ତ । ସେ ତାଙ୍କ ପାଖେ ପାଖେ ରହି ସବୁ ପ୍ରକାର ସାହାଯ୍ୟ କରି ପାରିବ । ରାମକୁ ଛୁଟି ମିଳିଲେ ସେ ତା ସ୍ତ୍ରୀକୁ ନେଇ ତୀର୍ଥ ଭ୍ରମଣରେ ଯିବାକୁ ଇଚ୍ଛୁକ ।

ସ୍ୱାମୀ ପୁନଃଜୀବନ ପାଇ ଫେରି ଆସିଲାପରେ ଗୀତାଦେବୀ ଯେଉଁ ପାରିବାରିକ ଶାନ୍ତି କି ଆନନ୍ଦ ପାଇବାକୁ ଆଶା କରିଥିଲେ, ସେହି ଆଶା ଦୁରାଶାରେ ପରିଣତ ହେବା ହିଁ ସାର ହେଲା । ଶାନ୍ତି ପାଇବା ପରିବର୍ତ୍ତରେ ସେ ଅଶାନ୍ତିର ତୀବ୍ର ଜ୍ୱାଳାରେ ଦଗ୍ଧ ହେବାକୁ ଲାଗିଲେ । ସ୍ୱାମୀ ବୋଲି ଯାହାଙ୍କୁ ସେ ଫେରି ପାଇଲେ, ତାଙ୍କ ସହ ସ୍ୱାମୀ-ସ୍ତ୍ରୀ ସମ୍ପର୍କ ତ ଛାଡ଼, ଦି'ପଦ ହସଖୁସି କଥାବାର୍ତ୍ତା କରି ହେଉ ନ ଥାଏ, ସ୍ୱାମୀ-ସ୍ତ୍ରୀ ଭାବରେ ଗୋଟିଏ କୋଠରିରେ ଶୋଇବାକୁ ମଧ୍ୟ ସଂକୋଚ ଲାଗୁଥାଏ । ନ ଲାଗିବ ବା କେମିତି ? ନିଜ ବୟସ ଅଶୀବର୍ଷକୁ ଟପିଲା ବେଳକୁ ନିଜ ସ୍ୱାମୀଙ୍କ ବୟସ ପଚିଶ ଛବିଶ ବି ଟପିନି ।

ଦେବବାବୁ ମଧ୍ୟ ସ୍ତ୍ରୀଙ୍କୁ ଏତେ ପରିଣତ ବୟସର ଦେଖି ହସଖୁସିରେ କଥାବାର୍ତ୍ତା କରିବାକୁ ସଂକୋଚ ବୋଧ କରୁଥାନ୍ତି । ଏକା ଘରେ ଶୋଉଥିଲେ ମଧ୍ୟ କେହି କାହାରିକୁ ମନ ଖୋଲି ଦୁଇ ଚାରିପଦ କଥାବାର୍ତ୍ତା ହୋଇପାରୁ ନ ଥାନ୍ତି । ଗୀତାଦେବୀ ଏହି ଅଶାନ୍ତିରେ ଧୀରେ ଧୀରେ ଦଗ୍ଧ ହେବାକୁ ଲାଗିଲେ । ଏଣେ ବାର୍ଦ୍ଧକ୍ୟ, ତେଣେ ମାନସିକ ଅଶାନ୍ତି, ଗୀତାଦେବୀଙ୍କୁ ବେଶିଦିନ ବଞ୍ଚିବାକୁ ଦେଲାନି । ଯାହା ବା ବଞ୍ଚି ଥାଆନ୍ତେ, ଥରେ ଦୁଇଥର ସ୍ୱାମୀଙ୍କ ସହ ଶ୍ରମିକ କଲୋନିକୁ ଯାଇ ଶ୍ରମିକମାନଙ୍କ ଦୁରବସ୍ଥା ଦେଖି ମନରେ ବଡ଼ ଆଘାତ ପାଇଲେ । ସେ ଯେଉଁ ଉନ୍ନୟନ କାର୍ଯ୍ୟସବୁ କରିଥିଲେ, ସେସବୁର ଦୁରବସ୍ଥା ଦେଖି ସେ ମର୍ମାହତ ହେଲେ । ଏଣେ ସ୍ୱାମୀ ତାଙ୍କୁ ଏହିସବୁ ଦୁରବସ୍ଥା ପାଇଁ ଦାୟୀ କରି ଯେଉଁ କଟୁ ଉକ୍ତିମାନ କଲେ, ତାହା ତାଙ୍କୁ ଅତ୍ୟଧିକ ବାଧିଲା । ସେହି କଟୁଉକ୍ତି ତାଙ୍କୁ ଅଧିକ ଦିନ ବଞ୍ଚିବାକୁ ଦେଲାନି । ସ୍ୱାମୀ ଶିଳ୍ପ ପରିଚାଳନା ଦାୟିତ୍ୱ ହାତକୁ ନେବାର ଅଳ୍ପ କେଇଦିନ ଭିତରେ ଜାଣିପାରିଲେ ବ୍ୟବସାୟରେ ହେଉଥିବା ବ୍ୟଭିଚାର, ସରକାର ତଥା ଶ୍ରମିକଙ୍କୁ ଠକି ଅଧିକ ଲାଭାଂଶ ମାରିଦେବାର ହୀନପ୍ରବୃତ୍ତି, ଯାହାପାଇଁ କି ସେ ଏତେ ବ୍ୟଥିତ ହେଲେ ଯେ ତାହା ଭାଷାରେ ବର୍ଣ୍ଣନା କରି ହେବନି । ସ୍ୱାମୀ ପ୍ରତିଦିନ ଅଫିସ୍‌ରୁ ଫେରିଲେ ବ୍ୟବସାୟରେ ହେଉଥିବା ଜାଲ୍, ଜୁଆଚୋରି ଆଦି ନେଇ ବହୁ ଭର୍ତ୍ସନା ସ୍ତ୍ରୀଙ୍କୁ କରନ୍ତି ।

ଯେଉଁଦିନ ସେ ନିଜ ଭୂମିତଳ କକ୍ଷର ଇସ୍ପାତ ଆଲମାରିମାନ ଖୋଲି କୋଟି କୋଟି ଟଙ୍କାର କଳାଧନ ସୁନାଇଟା ଆକାରରେ ଗଚ୍ଛିତ ଥିବାର ଦେଖିଲେ ସେ ମର୍ମାହତ ହୋଇ ତଳେ ପଡ଼ି ଯାଉଥିଲେ, ପଛରେ ଗୀତାଦେବୀ ଥିବାରୁ ତାଙ୍କୁ ସମ୍ଭାଳି ନେଲେ । "ଏ କ'ଣ ସବୁ ଗୀତା, ଶେଷରେ ମୋତେ ଏହା ହିଁ ଦେଖିବାକୁ ଥିଲା" କହି ସ୍ତ୍ରୀଙ୍କୁ କାନ୍ଦ କାନ୍ଦ ମୁହଁରେ କୁଣ୍ଢାଇ ପକାଇଲେ । ଗୀତାଦେବୀ ମଧ୍ୟ ଏତେ ପରିମାଣର କଳାଧନ ଦେଖି ଲଜ୍ଜାରେ ସ୍ୱାମୀଙ୍କ ମୁହଁକୁ ଅନାଇ ପାରିଲେନି । ତାଙ୍କ ମୁହଁ ତଳକୁ ହୋଇଗଲା । ସେହି ପ୍ରକୋଷ୍ଠରୁ ବାହାରି ଆସୁ ଆସୁ ମିଷ୍ଟର ଅଗ୍ରୱାଲ କହିଲେ, "ଏହାପାଇଁ ମୁଁ କି ପ୍ରାୟଶ୍ଚିତ କରିବି ଭାବିପାରୁନି ଗୀତା ? ଏହି ପାପଧନ ଯେ ଦିନେ ଆମ ପରିବାରକୁ ଧ୍ୱଂସ କରିଦେବ, ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ । ଏହି କଳାଧନ ପଛରେ ଲକ୍ଷ ଲକ୍ଷ ଶ୍ରମିକଙ୍କ ଯେଉଁ ଅସୁମାରି ରକ୍ତ ରହିଛି, ସେହି ରକ୍ତ ଦିନେ ଧ୍ୱଂସ କରିଦେବ ଆମର ଏହି ଅନ୍ୟାୟ ଅର୍ଜିତ ଶିଳ୍ପ ସାମ୍ରାଜ୍ୟକୁ । ଏହି ପାପର ପ୍ରାୟଶ୍ଚିତ ସହଜରେ ହୋଇ ପାରିବନି ଗୀତା ।"

ଏତେ ଲୁକ୍କାୟିତ କଳାଧନକୁ ଦେଖି ଗୀତାଦେବୀ ମଧ୍ୟ ନିଜେ ଲଜ୍ଜିତ ହୋଇ ପଡ଼ିଲେ । ମନେ ପଡ଼ିଲା ତାଙ୍କର ଷାଠିଏବର୍ଷ ତଳର ଏକ ଘଟନା, ଯେଉଁ ଦିନ ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଦୁଇଲକ୍ଷ ଟଙ୍କା କେଶ୍ ଆକାରରେ ଚାନ୍ଦା ଦେବା ପାଇଁ ନିଜର ସବୁ ଟ୍ରେଜେରି ଝଡ଼ାଝଡ଼ି କରି ମଧ୍ୟ ପାଇପାରି ନ ଥିଲେ । ଆଜି ସେହି ଟ୍ରେଜେରିରେ କୋଟି କୋଟି ଟଙ୍କାର କେଶ୍ ବ୍ୟତୀତ ଶହ ଶହ ମହଣ ସୁନାଇଟା ଗଚ୍ଛିତ ଅଛି । ସରକାରଙ୍କୁ ଠକି ଶ୍ରମିକଙ୍କୁ ଶୋଷଣ ନ କଲେ ଏତେ କଳାଧନ ଗଚ୍ଛିତ ହୋଇ ପାରିବନି ବୋଲି ତାଙ୍କର ଧାରଣା । ପୁଅର ଏହି ପଇଁତିରିଶ ବର୍ଷ ବ୍ୟବସାୟରେ ଯଦି ଏତେ କଳାଧନ ଗଚ୍ଛିତ ହୋଇପାରିଲା, ଏ ଦେଶର ସରକାର ତଥା ଶ୍ରମିକମାନେ ଭକୁଆ ହୋଇ ଅନାଇବା ଛଡ଼ା ଅନ୍ୟ ଉପାୟ ନାହିଁ । ପୁଅର ଶିଳ୍ପ ପ୍ରସାର ଦେଖି ସେ ମନେ ମନେ ଯାହା ସନ୍ଦେହ କରୁଥିଲେ, ଶେଷରେ ତାହା ହିଁ ସତ୍ୟ ହେବା ଦେଖି ମନରେ ସେ ଯେଉଁ ମର୍ମନ୍ତୁଦ ବେଦନା ପାଇଲେ, ତାହା ଭାଷାରେ ବର୍ଣ୍ଣନା କରି ହେବନି । ସ୍ୱାମୀ ଯେଉଁ ଦୋଷ ଦେଉଛନ୍ତି, ଏସବୁ ପାଇଁ ସେ ପ୍ରକାରାନ୍ତରେ ଦାୟୀ, ଏହା ଅସତ୍ୟ ହେବ କାହିଁକି ?

ଏହିସବୁ ଅପକର୍ମ ପାଇଁ ପୁଅକୁ ସେ କ'ଣ ବା କହିବେ, ଭାବିପାରୁ ନ ଥାନ୍ତି । ପୁଅକୁ ପଚାରିଲେ ସେ କହିବ, "ଏଇଆ ତ ସବୁ ଶିଳ୍ପପତି କରୁଛନ୍ତି । ମୁଁ ତ କିଛି ଅଧିକା କରିନି ।" ପୁଅକୁ ଅଯଥା ଦୋଷ ଦେଇ ଲାଭ କଅଣ ?

ତେବେ ଅନ୍ୟ ଶିଳ୍ପପତିମାନଙ୍କଠାରୁ ଆମ ନୀତି ଯେ ଅଲଗା, ପୁଅକୁ ଏହା ଠିକ୍ ଭାବରେ ଯଦି ବୁଝାଯାଇ ପାରିଥାନ୍ତା, ଯାହା ସେ କରିପାରି ନାହାନ୍ତି । ତା କରିଥିଲେ ଅବସ୍ଥା ହୁଏତ ଏତେଦୂରକୁ ଯାଇ ନ ଥାନ୍ତା । ସେ ନିଜେ ବହୁଦିନ ଧରି ଆମେରିକାରେ ନ ରହି ଭାରତରେ ଥିଲେ, ତାଙ୍କ ତଦାରଖରେ ପୁଅ ହୁଏତ ଏତେଦୂରକୁ ଅଗ୍ରସର କରିପାରି ନ ଥାନ୍ତା । ତେଣୁ ଏହିସବୁ ଅପକର୍ମ ପାଇଁ ପ୍ରକାରାନ୍ତରେ ସେ ନିଜେ ଦାୟୀ ବୋଲି ସ୍ୱାମୀ ଯେଉଁ ଦୋଷ ଦେଉଛନ୍ତି, ତାହା ମିଥ୍ୟା ହେବ କାହିଁକି ?

ସେ ସେହିଦିନଠାରୁ ସଦାସର୍ବଦା ଭାବିବାକୁ ଲାଗିଲେ ଯେ ଏହିସବୁ ପାପକର୍ମ, ଅନ୍ୟାୟ, ଜାଲ୍ ଜୁଆଚୋରି ପାଇଁ ପୁଅ ଯେତେ ଦାୟୀ ନୁହେଁ, ସେ ନିଜେ ସେତେ ଦାୟୀ । ଏହି ପାପର ଫଳ ସେ ନିଜେ ଭୋଗିବେ ନାହିଁ ତ ଆଉ କିଏ ଭୋଗିବ ? ତାଙ୍କ ପାଇଁ ନର୍କ ଅପେକ୍ଷା କରି ରହିଛି । ମୃତ୍ୟୁ ପରେ ଯମଦୂତମାନେ ତାଙ୍କୁ ସେହି ନର୍କରେ ପକାଇ ଯେ ଘାଣ୍ଟିବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଦିନରାତି ଏହିଭଳି ଭାବି ଭାବି ବିଷାଦରେ ସେ ନିଜ ଖିଆପିଆ ଛାଡ଼ି ଦେଲେ । ପୁଅ କି ସ୍ୱାମୀଙ୍କ ସହିତ କଥାବାର୍ତ୍ତା କରିବାକୁ ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ । ଗୀତାଦେବୀଙ୍କର ଏସବୁ କି ପରିବର୍ତ୍ତନ ହେଲା ଅନ୍ୟମାନେ ତା'ର କାରଣ ଜାଣିପାରୁ ନ ଥାନ୍ତି । ବାର୍ଦ୍ଧକ୍ୟ ଯୋଗୁଁ ଏସବୁ ହେଉଛି ବୋଲି ଅନ୍ୟମାନେ ଧାରଣା କରି ନେଲେ । କିନ୍ତୁ ସେ ଏହିସବୁ ଅପକର୍ମ ପାଇଁ ଯେ ମନେ ମନେ ଦଗ୍ଧ ହେଉଛନ୍ତି ଏକଥା ଅନ୍ୟମାନେ ଜାଣିବେ ବା କେମିତି ? ସ୍ୱାମୀ କି ପୁଅ କି ପରିବାରର ଅନ୍ୟ କେହି ଏହାକୁ ମଧ୍ୟ ହୃଦୟଙ୍ଗମ କରିପାରୁ ନ ଥାନ୍ତି । ବାର୍ଦ୍ଧକ୍ୟ ତଥା ମାନସିକ ନିର୍ଯ୍ୟାତନାର ଚାପ ଫଳରେ ହଠାତ୍ ଦିନେ କାର୍ଡ଼ିଆକ୍ ଆରେଷ୍ଟ ହୋଇ ଗୀତାଦେବୀଙ୍କର ମୃତ୍ୟୁ ହୋଇଗଲା । ମିଷ୍ଟର ଅଗ୍ରୱାଲ ସ୍ତ୍ରୀଙ୍କ ମୃତ୍ୟୁରେ ଖାଲି ଦୁଃଖିତ ହେଲେନି, ନିଜକୁ ଅତି ଏକାକୀ ଓ ଅସହାୟ ମଣିଲେ । ଗୀତାଦେବୀଙ୍କ ପାଇଁ ସାରା ଶିଳ୍ପନଗରୀରେ ଶୋକର ଛାୟା ଖେଳିଗଲା । ସ୍ତ୍ରୀଙ୍କ ମୃତ୍ୟୁ ପରେ ମିଷ୍ଟର ଅଗ୍ରୱାଲ ବହୁଦିନ ଧରି ମୂକ ହୋଇ ବସି ରହିଲେ । ଭଲ ହୋଇ ଆସିଲାପରେ ସେ କେବଳ ସ୍ତ୍ରୀଙ୍କ ସହିତ ଯାହାକିଛି କଥାବାର୍ତ୍ତା ହେଉଥିଲେ । ତାଙ୍କ ଅନ୍ତେ ଆଉ କାହା ସାଙ୍ଗରେ କଥାବାର୍ତ୍ତା କରିବେ ? କଳକାରଖାନାର ମେନେଜରଠାରୁ ଆରମ୍ଭ କରି ତଳ ଅଫିସର ପର୍ଯ୍ୟନ୍ତ କେହି ତାଙ୍କୁ ସୁଖ ଲାଗୁ ନ ଥାନ୍ତି । ତାଙ୍କୁ ବୋଧ ହେଉଥାଏ ଏମାନେ ଯେମିତି କଳାବଜାରୀ, ମୁନାଫାଖୋରୀ, ଶ୍ରମିକଶୋଷକର ଗୋଟିଏ ଗୋଟିଏ ଦଲାଲ । ସେମାନଙ୍କ ସହିତ ଅଧିକ ସମୟ ଆଲୋଚନାକୁ ସେ ଭଲ ପାଉ ନ ଥିଲେ ।

ମୂଳରୁ ସେମାନେ ପୁଅଦ୍ୱାରା ଗଢ଼ି ହୋଇ ଆସିଛନ୍ତି ଶିଳ୍ପପତିମାନଙ୍କ ଢାଞ୍ଚାରେ, ସେମାନଙ୍କୁ କ'ଣ ସହଜରେ ନିଜ ନୀତିକୁ ବଦଳାଇ ପାରିବେ ?

ଗୀତାଦେବୀଙ୍କ ମୃତ୍ୟୁ ପରେ ପରିଚାଳନା ନେଇ କିଛି ଅସୁବିଧା ଦେଖାଦେଲେ ଦେବବାବୁ ପୁଅ ରାମକିଷନଙ୍କୁ ଡାକି ତା ମତାମତ ନିଅନ୍ତି । ଦେବବାବୁ ବୟସରେ ରାମକିଷନବାବୁଙ୍କଠାରୁ ଅନେକ ସାନ ହେଲେମଧ୍ୟ ବାପାଙ୍କଠାରେ ନିଜ ମତକୁ ଜାହିର କରିବା ପାଇଁ ରାମକିଷନବାବୁ ଚେଷ୍ଟା କରନ୍ତିନି । ବୟସରେ ଢେର୍ ବଡ଼ ହେଲେହେଁ ପିତାଙ୍କୁ ଯେମିତି ସମ୍ମାନ କରିବା କଥା ସେଥିରେ ତିଳେମାତ୍ର କମ୍ କରନ୍ତିନି ସେ ।

× × × × ×

ହଇହେ, ଶୁଣୁଛ ? ତୁମକୁ ଗୋଟିଏ କଥା ଢେର୍‌ଦିନ ହେଲା କହିବି କହିବି ବୋଲି ଭାବୁଥିଲି, କିନ୍ତୁ କହିପାରୁ ନ ଥିଲି । ପୁଅ ଶାମ ତ କାରଖାନା ପରିଚାଳନାରେ ବେଶ୍ ଧୁରନ୍ଧର ହୋଇଗଲାଣି । ବାପାଙ୍କର ଏକ ବଡ଼ ସାହାଯ୍ୟକାରୀ ଭାବରେ କାମ କରୁଛି । ବାପା ତ ଦିନକୁଦିନ ତାକୁ ଅଧିକ କାମର ଦାୟିତ୍ୱରେ ରଖିଲେଣି । ଶାମକୁ ଛାଡ଼ି ସେ ଘଡ଼ିଏକାଳ ଚଳିପାରୁ ନାହାନ୍ତି । ମୁଁ ଭାବୁଛି, ତାକୁ ହାତକୁ ଦି'ହାତ କରିଦେଲେ ଆମର ଏକ ବଡ଼ ଦାୟିତ୍ୱ ଯିବ । ଭଲ ଝିଅଟିଏ ଦେଖି ବିଭା କରିଦେଲେ ତା' ସଂସାର ଠିକ୍ ଭାବରେ ଚାଲିବ ।''

''ଶାମର ବିଭାଘର କଥା ଚିନ୍ତା କରୁଛ, ଠିକ୍ କଥା । ସେଥିସହିତ ବାପାଙ୍କ ବିଭାଘର କଥା ଚିନ୍ତା କରୁଛ ନା ନାହିଁ ? ବାପା ଆଉ ଶାମ ତ ପ୍ରାୟ ଏକା ବୟସର । ବୋଉ ମରିଗଲା ପରେ ବାପା କେମିତି ନିଃସଙ୍ଗ ହୋଇ ପଡ଼ିଛନ୍ତି, ସେ ଆଡ଼କୁ ଦୃଷ୍ଟି ଅଛି ତ ? ତୁମେ ପୁଅକୁ ଜନ୍ମ ଦେଇଛ ବୋଲି, ତା କଥା ତୁମ ଆଖିକୁ ଦିଶୁଛି, ଯେଉଁ ବାପା ମୋତେ ଜନ୍ମ ଦେଇଛନ୍ତି, ତାଙ୍କ ସୁବିଧା ଅସୁବିଧା ତୁମକୁ କେମିତି ଦିଶୁନି, ମୁଁ ଭାବିପାରୁନି । ବୋଉ ମରିଗଲା ପରେ ବାପା କେମିତି ଏକୁଟିଆ ହୋଇ ପଡ଼ିଛନ୍ତି, କାହାରି ସହିତ କଥା ହେଉ ନାହାନ୍ତି, ଯନ୍ତ୍ରଚାଳିତବତ୍ ସବୁକାମ କରି ଯାଉଛନ୍ତି, ଦେଖିଲାବେଳକୁ ମୋ ମନ କ'ଣ ହୋଇଯାଉଛି ଜାଣ ପ୍ରଭାମୟୀ ।''

''କିନ୍ତୁ ବାପା କ'ଣ ରାଜି ହେବେ ଆଉଥରେ ବିବାହ କରିବା ପାଇଁ ? ସେ ଯଦି ମା'ଙ୍କ ସ୍ମୃତିକୁ ମନେପକାଇ ରାଜି ନ ହୁଅନ୍ତି ?''

''ନା, ବାପା ବୋଧହୁଏ ଅରାଜି ହେବେନି । ବାପା ରୋଗମୁକ୍ତ ହୋଇ ଫେରି ଆସିବାପରେ ମା' ପ୍ରତି ତାଙ୍କର ସେମିତି କିଛି ଆକର୍ଷଣ ନ ଥିଲା ।

କେମିତି ବା ହେବ ? ପଚିଶ ଛବିଶ ବର୍ଷ ବୟସର ଯୁବକର ଯଦି ଅଶୀବର୍ଷ ବୟସର ସ୍ତ୍ରୀ ଥାଏ, ତେବେ ତା ପ୍ରତି ସେ କେବେ ଆସକ୍ତ ହୋଇପାରିବ କି ? ଯେହେତୁ ବୋଉ ତାଙ୍କର ବିବାହିତା ସ୍ତ୍ରୀ, ନିଜ ଯୁବା ବୟସରେ ସେ ତାଙ୍କୁ ଯେଉଁ ସ୍ନେହ ଆଦର ଦେଖାଉଥିଲେ, ସେହିକଥାକୁ ସ୍ମରଣ କରି ସେ ବୋଉକୁ ଯାହା ଆଦର ସ୍ନେହ ଦେଖାଉଥିଲେ । ମା ପ୍ରତି ତାଙ୍କର ସେମିତି କିଛି ଆକର୍ଷଣ ନ ଥିଲା । ଯେତେବେଳେ ସେ ତାଙ୍କର ସ୍ତ୍ରୀ, ତାଙ୍କ ସହିତ ଯାହାକିଛି ସେ କଥାବାର୍ତ୍ତା ହେଉଥିଲେ, ଆମ ସଂସାର ହାନିଲାଭ ସେ ବୋଉଠାରୁ ବୁଝୁଥିଲେ । ବେଳେବେଳେ ତାଙ୍କର ନିଜ ବିବାହିତା ସ୍ତ୍ରୀର ଏ କି ପରିବର୍ତ୍ତନ ହେଲା ଭାବି ଭାବି ବହୁ ସମୟ ଧରି ଚିନ୍ତାମଗ୍ନ ରହୁଥିଲେ । ହୁଏତ ସେ ଭାବୁଥିବେ ଏ କ'ଣ ହେଲା ତାଙ୍କ ଜୀବନରେ । ସେ ନିଜେ ବୁଢ଼ା ହୋଇ ନ ଥିବାବେଳେ ତାଙ୍କ ସ୍ତ୍ରୀ ଏପରି ବୁଢ଼ୀ ହୋଇଗଲେ କେମିତି ? ପୁଅ, ବୋହୂ ତାଙ୍କଠାରୁ ଏତେ ବଡ଼ ଏପରିକି ତାଙ୍କ ବାପା, ମା ବୟସର କେମିତି ହେଲେ, ସେ ଭାବି ଭାବି ଏହାର କାରଣ କଥା ବୋଉକୁ ପଚାରିଥିବେ । ବୋଉ ତା'ର ଯଥାଯଥ ଉତ୍ତର ଦେଇଥିବ । ବୋଉଠାରୁ ଉତ୍ତର ପାଇ ସେ ନିଜ ମନକୁ ସାନ୍ତ୍ୱନା ଦେଇଥିବେ ସତ, କିନ୍ତୁ ମା'ର ଅଭାବକୁ ସେ ଅନୁଭବ ନ କରି ରହିପାରି ନ ଥିବେ । ମା ସହିତ ସ୍ୱାମୀ-ସ୍ତ୍ରୀ ଭାବରେ ରହି ମଧ ମା'ଠାରୁ ଯଥେଷ୍ଟ ଦୂରରେ ରହିଲା ଭଳି ଅନୁଭବ କରିଥିବେ । ମା ବଞ୍ଚିଥିବା ବେଳେ ମଧ ବାପାଙ୍କ ଭବିଷ୍ୟତ କଥା ଚିନ୍ତା କରି ବଡ଼ ବ୍ୟସ୍ତ ହୋଇ ପଡୁଥିଲେ । ବାପାଙ୍କର ଯେ ଆଉଥରେ ବିବାହ କରିବା ଦରକାର, ସେ ଅନୁଭବ କରିଥିଲେ । କିନ୍ତୁ ନିଜେ ବଞ୍ଚିଥିବାରୁ ତହିଁର ଆଭାସ କାହାକୁ ଦେଇ ନ ଥିଲେ । ମା ମରିଗଲାବେଳେ ଯାହା କହି ଯାଇଥିଲା, ତା'ର ଅର୍ଥ ତୁମେ କ'ଣ ବୁଝିଲ ମୁଁ ଜାଣେନି । ସେ ମଲାବେଳେ ମୋତେ ଏକାନ୍ତରେ କହିଥିଲା, "ଦେଖ ରାମ, ମୁଁ ଚାଲିଯାଉଛି । ମୋ ଅନ୍ତେ ତୋ ବାପାଙ୍କ କଥା ତୋତେ ଲାଗିଲା । ଶାମ ଯେମିତି ତୋର ପୁତ୍ର, ଶାମକୁ ତୁ ଯେଉଁ ଦୃଷ୍ଟିରେ ଦେଖୁଛୁ, ତୋ ବାପାଙ୍କୁ ମଧ ଠିକ୍ ସେହି ଦୃଷ୍ଟିରେ ଦେଖିବୁ । ମୋ ଅନ୍ତେ ତୋତେ ଛାଡ଼ିଦେଲେ ତୋ ବାପାଙ୍କ ଯତ୍ନ ନେବା ପାଇଁ ଆଉ କେହି ନାହାନ୍ତି । ମୁଁ ମରିଯାଉଛି ବୋଲି ମୋର ଯେତେ ଦୁଃଖ ନାହିଁ, ତୋ ବାପାଙ୍କ ଯତ୍ନ କିଏ ନେବ, ସେଥିପାଇଁ ମୁଁ ଦୁଃଖିତ ।" ମା'ର ସେହି ଶେଷ କେଇପଦରୁ ତୁମେ କ'ଣ ବୁଝିଲ କୁହ ? ବାପାଙ୍କ ଯତ୍ନ ନେବାପାଇଁ ଜଣେ ଲୋକ ଦରକାର । ଆମେ ତ ବୁଢ଼ାବୁଢ଼ୀ ହେଲେଣି, ଆମର ବା ଆଉ କେତେଦିନ ? ତେଣୁ ଆମର ଉଚିତ ହେଉଛି,

ବାପାଙ୍କ ପାଇଁ ଏକ ଜୀବନସଙ୍ଗିନୀ ଘରକୁ ଆଣିବା । ତା ନ ହେଲେ ତାଙ୍କ ଭବିଷ୍ୟତ ଅନ୍ଧକାରମୟ ହୋଇଯିବ ? ମୋ ମତରେ ଶାମ ବିଭାଘର ସହିତ ବାପାଙ୍କ ବିଭାଘର କରିଦେଲେ ଭଲ ହେବ । କିନ୍ତୁ କଥା ହେଲା ବାପାଙ୍କ ପାଖରେ ଏହି ବିଭାଘର ପ୍ରସ୍ତାବ ଦେବ କିଏ ? ବାପାଙ୍କ ସାଙ୍ଗସାଥି ବୋଲି ଜଣେ ସୁଦ୍ଧା କେହି ତ ବଞ୍ଚି ନାହାନ୍ତି । ବଞ୍ଚିଥିଲେ, ସେମାନଙ୍କ ଦ୍ୱାରା ଏହି ପ୍ରସ୍ତାବଟି ତାଙ୍କୁ ଦିଆଯାଇ ପାରିଥାନ୍ତା । ତେବେ ଆମେ ତାଙ୍କର ପୁଅବୋହୂ ହୋଇ ତାଙ୍କୁ କେମିତି ଏଭଳି ଏକ ପ୍ରସ୍ତାବ ଦେବା ଭାବିପାରୁନି । ବାପା କ'ଣ ଭାବିବେ ଆମଠାରୁ ଏ ପ୍ରସ୍ତାବ ଶୁଣି ?

× × × × ×

"କିଏ ରାମକିଷନ, ଆସ, ଆସ । ହଠାତ୍ ଏଆଡ଼େ ଚାଲି ଆସିଲ ଯେ ? କ'ଣ କିଛି କାମ ମୋ'ଠାରେ ଅଛି ନା କଅଣ ?" ପିତାଙ୍କ ଶୟନକକ୍ଷ ଭିତରକୁ ରାମକିଷନବାବୁ ପଶୁ ପଶୁ ବାପା ପଚାରିଲେ । ପୁଅ ପଛେ ପଛେ ବୋହୂକୁ ଦେଖି ଦେବକିଷନବାବୁ କିଞ୍ଚିତ ଆଶ୍ଚର୍ଯ୍ୟ ହୋଇଗଲେ । ପୁଅ-ବୋହୂଙ୍କ ସାମନା ସୋଫାରେ ବସାଇ ସେମାନଙ୍କର ହଠାତ୍ ଏ ଆଗମନର କାରଣ ପଚାରିଲେ ।

ରାମକିଷନବାବୁ କି ତାଙ୍କ ସ୍ତ୍ରୀ ହଠାତ୍ କ'ଣ କହିବେ, କେମିତି କଥାବାର୍ତ୍ତା ଆରମ୍ଭ କରିବେ ଜାଣି ନ ପାରି ଘାବରେଇ ଗଲେ । ହଠାତ୍ ବାପାଙ୍କ ମୁହଁରେ କ'ଣ କହିବେ ଭାବି ପାରିଲେନି । ରାମକିଷନବାବୁ ସ୍ତ୍ରୀଙ୍କ ମୁହଁକୁ, ସ୍ତ୍ରୀ ସ୍ୱାମୀଙ୍କ ମୁହଁକୁ ଥରକୁଥର ଅନାଉଥିବାରୁ କଥାଟା କ'ଣ ଦେବବାବୁ ଜାଣିପାରୁ ନ ଥାନ୍ତି । ବହୁତ କଷ୍ଟରେ ରାମକିଷନବାବୁ ସାହସ ସଞ୍ଚୟ କରି କହିଲେ, "ମୁଁ କ'ଣ କହୁଥିଲି କି ବାପା, ମୁଁ କ'ଣ କହୁଥିଲିକି, ମୁଁ କ-ଣ-କ-ହୁ-ଥି-ଲି-କି—"

"ହଁ, ହଁ କ'ଣ କହିବାକୁ ଚାହୁଁଛ, କହୁ ନାହଁ ?"

"ବାପା, ମା'ର ଦେହାନ୍ତ ପରେ ଆପଣ ତ ବଡ଼ ନିଃସଙ୍ଗ ଜୀବନଯାପନ କରୁଥିବେ ?"

"ହଁ, ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?"

"ହେଲେ ମା' ପରେ ଏତେଦିନ କାଳ... ।"

"ଆଉ, କ'ଣ କରିବି ରାମ, ମୋ ଭାଗ୍ୟରେ ତ ସେଇଆ ଲେଖା ହୋଇଛି । ତୋ ମା' ଚାଲିଗଲା ପରେ ମୁଁ ଆଉ କ'ଣ ଯେ କରିପାରନ୍ତି । ଏହି କଳକାରଖାନା ନେଇ ବ୍ୟସ୍ତ ରହିଲେ ଦିନଗୁଡ଼ାକ କଟିଯିବନି ?"

"ଆମେ ସିନା ବୁଢ଼ାବୁଢ଼ୀ ହେଲୁଣି, ଆମର ଭବିଷ୍ୟତ ସୀମିତ । କିନ୍ତୁ ଆପଣଙ୍କ ସମ୍ମୁଖରେ ଯେ ଦୀର୍ଘ ବର୍ଷଗୁଡ଼ାକ ପଡ଼ି ରହିଛି ବାପା । ଆପଣ ଏତେଦିନ କାଳ କ'ଣ ଏହିଭଳି ନିଃସଙ୍ଗ ଜୀବନଯାପନ କରୁଥିବେ ?"

"ଆଉ ତୁମେ କ'ଣ କହୁଛ ?"

"ମୁଁ କ'ଣ କହୁଥିଲି କି ବାପା, ଆପଣ ଆଉଥରେ ବିବାହ କଲେ କ୍ଷତି କ'ଣ ହୁଅନ୍ତା ? ଆପଣଙ୍କ ବୟସ ତ ମୋ ପୁଅ ବୟସ ପାଖାପାଖି । ଆପଣ ବିବାହ ନ କଲେ ଏହି ଦୀର୍ଘଦିନ ଧରି ନିଜ ସଂସାର ଚଳାଇବେ କେମିତି ? ଆପଣଙ୍କ ଯତ୍ନ ନେବା ପାଇଁ କିଏ ରହିବ କହିଲେ ? ଆପଣଙ୍କର ଜଣେ ନିଜର ଲୋକ ଦରକାର ।"

ହସିଲେ ଦେବକିଷନବାବୁ, "ତୋତେ ଶେଷରେ ମୋତେ ମୋ ବିବାହ ପ୍ରସ୍ତାବ ଦେବାକୁ ପଡ଼ିଲା ରାମ ? ମୋ ବିବାହ କଥା ଚିନ୍ତା ନ କରି ବରଂ ଶାମର ବିବାହ କଥା ଚିନ୍ତା କର । ଶାମର ବୟସ୍ ହୋଇଗଲାଣି । ସେ କାମ-କାର୍ଯ୍ୟରେ ବେଶ୍ ଧୁରନ୍ଧର, ଖୁବ୍ ଦାୟିତ୍ୱବାନ୍ ମଧ୍ୟ । ତା' କାର୍ଯ୍ୟଦକ୍ଷତାରେ ମୁଁ ଭାରି ଖୁସି । ତା'ର ବିବାହ ଆଗ କରିଦିଅ । ମୋ ବିବାହ କଥା ଛାଡ଼ । ଏମିତି ଆଉ ଦିନ କେଇଟା କଟିଯିବ ନାହିଁ ଯେ ?"

"ଦିନ କେତେଟା ନୁହେଁ, ବାପା । ବହୁ ବର୍ଷ । ଆପଣଙ୍କ ସମ୍ମୁଖରେ ଆପଣଙ୍କର ଦୀର୍ଘ ଭବିଷ୍ୟତ ପଡ଼ି ରହିଛି । ଏହି ବର୍ଷଗୁଡ଼ାକ କାଟିବାକୁ ହେଲେ ଜଣେ ଜୀବନସଙ୍ଗିନୀ ଦରକାର । ଆମେ ତ ଆସି ବୁଢ଼ାବୁଢ଼ୀ ହେଲୁଣି, ଆମ ଅନ୍ତେ ଆପଣଙ୍କ ଯତ୍ନ ନେବ କିଏ କହିଲ ?"

"ମୋ ବିବାହ କଥା ଆଉ ମନରେ ଆଣନି ରାମ । ମୁଁ ଏମିତି ଦିନ କେତେଟା କଟାଇ ଦେଇପାରିବି ? ତୁମେ ଆଗ ଶାମ ବିଭାଘର କଥା ଚିନ୍ତା କର । ତା ପାଇଁ କେଉଁଠି ଭଲ ପାତ୍ରୀ ଦେଖିବା ଆରମ୍ଭ କଲଣି ତ ? ଶାମ ଶିଳ୍ପ ପରିଚାଳନାରେ ଏତେ ଧୁରନ୍ଧର ଯେ, ତା ଭଳି ଦକ୍ଷ ପିଲାଟିଏ ପାଇବା କଷ୍ଟକର । ସବୁ କାରଖାନାର ଟିକିନିଖି ତାକୁ ମାଲୁମ । ଇଞ୍ଜିନିଅର ଓ ଅଫିସରମାନେ ତା' କାର୍ଯ୍ୟଦକ୍ଷତା ଦେଖି ତାକୁ ଭୟ କରନ୍ତି । ତୋ ମା' ଭଳି ସେ ସମସ୍ତଙ୍କ ଭୁଲଭଟକା ଚଟ୍ କରି ଧରି ପକାଇପାରେ । ତୁମେମାନେ ମୋ ବିବାହ ବିଷୟ ଚିନ୍ତା ନ କରି ତା ବିବାହ କଥା ଚିନ୍ତା କର ।"

× × × × ×

ରାମକିଷନବାବୁ ଓ ତାଙ୍କ ପତ୍ନୀ ଭାରି ଖୁସି । ଭଲରେ ଭଲରେ ପୁଅ ଶାମର ବିଭାଘର ହୋଇଗଲା । ସେଥିସହ ନିଜ ବାପାଙ୍କର ବି । ଦୁଇଟିଯାକ ବୋହୂ ଉଚ୍ଚଶିକ୍ଷିତା, ବୁଦ୍ଧିମତୀ, ଭଲ ସ୍ୱଭାବ ଚରିତ୍ରର । ସେମାନେ କୌଣସି ଶିଳ୍ପପତି ପରିବାରରୁ ନ ଆସି ସାଧାରଣ ଶିକ୍ଷିତ ପରିବାରରୁ ଆସିଥାନ୍ତି । ଏଥର ସେମାନଙ୍କର ଗୋଟିଏ ବଡ଼ ଚିନ୍ତା ଗଲା । ବାପାଙ୍କର ଯତ୍ନ ନେବା ପାଇଁ ସେମାନେ ଯେଉଁ ଚିନ୍ତାରେ ଥିଲେ, ଏହି ବିବାହପରେ ସେହି ଚିନ୍ତାର ଅବସାନ ହେଲା । ବାପାଙ୍କର ସ୍ତ୍ରୀ ଭାବରେ ଯିଏ ଆସିଲେ, ବିବାହ ପୂର୍ବରୁ ବାପାଙ୍କ ବିଷୟରେ ତାଙ୍କୁ ଟିକିନିଖି ବୁଝାଇ ଦିଆଯାଇଥିଲା । କାରଣ ବିବାହ ପରେ ସେ ଯେତେବେଳେ ପରିବାର ଭିତରକୁ ଆସିଥାନ୍ତେ, ପରିବାରର ବିଚିତ୍ର ପରିସ୍ଥିତି ଦେଖି ଘାବରେଇ ଯାଇଥାନ୍ତେ । ପୁଅବୋହୂଙ୍କୁ ନିଜ ବାପ ବୟସର ଦେଖି, ନାତି, ନାତୁଣୀବୋହୂଙ୍କୁ ନିଜ ବୟସର ଦେଖି ସେ ପ୍ରଥମେ ଚକିତ ହୋଇ ଯାଇଥାନ୍ତେ । ଏହାର କାରଣ ଭାବି ଭାବି ସେ ହୁଏତ ପାଗଳ ହୋଇଯାଇଥାନ୍ତେ ବା ଘରଛାଡ଼ି ପଳାଇ ଯାଇଥାଆନ୍ତେ । ନିଜ ପୁଅ, ବୋହୂଙ୍କୁ ଏତେ ପରିଣତ ବୟସର ଦେଖିଲେ କିଏ ସତେ ଚକିତ ନ ହେବ ? ବିର୍ବାହପୂର୍ବରୁ ଏସବୁ କଥାର କାରଣ ତାଙ୍କୁ ବିଶଦ ଭାବରେ ବୁଝାଇ ଦିଆଯାଇଥିବାରୁ ସେ ଏହି ପରିବାରକୁ ଆସିବା ପୂର୍ବରୁ ନିଜକୁ ପ୍ରସ୍ତୁତ କରି ଆସିଥିଲେ ।

ବାପାଙ୍କ ସ୍ତ୍ରୀଙ୍କୁ କୋଡ଼ିଏ ବର୍ଷ ହେଲେହେଁ ରାମକିଷନବାବୁ ତାଙ୍କୁ ମା'ର ସମ୍ମାନ ଦେଉଥିଲେ । ରାମକିଷନବାବୁଙ୍କ ସ୍ତ୍ରୀ ମାୟାଦେବୀ ତାଙ୍କୁ ନିଜ ଶାଶୁ ଭଳି ଦେଖୁଥିଲେ । ଏହି ପରିବାରରୁ ତାରାର ଦେହାନ୍ତ ପରେ ଘରର ସମସ୍ତ ଦାୟିତ୍ୱ ମାୟାଦେବୀଙ୍କ ଉପରେ ଥିଲା । ବାପାଙ୍କ ନବବିବାହିତା ସ୍ତ୍ରୀ ଘରକୁ ଆସିଲାକ୍ଷଣି ମାୟାଦେବୀ ଶାଶୁଙ୍କଠାରେ ଘରର ସମସ୍ତ ଦାୟିତ୍ୱ ସମର୍ପି ଦେଇ ନିଜେ ଅଲଗା ହୋଇଗଲେ । ଦେବକିଷନବାବୁଙ୍କ ନବବିବାହିତା ସ୍ତ୍ରୀ ଶାନ୍ତାଦେବୀ ଏସବୁ ଦେଖି ତାଟଙ୍ଗା । ନିଜ ବୋହୂଙ୍କୁ ଚାବି ଫେରାଇ ଦେଉ ଦେଉ କହିଲେ, "ମୁଁ ଆସିଲି ନ ଆସିଲି, ତୁମେ ମୋ ଉପରେ ଦାୟିତ୍ୱ ଛଡ଼ାଇ ଦେଇ ଅଲଗା ହୋଇଯାଉଛ କ'ଣ ? ତୁମର ଏତେ ବଡ଼ ପରିବାରକୁ ତୁମେ କେମିତି ଚଳାଉଥିଲ ମୁଁ କ'ଣ ଜାଣିଲିଣି ଯେ ଚଳାଇପାରିବି ?"

"ହେଲେ, ଆପଣଙ୍କୁ ତ ଦିନେ ଚଳାଇବାକୁ ପଡ଼ିବ ମା ।"

"ମୋତେ ଆପଣ ବୋଲି କହିଲେ ଖରାପ ଲାଗୁଛି । ତୁମେ ମୋ ମା ବୟସର । ତୁମେ ପୁଣି ମୋତେ ମା ବୋଲି ସମ୍ବୋଧନ କଲାରୁ ମୋତେ କେମିତି କେମିତି ଲାଗୁଛି ।"

"କିନ୍ତୁ ପ୍ରକୃତରେ ମୁଁ ତ ଆପଣଙ୍କ ବୋହୂ । ମୁଁ ଜାଣେ ଆପଣ ମୋ ଠାରୁ ବୟସରେ ଢେର୍ ସାନ । ଏମିତିକି ମୋ ପୁଅ ବୟସଠାରୁ ବି କମ୍ । ହେଲେ ସାମାଜିକ ରୀତିରେ ଆପଣ ମୋର ମାତୃତୁଲ୍ୟା, ତେଣୁ ନମସ୍ୟା । ଆପଣଙ୍କୁ ଆପଣ ଛଡ଼ା ଆଉ କିଛି କହି ହେବନି । ଆପଣଙ୍କୁ ଖରାପ ଲାଗିଲେ ବି ଆମେ ମା ଛଡ଼ା ଅନ୍ୟ କିଛି ଡାକି ପାରିବୁନି । ଆମେ ଆପଣଙ୍କ ଆଜ୍ଞାବହ ଭାବରେ ଏହି ଘରେ ଥିବୁ । ଏ କ୍ଷେତ୍ରରେ ଆପଣଙ୍କୁ ଏ ଘରର ଦାୟିତ୍ୱ ନେବାକୁ ପଡ଼ିବ । କାରଣ ଆପଣ ହେଉଛନ୍ତି, ଏ ଘରର ମୁରବି, ମାଲିକ୍ । ଆମେସବୁ ଆପଣଙ୍କ ଆଜ୍ଞାବହ ମାତ୍ର ।"

ହସିଲେ ଶାନ୍ତାଦେବୀ, "ମୁଁ ବୁଝୁଛି, ଏ ଘରେ ମୋର ସ୍ଥିତି । ଏହି ଘରକୁ ମୁଁ ଯେତେବେଳେ ବୋହୂ ହୋଇ ଆସିଛି, ମୁଁ ଜାଣିଛି ତୁମ୍ଭମାନଙ୍କ ସହିତ ମୋର ସମ୍ପର୍କ କ'ଣ । ମୁଁ ବୟସରେ ଢେର୍ ସାନ ହେଲେହେଁ, ତୁମେମାନେ ମୋତେ ଶାଶୁର ମର୍ଯ୍ୟାଦା ଦେଇଛ । ହେଲେ, ତୁମର ଶାଶୁ ଭାବରେ ମୁଁ ଏହି ଘରର ଦାୟିତ୍ୱ ଯେ ଠିକ୍ ଭାବରେ ତୁଲାଇ ପାରିବି, ଏଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।"

"ନା, ମା, ଆପଣ ଏମିତି କ'ଣ କହୁଛନ୍ତି । ଘରଚଳାରେ କିଛି ଅସୁବିଧା ହେବନି । ଆପଣଙ୍କ ଆଜ୍ଞାବହ ଭାବରେ ଆମେ ଆପଣଙ୍କ ପାଖେ ପାଖେ ସର୍ବଦା ଅଛୁଁ । ଯେତେବେଳେ କିଛି ଅସୁବିଧା ପଡ଼ିଯିବ, ଆମେ ଆପଣଙ୍କୁ କ'ଣ ସାହାଯ୍ୟ କରିବୁନି ? ମୋତେ ଆପଣ ମୋ ନାଁ ମାୟା ଛଡ଼ା ଅନ୍ୟ କିଛି ଯେମିତି ନ ଡାକନ୍ତି । ଆଇନତଃ ମୁଁ ଯେ ଆପଣଙ୍କ ବୋହୂ । ବୟସରେ ଆପଣଙ୍କଠାରୁ ଢେର୍ ବଡ଼ ହେଲେହେଁ ଆପଣ ମୋତେ ବୋହୂ ଦୃଷ୍ଟିରେ ଦେଖିଲେ ଅତ୍ୟନ୍ତ ଖୁସି ହୁଅନ୍ତି ।"

"ଠିକ୍ ଯେ । ତୁମକୁ ତୁମ ନାଁ ଧରି ଡାକିବାକୁ ମୋତେ ବଡ଼ ଅଡୁଆ ଲାଗିବ । ତୁମେ ବୁଝି ପାରୁଥିବ ମୋ ଅସୁବିଧା । ପରିସ୍ଥିତି ସିନା ଆମକୁ ଏମିତି କରିଛି, ନଚେତ୍ ମୁଁ ତୁମ ପାଦଧୂଳି ନେବା କଥା । ତୁମେ ମୋର ନେବା ନୁହଁ ।"

"ଯା' ହେଲେବି, ଆମକୁ ପରିସ୍ଥିତି ସହିତ ଖାପ୍ ଖୁଆଇ ଚାଲିବାକୁ ପଡ଼ିବ । ଯେତେ ଅସୁବିଧା ହେଲେବି ଚଳାଇ ନେବାକୁ ପଡ଼ିବ ।"

× × × × ×

ରାମକିଷନବାବୁଙ୍କୁ ଶୋଇବାଘରେ ଏକୁଟିଆ ଦେଖି ମାୟାଦେବୀ ପଶି ଆସୁ ଆସୁ କହିଲେ, "ହଇହେ, ଶୁଣିଲଣି, ଆମେ ଏ ଘରେ ରହିବା ଫଳରେ

ବୋଉଙ୍କୁ ବଡ଼ ଅସୁବିଧା ଲାଗୁଛି । ଆଜି ତାଙ୍କୁ ଘରର ସମସ୍ତ ଦାୟିତ୍ୱ ବୁଝାଇଲାବେଳକୁ ସେ ଦାୟିତ୍ୱ ନେବାକୁ ନାରାଜ । କହୁଛନ୍ତି, ମୋତେ କ'ଣ ଜଣାଅଛି ଯେ, ମୁଁ ଘର ଚଳାଇବି । ତା'ଛଡ଼ା ସିଏ ମୋତେ ଯଦିଚ ନିଜ ବୋହୂ ବୋଲି ଗ୍ରହଣ କରୁଛନ୍ତି, ଶାଶୁଭାବରେ କାର୍ଯ୍ୟ କରିବାକୁ ସଂକୋଚବୋଧ କରୁଛନ୍ତି । ପରିସ୍ଥିତିକୁ ଯେତେ ବୁଝାଇଲେହେଁ ସେ ଗ୍ରହଣ କରିବାକୁ ନାରାଜ । ସେ କହୁଛନ୍ତି ତୁମଭଳି ଓ ମୋ ଭଳି ପରିଣତ ବୟସର ଲୋକଙ୍କୁ କିପରି ନାମ ଧରି ଡାକିବେ ? ସତ କଥା, ଆମେ ଯେତେବେଳେ ତାଙ୍କ ବାପା ମା ବୟସର, ସେ ଆମକୁ ପୁଅ-ବୋହୂ ବୋଲି ଗ୍ରହଣ କରିନେବେ ସିନା, ନାଁ ଧରି ଡାକିବାକୁ ଜିଭ ଲେଉଟିବ କେମିତି ? ଆମେ ତ ସାମାଜିକ ତଥା ଆଇନ ଦୃଷ୍ଟିରୁ ତାଙ୍କର ପୁଅବୋହୂ । କିନ୍ତୁ ବାସ୍ତବକ୍ଷେତ୍ରରେ ତାହାକୁ ଗ୍ରହଣ କରିବାକୁ ତାଙ୍କର ମାନସିକ ପ୍ରସ୍ତୁତି ହୋଇପାରିନି । ତେଣୁ ମୁଁ ଭାବୁଛି, ଆମେ କିଛିଦିନ ପାଇଁ ଏ ପରିବାରରୁ ଅନ୍ତର ହୋଇଗଲେ କେମିତି ହୁଅନ୍ତା ? ବାପାଙ୍କୁ ତ ତୁମେ ସବୁ ଦାୟିତ୍ୱ ଦେଇସାରିଛ । ସେ ତ ସବୁ ଶିଳ୍ପ କାରଖାନା କଥା ବୁଝୁଛନ୍ତି । କଦବା କେମିତି ଦରକାର ପଡ଼ିଲେ ସେ ତୁମକୁ ପଚାରୁଛନ୍ତି । ଏହି ପରିବାରରେ ମୋର ମଧ୍ୟ ସେମିତି କିଛି ଦରକାର ନାହିଁ । ମୁଁ ନ ଥିଲେ ବୋଉ ବେଶ୍ ଚଳାଇ ପାରିବେ । ତୁମେ ତ କହୁଥିଲ ଆମେ କିଛିଦିନ ପାଇଁ ବାହାରକୁ ବୁଲିଯିବା ପରା । ଚାଲ, ଆମେ ପ୍ରଥମରେ ଆମ ଦେଶର ତୀର୍ଥସ୍ଥାନ ପରିଭ୍ରମଣରେ ଯିବା । ତା'ପରେ ପୃଥିବୀ ପରିକ୍ରମାରେ ବାହାରି ପଡ଼ିବା । ପୃଥିବୀ ପରିକ୍ରମା ଭିତରେ ତୁମେ ବିଦେଶରେ ଥିବା ଅଫିସ୍‌ଗୁଡ଼ିକର କାର୍ଯ୍ୟ ତଦାରଖ କରିବ ।''

''ଠିକ୍ କହିଛ ମାୟା । ବାପା ତ ସବୁ ବୁଝିଲେଣି, ଚାଲ ଆମେ କିଛିଦିନ ପାଇଁ ଏହି ପରିବାର ଭିତରୁ ଅନ୍ତର ହୋଇଯିବା । ତୁମେ ଯେଉଁ ତୀର୍ଥ ପର୍ଯ୍ୟଟନ ଓ ପୃଥିବୀ ପରିକ୍ରମା କଥା କହୁଛ, ସେଥିରେ ମୁଁ ରାଜି । ବିଦେଶରେ ଥିବା ଆମର ବାଣିଜ୍ୟିକ ଅଫିସ୍ ତଦାରଖ କଥା କହିଲେ ବାପା ଆମକୁ ଛାଡ଼ିବାକୁ ଅରାଜି ହେବେନି । ବାପାଙ୍କ ଅନୁମତି ନ ନେଇ କ'ଣ ଯାଇ ହେବ ? ତୁମକୁ ବି ବୋଉଙ୍କର ଅନୁମତି ନେବାକୁ ପଡ଼ିବ ।''

''ବୋଉ ପ୍ରଥମରୁ ମୋତେ ଛାଡ଼ିବାକୁ କୁନ୍ଥୁକୁନ୍ଥୁ ହେବେ । ତେବେ ତାଙ୍କୁ ସାହାଯ୍ୟ କରିବା ପାଇଁ ଆମ ବୋହୂକୁ ତାଙ୍କଠାରେ ପହଞ୍ଚାଇଦେଲେ ସେ ଅମତ ହେବେନି । ଦି' ବୋହୂ ତ ସମବୟସୀ । ସାଙ୍ଗସୁଙ୍ଗା ହୋଇ ଘରର ଦାୟିତ୍ୱ ଚଳାଇ ନେବେ ।''

''ଆମ ବୋହୂଟିକୁ କେମିତି ଦେଖୁଛ ମାୟା । କାମିକା ବୋହୂଟିଏ ତ ? ବୋଉଙ୍କ ସହିତ ମିଶି ଘରସଂସାର ଚଳାଇ ପାରିବ ତ ? ଅଯଥା କଳିକଜିଆ

କରି ମାନ ମନାନ୍ତର ସୃଷ୍ଟି ନ କଲେ ହେଲା ? ବୋଉଙ୍କୁ କେମିତି ସମ୍ମାନ ଦେଖାଉଛି ଆମ ବୋହୂ । ଏକା ବୟସର ଭାବି ସାଙ୍ଗଭଳିଆ ଚଳୁନାହିଁ ତ ?''

''ନା, ଆମ ବୋହୂଟି ସେମିତି ନୁହେଁ । ସେ ଯେତେବେଳେ ଦେଖୁଛି, ତା ଶାଶୁ ବୋଉଙ୍କୁ ଏମିତି ଭକ୍ତି କରୁଛି, ସେ ନ କରିବ କେମିତି ? ବୋଉଙ୍କ ସହିତ ଭାରି ଭଲ ବ୍ୟବହାର । ବୋଉଙ୍କୁ ଭାରି ମାନ ଖାତିର । ବୋଉଙ୍କ ଆଦେଶକୁ ସବୁବେଳେ ଚାତକ ଭଳି ଅନାଇ ରହିଛି । ବୋଉଙ୍କ ପାଟିରୁ କିଛି ଗୋଟାଏ ବାହାରିବାକ୍ଷଣି ସେ ସଙ୍ଗେ ସଙ୍ଗେ କରି ଦେଉଛି । ଯା'କୁହ ବୋହୂଟି ମୋର ମନକୁ ବେଶ୍ ପାଇଛି । ବୋଉ ଯେମିତି ମୋ ମନକୁ ପାଇଛି, ବୋହୂଟି ମଧ ସେମିତି ।''

''ବୋହୂଟି ପ୍ରତି ଆମ ପୁଅର ବ୍ୟବହାର କେମିତି ?''

''ଦୁହେଁ ଦୁହିଁଙ୍କ ପ୍ରତି ବେଶ୍ ଅନୁରକ୍ତ । ବୋହୂକୁ ପୁଅ ଖୁବ୍ ପସନ୍ଦ କରୁଛି । ବୋହୂର କାମଦାମ, ଚାଲିଚଳନ ପୁଅର ଖୁବ୍ ପସନ୍ଦ ।''

''ଆଉ, ବାପା ବୋଉ କେମିତି ? ବାପା ବୋଉଙ୍କୁ କେମିତି ଆଦର ଦେଖାଉଛନ୍ତି ?''

''ବୋଉ ବାପାଙ୍କର ବେଶ୍ ମନକୁ ପାଇଛନ୍ତି । ଆଗ ବୋଉ ଥିଲାବେଳେ ବାପା ଯେମିତି ଚୁପ୍‌ଚାପ୍ ହୋଇ ରହୁଥିଲେ, ଏ ବୋଉ ବେଳେ ବାପା ସେମିତି ରହୁ ନାହାନ୍ତି । ସବୁକଥାରେ ବାପା ବୋଉକୁ ପଚାରୁଛନ୍ତି । ବୋଉ ସହିତ ବାପା ଦରକାର ପଡ଼ିଲେ ପରାମର୍ଶ କରୁଛନ୍ତି । ଉଭୟେ ପରସ୍ପର ପ୍ରତି ବେଶ୍ ଅନୁରକ୍ତ । ବୋଉ ବାପାଙ୍କ ମନକୁ ଯେ ପାଇଛନ୍ତି, ଏହା ସ୍ପଷ୍ଟ ଜଣାପଡୁଛି । ଆଗ ବୋଉ ଅପେକ୍ଷା ଏ ବୋଉଙ୍କୁ ବାପା ଅଧିକ ଭଲ ପାଉଛନ୍ତି ।''

''ନ ହେବ କାହିଁକି ? ଆମ ବୋଉ ଯଦିଚ ବାପାଙ୍କର ନିଜ ସ୍ତ୍ରୀ, ରୋଗରୁ ଭଲ ହେବାପରେ ବୟସ ତାରତମ୍ୟ ଏତେ ହୋଇଯିବା ଫଳରେ ବାପା, ବୋଉ ସହିତ କଥାବାର୍ତ୍ତା ହେଲାବେଳେ ସଂକୋଚବୋଧ କରୁଥିଲେ । ସ୍ୱାମୀ-ସ୍ତ୍ରୀ ଭାବରେ ଯେମିତି ଖୋଲାଖୋଲି କଥାବାର୍ତ୍ତା ହୁଏ, ସେଭଳି କଥାବାର୍ତ୍ତା ଆଗବୋଉ ଓ ବାପାଙ୍କ ଭିତରେ ହେଉ ନ ଥିଲା । ଅବଶ୍ୟ ଏ ବୋଉ ସହିତ ତାଙ୍କ ସମ୍ପର୍କ ଖୁବ୍ ଭଲ, ଦୁହେଁ ନିଜ ନିଜ ଭିତରେ ଖୋଲାଖୋଲି କଥାବାର୍ତ୍ତା ହୋଇ ପାରୁଛନ୍ତି ଶୁଣି ମୋତେ ଖୁସି ଲାଗୁଛି । ରୋଗରେ ପଡ଼ିବା ପୂର୍ବରୁ ଆଗବୋଉ ପ୍ରତି ବାପା ଖୁବ୍ ଅନୁରକ୍ତ ଥିଲେ । ରୋଗରୁ ଭଲ ହେବାପରେ ଅବସ୍ଥା ବଦଳିଗଲା । ସେମାନଙ୍କ ଭିତରେ ବୟସ ତାରତମ୍ୟ ଖୁବ୍ ଅଧିକ ହୋଇଯିବାରୁ ଉଭୟେ ଉଭୟଙ୍କ ପ୍ରତି ସଂକୋଚବୋଧ କରୁଥିଲେ । ଯାହାହେଉ, ଏହା

ଆମର ଭାଗ୍ୟ, ବାପା ଆଉ ନିଃସଙ୍ଗ ଜୀବନଯାପନ କରିବେନି । ତାଙ୍କ ମନମୁତାବକ ଜୀବନସଙ୍ଗିନୀଟିଏ ଯେ ମିଳିଯାଇଛି ଏହାଠାରୁ ଅଧିକ ଆନନ୍ଦର କଥା ଆଉ କ'ଣ ହୋଇପାରେ ମାୟା ?''

× × × × ×

ଠିକ୍ ସମୟରେ ବାପାଙ୍କ ଅନୁମତି ମିଳିଗଲା । ବୃଦ୍ଧପୁଅର ତୀର୍ଥଭ୍ରମଣ ନାଁ ଶୁଣି ଦେବବାବୁ ଈଷତ୍ ହସିଲେ । କହିଲେ, ''ଖାଲି ତୀର୍ଥ ଭ୍ରମଣ କରି ଲାଭ ନାହିଁ ରାମ, ତୀର୍ଥର ସୁବିଧା ଅସୁବିଧା କଥା ଯଦି ନ ବୁଝ । ବହୁତୀର୍ଥରେ ସାଧାରଣ ଯାତ୍ରୀଙ୍କ ପାଇଁ ବହୁ ଅସୁବିଧା ରହିଛି । କେଉଁଠି ଭଲ ଧର୍ମଶାଳାଟିଏ ନାହିଁ ତ କେଉଁଠି ଭଲ ପିଇବା ପାଣି ମିଳୁନି, କେଉଁଠି ଅତି ଅସ୍ୱାସ୍ଥ୍ୟକର ପରିସ୍ଥିତି, ସେ ସବୁର କିଛି ଯଦି ଦୂର କରିପାର, ତେବେ ଯାତ୍ରୀମାନେ ତୁମକୁ ଆଶୀର୍ବାଦ କରିବେ । ଜୀବନରେ ବହୁତ ଅଧର୍ମ ଧନ ଠୁଳ କରିଛ, ସେଥିରୁ କିଛି ଯଦି ସେ ଦିଗରେ ବ୍ୟୟ କର, ତେବେ ପାପର ପରିମାଣ କିଛି କମିଯିବ ବୋଲି ଆଶା । ତୁମେ ଆମ ଦେଶର ସବୁ ବଡ଼ ବଡ଼ ତୀର୍ଥ ବୁଲି ଦେଖି ସେଠାକାର ଅଭାବ ଅସୁବିଧାର ଏକ ତାଲିକା ମୋତେ ଦେବ । ମୁଁ ସେଥିରୁ କେତେଗୁଡ଼ିଏ ଦୂର କରିବାକୁ ଚେଷ୍ଟା କରିବି । ହଁ, ବିଦେଶ ଅଫିସ୍‌ଗୁଡ଼ାକ ଭଲ ଭାବରେ ତଦାରଖ କରି ଦେଖିବ । ଯେଉଁଠି ଆମର ଭଲ କାରବାର ନାହିଁ, ସେଗୁଡ଼ିକୁ ସେଠୁ ଉଠାଇଦେବା ଦରକାର । ବିଦେଶରେ ଏତେଗୁଡ଼ିଏ ଅଫିସ୍ ଆମର ଦରକାର ନାହିଁ ।''

ଦେବବାବୁଙ୍କ କଥାକୁ ଅନ୍ୟଥା କରିବାର ଶକ୍ତି କାହାର । ରାମବାବୁ ଜାଣନ୍ତି ସେ ନିଜେ ଯେଉଁସବୁ ବ୍ୟବସାୟ ବାଣିଜ୍ୟର ପ୍ରସାର କରିଛନ୍ତି, ସେଥିରେ ଦେବବାବୁ ଖୁସି ନୁହନ୍ତି । ତାଙ୍କର ଧାରଣା ଏସବୁ ଅନ୍ୟାୟ ଧନର ପରିଣାମ । ଦେବବାବୁଙ୍କ ମତ ବିରୋଧରେ ଯିବା ଶକ୍ତି କାହାର ? ଯଦିଚ ଜଣେ ଶିଳ୍ପପତି ଭାବରେ ସେ ବାପାଙ୍କ ଯୁକ୍ତିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ଯଦିଚ ବାପା ବୟସରେ ଓ ଅଭିଜ୍ଞତାରେ ଯଥେଷ୍ଟ କମ୍, ତଥାପି ତାଙ୍କ ଆଦେଶକୁ ଅନ୍ୟଥା କରିବା ଶକ୍ତି ତାଙ୍କର ନାହିଁ । ବାପାଙ୍କ ଆଦେଶ ଓ ପରାମର୍ଶ ଅନୁସାରେ ତୀର୍ଥଗୁଡ଼ିକ ଦେଖିବା ଓ ବିଦେଶ ଅଫିସ୍‌ଗୁଡ଼ିକ ତଦାରଖ କରିବା ଉଦ୍ଦେଶ୍ୟ ନେଇ ସ୍ୱାମୀ-ସ୍ତ୍ରୀ ଦୁହେଁ ତୀର୍ଥ ପର୍ଯ୍ୟଟନରେ ବାହାରିଗଲେ । ଉଡ଼ାଜାହାଜ ଘାଟିରେ ପୁଅବୋହୂଙ୍କୁ ବିଦାୟ ଦେଲେ ଦେବବାବୁ ଓ ଶାନ୍ତାଦେବୀ । କି ବିଚିତ୍ର ପରିସ୍ଥିତି, ବୁଢ଼ା ବାପ ମା ତୀର୍ଥ ପର୍ଯ୍ୟଟନରେ ଗଲେ, ପୁଅ ବିଦାୟ ଦିଏ, କିନ୍ତୁ ଏଠି ଏହାର ଓଲଟା । ବୃଦ୍ଧ ପୁଅବୋହୂଙ୍କୁ ତୀର୍ଥ ଭ୍ରମଣ ପାଇଁ ବିଦାୟ ଦେଉଛନ୍ତି ଯୁବକ ବାପ ।

# ବାର

ଶେଠ୍ ଦେବକିଷନବାବୁଙ୍କ ଅଫିସ୍ ଫୋନ୍ ବାଜି ଉଠିଲା । ଶେଠ୍ ଫୋନ୍ ଧରିଲେ, ''ହଁ, ହଁ, ମୁଁ ଦେବକିଷନ କହୁଛି । ଆପଣ କିଏ ? କେଉଁଠାରୁ କହୁଛନ୍ତି ?''

''ଆମେ ବୋମ୍ବେରୁ କହୁଛୁ ଆଜ୍ଞା ।'' ଆରପାଖରୁ ଟେଲିଫୋନ୍‌ରେ ଏକ ସମ୍ମିଳିତ ସ୍ୱର ।

''ବୋମ୍ବେରୁ ? ହଁ, କଥା କ'ଣ ?''

''ଆପଣଙ୍କ ନାତିଙ୍କର ଏକ୍‌ସିଡେଣ୍ଟ୍ ହୋଇଛି ଆଜି ଏଠି ଏଇ କିଛି ସମୟ ତଳେ । ଅତି ସିରିୟସ୍ ଏକ୍‌ସିଡେଣ୍ଟ୍ ଆଜ୍ଞା । ସେ ତାଙ୍କ ଗାଡ଼ି ନିଜେ ଡ୍ରାଇଭିଂ କରି ଆସୁଥିଲେ । ସାମନାପଟୁ ଏକ ଟ୍ରକ୍ ଆସି ତାଙ୍କ ଗାଡ଼ିକୁ ଧକ୍‌କାଦେଇ ପଳାଇଗଲା । ଏହାଫଳରେ ତାଙ୍କ ଗାଡ଼ିଟି ଓଲଟି ପଡ଼ିଲା । ସେ ଗାଡ଼ିରୁ ଛିଟିକି ପଡ଼ି ରକ୍ତାକ୍ତ ଅବସ୍ଥାରେ ରାସ୍ତାକଡ଼ରେ ପଡ଼ିଥିଲେ । ରାସ୍ତାରେ ଯାଉଥିବା ଲୋକେ ତାଙ୍କୁ ଏଭଳି ଅବସ୍ଥାରେ ଦେଖି ଆଉ ଗୋଟିଏ ଗାଡ଼ିରେ ଆଣି ଏଠା ଯଶ୍‌ଲୋକ୍ ହସ୍‌ପିଟାଲରେ ଏଡ୍‌ମିସନ୍ କରାଇ ଦେଇଛନ୍ତି । ସେ ପୂରାପୂରି ଅଚେତ୍, ସଂଜ୍ଞାହୀନ । ଡାକ୍ତରଙ୍କ ମତରେ ତାଙ୍କୁ ବଞ୍ଚାଇବା ଅତି କଷ୍ଟକର । ତାଙ୍କ ପକେଟରୁ ମିଳିଥିବା ଏକ ଡାଏରିରୁ ଆମେ ତାଙ୍କ ପରିଚୟ ପାଇ ଆପଣଙ୍କୁ ଫୋନ୍ କରୁଛୁ । ଆପଣ ଯେତେଶୀଘ୍ର ପାରନ୍ତି ଏଠାକୁ ଆସନ୍ତୁ । ରୋଗୀ ଆଠ ନମ୍ବର ୱାର୍ଡ଼ର ୯୭ ନମ୍ବର ସ୍ପେସାଲ କେବିନରେ ଅଛନ୍ତି ।''

ନାତି ଶାମକିଷନର ଏଭଳି ସାଙ୍ଘାତିକ ଦୁର୍ଘଟନାର ଖବର ପାଇ ଦେବକିଷନବାବୁଙ୍କ ମୁଣ୍ଡ ଘୂରିଗଲା । ଚାରିଆଡ଼ ତାଙ୍କୁ ଅନ୍ଧାର ଦିଶିଲା । ନିଜର ମାତ୍ର ଗୋଟିଏ ବୋଲି ନାତି । ତା ଭାଗ୍ୟରେ ବିଧି ପୁଣି ଏଭଳି ଦୁର୍ଦ୍ଦଶା ଲେଖିଥିଲା ? ତା' ନିଜ ବାପା, ମା ଏଠି ନାହାନ୍ତି । ସେମାନେ ଥିଲେ କେତେ ଦୁଃଖ ପାଇ ନ ଥାନ୍ତେ ଏହି ଖବର ଶୁଣି । ନିଜ ବଂଶର ଏକମାତ୍ର ଉତ୍ତରାଧିକାରୀ ସେ । ତାର ଯଦି କିଛି ହୋଇଯାଏ – ସେତୁ ଆଉକିଛି ଭାବିପାରିଲେନି । ତାଙ୍କ ମୁଣ୍ଡ କ'ଣ ହୋଇଗଲା !

ଏହି ଖବରଟି ଶେଠଙ୍କ ଶିବାଜୀନଗର ଶିଳ୍ପନଗରୀରେ ବିଜୁଳିବେଗରେ ଖେଳିଗଲା । ଯିଏ ଶୁଣିଲା ସିଏ ମୁଣ୍ଡରେ ହାତଦେଇ ବସିଲା । ଆଃ, ଶାମକିଷନବାବୁ କେଡ଼େ ସୁନ୍ଦର ଲୋକ ? ପିମ୍ପୁଡ଼ିକୁ ମର ବୋଲି କହନ୍ତି ନାହିଁ । ଭଗବାନ ତାଙ୍କ ଭାଗ୍ୟରେ

ଏମିତି ଦୁର୍ଦ୍ଦଶା ଖଞ୍ଜିଥିଲେ ? ଘରେ ଯେତେବେଳେ ଏହି ଖବର ପହଞ୍ଚିଲା, ଘରେ କାନ୍ଦବୋବାଳି । ସ୍ତ୍ରୀ ରତ୍ନାଦେବୀ, ଜେଜେମା ଶାନ୍ତାଦେବୀ କାନ୍ଦି କାନ୍ଦି ଭୂଇଁରେ ମିଶିଗଲେଣି । ଶେଠ୍ ନିଜ ପରିବାରବର୍ଗଙ୍କୁ ଏଭଳି କାନ୍ଦବୋବାଳି ଅବସ୍ଥାରେ ଘେନି ଯଶଲୋକ ହସ୍ପିଟାଲ ଅଭିମୁଖେ ବାହାରିଗଲେ । ବାଟରେ ଯାଉ ଯାଉ ନିଜ ସ୍ତ୍ରୀ, ବୋହୂ ଆଦିଙ୍କୁ କେମିତି ପ୍ରବୋଧନା ଦେବେ ଭାବିପାରୁ ନ ଥାନ୍ତି । ନିଜର ଧୈର୍ଯ୍ୟଚ୍ୟୁତି ଘଟିଛି, ସେ ତ ନିଜେ କିଛି ଭାବିପାରୁ ନାହାନ୍ତି, ଅନ୍ୟମାନଙ୍କୁ ପ୍ରବୋଧନା ଦେବେ କ'ଣ ?

ଶାମବାବୁଙ୍କୁ କେବିନ୍‌ର ଏକ ଖଟ ଉପରେ ଶୁଆଇ ଦିଆଯାଇଥାଏ । ମୁଣ୍ଡ, ମୁହଁ ଚାରିପଟେ ବେଣ୍ଡେଜ ବନ୍ଧା ଯାଇଛି । କିଛି ଦିଶୁନି । ରୋଗୀକୁ ଚିହ୍ନିବା କଷ୍ଟକର । ରୋଗୀ ପୂରାପୂରି ସଂଜ୍ଞାହୀନ । ରୋଗୀର ଏ ଅବସ୍ଥା ଦେଖି ଦେବବାବୁଙ୍କ ହଂସା ଉଡ଼ିଗଲା । ପରିବାରର ଲୋକେ ମୁଣ୍ଡରେ ହାତଦେଇ କାନ୍ଦୁଥାନ୍ତି । ବେଶି କନ୍ଦାକଟା କଲେ ଡାକ୍ତର କାଳେ ବିରକ୍ତ ହେବେ ଏହି ଭୟରେ ଦେବବାବୁ ଅନ୍ୟମାନଙ୍କୁ କାନ୍ଦଣାରୁ ବିରତ ହେବା ପାଇଁ ବୁଝାଉଥାନ୍ତି । ତାଙ୍କ ପାଟିରୁ ବାହାରୁଥାଏ "ଯାହା ଭାଗ୍ୟରେ ଥିବ ହେବ, କନ୍ଦାକଟା କଲେ କ'ଣ ରୋଗୀ ଭଲ ହୋଇ ଉଠି ବସିବ ?" ପରିବାରର ଲୋକଙ୍କୁ ଶାନ୍ତ ହୋଇ ବସିବା ପାଇଁ କହି ଦେଇ ସେ ତାଙ୍କ ନାତିକୁ ଚିକିତ୍ସା କରୁଥିବା ବଡ଼ ଡାକ୍ତରଙ୍କ ଅଫିସ୍ ଅଭିମୁଖେ ଚାଲିଗଲେ । ଶେଠ୍ ଦେବକିଷନବାବୁଙ୍କ ଆସିବା ଖବର ପାଇ ଡାକ୍ତରବାବୁ ନିଜେ ଦୌଡ଼ି ଆସିଲେ ନିଜ ଅଫିସ୍‌କକ୍ଷକୁ ପାଛୋଟି ନେବାକୁ । ଅଫିସ୍‌ରେ ବସାଇ ରୋଗୀର ଅବସ୍ଥା କେମିତି ଟିକିନିଖି କରି ବୁଝାଇଦେଲେ । ଡାକ୍ତରଙ୍କ ବର୍ଣ୍ଣନାରୁ ଯାହା ଜଣାପଡ଼ିଲା ଆଘାତ ଲାଗିଛି ମସ୍ତିଷ୍କରେ । ଶରୀରର ଅନ୍ୟ ଅଂଶତକ ପ୍ରାୟ ଅକ୍ଷୁଣ୍ଣ ରହିଛି କହିଲେ ଚଳେ । ଇଏ ଆଘାତ କିଛି ସାଧାରଣ ଆଘାତ ନୁହେଁ । ଅତି ସାଙ୍ଘାତିକ । ସାରା ମସ୍ତିଷ୍କଟି ପୂରାମାତ୍ରାରେ ନଷ୍ଟ ହୋଇଯାଇଛି । ସାମାନ୍ୟ ଏକ କ୍ଷୁଦ୍ରାତିକ୍ଷୁଦ୍ର ଅଂଶ ଟିକିଏ ଭଲ ଅଛି । ଯାହାପାଇଁ କି ସେ ବଞ୍ଚି ରହିଛନ୍ତି । କେଉଁ ମୁହୂର୍ତ୍ତରେ ସେହିଟିକକ ଚାଲିଯିବ, କହି ହେଉନି । ତା'ପରେ ସବୁ ଶେଷ । ଯେତେବେଳ ପର୍ଯ୍ୟନ୍ତ ସେହି ଟିକକ ରହିଛି, ଶାମବାବୁ ପୂରାପୂରି ଅଚେତ ହେଲେବି ବଞ୍ଚି ରହିଛନ୍ତି । ଡାକ୍ତରମାନଙ୍କ ଆଶଙ୍କା ରୋଗୀ ଆଉ ବେଶିଦିନ ତିଷ୍ଠିବା ସମ୍ଭବପର ନୁହେଁ । ରୋଗୀ ସମ୍ପର୍କରେ ଡାକ୍ତରଙ୍କ ମୁହଁରୁ ସବୁକଥା ଶୁଣି ଦେବବାବୁ କ'ଣ କରିବେ ଠିକ୍ କରି ପାରିଲେନି । କିଛି ସମୟ ଭାବି ଭାବି କହିଲେ, "ରୋଗୀକୁ ଯଦି ଆମେରିକା ନିଆଯାଏ ଡକ୍ଟର, ତେବେ କିଛି ହୋଇପାରିବ କି ?"

ହସିଲେ ଡାକ୍ତର ଧର୍ମାଧିକାରୀ, ଏକ ଶୁଷ୍କ ହସ, ''ରୋଗୀର ଅବସ୍ଥା ଏତେ ସାଙ୍ଘାତିକ ଯେ ଏହି ରୁମ୍‌ରୁ ଅନ୍ୟ ରୁମ୍‌କୁ ନେବା ସମ୍ଭବପର ନୁହେଁ । ଆପଣ ଆମେରିକା ନେବା କଥା କ'ଣ କହୁଛନ୍ତି ? ବରଂ ଆପଣ ଯଦି ଚାହାନ୍ତି, ତେବେ ଆମେରିକାର ବିଶେଷଜ୍ଞଙ୍କୁ ଏଠାକୁ ଡାକି ଆମେ ରୋଗୀକୁ ତାଙ୍କୁ ଦେଖାଇ ଦେଇ ପାରିବା । ଆପଣ କହିଲେ ମୁଁ ସଙ୍ଗେ ସଙ୍ଗେ ଫୋନ୍ କରି ଆମେରିକା ତଥା ପୃଥିବୀର ସର୍ବଶ୍ରେଷ୍ଠ ମସ୍ତିଷ୍କ ବିଶେଷଜ୍ଞ ତଥା ସର୍ଜନ ଡକ୍ଟର ଜେମ୍‌ସ ଫିସ୍‌ବିନ୍‌ଙ୍କୁ ଭାରତ ଆସିବା ପାଇଁ ନିମନ୍ତ୍ରଣ କରିବି । ରୋଗୀର ଏଭଳି ସାଙ୍ଘାତିକ ଅବସ୍ଥା କଥା ଶୁଣିଲେ ସେ ସଙ୍ଗେ ସଙ୍ଗେ ରାଜି ହୋଇ ଭାରତ ଚାଲି ଆସିବେ । ନିଉୟର୍କରେ ଥିବା ତାଙ୍କର ମେଡିକେଲ ସେଣ୍ଟରରେ ଯଦିଚ ସବୁବେଳେ ଭିଡ଼ ଲାଗି ରହିଥାଏ, ତଥାପି ଏଭଳି ସାଙ୍ଘାତିକ ରୋଗୀକୁ ସେ କଦାପି ଉପେକ୍ଷା କରିବେନି ବୋଲି ଆଶା ।''

× × × × ×

ଡାକ୍ତର ଫିସ୍‌ବିନ୍ ଠିକ୍ ସମୟରେ ଆମେରିକାରୁ ଆସି ପହଞ୍ଚିଗଲେ । ସଙ୍ଗେ ସଙ୍ଗେ ତାଙ୍କୁ ରୋଗୀଠାକୁ ନିଆଗଲା । ସେ ରୋଗୀକୁ ନାନା ଦିଗରୁ ପରୀକ୍ଷା କରି ଦେଖିଲେ ଯେ ରୋଗୀର ମସ୍ତିଷ୍କଟି ଏଭଳି ଭାବରେ ନଷ୍ଟ ହୋଇଯାଇଛି ଯେ ତାକୁ ଭଲ କରିବା ତାଙ୍କ ପକ୍ଷରେ କାହିଁକି କାହାରି ପକ୍ଷରେ ସମ୍ଭବପର ନୁହେଁ । ଯେକୌଣସି ମୁହୂର୍ତ୍ତରେ ରୋଗୀଟି ଆରପାରିକୁ ଚାଲିଯାଇପାରେ । ତେବେ ଏଭଳି ସାଙ୍ଘାତିକ ରୋଗୀ ଏହି କେତେଦିନ ଧରି କେମିତି ଯେ ବଞ୍ଚି ରହିଛି, ତାହା ହିଁ ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।

ଏହି ସମୟରେ ଆଉ ଏକ ଦୁର୍ଘଟନାଜନିତ ସାଙ୍ଘାତିକ ରୋଗୀର ଏଡ୍‌ମିସନ୍ ହେଲା । ସେହିଭଳି ଏକ ମଟରଗାଡ଼ି ଦୁର୍ଘଟନାରେ ରୋଗୀଟିର ସାରା ଶରୀରଟି ନଷ୍ଟ ହୋଇଯାଇଛି । ହୃତ୍‌ପିଣ୍ଡ, ଫୁସ୍‌ଫୁସ୍, ବୃକ୍କ, ଅନ୍ତ୍ର ଆଦି କିଛି ନାହିଁ । ରୋଗୀଟି ଏହିକ୍ଷଣି ମରିବ କି ଆଉ ଟିକିଏ ପରେ ମରିବ । ତେବେ ମସ୍ତିଷ୍କଟିର କୌଣସି କ୍ଷତି ନ ହୋଇ ସେହିଭଳି ଅତୁଟ ଅବସ୍ଥାରେ ରହିଛି । ମସ୍ତିଷ୍କଟି ଭଲ ଥିବାରୁ ଓ ହୃତ୍‌ପିଣ୍ଡ ସାମାନ୍ୟ ଭାବରେ କାମ କରୁଥିବାରୁ ରୋଗୀଟି ଅଚେତ ହେଲେବି ବଞ୍ଚି ରହିଛି । ଡାକ୍ତରମାନେ ରୋଗୀଟିକୁ ଦେଖି ତା ଆଶା ଛାଡ଼ି ଦେଲେଣି । ଏହି ରୋଗୀର ଖବର କେମିତି ଡାକ୍ତର ଫିସ୍‌ବିନଙ୍କ କାନରେ ପଡ଼ିଲା । ସେ ସଙ୍ଗେ ସଙ୍ଗେ ସେହି ରୋଗୀଟିକୁ ପରୀକ୍ଷା କରିବାକୁ ଚାଲି ଆସିଲେ । ରୋଗୀଟି ପ୍ରକୃତରେ କିଏ, କେଉଁ ସ୍ଥାନରେ ତାହା ଘର ସେପର୍ଯ୍ୟନ୍ତ ଜଣାପଡ଼ି ନ ଥାଏ । ଲୋକଟି ସମ୍ଭବତଃ ମୋଫସଲ ଅଞ୍ଚଳର । ନିଜ କାର୍

ଚଳାଇ କୌଣସି କାର୍ଯ୍ୟୋପଲକ୍ଷେ ସହରକୁ ଆସୁଥିଲା । ରାସ୍ତାରେ ଟ୍ରକ୍‌ଦ୍ୱାରା ଦୁର୍ଘଟଣା ଘଟିବା ଫଳରେ କାର୍‌ଟି ରାସ୍ତାକଡ଼ରେ ଓଲଟି ପଡ଼ି ଲୋକଟି ସାଙ୍ଘାତିକ ଭାବରେ ଖଣ୍ଡିଆଖାବରା ହୋଇ ହସ୍‌ପିଟାଲକୁ ଆସିଲା । ରୋଗୀର ମସ୍ତିଷ୍କବ୍ୟତୀତ ଅନ୍ୟସବୁ ଅଂଶ ପ୍ରାୟ ନଷ୍ଟ ହୋଇଯାଇଛି କହିଲେ ଚଳେ । ଡାକ୍ତର ଫିସ୍‌ବିନ ପରୀକ୍ଷା କରି ଦେଖିଲେ ରୋଗୀର ବଞ୍ଚିବା ଆଶା ଖୁବ୍ କମ୍ । ଯଦିଚ ମସ୍ତିଷ୍କଟି ଖୁବ୍ ଭଲ ଅବସ୍ଥାରେ ଅଛି, ହୃଦ୍‌ଯନ୍ତ୍ର ଠିକ୍ କାମ କରୁନି, ମସ୍ତିଷ୍କକୁ ରକ୍ତସ୍ରୋତ ଗଲେ ରୋଗୀ ବଞ୍ଚିବ, ସେତକ ବନ୍ଦ ହେବା ଉପରେ, ରୋଗୀକୁ ବଞ୍ଚାଇବ କିଏ ? କୃତ୍ରିମ ହୃଦ୍‌ଯନ୍ତ୍ର ଲଗାଯାଇ ପାରନ୍ତା, ହେଲେ ଫୁସ୍‌ଫୁସ୍, ବୃକ୍କ ଆଦି ଅଂଶ ତ ଯାଇଛି । ରୋଗୀ ବଞ୍ଚିବ କେମିତି ? ରୋଗୀଟିକୁ ପରୀକ୍ଷା କରି ଡାକ୍ତର ଫିସ୍‌ବିନ ଉଠି ଆସିଲେ । ପାର୍ଶ୍ୱ ଡାକ୍ତରମାନଙ୍କୁ କହିଲେ, "ନା, ଏ ରୋଗୀଟିର ବଞ୍ଚିବା ଆଶା ନାହିଁ । ଆଉଦିନେ ଓଳିଏରୁ ଅଧିକ ନୁହେଁ । ତେବେ ତାଙ୍କ ମୁଣ୍ଡରେ ଏକ ଚିନ୍ତା ପଶିଲା । ସେହି ଚିନ୍ତାକୁ ସେ ଡାକ୍ତରମାନଙ୍କ ଠାରେ ପ୍ରକାଶ କରିବେ କି ନାହିଁ ଭାବୁଥିଲେ । ମନେ ମନେ ଭାବୁଥିଲେ, ଏହା ଏକ ଅପୂର୍ବ ସୁଯୋଗ, ଏହାକୁ ଛାଡ଼ିବାର କଥା ନୁହେଁ ।

ସେ ସଙ୍ଗେ ସଙ୍ଗେ ଡାକ୍ତରଖାନାର ଡାକ୍ତରମାନଙ୍କୁ ସମ୍ମିଳନୀ ଗୃହକୁ ଡାକ ନେଇ ଆଲୋଚନା ଛଳରେ କହିଲେ, "ଦେଖନ୍ତୁ, ଦେବବାବୁଙ୍କ ନାତିକୁ ବଞ୍ଚାଇବାର ଏକ ଅପୂର୍ବ ସୁଯୋଗ ବର୍ତ୍ତମାନ ଆସି ପହଞ୍ଚିଛି । ଦେବବାବୁଙ୍କ ନାତିର ସାରା ଶରୀରଟି ଭଲ ଅଛି । କେବଳ ମସ୍ତିଷ୍କଟି ଯାଇଛି । ଏହି ଲୋକଟିର ସାରା ଶରୀରଟି ଯାଇଛି । ଅଥଚ ମସ୍ତିଷ୍କଟି ଅତୁଟ ରହିଛି । ଏହି ଦ୍ୱିତୀୟ ରୋଗୀଟି ମରିଗଲା ପରେ ଆମେ ଯଦି ଏହାର ମସ୍ତିଷ୍କଟି ଆଣି ଦେବବାବୁଙ୍କ ନାତିଙ୍କ ମୁଣ୍ଡରୁ ନଷ୍ଟ ହୋଇଥିବା ମସ୍ତିଷ୍କଟିକୁ ବାହାର କରିଦେଇ ଏହି ମସ୍ତିଷ୍କଟି ସେହି ସ୍ଥାନରେ ପରିରୋପଣ କରିଦେଉଁ ତେବେ ଦେବବାବୁଙ୍କ ନାତି ଭଲ ହୋଇ ଯାଇପାରନ୍ତି । ରୋଗୀଟି ମଲାପରେ ରୋଗୀଟିର ମସ୍ତିଷ୍କ ଆମକୁ ମିଳିପାରିବ କି ? ଯଦି ଅନୁମତି ମିଳେ ରୋଗୀ ମରିବାର ପରେ ପରେ ରୋଗୀଟିକୁ ଶୀତଳ ପ୍ରକୋଷ୍ଠରେ ରଖାଯାଇ ସଙ୍ଗେ ସଙ୍ଗେ ଅସ୍ତ୍ରୋପଚାର ଦ୍ୱାରା ମସ୍ତିଷ୍କଟିକୁ କାଢ଼ି ନେବାକୁ ପଡ଼ିବ । ମସ୍ତିଷ୍କଟିକୁ କାଢ଼ିନେଲା ପରେ ରୋଗୀଟିର ଶବସତ୍କାର କରାଯାଇପାରେ । ଯେହେତୁ, ତା'ର କେହି ନିଜର ଲୋକ ରୋଗୀ ପାଖେ ନାହାନ୍ତି, ମସ୍ତିଷ୍କଟିକୁ ବାହାର କରିନେବା ପାଇଁ ଅନୁମତି ଦେବ କିଏ ?"

ଡାକ୍ତର ଫିସ୍‌ବିନଙ୍କ ଉକ୍ତି ଉପରେ ଡାକ୍ତରମାନଙ୍କ ଭିତରେ ଆଲୋଚନା ଚାଲିଲା । ଡାକ୍ତର ଫିସ୍‌ବିନ ଯେତେବେଳେ ମସ୍ତିଷ୍କ ପରିରୋପଣ ଅସ୍ତ୍ରୋପଚାରରେ ସିଦ୍ଧହସ୍ତ,

ତାଙ୍କୁ ଏହି ସୁଯୋଗଟି ଦେବା ଉଚିତ ହେବ । ଯାହାହେଉ, ଏତେବଡ଼ ଶିଳ୍ପପତିଙ୍କ ବଂଶ ଯେ ରକ୍ଷା ହୋଇଯିବ ।

ଡାକ୍ତର ଫିସ୍‌ବିନଙ୍କ ଏହି ପ୍ରସ୍ତାବରେ ଦେବବାବୁ ରାଜି ହେବେ କି କଅଣ ତାଙ୍କୁ ପଚରାଗଲା । ଦେବବାବୁ ପ୍ରଥମେ ପ୍ରଥମେ ବୁଝିପାରିଲେନି ଡାକ୍ତର ଫିସ୍‌ବିନ କ'ଣ କହିବାକୁ ଚାହୁଛନ୍ତି । ବୁଝାଇଦେଲାରୁ ସେ ବୁଝିଗଲେ । ତେବେ ଏହାର ଫଳାଫଳ ଭବିଷ୍ୟତରେ ଭଲ ହେବ କି ନାହିଁ ଜାଣିବାକୁ ଚାହିଲେ । ଡାକ୍ତର ଫିସ୍‌ବିନ ଏହି ଅସ୍ତ୍ରୋପଚାରର ଶେଷ ପରିଣତ କ'ଣ ହେବ ଦେବବାବୁଙ୍କୁ ବୁଝାଇ ଦେଉ ଦେଉ କହିଲେ, "ଦେଖନ୍ତୁ ଶେଠ୍‌ଜୀ, ଏହି ଅସ୍ତ୍ରୋପଚାର ଫଳରେ ଆପଣଙ୍କ ନାତି ଭଲ ହୋଇଯିବ ନିଶ୍ଚୟ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଗୋଟିଏ କଥା ହେବ, ଯାହାକୁ ଆପଣ ଚଳାଇ ନେଇ ପାରିବେ କି କଅଣ ମୁଁ ଜାଣିପାରୁନି । ଶରୀରରେ ମଣିଷର ଅସଲ ଅଂଶ ହେଉଛି ମସ୍ତିଷ୍କ । ମଣିଷର ଜ୍ଞାନ, ମନ, ପ୍ରକୃତି, ନିଜତ୍ୱ ସବୁକିଛି ଏହି ମସ୍ତିଷ୍କର ନିୟନ୍ତ୍ରଣାଧୀନ । ମଣିଷର ନିଜର ମସ୍ତିଷ୍କଟି ଯଦି ବାହାର କରି ନିଆଯାଏ, ତେବେ ସେ ମଣିଷର ନିଜତ୍ୱ ମଧ୍ୟ ବାହାରିଗଲା ବୋଲି ଜାଣିବା ଉଚିତ । ତା ସ୍ଥାନରେ ଅନ୍ୟ ଜଣେ ଲୋକର ମସ୍ତିଷ୍କକୁ ଯଦି ପରିରୋପଣ କରାଯାଏ, ତେବେ ସେହି ମସ୍ତିଷ୍କଟି ଯାହାର ସେହି ରୋଗୀଟି ବର୍ତ୍ତମାନ ସେହି ଲୋକରେ ପରିଣତ ହୋଇଯିବ । ଶ୍ୟାମବାବୁଙ୍କଠାରେ ଯଦି ଏହି ନବାଗତ ରୋଗୀଟିର ମସ୍ତିଷ୍କ ପରିରୋପଣ କରାଯାଏ, ତେବେ ସେ ରୋଗୀଟି ସୁସ୍ଥ ହେଲାପରେ ଶ୍ୟାମବାବୁଙ୍କ ଭଳି ଦିଶିଲେ ମଧ୍ୟ ସେ ପ୍ରକୃତରେ ଶ୍ୟାମବାବୁ ଭଳି କାର୍ଯ୍ୟ କରିବେ ନାହିଁ । ସେ ହେବେ ଏହି ଲୋକଟି । ଏହି ଲୋକଭଳି ଠିକ୍ କାମ କରିବେ । ଏହି ଅସ୍ତ୍ରୋପଚାର ଫଳରେ ଶ୍ୟାମବାବୁ ଆଉ ଶ୍ୟାମବାବୁ ହୋଇ ରହିପାରିବେନି ।

"ତା'ହେଲେ ସେ କ'ଣ ଆଉ ମୋ ନାତି ହୋଇ ରହିବନି ?" ଦେବବାବୁ ପଚାରିଲେ ।

"ନା, ଦେଖିବାକୁ ଆପଣଙ୍କ ନାତି ଭଳି ଠିକ୍ ଦିଶିବେ ସତ, କିନ୍ତୁ କାର୍ଯ୍ୟକଳାପ, କଥାବାର୍ତ୍ତାରେ ସେ ଆପଣଙ୍କ ନାତି ହୋଇ ରହିବେନି । ଏହି ରୋଗୀଟି ଯାହା, ସେ ସେଇଆ ହୋଇ ରହିବେ ।"

"ତା'ହେଲେ ତ ବଡ଼ ମୁସ୍କିଲ ଡାକ୍ତର । ସେ ଯଦି ମୋର ନାତି ହୋଇ ନ ରହିବ, ତେବେ ଏହି ଅସ୍ତ୍ରୋପଚାର କରି ଲାଭ କଅଣ ? ଏହି ଅସ୍ତ୍ରୋପଚାର ମୋର କି ଉପକାରରେ ଲାଗିବ ?"

"ଏହି ଲୋକଟି ବର୍ତ୍ତମାନ ପାଇଁ ସିନା ଆପଣଙ୍କ ନାତି ଭଳି ବ୍ୟବହାର ଦେଖାଇବନି, କିଛିଦିନ ପରେ ଇଏ ଆପଣଙ୍କ ନାତି ଭଳି ବ୍ୟବହାର ଦେଖାଇବ । ଆପଣଙ୍କ ନାତିକୁ ଠିକ୍ ଭାବରେ ଫେରି ପାଇବା ପାଇଁ ଆପଣଙ୍କୁ ସେଥିପାଇଁ କିଛିଦିନ ଅପେକ୍ଷା କରିବାକୁ ପଡ଼ିବ ।"

"ଆଁ, ଫେରି ପାଇବି ? ମୋ ନାତି ପୁଣି ମୋଠାକୁ ଫେରି ଆସିବ ?" ବନ୍ୟାଜଳରେ ଭାସି ଯାଉଥିବା ଲୋକ କୁଟାଖିଅର ଆଶ୍ରା ପାଇଲା ଭଳି ଆଶ୍ରା ପାଇ ଦେବବାବୁ କହି ଉଠିଲେ ।

"ହଁ, ଆସିବ, କିନ୍ତୁ କିଛିଦିନ ପରେ ।"

"କେମିତି ?"

"ଏହି ଲୋକଟି ରୂପ ପାଇବ ଆପଣଙ୍କ ନାତି ପରି । ଭଲ ହେବାପରେ ଏହି ଲୋକଟି ଆପଣଙ୍କ ଘରେ ରହିବାକୁ ଇଚ୍ଛା ପ୍ରକାଶ କରିବ ନାହିଁ, ଯଦିଚ ସେ ଆପଣଙ୍କ ନାତି ଭଳି ପୂରାପୂରି ଦିଶିବ । ସେ ଚାହିଁବ, ସେ ନିଜ ଗାଁ, ନିଜ ପରିବାରଠାକୁ ଯିବାକୁ । ଯେତେବେଳେ ନିଜ ଗାଁକୁ, ନିଜ ପରିବାରଠାକୁ ଯିବ, ସେଠି କେହି ତାକୁ ଗ୍ରହଣ କରିବେନି । କାରଣ ସେ ତ ଆଉ ମରି ଯାଇଥିବା ଲୋକ ଭଳି ଦିଶିବନି । ତାର ନିଜର ଲୋକେ ତାକୁ ଗ୍ରହଣ କରିବେ କେମିତି ? ସେ ନିଜର ଲୋକ ବୋଲି ଯେତେ ବୁଝାଇବ, ଯେତେ ପ୍ରମାଣ ଦେବ, ତା ରୂପ ବର୍ଣ୍ଣ ଆଦି ଅଲଗା ଥିବାରୁ ତା ପରିବାରର ଲୋକେ ତାକୁ ମୋଟେ ଗ୍ରହଣ କରିବେନି କି ଘରେ ପୂରାଇବେ ନାହିଁ । ସେ ଲୋକ ସେତେବେଳେ କୁଆଡ଼େ ଯିବ ? ସେ ବାଧ ହୋଇ ଆପଣଙ୍କଠାକୁ ପୁଣି ଫେରି ଆସିବ । ସେ ଶେଷରେ ଶାମବାବୁ ନାଁ ନେଇ ଆପଣଙ୍କ ପରିବାରରେ ରହିବାକୁ ବାଧ ହେବ । ସେତେବେଳେ ଯାଇ ଆପଣ ତାଙ୍କୁ ଫେରି ପାଇବେ । ସେତେବେଳ ପର୍ଯ୍ୟନ୍ତ ଆପଣଙ୍କୁ ଅପେକ୍ଷା କରିବାକୁ ପଡ଼ିବ ଶେଠ୍‌ଜୀ ।"

"ହେଉ, ଦିନେହେଲେ ମୋ ଶାମ ତ ମୋଠାକୁ ଫେରି ଆସିବ ।"

"ହଁ, ନିଶ୍ଚୟ । ତା'ପରେ ଆପଣ ଆପଣଙ୍କ ପରିବାର ସହିତ ତାଙ୍କୁ ଭଲ ଭାବରେ ପରିଚିତ କରାଇଦେଲେ, ଶାମବାବୁଙ୍କ ଦୈନନ୍ଦିନ କାର୍ଯ୍ୟ, ଦାୟିତ୍ୱ ସହିତ ପରିଚିତ ହୋଇଗଲେ ସେ ପୂରାପୂରି ଶାମବାବୁ ହୋଇ ରହିଯିବେ । ଆପଣଙ୍କୁ ଆଉ ଆପଣଙ୍କ ନାତିକୁ ହରାଇବାକୁ ପଡ଼ିବନି ।"

ଡାକ୍ତର ଫିସ୍‌ବିନଙ୍କ କଥାରେ ଦେବବାବୁ ରାଜି ହୋଇଗଲେ । ଅରାଜି ହେବେ ବା କାହିଁକି ? ସଅଳ ହେଉ ବା ବିଳମ୍ବ ହେଉ, ନିଜ ନାତିକୁ ସେ ଫେରି ପାଇବେ ତ ?

ଡାକ୍ତର ଫିସ୍‌ବିନ ଯେଉଁ ଭବିଷ୍ୟତବାଣୀ କରିଥିଲେ, ଠିକ୍ ସେହି ସମୟ ମଧ୍ୟରେ ରୋଗୀଟିର ମୃତ୍ୟୁ ଘଟିଲା । ରୋଗୀ ସଙ୍ଗେ କେହି ନିଜର ଲୋକ ଆସି ନ ଥିବାରୁ ଯଶଲୋକ ହାସପାତାଲ ତରଫରୁ ତା'ର ଶବ ସତ୍କାର ପାଇଁ ବନ୍ଦୋବସ୍ତ କରାଗଲା ।

ଶବ ସତ୍କାର ପୂର୍ବରୁ ମୃତ୍ୟୁର ଠିକ୍ ଅବ୍ୟବହିତ ପର ଯଶଲୋକ ହସ୍‌ପିଟାଲର କର୍ମକର୍ତ୍ତାମାନଙ୍କ ଅନୁମତି ଡାକ୍ତର ଫିସ୍‌ବିନଙ୍କୁ ମିଳିଗଲା ରୋଗୀଟିର ମସ୍ତିଷ୍କକୁ ଅପରେସନ ଦ୍ୱାରା ବାହାରକରି ନେବାକୁ । ଡାକ୍ତର ଫିସ୍‌ବିନ ମସ୍ତିଷ୍କଟିକୁ ସଙ୍ଗେ ସଙ୍ଗେ ବାହାର କରି ଏକ ଶୀତଳୀକରଣ ଯନ୍ତ୍ରରେ ସାଇତି ରଖିଦେଲେ ।

ଠିକ୍ ଏହାର ପରେ ପରେ ଶାମବାବୁଙ୍କ ଅସ୍ତ୍ରୋପଚାର ଆରମ୍ଭ ହେଲା । ଶାମବାବୁଙ୍କୁ ଅପରେସନ କକ୍ଷକୁ ନିଆଗଲା । ଅପରେସନ କକ୍ଷର ଦର୍ଶକଗ୍ୟାଲେରୀ ସେଦିନ ଡାକ୍ତରମାନଙ୍କ ଦ୍ୱାରା ଭରପୂର । ଭାରତବର୍ଷରେ ହେଉଥିବା ଏହି ସର୍ବପ୍ରଥମ ମସ୍ତିଷ୍କର ପରିରୋପଣ ଅପରେସନ ଦେଖିବାକୁ ସମସ୍ତେ ଆଗ୍ରହୀ । ତେବେ ନାନା କଟକଣା କରି ସେମାନଙ୍କୁ ଦର୍ଶକ ଗ୍ୟାଲେରୀକୁ ଛଡ଼ାଗଲା । ଡାକ୍ତର ଫିସ୍‌ବିନଙ୍କୁ ଅପରେସନରେ ସାହାଯ୍ୟ କରିବା ପାଇଁ ଯଶଲୋକର କେତେକ ବଡ଼ ବଡ଼ ଡାକ୍ତର ସ୍ୱତଃପ୍ରବୃତ୍ତ ହୋଇ ବାହାରି ଆସିଥାନ୍ତି । ପୃଥିବୀର ଏଇ ଖ୍ୟାତନାମା ଡାକ୍ତରଙ୍କ ସହିତ ମସ୍ତିଷ୍କ ପରିରୋପଣ ଅସ୍ତ୍ରୋପଚାରରେ ସଂଶ୍ଳିଷ୍ଟ ହେଲେ କେତେବଡ଼ ଅଭିଜ୍ଞତା ହେବ ସତେ ! ଏଭଳି ସୁବିଧାକୁ କ'ଣ କିଏ ସହଜରେ ଛାଡ଼ିଦେଇପାରେ ? ଡାକ୍ତର ଫିସ୍‌ବିନ ପ୍ରଥମେ ଶାମବାବୁଙ୍କ ମସ୍ତିଷ୍କରେ ଅସ୍ତ୍ରୋପଚାର କରି ନଷ୍ଟ ହୋଇ ଯାଇଥିବା ମସ୍ତିଷ୍କଟିକୁ ପୂରାପୂରି କାଟି ବାହାର କରିଦେଲେ । ତଦ୍‌ପରେ ଶୀତଳୀକରଣ ଯନ୍ତ୍ରରେ ସାଇତା ହୋଇଥିବା ମସ୍ତିଷ୍କକୁ ଆଣି ନାନା ପ୍ରକାର ଉପଚାର ପରେ ଶାମବାବୁଙ୍କ ମୁଣ୍ଡ ଭିତରେ ପରିରୋପଣ କଲେ । ପରିରୋପଣ ଅସ୍ତ୍ରୋପଚାର ଏତେ କଷ୍ଟକର ଯେ ନ ଦେଖିଲେ ସହଜ ଧାରଣା କରିହେବନି । ପରିରୋପଣବେଳେ ଅସଂଖ୍ୟ ସୂକ୍ଷ୍ମ ରକ୍ତନଳୀ, ସ୍ନାୟୁଗୁଡ଼ିକକୁ ଏହି ନୂଆ ପରିରୋପିତ ମସ୍ତିଷ୍କ ସହିତ ଯୋଡ଼ାଯିବା କଥା । ଏହି ଅପରେସନଗୁଡ଼ିକ ଏତେ ସୂକ୍ଷ୍ମ ଯେ ଅଣୁବୀକ୍ଷଣଯନ୍ତ୍ର ତଳେ ନ ଦେଖିଲେ କିଛି ଦିଶିବନି । ଡାକ୍ତର ଫିସ୍‌ବିନ ଏକ ଅଣୁବୀକ୍ଷଣଯନ୍ତ୍ର ତଳେ ଦେଖି ଦେଖି ଏହି ସୂକ୍ଷ୍ମ ରକ୍ତନଳୀ ସ୍ନାୟୁଗୁଡ଼ିକୁ ଯୋଡୁଥାନ୍ତି । ବଡ଼ ନିକିଟିଆ କାମ । ସାଧାରଣ ସର୍ଜନମାନେ ଧୈର୍ଯ୍ୟର ସହିତ ଏହାକୁ ସମ୍ପାଦନ କରି ପାରିବେନି । ଅପରେସନ ଶେଷହେବାକୁ ପ୍ରାୟ ବାରଘଣ୍ଟା ସମୟ ଲାଗିଲା । ଅଣୁବୀକ୍ଷଣଯନ୍ତ୍ର ତଳେ ସାଧାରଣ ଆଖିକୁ ଅଦୃଶ୍ୟ ବିଭିନ୍ନ ସୂକ୍ଷ୍ମ ଅଂଶକୁ ଯୋଡ଼ି ଯୋଡ଼ି ଡାକ୍ତର ଫିସ୍‌ବିନ ନୟାନ୍ତ ହୋଇଗଲେ । ଅପରେସନ ଶେଷ ହେଲାବେଳକୁ

ସେ ଅଳ୍ପ ସମୟ ପାଇଁ ଅନ୍ଧ ପାଲଟିଗଲେ । ତାଙ୍କୁ ସାଧାରଣ ଜିନିଷ କିଛି ଦିଶିଲାନି, ଚାରିଆଡ଼େ ଯେମିତି ଅନ୍ଧାର ଘୋଟିଛି, ସେମିତି ଦିଶିଲା । ଅପରେସନ ପରେ ଏମିତି ଅବସ୍ଥା ହେବ ବୋଲି ଡାକ୍ତର ଫିସ୍‌ବିନ ଆଗରୁ ଜାଣିଥିଲେ । କିଛି ସମୟପରେ ସେ ଧୀରେ ଧୀରେ ସବୁକିଛି ଦେଖିପାରିଲେ । ଗୋଟିଏ ମସ୍ତିଷ୍କର ଅପରେସନ ସାରୁ ସାରୁ ନିଜ ମସ୍ତିଷ୍କ କେମିତି ସାମୟିକ ଅକାମୀ ହୋଇଯାଏ ଏହା ତାହାର ପ୍ରମାଣ ।

ଡାକ୍ତର ଫିସ୍‌ବିନ ଅପରେସନ ସାରି ଅପରେସନ କକ୍ଷରୁ ବାହାରିଲାବେଳକୁ ପ୍ରାୟ ରାତି ଆଠଟା । ସକାଳ ଆଠଟାରେ ସେ ଏହି ଅସ୍ତ୍ରୋପଚାର ଆରମ୍ଭ କରିଥିଲେ । ସେ ଏହା ଭିତରେ ଟୋପାଏ ସୁଦ୍ଧା ଜଳାହାର କରି ନାହାନ୍ତି । ସେ ଏହିଭଳି ଅପରେସନରେ ସିଦ୍ଧହସ୍ତ ଥିବାରୁ ତାଙ୍କୁ ଏତେ ଜଟିଳ ଅସ୍ତ୍ରୋପଚାରରେ କିଛି କଷ୍ଟ ବା ଅସୁବିଧା ହୁଏନି । କିଛି ନ ଖାଇଲେ କି ନ ପିଇଲେ ମଧ୍ୟ ତାଙ୍କୁ କିଛି ଅସୁବିଧା ଲାଗେନି । ଅପରେସନ କେମିତି ହେଲା, ତାଙ୍କ ମୁଖରୁ ଶୁଣିବା ପାଇଁ ଦେବବାବୁ ଓ ତାଙ୍କ ପରିବାରର ସମସ୍ତେ ଅପରେସନ କକ୍ଷ ବାହାରେ ଅପେକ୍ଷା କରିଥାନ୍ତି । ସେମାନେ ମଧ୍ୟ ସମସ୍ତେ ଖାଡ଼ା ଖାଡ଼ା ଉପାସ । କାହାରି ଟୋପାଏ ଜଳ ବି ପିଇବାକୁ ଇଚ୍ଛା ହେଉ ନ ଥାଏ । ଶାମବାବୁଙ୍କ ଜୀବନ ପାଇଁ ଅତ୍ୟଧିକ ଉତ୍କଣ୍ଠା ସେମାନଙ୍କ ଭୋକ ଶୋଷକୁ ସମ୍ଭବତଃ ମାରି ଦେଇଥାଏ । ଡାକ୍ତରଙ୍କ ମୁଖରୁ ସେମାନେ ଯେତେବେଳେ ଶୁଣିଲେ ଅପରେସନ ଖୁବ୍ ଭଲ ହୋଇଛି, ଶାମବାବୁ ନିଶ୍ଚୟ ଭଲ ହୋଇଯିବେ, ସେତେବେଳେ ସେମାନଙ୍କ ମୁହଁରେ ଯେଉଁ ଆନନ୍ଦ ତାହା ଭାଷାରେ ବର୍ଣ୍ଣନା କରି ହେବନି । ଶାମବାବୁଙ୍କ ସ୍ତ୍ରୀ ରତ୍ନାଦେବୀ ଏହି ଖବରରେ ଖାଲି ଭଗବାନଙ୍କ ଉଦ୍ଦେଶ୍ୟରେ ବାରମ୍ବାର ହାତକୁ ଉପରକୁ ଟେକୁଥାନ୍ତି । ଶାନ୍ତାଦେବୀ ଇଷ୍ଟଦେବଙ୍କୁ ମନେପକାଇ ନମସ୍କାର ପରେ ନମସ୍କାର କରି ଚାଲିଥାନ୍ତି । ଏହି ଅସ୍ତ୍ରୋପଚାର କୃତକାର୍ଯ୍ୟ ହେବ, କାହାରି କ'ଣ ଭରସା ଥିଲା ? ଯାହାହେଉ ଭଗବାନ ସେମାନଙ୍କର ମାଗୁଣି ଶୁଣିଲେ ଏହାଠାରୁ ଆଉ ବଡ଼ କଥା କ'ଣ ହୋଇପାରେ ? ଡାକ୍ତରଙ୍କ ଆଶ୍ୱାସନା, ଶାମବାବୁ ଆଉ କିଛିଦିନ ପରେ ଭଲ ହୋଇ ଚଲାବୁଲା, କଥାବାର୍ତ୍ତା କରି ପାରିବେ ।

ଧୀରେ ଧୀରେ ଶାମବାବୁ ଭଲ ହେବାକୁ ଲାଗିଲେ । ଏତେଦିନ ଧରି ସେ ଯେଉଁ ଅଚେତ ଅବସ୍ଥାରେ ଥିଲେ, ତାହା ଆଉ ନାହିଁ । ସୁସ୍ଥ ରୋଗୀଙ୍କ ଭଳି ଖିଆପିଆ, କଥାବାର୍ତ୍ତା କରି ପାରୁଛନ୍ତି, ଶେଯରୁ ଉଠି ଚଲାବୁଲା କରିବା ଡାକ୍ତରଙ୍କର ମନା ।

ବଡ଼ ଆଶ୍ଚର୍ଯ୍ୟ ସେ ଶାନ୍ତାଦେବୀ କି ରତ୍ନାଦେବୀ, କାହାରିକୁ ଚିହ୍ନୁ ନାହାନ୍ତି । ସେମାନଙ୍କୁ ଦେଖିଲେ ସେ ଲାଜ ଲାଜ ହୋଇ ପଡ଼ୁଛନ୍ତି । ବେଳେବେଳେ ସେମାନଙ୍କ

ମୁହଁକୁ ବଲ ବଲ କରି ଅନାଇ କ'ଣ ଭାବିଲା ଭଳି ଦେଖାଯାଉଛନ୍ତି । ହଠାତ୍ କ'ଣ ମନେ ପଡ଼ିଗଲାରୁ ଲାଜେଇ ଯାଇ ମୁହଁ ଅନ୍ୟଆଡ଼କୁ ବୁଲାଇ ନେଉଛନ୍ତି । ସମ୍ଭବତଃ ସେ ଚିହ୍ନିପାରୁ ନାହାନ୍ତି, ଏମାନେ କିଏ ? ସେ ଭାବୁଥାନ୍ତି ତାଙ୍କ ପାଖକୁ ଏମାନେ ଏତେଥର ଆସୁଛନ୍ତି କାହିଁକି ? ଦେବବାବୁ କି ତାଙ୍କ ପରିବାରର ଅନ୍ୟ କାହାକୁ ଦେଖିଲେ କିଛି ପ୍ରତିକ୍ରିୟା ପ୍ରକାଶ କରୁ ନ ଥାନ୍ତି । ସମ୍ଭବତଃ ସେ କାହାରିକୁ ଚିହ୍ନିପାରୁ ନାହାନ୍ତି । ସମସ୍ତେ ଏଥିପାଇଁ ଚିନ୍ତିତ । ସମସ୍ତଙ୍କର ଚିନ୍ତା, ଶାମବାବୁ ତ ବର୍ତ୍ତମାନ ବେଶ୍ ଭଲ ହୋଇଗଲେଣି, ନିଜର ଲୋକମାନଙ୍କୁ ଚିହ୍ନୁ ନାହାନ୍ତି କାହିଁକି ? ସେ କ'ଣ ତା'ହେଲେ ନିଜ ସ୍ମୃତିଶକ୍ତି ଫେରି ପାଇ ନାହାନ୍ତି ? ସେ କ'ଣ ତାଙ୍କ ସ୍ମୃତିଶକ୍ତି ମୋଟେ ଫେରି ପାଇବେନି ? ସମସ୍ତଙ୍କ ମନରେ ଏଇ ପ୍ରଶ୍ନ ଏଇ ଆଶଙ୍କା । ସ୍ମୃତିଶକ୍ତି ଫେରି ନ ପାଇଲେ ନିଜ ସ୍ତ୍ରୀଙ୍କୁ ସେ ଚିହ୍ନିବେ କେମିତି ? ଅନ୍ୟମାନଙ୍କୁ ଚିହ୍ନିବା ତ ଦୂରର କଥା, ଏହି ଆଶଙ୍କାରେ ରତ୍ନାଦେବୀଙ୍କ ସରସ ହୋଇ ଆସୁଥିବା ମନ ପୁଣି ବିରସ ହୋଇଗଲା । ତାଙ୍କ ମନରେ ବଡ଼ ଚିନ୍ତା, ତାଙ୍କ ସ୍ୱାମୀ ଯଦି ତାଙ୍କୁ ନ ଚିହ୍ନନ୍ତି, ତେବେ ସେ କରିବେ କଅଣ ? ସେ କୁଆଡ଼େ ଯିବେ ? ସେ ରହିବେ କେଉଁଠି ? ସେ ଯାହାଙ୍କୁ ହାତଧରି ବିଭା ହୋଇଥିଲେ, ସେ ଯଦି ତାଙ୍କୁ ନ ଚିହ୍ନନ୍ତି, ତେବେ ତାଙ୍କ ପକ୍ଷରେ ଜୀବନ ହରାଇଦେବା ହିଁ ଶ୍ରେୟସ୍କର ହେବ । ରତ୍ନାଦେବୀଙ୍କ ଭଳି ଶାନ୍ତାଦେବୀଙ୍କ ମନ ମଧ୍ୟ ଅତ୍ୟନ୍ତ ଉଦ୍‌ବିଗ୍ନ, ଶାମ ଯଦି ସେମାନଙ୍କୁ ନ ଚିହ୍ନେ, ଏ ପରିବାରରେ ନ ରହେ ? ତେବେ ତା'ହେଲେ ତ ସବୁ ଗଲା ।

ଧୀରେ ଧୀରେ ଶାମବାବୁ ଆହୁରି ଅଧିକ ସୁସ୍ଥ ହେଲେ । ଖଟିଆରୁ ଉଠି ଚଲାବୁଲା କଲେ । ଦିନେ ଏକାନ୍ତରେ ତାଙ୍କୁ ଚିକିତ୍ସା କରୁଥିବା ଡାକ୍ତରଙ୍କୁ ଡାକି ପଚାରିଲେ, "କୁହନ୍ତୁ ତ ଡାକ୍ତର ସାକ୍‌ସେନା, ମୋଠାକୁ ଏହି ଯେଉଁ ଲୋକମାନେ ଦିନକୁ ଏତେଥର ଲେଖାଏଁ ଆସୁଛନ୍ତି, ସେମାନେ ସବୁ କିଏ ? ମୁଁ ତ ଏମାନଙ୍କୁ କାହାରିକୁ ଚିହ୍ନୁନି । ସେମାନେ ମୋଠାକୁ ଏତେ ଆସୁଛନ୍ତି କାହିଁକି ? ମୋ ନିଜର ଲୋକ ସବୁ ଗଲେ କୁଆଡ଼େ ? ସେମାନେ କ'ଣ ଜାଣି ନାହାନ୍ତି ମୋର ଏକ୍‌ସିଡେଣ୍ଟ ହୋଇଛି ବୋଲି ?"

ଡାକ୍ତର ଦେଖିଲେ ଶାମବାବୁ ଯଦିଚ ନିଜ ସ୍ମୃତିଶକ୍ତି ଫେରି ପାଇଛନ୍ତି, ତେବେ ସେ ସ୍ମୃତିଶକ୍ତି ତାଙ୍କ ନିଜର ନୁହେଁ, ତାହା ହେଉଛି ଆଉ ଜଣଙ୍କର, ଯାହାଙ୍କ ମସ୍ତିଷ୍କ ଶାମବାବୁଙ୍କ ମୁଣ୍ଡ ଭିତରେ ଖଞ୍ଜି ଦିଆଯାଇଛି । ଡାକ୍ତର ଶାମବାବୁଙ୍କ ପ୍ରଶ୍ନରେ କ'ଣ ଉତ୍ତର ଦେବେ ଭାବି ଠିକ୍ କରି ପାରିଲେନି । ଡାକ୍ତରଙ୍କର ଚିନ୍ତା ହେଲା ଶାମବାବୁ ଯଦି ତାଙ୍କ ପରିବାରର ଲୋକଙ୍କୁ ନ ଚିହ୍ନନ୍ତି, ତେବେ ସେମାନଙ୍କ ପରିବାର ଭିତରକୁ ସେ ଯିବେ କେମିତି ?

ଶାମବାବୁ ଦିନେ ରୁମ୍ ଭିତରେ ପଦଚାରଣ କରୁ କରୁ ହଠାତ୍ ତାଙ୍କ ରୁମ୍‌ରେ ଥୁଆ ହୋଇଥିବା ଏକ ଦର୍ପଣରେ ନିଜ ପ୍ରତିଛବି ଦେଖି ଚମକି ପଡ଼ିଲେ । ଆଁ, ଏ କ'ଣ ? ଏ ତ ମୋ ରୂପ ନୁହେଁ ? ମୋର ଏହା ଭିତରେ କ'ଣ ଏତେ ପରିବର୍ତ୍ତନ ହୋଇ ଯାଇଛି ? ଦର୍ପଣକୁ ଆହୁରି ଭଲ ଭାବରେ ଅନାଇ ନିଜ ରୂପକୁ ତନ୍ନ ତନ୍ନ କରି ପରୀକ୍ଷା କରିବାକୁ ଲାଗିଲେ । "ନା, ଏ ପ୍ରତିଛବି ତ ମୋ ରୂପ ସହିତ ମିଳୁନି । ମୁଁ ତ କେବେ ଏପରି ନ ଥିଲି । ହଠାତ୍ ମୋ ରୂପର ଏମିତି ପରିବର୍ତ୍ତନ ହେଲା କେମିତି ? ଏକ୍‌ସିଡେଣ୍ଟ୍ ପରେ କ'ଣ ମୋ ମୁହଁ, ନାକ, କାନ ସବୁ ଏତେ ଛିଡ଼ି ଯାଇଥିଲା ଯେ ଏସବୁ ପ୍ଲାଷ୍ଟିକ୍ ଅସ୍ତ୍ରୋପଚାର ଦ୍ୱାରା ଭଲ କରାଯିବା ଫଳରେ ମୋ ରୂପର ଏମିତି ପରିବର୍ତ୍ତନ ହୋଇ ଯାଇଛି ।

ଶାମବାବୁଙ୍କ ହାବଭାବ ଦେଖି ଡାକ୍ତରମାନଙ୍କ ଚିନ୍ତା ହେଲା, ସେମାନେ ଶାମବାବୁ ବୋଲି ଯାହାକୁ ଚିକିତ୍ସା କରି ଭଲ କଲେ, ସିଏ ଦେଖିବାକୁ ରୂପରେ ଶାମବାବୁ ହେଲେହେଁ ସେ ନିଜକୁ ଶାମବାବୁ ବୋଲି ଭାବୁ ନାହାନ୍ତି । ସେ ନିଜକୁ କହୁଛନ୍ତି ଲକ୍ଷ୍ମଣ ଜୟକାର । ସିଏ ପ୍ରକୃତରେ ଶାମକିଷନ୍ ଅଗ୍ରୱାଲ ବୋଲି କହିଲେ ସେ ହସି ହସି ଗଡ଼ି ଯାଉଛନ୍ତି । ସେ ହସି ହସି କହୁଛନ୍ତି, "ଏହା କେମିତି ହେବ । ମୁଁ ତ ଲକ୍ଷ୍ମଣ, ମୁଁ ଶାମ ହେବି କେମିତି ?" ଦେବବାବୁ ଓ ତାଙ୍କ ପରିବାରର ଲୋକେ ତାଙ୍କୁ ଯେତେ ବୁଝାଇଲେହେଁ ଯେ ସେ ଲକ୍ଷ୍ମଣ ନୁହନ୍ତି, ସେ ଶାମ, ସେ ତାହା ଗ୍ରହଣ କରିବାକୁ ରାଜି ନୁହନ୍ତି । ଓଲଟି କହୁଛନ୍ତି "ଆପଣମାନେ ମୋ ମୁଣ୍ଡ ଖରାପ କରିଦେବେ । ମୋତେ ଆପଣମାନେ ଏମିତି କ'ଣ ଭୁଲଭାଲ କହୁଛନ୍ତି ।"

ଦେବବାବୁ ତାଙ୍କୁ ଯେତେ ବୁଝାଇଲେହେଁ ଯେ ସେ ହେଉଛନ୍ତି ତାଙ୍କ ନାତି ଶାମକିଷନ, ସେ କିଛି ଉତ୍ତର ଦେବେ କଅଣ, ହସି ହସି ଗଡ଼ି ଯାଉଥାନ୍ତି । ସେ ଓଲଟି କହନ୍ତି, ଆପଣ ମୋତେ ନିଶ୍ଚୟ ପ୍ରତାରଣା କରୁଛନ୍ତି । ମୁଁ ଆପଣଙ୍କ ନାତି କେମିତି ହେବି ? ଆପଣ ତ ମୋ ବୟସର ଦେଖା ଯାଉଛନ୍ତି, ମୁଁ ଆପଣଙ୍କ ନାତି କେମିତି ହେବି କହିଲେ ?

ଦେବବାବୁ ଏଭଳି ଯୁକ୍ତି ଶୁଣି ଚୁପ୍ ରହନ୍ତି । ସେ ଜାଣନ୍ତି ସେ କିଭଳି ତାଙ୍କ ନାତି, ହେଲେ ବୁଝାଇଲେହେଁ ସେ ବୁଝିବେ ନାହିଁ । ତେଣୁ ବୁଝାଇ ଲାଭ କଅଣ ?

"ଆପଣମାନେ ମିଛକଥା କହୁଛନ୍ତି । ମୁଁ ସମ୍ପଦପୁର ଗାଁର ଲୋକ । ଆପଣଙ୍କ ପରିବାରର କେହି ନୁହେଁ । ଆପଣମାନେ ଖାଲି ମୋତେ ଭଣ୍ଡାଉଛନ୍ତି । ମୁଁ

ଆପଣମାନଙ୍କର ଲୋକ ହୋଇଥିଲେ, ମୁଁ କ'ଣ ଆପଣମାନଙ୍କୁ ଚିହ୍ନନ୍ତିନି ? କାହିଁ ମୁଁ ତ ଆପଣମାନଙ୍କ ଭିତରୁ କାହାରିକୁ ଚିହ୍ନୁନି ଦେଖୁଛି । ଆପଣମାନେ ମୋତେ ପାଗଳ କରିଦେବେ । ଆପଣମାନେ ମୋତେ ମୋ ଗାଁକୁ ଯିବାକୁ ଛାଡୁ ନାହାନ୍ତି କାହିଁକି ? ମୁଁ ଆପଣମାନଙ୍କର କିଛି ଦୋଷ କରିନି । ଆପଣମାନେ ମୋତେ ଅଯଥାରେ ଏତେ ଦଣ୍ଡ ଦେଉଛନ୍ତି କାହିଁକି ?

ଯେଉଁଦିନ ଶାମବାବୁଙ୍କୁ ଡାକ୍ତରଖାନା ଛାଡ଼ି ଘରକୁ ଯିବା ପାଇଁ ଅନୁମତି ମିଳିଗଲା, ତାଙ୍କୁ ଘରକୁ ନେବା ପାଇଁ ଦେବବାବୁଙ୍କ ସମେତ ପରିବାରର ସମସ୍ତେ ଡାକ୍ତରଖାନାକୁ ଆସିଥିଲେ । କିନ୍ତୁ ସେ ସେମାନଙ୍କ ସହିତ ଘରକୁ ଯିବାକୁ ନାରାଜ । ତାଙ୍କ ଜିଦ୍ ସେ ତାଙ୍କ ନିଜ ଗାଁ ସମ୍ପଦପୁରକୁ ଯିବେ । ସେଠି ତାଙ୍କ ସ୍ତ୍ରୀ, ମା, ଭଉଣୀ, ବାପା ଆଦି ସମସ୍ତେ ଅଛନ୍ତି । ତାଙ୍କ ଘରଦ୍ୱାର, ବାଡ଼ିବଗିଚା ସବୁକିଛି ସମ୍ପଦପୁରରେ । ସେ ସେଠିକି ନ ଯାଇ ସେମାନଙ୍କ ସହିତ ଯିବେ କାହିଁକି ? ସେ ତ ସେମାନଙ୍କୁ କାହାରିକୁ ଚିହ୍ନୁ ନାହାନ୍ତି । ସେମାନଙ୍କ ଘର କେଉଁଠି ସେ ଜାଣନ୍ତିନି । ତଥାପି ସେମାନଙ୍କ ସହିତ ଯିବା ପାଇଁ ଏତେ ଜିଦ୍ କାହିଁକି ?

ଦେବବାବୁ ଓ ଶାନ୍ତାଦେବୀ ବହୁତ ସାକୁଲାସାକୁଲି କରି କହିଲେ ଯେ ଆଗେ ସେ ତାଙ୍କ ଘରକୁ ଯାଆନ୍ତୁ । ସେଠାରେ ଦୁଇ ତିନିଦିନ ରହିବାପରେ ସେମାନେ ତାଙ୍କୁ ସମ୍ପଦପୁର ଗାଁକୁ ପଠାଇଦେବେ । ତାଙ୍କ ଯିବାଆସିବାର ସବୁ ସୁବିଧା ସେମାନେ କରିଦେବେ । ତାଙ୍କର କିଛି ଅସୁବିଧା ହେବନି । ବୁଝାସୁଝା କଲାପରେ ସେ ଦେବବାବୁଙ୍କ ପରିବାର ସହିତ ଯିବା ପାଇଁ ରାଜି ହେଲେ । ସର୍ତ୍ତ ହେଲା, ସେମାନେ ଠିକ୍ ଦୁଇଦିନ ପରେ ତାଙ୍କୁ ସମ୍ପଦପୁର ଗାଁକୁ ପଠାଇଦେବେ ।

ଶାମବାବୁ ଡାକ୍ତରଖାନାରୁ ଭଲ ହୋଇ ଫେରି ଆସୁଛନ୍ତି, ଶୁଣି ସାରା ଶିଳ୍ପନଗରୀରେ ଆନନ୍ଦର ଢେଉ ଖେଳିଗଲା । ସମସ୍ତେ ଖୁସି ସେମାନଙ୍କର ପ୍ରିୟ ଶାମବାବୁ ଶେଷରେ ଜୀବନପାଇ ଫେରି ଆସୁଛନ୍ତି । ଭଗବାନଙ୍କର ସେମାନଙ୍କ ପ୍ରତି ଅଗାଧ କରୁଣା । ଶାମବାବୁଙ୍କୁ ଶିଳ୍ପନଗରୀରେ ସ୍ୱାଗତ ସମ୍ବର୍ଦ୍ଧନା କରିବା ପାଇଁ ବିରାଟ ଆୟୋଜନ, ନାନା ଜାତିର ସ୍ୱାଗତ ତୋରଣ, ଅସୁମାରି ବିଭିନ୍ନ ବର୍ଣ୍ଣର ପତ୍ରପୁଷ୍ପରେ ହସିଉଠୁଛି ।

ବିରାଟ ଶିଳ୍ପନଗରୀ ଭିତରଦେଇ ଶାମବାବୁଙ୍କୁ ଯେତେବେଳେ ତାଙ୍କ ନଅରକୁ ନିଆଗଲା, ଏତେବଡ଼ ଶିଳ୍ପନଗରୀ ଦେଖି ସେ ତାଟଙ୍ଗା । ରାସ୍ତାର ଦୁଇପାର୍ଶ୍ୱରେ ଶହ ଶହ ଲୋକ ତାଙ୍କୁ ନମସ୍କାର ଜଣାଇ ସ୍ୱାଗତ କରୁଥାନ୍ତି । ଶଙ୍ଖ, ହୁଳହୁଳି ଧ୍ୱନିରେ ରାସ୍ତାଘାଟ କମ୍ପି ଉଠୁଥାଏ । ନିଜ ପ୍ରତି ଏସବୁ ଅପୂର୍ବ ସମ୍ମାନ ଦେଖି

ସେ ତାଟଙ୍ଗା । ଭାବିଲେ, ଏ କ'ଣ ଏମାନେସବୁ ମୋତେ କ'ଣ ଚିହ୍ନିଲା ଭଳି ସମ୍ମାନ ଦେଖାଉଛନ୍ତି । ନଅର ସମ୍ମୁଖରେ ଯେତେବେଳେ ତାଙ୍କ ଗାଡ଼ି ଲାଗିଲା ଏତେବଡ଼ ନଅର ଦେଖି ସେ ତାଟଙ୍ଗା । ନଅରଟି ଶହ ଶହ ପ୍ରାସାଦରେ ଭରା । ଗୋଟିଏ ମୁଣ୍ଡରୁ ଅନାଇଲାବେଳକୁ ଆରମୁଣ୍ଡ ଦେଖାଯାଉନି । ସେ ଆଶ୍ଚର୍ଯ୍ୟ ହେଉଥାନ୍ତି । ଏତେବଡ଼ ଧନୀ ପରିବାରର ଲୋକେ ତାଙ୍କ ପଛରେ ପାଗଳଙ୍କ ଭଳି ଲାଗିଛନ୍ତି କାହିଁକି ? ନିଜର ଲୋକଭଳି କଥାବାର୍ତ୍ତା, ବ୍ୟବହାର । ସତେଯେମିତି ସେମାନଙ୍କ ସହିତ ତାଙ୍କର ଘନିଷ୍ଠ ପରିଚୟ ଅଛି । କାହିଁ ସେ ତ କାହାରିକୁ ଚିହ୍ନିପାରୁ ନାହାନ୍ତି । ନିଜର ଜଣେସୁଦ୍ଧା ଚିହ୍ନାଲୋକ ସେ ଏଠି ଦେଖିବାକୁ ପାଉ ନାହାନ୍ତି । ଏ ଲୋକଗୁଡ଼ାକ ପାଗଳ ନା କ'ଣ ?

ଶାମବାବୁଙ୍କୁ କାର୍‌ରୁ ବୈଠକଖାନା ଭିତରକୁ ନିଆଗଲା । ସେ ବୈଠକଖାନାରେ ବସିଛନ୍ତି କି ନାହିଁ ଦଳେ ସୁନ୍ଦରୀ ସ୍ତ୍ରୀଲୋକ ଆସି ଗୋଟିଏ ରୁପାଥାଳିରେ ଅରୁଆ ଚାଉଳ, ନଡ଼ିଆ, ଦୀପ, ଫୁଲ ରଖି ତାଙ୍କୁ ବନ୍ଦାଇଲେ । ଶାମବାବୁ ଭାବିଲେ, ଏ କ'ଣ ? ଘରକୁ ଆସିବା ପାଇଁ ଆଗମନୀ ବନ୍ଦାପନା କଅଣ ପାଇଁ ? ସେ କ'ଣ କେବେ ଏହିଘରେ ଥିଲେ ? ଲୋକଗୁଡ଼ାକ ତାଙ୍କୁ ନେଇଆସି ଭୁଲ କରୁ ନାହାନ୍ତି ତ ? ଏଭଳି ଘର ସେ ତ କେବେ ଦେଖି ନ ଥିଲେ । ଏତେବଡ଼ ଧନୀ ପରିବାରର ଲୋକ ସେ ତ ନ ଥିଲେ । ସେ ତ ସମ୍ପଦପୁରର ଏକ ସାଧାରଣ ଛୋଟକାଟିଆ ଜମିଦାର ପରିବାରର । ଏମାନେ କ'ଣ ପାଇଁ ତାଙ୍କୁ ଏ ଘରର ଲୋକ ବୋଲି ଭାବୁଛନ୍ତି ?

ସ୍ତ୍ରୀଲୋକମାନେ ବନ୍ଦାପନା ସାରି ଚାଲିଗଲା ପରେ ଅଳ୍ପବୟସର ସୁନ୍ଦରୀ ସ୍ତ୍ରୀଟିଏ ଆସି ତାଙ୍କୁ ଘର ଭିତରକୁ ଯିବା ପାଇଁ ଡାକିଲେ । ଶାମବାବୁ ବହୁ ସୁନ୍ଦରୀ ସ୍ତ୍ରୀ ଦେଖିଛନ୍ତି । କିନ୍ତୁ ଏତେ ରୂପବତୀ ସ୍ତ୍ରୀ କେବେ ଦେଖି ନ ଥିଲେ । ଦେହ, ହାତ, ବେକରେ ସୁନା, ମଣିମୁକ୍ତାଖଚିତ ବହୁ ପ୍ରକାର ଗହଣା, ପରିଧାନ ଏକ ଲାଲରଙ୍ଗର ମୂଲ୍ୟବାନ ବନାରସୀ ଶାଢ଼ି, ମୁଖ ଉପରେ ନାନା ପ୍ରକାର ଅଙ୍ଗରାଗର ସାଜସଜ୍ଜା ତାଙ୍କୁ ସ୍ୱର୍ଗର ଅପ୍ସରୀ ଭଳି ପ୍ରତୀୟମାନ କରାଉଥାଏ । ସ୍ତ୍ରୀଟି ତାଙ୍କ ହାତଧରି ଭିତର ଘରକୁ ନେଲା । ଶାମବାବୁ ଭାବୁଥାଆନ୍ତି, ଏ ଲୋକଗୁଡ଼ାକ ନିଶ୍ଚୟ ପାଗଳ । ତା ନ ହୋଇଥିଲେ ତାଙ୍କୁ ନିଜର 'ଲୋକ ଭାବି ଏ ଘର ଭିତରକୁ ନେଇ ଆସନ୍ତେ କାହିଁକି ? ପରମୁହୂର୍ତ୍ତରେ ଭାବୁଥାନ୍ତି, ଏହା କେମିତି ହେଲା ? ଏମାନେ ତାଙ୍କର କ'ଣ ହେବେ ?

ଯୁବତୀଟି ତାଙ୍କୁ ନେଇ ଭିତର ଶୟନକକ୍ଷର ଏକ ସୁସଜ୍ଜିତ ପଲଙ୍କ ଉପରେ ବସାଇଦେଇ କହିଲା, "ତମେ ଏଇଠି ବିଶ୍ରାମ କର । ମୁଁ ତୁମ ପାଇଁ ଚା'

ନେଇଆସେ ।'' କିଛି ସମୟପରେ ସ୍ତ୍ରୀଟି ଫେରି ଆସିଲା । ତା ପଛରେ ପରିଚାରିକାଟିଏ । ହାତରେ ଚା' ଓ ଜଳଖିଆ ପ୍ଲେଟ୍ ଧରି ଆସିଛି । ନିକଟସ୍ଥ ଟିପୟ ଉପରେ ଥୋଇଦେଇ ସେ ଚାଲିଗଲା । ଏଥର ଯୁବତୀଟି ପାଖ ସୋଫାରେ ବସି ଗରମ ଚା'କୁ ଗୋଳାଉ ଗୋଳାଉ କହିଲା, ''ତୁମେ ଜୀବନ ନେଇ ଫେରିଆସିବ ବୋଲି ମୋର ବିଶ୍ୱାସ ନ ଥିଲା ସ୍ୱାମୀ ।''

ଏତକ ଶୁଣି ଚମକିପଡ଼ିଲେ ଶାମବାବୁ । ମନେ ମନେ ଭାବିଲେ, ଆଁ, ଏ କ'ଣ ମୋତେ ସ୍ୱାମୀ ବୋଲି କହୁଛି ? ମୁଁ ତ ଏହାର ସ୍ୱାମୀ ନୁହେଁ । ମୋ ସ୍ତ୍ରୀ ତ ଏକ ଅଲଗା ସ୍ତ୍ରୀ ଲୋକ । ଇଏ ତ ମୋ ସ୍ତ୍ରୀ ନୁହେଁ । ଅଥଚ ମୋତେ ସ୍ୱାମୀ ବୋଲି ସମ୍ବୋଧନ କରୁଛି କେମିତି ? ମୁଁ ଦେଖୁଛି, ଏମାନେ ମୋତେ ପାଗଳ କରିଦେବେ ।

ସଜଳଆଖିରେ ସ୍ତ୍ରୀଟି ପୁଣି କହିଚାଲିଲେ, ''ମୋ ଶଙ୍ଖା ସିନ୍ଦୂରର ଭାଗ୍ୟ ବଡ଼ ଟାଣ ସ୍ୱାମୀ, ଯାହାପାଇଁ କି ମୁଁ ଆଜି ତୁମକୁ ଫେରି ପାଇଲି ।''

''ଫେର୍ କ'ଣ ସ୍ୱାମୀ ବୋଲି କହୁଛି ? କିଏ ଏଇ ଯୁବତୀ ? ମୋତେ ଭୁଲରେ ବାରମ୍ବାର ସ୍ୱାମୀ ବୋଲି କହୁନାହିଁ ତ ? ସେ ଭୁଲରେ ମୋତେ ଘର ଭିତରକୁ ନେଇ ଆସିଛି ନା କଅଣ ?''

ଶାମବାବୁ ସ୍ଥିର ହୋଇ ବସିଥିଲେ । ଯୁବତୀଟି କ'ଣ କହୁଥିଲା ଶୁଣି ଯାଉଥିଲେ । ଏଥର ଆଉ ସ୍ଥିର ହୋଇ ବସି ନ ପାରି କହିଲେ, ''ଆପଣ କିଏ ? ମୋତେ ଆପଣ ଏତେ ଆଦର ଦେଖାଉଛନ୍ତି କାହିଁକି ? ଆପଣ ମୋର କ'ଣ ହେବେ ? ମୁଁ ତ ଆପଣଙ୍କୁ ଚିହ୍ନିପାରୁନି ।''

''ଆଁ, ତୁମେ ମୋତେ ଚିହ୍ନିପାରୁନ ?'' ବ୍ୟଥାଭରା କଣ୍ଠରେ କହିଲା ଯୁବତୀଟି । ''ମୁଁ ପରା ତୁମ ସ୍ତ୍ରୀ ରତ୍ନା ? ଦୁଇବର୍ଷ ତଳେ ଆମର ବିବାହ ହୋଇଥିଲା । ତୁମର କ'ଣ ମନେ ନାହିଁ ? ତୁମେ କ'ଣ ଏତେ ଶୀଘ୍ର ଭୁଲିଗଲ ?''

ରତ୍ନାଦେବୀ ମନେ ମନେ ଭାବୁଥାଆନ୍ତି, ''ଏ କ'ଣ ହେଲା, ଏ କ'ଣ ମୋତେ ମୋଟେ ଚିହ୍ନିପାରୁ ନାହାନ୍ତି । ଅଚିହ୍ନା ଲୋକଭଳି କଥାବାର୍ତ୍ତା କରୁଛନ୍ତି । କାର୍ ଦୁର୍ଘଟଣା ଯୋଗୁଁ ଏ କ'ଣ ନିଜ ସ୍ମରଣଶକ୍ତି ପୂରାପୂରି ହରାଇ ବସିଛନ୍ତି ? ଦୁର୍ଘଟନାରେ ଏମିତି ହୁଏ ନା କଅଣ ? ହୁଏତ କିଛିଦିନ ପରେ ସେ ନିଜ ସ୍ମୃତିଶକ୍ତି ଫେରି ପାଇବେ । କିନ୍ତୁ ଏ ଯଦି ମୋଟେ ପୂର୍ବସ୍ମୃତି ଫେରି ନ ପାଆନ୍ତି, ତେବେ ଇଏ ତ ମୋତେ ନିଜ ସ୍ତ୍ରୀ ଭଳି କେବେ ସ୍ୱୀକାର କରିବେନି । ସେତେବେଳେ ମୁଁ କଅଣ କରିବି ?''

ଭାବୁ ଭାବୁ ହଠାତ୍ ତାଙ୍କ ଚିନ୍ତାରାଜ୍ୟ ଶୂନ୍ୟ ହୋଇଗଲା ପରି ତାଙ୍କୁ ବୋଧହେଲା । ତାଙ୍କୁ ଚାରିଆଡ଼ ଅନ୍ଧାର ଦିଶିଲା । ଭାବିଲେ ଭଗବାନ ତାଙ୍କ ଭାଗ୍ୟରେ ଆହୁରି କି ଦୁଃଖ କଷ୍ଟ ଲେଖିଛନ୍ତି କେଜାଣି ।

ଠିକ୍ ଦୁଇଦିନ ରହିବାପରେ ଶାମବାବୁ ନିଜ ଗାଁ ସମ୍ପଦପୁରକୁ ଯିବାକୁ ବାହାରିଲେ । ଦେବବାବୁ ତାଙ୍କ ଯିବାପାଇଁ ସମସ୍ତ ବ୍ୟବସ୍ଥା କରି ସାରିଥାନ୍ତି । ତାଙ୍କର ନିଜର ବିରାଟ କେଡ଼ିଲାକ୍ ଗାଡ଼ିରେ ସେ ଯିବା ପାଇଁ ସମସ୍ତ ବନ୍ଦୋବସ୍ତ କରିଥାନ୍ତି । ତାଙ୍କର ଯିଏ ସବୁଠାରୁ ବିଶ୍ୱସ୍ତ ଡ୍ରାଇଭର ତାକୁ ଗାଡ଼ି ଚଳାଇବା ପାଇଁ କୁହା ଯାଇଥାଏ । ଦେବବାବୁ ନିଭୃତରେ ସେହି ଡ୍ରାଇଭରକୁ ଡାକି କହିଲେ, 'ଦେଖ, ମୁରଲୀ, ତୁମେ ମୋର ଅତି ବିଶ୍ୱସ୍ତ । ତୁମେ ଶାମବାବୁଙ୍କୁ ନେଇକରି ଯାଅ ସମ୍ପଦପୁର ଗାଁକୁ । ସେ ଯେଉଁଠାରେ କହିବେ, ସେହିଠାରେ ଗାଡ଼ି ରଖିବ । ଯେଉଁ ଘରଠାକୁ ଗାଡ଼ି ଚଳାଇବା ପାଇଁ କହିବେ, ତୁମେ ସେଠାକୁ ଗାଡ଼ି ନେଇକରି ଯିବ । ଦେଖ, ତାଙ୍କର ଯେମିତି ଅବାଧ ନ ହୁଅ । ଭଲ ହେଲାପରେ ଶାମବାବୁଙ୍କର ସାମାନ୍ୟ ମସ୍ତିଷ୍କ ବିକୃତି ଘଟିଛି । ସେ କହୁଥିବା ଗାଁରୁ ଫେରି ଆସିଲେ ତାଙ୍କ ମୁଣ୍ଡ ଠିକ୍ ହୋଇଯିବ । ତେବେ ସେ ଯେଉଁ ଘରକୁ ଯିବେ, ସେ ଘରର ମାଲିକ କିଏ; ତାଙ୍କର ଇଏ କ'ଣ ହେବେ, ଏହାଙ୍କ ପ୍ରକୃତି, ସ୍ୱଭାବ ଚରିତ୍ର ସବୁ କେମିତି, ସେଠା ପାଖ ପଡ଼ିଶାଙ୍କଠାରୁ ଗୋପନରେ ବୁଝି ଆସିବ । ମୁଁ ତୁମକୁ ଯାହାସବୁ କହିଲି ଗୋପନ ରଖିବ । ଦେଖ, ଏ କଥା ଆଉ ଯେମିତି କେହି ନ ଜାଣନ୍ତି ।'

ଯଥାସମୟରେ ଶାମବାବୁ ସମ୍ପଦପୁର ଅଭିମୁଖେ ବାହାରିଗଲେ ଦେବବାବୁଙ୍କ ନିଜ କେଡ଼ିଲାକ୍ ଗାଡ଼ିରେ । ଗାଡ଼ିର ଡ୍ରାଇଭର ଧଳା ଚୋଗାଚପ୍‌କନ୍ ପିନ୍ଧା ଡ୍ରାଇଭର ମୁରଲୀ । ସମ୍ପଦପୁରରେ ପହଞ୍ଚିବାକୁ ମାତ୍ର ଅଢ଼େଇଘଣ୍ଟା ଲାଗିଲା । ଶାମବାବୁଙ୍କ ନିର୍ଦ୍ଦେଶ ଅନୁସାରେ ଗାଡ଼ିଯାଇ ଏକ ଛୋଟିଆ ଏକତାଲା କୋଠାଘର ସମ୍ମୁଖରେ ରହିଲା । କୋଠାଘର ଆଗରେ ଏତେବଡ଼ କେଡିଲାକ୍ ଗାଡ଼ି ଠିଆ ହେବାର ଦେଖି ସମସ୍ତେ ତାଟଙ୍ଗା । ପୁଣି ଗାଡ଼ିର ଡ୍ରାଇଭର ଧଳାମଖମଲି କନାର ଚୋଗାଚପକନ୍ ସହିତ ମୁଣ୍ଡରେ ସୁନେଲିବର୍ଡ଼ର ଥିବା ଟୋପି ପିନ୍ଧିଥିବାର ଦେଖି ସେଠାକାର ଲୋକେ କିଛି ଭାବିପାରିଲେନି । ମନରେ ସେମାନଙ୍କର ବିରାଟ ପ୍ରଶ୍ନ, "ଏ କିଏ ? ଏତେ ବଡ଼ଲୋକ କେଉଁଠୁ ଆସିଲେ ? କିଏ କିଏ ଭାବିଲେ ଇଏ ଲାଟ୍‌ସାହେବଙ୍କ ଗାଡ଼ି ନୁହେଁ ତ ? ଲାଟ୍‌ସାହେବ ଏଇଭଳି ଗାଡ଼ିରେ ଯିବାଆସିବା କରନ୍ତି ।"

ଘରର ମାଲିକ ଓ ମାଲିକାଣୀ ଓ ଘରର ସ୍ତ୍ରୀଲୋକମାନେ ଦାଣ୍ଡପିଣ୍ଡାକୁ ଦୌଡ଼ି ଆସିଲେ ଦେଖିବା ପାଇଁ, ସେମାନଙ୍କ ଘରକୁ କିଏ ଆସିଲେ ବୋଲି ।

ନିଶ୍ଚୟ କୌଣସି ବଡ଼ଲୋକ ତାଙ୍କ ଘରକୁ ଆସିଛନ୍ତି । କିନ୍ତୁ କ'ଣ ପାଇଁ ? ତାଙ୍କ ବାପା ମା ଭାବିପାରିଲେନି ଏତେବଡ଼ ଗାଡ଼ିରେ ତାଙ୍କ ଘରକୁ କିଏ ଆସିପାରେ ? ଭୁଲରେ କେହି ଚାଲି ଆସି ନାହାନ୍ତି ତ ?

ଗାଡ଼ିରୁ ଓହ୍ଲାଇଲେ ଜଣେ ସୁଶ୍ରୀ ଯୁବକ, ବୟସ ଚବିଶ ପଚିଶ ଭିତରେ । ଗୋରା ତକ୍‌ତକ୍ ଚେହେରା, ଦେହରେ ମୂଲ୍ୟବାନ ପୋଷାକ । ସେ ଓହ୍ଲାଇବା ପୂର୍ବରୁ ଡ୍ରାଇଭର ଗାଡ଼ିର ଦୁଆର ଖୋଲି ଠିଆ ହେଲା । ଯୁବକଟିକୁ ଦେଖି ସମସ୍ତେ ତାଟଙ୍ଗା । ସେତେବେଳକୁ ଗାଁର ବହୁତ ଲୋକ ସେଠି ଜମା ହୋଇଗଲେଣି । ସମସ୍ତେ ଏଇ ସୁଶ୍ରୀ ଯୁବକଟିକୁ ଅନାଇଥାନ୍ତି । ଭାବିପାରୁ ନ ଥାନ୍ତି, ଏ କିଏ ? ଏମିତିଲୋକ କେବେ ସେମାନଙ୍କ ଗାଁକୁ ଆସିବାର ସେମାନେ ତ ଦେଖିନାହାନ୍ତି ।

ଶାମବାବୁ ଗାଡ଼ିରୁ ଓହ୍ଲାଇ ସଙ୍ଗେ ସଙ୍ଗେ ପିଣ୍ଡାରେ ଠିଆ ହୋଇଥିବା ବୃଦ୍ଧଲୋକଙ୍କଠାକୁ ଯାଇ ମୁଣ୍ଡିଆ ମାଇଲେ । ବୃଦ୍ଧଲୋକଟି ଜଣେ ଅଚିହ୍ନା ଯୁବକକୁ ମୁଣ୍ଡିଆମାରିବା ଦେଖି ପଛକୁ ଘୁଞ୍ଚିଗଲେ । ମନ ଭିତରେ ତାଙ୍କର ପ୍ରଶ୍ନ, ଏହି ଯୁବକଟି କିଏ, ତାଙ୍କୁ ମୁଣ୍ଡିଆମାରୁଛି କାହିଁକି ? ବାପାଙ୍କୁ ମୁଣ୍ଡିଆ ମାରିସାରି ମା'ଙ୍କୁ ମୁଣ୍ଡିଆ ମାରିଲେ । ମା'ଙ୍କ ପାଟିରୁ ବାହାରିପଡ଼ିଲା, ''ତୁ କିଏ ବାପ ? ମୁଁ ତ ତୋତେ ମୋଟେ ଚିହ୍ନିପାରୁନି । ତୁ ମୋତେ ମୁଣ୍ଡିଆ ମାରୁଛୁ କାହିଁକି କହିଲୁ ବାପ ।''

ମା'ଙ୍କୁ ଏଭଳି କହିବାର ଦେଖି ଶାମବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ ''ଆଁ, ଏ'କଣ ହେଲା ? ମୋ ବାପା ମା ମୋତେ କ'ଣ ଚିହ୍ନିପାରୁ ନାହାନ୍ତି ?''

ତହୁଁ ସେ ମା'ଙ୍କୁ ଲକ୍ଷ୍ୟକରି କହିଲେ, ''ତୁ କ'ଣ ମୋତେ ଚିହ୍ନିପାରୁନୁ ମା । ମୁଁ ପରା ତୋ ପୁଅ ଲକ୍ଷ୍ମଣ ।''

''ମୋ ପୁଅ ? ଲକ୍ଷ୍ମଣ ? ନା, ତୁ ତ ମୋ ପୁଅ ଲକ୍ଷ୍ମଣ ନୋହୁ । ଲକ୍ଷ୍ମଣ ତ କେତେଦିନ ହେଲା ମରିଗଲାଣି ।''

''ନା, ମା, ତୁମ ପୁଅ ଲକ୍ଷ୍ମଣ ମରିନି । କାର୍. ଏକ୍‌ସିଡେଣ୍ଟ୍‌ରେ କ୍ଷତବିକ୍ଷତ ହୋଇ ସେ ଡାକ୍ତରଖାନାରେ ପଡ଼ିଥିଲା । ଏବେ ଭଲ ହୋଇ ଆସିଛି ମା ? ମୁଁ ପରା ତମର ସେହି ପୁଅ ଲକ୍ଷ୍ମଣ ? ଢେର୍‌ଦିନ ଡାକ୍ତରଖାନାରେ ପଡ଼ି ପଡ଼ି ଭଲ ହେଲି । ତୁମେସବୁ କେହି ମୋ'ଠାକୁ ଗଲନି । ସତେ ଯେମିତି ମୋତେ ଭୁଲିଗଲ ସମସ୍ତେ ।''

''ତୁ ତ ବାପା ଲକ୍ଷ୍ମଣ ନୋହୁ । ଲକ୍ଷ୍ମଣ ଚେହେରା ତ ତୋ'ଠାରେ ଟିକିଏ ହେଲେ ବି ନାହିଁ । ସେ ତ ମରି ଯାଇଛି, ଆସିବ କୁଆଡୁ ? ସେ ବିଚରା

କେତେ ମନ କରି ବମ୍ବେ ସହରକୁ ଯାଇ ନ ଥିଲା, ମା ପାଇଁ ଔଷଧ ଆଣିବ ବୋଲି । ଏଠି ସେ ଔଷଧ ମିଳୁ ନ ଥିଲା । ପୁଅ ଆଉ ଫେରିଲାନାଇଁ ବମ୍ବେରୁ । ଆମେ ତା ଫେରିବା ପଥକୁ ଅନାଇ ଅନାଇ ନିରାଶ ହେଲୁ । ଶେଷରେ ତା ବାପା ତାକୁ ଖୋଜିବା ପାଇଁ ବମ୍ବେ ଗଲେ । ବମ୍ବେରେ ଶୁଣିଲେ ପୁଅର କାର୍ ଏକ୍‌ସିଡେଣ୍ଟ୍ ହୋଇଛି ବୋଲି । ଯେଉଁ ହସ୍‌ପିଟାଲରେ ପୁଅର ଏଡ୍‌ମିସନ ହୋଇଥିଲା, ତା ବାପା ସେଠାକୁ ଗଲେ । ସେଠି ଶୁଣିବାକୁ ପାଇଲେ ପୁଅର ମୃତ୍ୟୁ ହୋଇଯାଇଛି । ମୃତ୍ୟୁବେଳେ କେହି ନିଜର ଲୋକ ତା ପାଖରେ ନ ଥିବାରୁ ଡାକ୍ତରଖାନାର କର୍ମକର୍ତ୍ତାମାନେ ତା'ର ଶବ ସତ୍କାର କରି ଦେଇଥିଲେ । ଆମେ ସେସବୁ କିଛି ଜାଣି ପାରିଲୁନି । ତା ବାପା ସେଠୁ ତାର ମୃତ୍ୟୁ ସାର୍ଟିଫିକେଟ୍ ଓ ମୃତ୍ୟୁବେଳର କେତେଖଣ୍ଡ ଫଟୋ ନେଇ ଘରକୁ ଫେରିଲେ । ଆମ ଭାଗ୍ୟ ଖରାପ ବାପ, ତା ନ ହୋଇଥିଲେ ଆମେ କ'ଣ ଲକ୍ଷ୍ମଣ ଭଳି ଭେଣ୍ଡାପୁଅକୁ ହରାଇଥାନ୍ତୁ ?'' କହୁ କହୁ ବୃଦ୍ଧା କାନ୍ଦି ପକାଇଲେ । ପାଖରେ ବୃଦ୍ଧ ଠିଆ ହୋଇଥିଲେ ସେ ମଧ ଲୋତକ ସମ୍ବରଣ କରି ପାରିଲେନି ।

ଶାମବାବୁ କହିଲେ, ''ନା, ମା, ତୁମେ ବିଶ୍ୱାସକର ତୁମ ପୁଅ ଲକ୍ଷ୍ମଣ ମରିନି । ମୁଁ ପରା ତୁମ ଲକ୍ଷ୍ମଣ । ମୁଁ ମରିନି, ମୁଁ ବଞ୍ଚିଛି । ମୁଁ ଏଇ ତୁମମାନଙ୍କ ପାଖକୁ ଫେରି ଆସିଛି ମା ।''

''କିନ୍ତୁ ତୁ ବାପ ତ, ଆମ ପୁଅ ନୋହୁଁ । ଆମ ପୁଅ ତ ତୋ ଭଳି ନୁହେଁ । ତା ଚେହେରା ତ ତୋ ଚେହେରାଠାରୁ ଢେର୍ ଅଲଗା ।'' ବୃଦ୍ଧା ଘର ଭିତରକୁ ଚାଲିଯାଇ ଗୋଟିଏ ଫଟୋ ନେଇଆସି ଯୁବକଟିକୁ ଦେଖାଇ କହିଲେ, ''ଇଏ ହେଉଛି ମୋ ପୁଅ ଲକ୍ଷ୍ମଣ । ତୁ କେମିତି କହୁଛୁ ମୋ ପୁଅ ବୋଲି ? ତୋ ଚେହେରା ତ ଏହି ଫଟୋର ଚେହେରା ସହିତ ମିଳୁନି ।''

ଶାମବାବୁ ବୃଦ୍ଧାଙ୍କ ହାତରୁ ଫଟୋଟି ନେଇ ଦେଖିଲେ, କହିଲେ, ''ହଁ, ଏଇ ଫଟୋଟି ମୋର, ଚାରି ପାଞ୍ଚବର୍ଷ ତଳେ ଉଠା ହୋଇଥିଲା ।''

''କିନ୍ତୁ ତୋ ରୂପ ଏହି ଫଟୋ ସହିତ ତ ମିଳୁନି ବାପ ।''

''ଏକ୍‌ସିଡେଣ୍ଟ୍ ପରେ ବହୁଦିନ ଧରି ଡାକ୍ତରଖାନାରେ ପଡ଼ିଲି ମା । ମୋର ମୁହଁ, ନାକ, କାନ, ଆଖି ନଷ୍ଟ ହୋଇ ଯାଇଥିଲା । ପ୍ଲାଷ୍ଟିକ୍ ଅସ୍ତ୍ରୋପଚାର କରିବା ଫଳରେ ମୋ ରୂପ ବଦଳି ଯାଇଛି । ମୋ ରୂପ ବଦଳି ଯାଇଥିଲେହେଁ ମୋ ମଣିଷପଣିଆ ବଦଳିନି । ମୁଁ ଲକ୍ଷ୍ମଣ ବ୍ୟତୀତ ଅନ୍ୟ କେହି ନୁହେଁ ମା ! ମୋତେ ତୁମ୍ଭେମାନେ ବିଶ୍ୱାସ କର ।''

ଗାଁର ଯେଉଁ ଲୋକମାନେ ସେଠି ଠିଆ ହୋଇଥିଲେ ସେମାନଙ୍କ ଭିତରେ ଏକ ଗୁଞ୍ଜରଣ ଖେଳିଗଲା । ସେମାନଙ୍କ ମନରେ ପ୍ରଶ୍ନ ''ଇଏ ବାବୁ ତ ଆମ ଲକ୍ଷ୍ମଣବାବୁ ନୁହନ୍ତି । ଲକ୍ଷ୍ମଣବାବୁଙ୍କ ଚେହେରା୍ କାଣିଚାଏ ବି ୟାଙ୍କଠାରେ ନାହିଁ । ଏ କେମିତି ଆମ ଲକ୍ଷ୍ମଣବାବୁ ହେବେ ? ଆମ ଲକ୍ଷ୍ମଣବାବୁ ତ ମରି ଯାଇଛନ୍ତି । ଇଏ ପୁଣି କୁଆଡୁ ଅଇଲେ, କହୁଛନ୍ତି କ'ଣ ନା ଲକ୍ଷ୍ମଣବାବୁ ବୋଲି ।''

ଶାମବାବୁ ଗାଁଲୋକଙ୍କ ଆଡ଼କୁ ଅନାଇ କହିଲେ, ''ତୁମ୍ଭେମାନେ ମୋତେ ବିଶ୍ୱାସ କର, ମୁଁ ପ୍ରକୃତରେ ଲକ୍ଷ୍ମଣ । ତୁମ୍ଭେମାନେ କ'ଣ ମୋତେ ଚିହ୍ନିପାରୁନ ? ମୁଁ ତ ତୁମ୍ଭମାନଙ୍କୁ ସମସ୍ତଙ୍କୁ ଚିହ୍ନିପାରୁଛି । ହେଇ ତୁମେ ଗୋବିନ୍ଦ, ତୁମେ ଗୋପାଳ, ତୁମେ ଗିରିଧାରୀ, ତୁମେ ମୁକୁନ୍ଦ । ମୁଁ ଯଦି ଲକ୍ଷ୍ମଣ ନୁହେଁ, ତୁମ୍ଭମାନଙ୍କୁ ଚିହ୍ନୁଛି କେମିତି କହିଲ ? ଇଏ ଆମ ଘର, ଇଏ ମୋ ମା, ଇଏ ବାପା, ଇଏ ମୋ ସ୍ତ୍ରୀ । ମୁଁ ସମସ୍ତଙ୍କୁ ତ ଚିହ୍ନିପାରୁଛି, ତୁମ୍ଭେମାନେ ମୋତେ ଚିହ୍ନୁନ କେମିତି ? ଏଇ ଗାଁ, ଏଇ ଧୂଳି ମାଟି ପାଣି ପବନରେ ମୁଁ ବଡ଼ ହୋଇଛି । ତୁମ୍ଭମାନଙ୍କ ସହିତ ପିଲାଦିନେ କେତେ ଖେଳିଛି । ଅଥଚ ତୁମ୍ଭେମାନେ ମୋତେ କେହି ଚିହ୍ନିପାରୁନ ? ମୁଁ ଯେତେ କହିଲେ ହେଁ ଯେ ମୁଁ ଲକ୍ଷ୍ମଣ ତମେ କେହି ଗ୍ରହଣ କରୁନ ?''

''ଆମେ ଆପଣଙ୍କୁ କେମିତି ଚିହ୍ନିବୁ କହିଲେ ବାବୁ ? ଆପଣ ସିନା ଲକ୍ଷ୍ମଣବାବୁ ହୋଇଥିଲେ ଆମେ ଚିହ୍ନନ୍ତୁ । ଆପଣ ତ ଅଲଗା ଲୋକ । ଲକ୍ଷ୍ମଣବାବୁଙ୍କର କିଛି ଚିହ୍ନବର୍ଣ୍ଣ ଆପଣଙ୍କଠାରେ ନାହିଁ । କିଛି ସାମଞ୍ଜସ୍ୟ ଥିଲେ ସିନା ଆମେ ଚିହ୍ନନ୍ତୁ । ତାଛଡ଼ା ଲକ୍ଷ୍ମଣବାବୁ ପରା ମରିଗଲେଣି । ସେ କ'ଣ ତା'ହେଲେ ମଲାପରେ ମଶାଣିରୁ ଉଠି ଆସିଲେ ।''

''ମୁଁ ମରିନି । ନିହାତି ଭୁଲ କଥା । ତୁମ୍ଭେମାନେ ମୋତେ ବିଶ୍ୱାସକର ମୁଁ ଲକ୍ଷ୍ମଣ ।''

''ଦେଖନ୍ତୁ ବାବୁ, ଆପଣଙ୍କ ମୁଣ୍ଡ ସମ୍ଭବତଃ ଠିକ୍ କାମ କରୁନି । ତା' ନ ହୋଇଥିଲେ ଆପଣ କେଉଁଠିକା ଲୋକ, ଏଠି ଆସି କହନ୍ତେ ଆପଣ ଲକ୍ଷ୍ମଣବାବୁ ବୋଲି । ଲକ୍ଷ୍ମଣବାବୁ ତ ମରିଗଲେଣି । ତାଙ୍କ ବାପା ତ ହସ୍ପିଟାଲରୁ ତାଙ୍କ ମୃତ୍ୟୁ ସାର୍ଟିଫିକେଟ୍ ଘେନି ଆସିଛନ୍ତି । ଲକ୍ଷ୍ମଣବାବୁ ମରି ଦାହହେବା ପରେ ସେ ପୁଣି କେଉଁଠୁ ଆସିବେ ? ଆପଣ କହୁଛନ୍ତି, କ'ଣ ନା ଆପଣ ଲକ୍ଷ୍ମଣବାବୁ । ହେଇ ଦେଖନ୍ତୁ, ଲକ୍ଷ୍ମଣବାବୁଙ୍କ ମୃତ୍ୟୁ ପରେ ତାଙ୍କର ଏଠି ଶୁଦ୍ଧିକାର୍ଯ୍ୟ ହୋଇଯାଇଛି । ତାଙ୍କ ସ୍ତ୍ରୀ ବିଧବା ହୋଇ ସାରିଲେଣି । ହେଉ ତାଙ୍କ ସ୍ତ୍ରୀ କହନ୍ତୁ, ଆପଣ ତାଙ୍କର ସ୍ୱାମୀ କି ନୁହେଁ ?''

ବିଧବା ସ୍ତ୍ରୀଟି କାନ୍ଦି କାନ୍ଦି "ନା, ନା, ସେ ମୋ ସ୍ୱାମୀ ନୁହନ୍ତି" କହି ସେଠୁ ଘର ଭିତରକୁ ପଳାଇଗଲେ । ମୃତପୁଅର କଥା ମନେପକାଇ ପୁଣି ବୁଢ଼ାବୁଢ଼ୀ କାନ୍ଦିବାକୁ ଲାଗିଲେ ।

ଗ୍ରାମବାସୀମାନେ କଥା କୁହାକୁହି ହେଲେ, "ଇଏ ଯଦି ଲକ୍ଷ୍ମଣବାବୁ ନୁହନ୍ତି ଏ ଆମ ସମସ୍ତଙ୍କୁ ଚିହ୍ନି ପାରୁଛନ୍ତି କେମିତି ? କାହାକୁ ତ ଚିହ୍ନିବାରେ ଭୁଲ କରି ନାହାନ୍ତି, ବାପ, ମା, ସ୍ତ୍ରୀ, ଗାଁର ସମସ୍ତଙ୍କୁ ବେଶ୍ ଚିହ୍ନି ପାରୁଛନ୍ତି ।"

ସେଠୁ ଆଉଜଣେ କହିଲା, "ଆରେ, ତୁ ଜାଣିନୁ, ଯାଙ୍କ ମୁଣ୍ଡରେ ଲକ୍ଷ୍ମଣବାବୁଙ୍କ ପ୍ରେତ ସବାର ହୋଇଛି । ପ୍ରେତ ସବାର ହୋଇଥିଲେ, ସେ ଏଠାକାର ସବୁ ଜିନିଷ ଚିହ୍ନିପାରିବେ । ଶୁଦ୍ଧି କାମରେ କିଛି ଗଣ୍ଡଗୋଳ ହୋଇଛି ବୋଧେ, ନ ହେଲେ ସେ ପ୍ରେତ ହୋଇ ଏହାଙ୍କ ଉପରେ ସବାର ହୋଇଥାନ୍ତେ କାହିଁକି ?"

"ଆରେ, ତୁ ଆଚ୍ଛା କଥା କହୁଚୁ । ଇଏବାବୁ କିଏ, ଯାଙ୍କ ଘର କେଉଁଠି ? ଲକ୍ଷ୍ମଣବାବୁଙ୍କ ଭୂତ ଆଉ କାହାରି ଉପରେ ସବାର ନ ହୋଇ ଏହାଙ୍କ ଉପରେ ସବାର ହେଲା ।"

"ଆରେ, ତୁ ଜାଣିନୁ, ଲକ୍ଷ୍ମଣବାବୁଙ୍କ ଯେଉଁଠି ଶବସତ୍କାର ହେଲା, ତାଙ୍କ ପ୍ରେତ ସେଠି କୌଣସି ଗଛ ଉପରେ ଥିଲା । ଏ ବାବୁ, ଯେତେବେଳେ ସେହି ରାସ୍ତାରେ ଯାଇଛନ୍ତି, ଏହାଙ୍କ ଉପରକୁ ପ୍ରେତ ସବାର ହୋଇଯାଇଛି, ଏ ସେଠୁ ଘରଖୋଜି ଏଠି ଆସି ପହଞ୍ଚିଛନ୍ତି । ଯାଙ୍କ ଉପରେ ଲକ୍ଷ୍ମଣବାବୁଙ୍କ ପ୍ରେତ ସବାର ନ ହୋଇଥିଲେ ସେ ଏଠାକୁ ଆସିପାରି ନ ଥାନ୍ତେ କି ସେ ଏଠାକାର ସବୁକଥା କହିପାରୁ ନ ଥାନ୍ତେ । ତାଙ୍କ ଉପରେ ପ୍ରେତସବାର ହୋଇଥିବାରୁ ସେ ଲକ୍ଷ୍ମଣବାବୁଙ୍କ ଭଳି ସବୁକଥା କହିପାରୁଛନ୍ତି ।"

"ହଁ, ତୁମେ ଯାହାକହୁଛ ଠିକ୍ ? ଇଏ ବାବୁ ଜାଣିପାରୁ ନାହାନ୍ତି ଯାଙ୍କ ଉପରେ ପ୍ରେତସବାର ହୋଇଛି ବୋଲି । ଚାଲ, ଡ୍ରାଇଭରକୁ ଡାକି ପଚାରିବା । ସେ ବଳେ କହିବନି ଏ ବାବୁ କିଏ ? କେଉଁଠୁ ଆସିଛନ୍ତି । ଇଏ ଜଣେ ଅତିବଡ଼ ଧନୀଘରର ପିଲା ଭଳି ଜଣାପଡୁଛନ୍ତି । ମୁଣ୍ଡ ଖରାପ ହୋଇଯାଇଛି ବୋଧେ ।"

ସେମାନଙ୍କ ଭିତରୁ କେତେଜଣ ଯାଇ ଡ୍ରାଇଭର ମୁରଲୀକୁ ଏକ ନିରୋଳା ସ୍ଥାନକୁ ଡାକି ନେଇ ପଚାରିଲେ । ଡ୍ରାଇଭର ଶାମବାବୁଙ୍କ ସବୁକଥା ଟିକିନିଖି ଭାବରେ କହିଗଲା । କୋଟିପତି ଶେଠ୍ ଦେବକିଷନ ଅଗ୍ରୱାଲଙ୍କ ନାତି ବୋଲି ଯେତେବେଳେ ଡ୍ରାଇଭର ପାଖରୁ ଶୁଣିଲେ, ସେମାନେ ସମସ୍ତେ ଆଶ୍ଚର୍ଯ୍ୟରେ ଜିଭ କାମୁଡ଼ି ପକାଇଲେ ।

"ଆଁ, ଏତେବଡ଼ ଲୋକଙ୍କ ପିଲା, ଏମିତି ମସ୍ତିଷ୍କ ବିକୃତି ଘଟିଛି । ତା ଉପରେ ପୁଣି ଆମ ଲକ୍ଷ୍ମଣବାବୁଙ୍କ ପ୍ରେତ ସବାର ହୋଇଛି । ସିଏ ଆଉ ତାଙ୍କ ଘରେ ରହିପାରୁଛନ୍ତି କେମିତି ? ତାଙ୍କ ଘରୁ ସିଧାସଳଖ ପଳାଇ ଆସିଛନ୍ତି ଏଠାକୁ । ଡ୍ରାଇଭରକୁ ଡାକି ସେମାନେ ଚୁପ୍‌ଚୁପ୍ କହିଲେ, ଦେଖ ତୁମ ବାବୁଙ୍କୁ କହିବ, ଏହାଙ୍କ ଉପରେ ଆମ ଲକ୍ଷ୍ମଣବାବୁଙ୍କ ପ୍ରେତ ସବାର ହୋଇଛି । କୌଣସି ଗୋଟିଏ ଭଲ ଗୁଣିଆ ଡାକିଆଣି ଝଡ଼ାଇଦେଲେ ସେ ଭଲ ହୋଇଯିବେ । ଗୁଣିଆ ଭଲ କରିଦେଲେ ସେ ବାବୁଙ୍କ ପିଲା ଭଳି ବ୍ୟବହାର ଦେଖାଇବେ, କଥାବାର୍ତ୍ତା କରିବେ, ଆଉ ଏମିତି ହେବେନି । ଆମ ଲକ୍ଷ୍ମଣବାବୁ ସବାର ହୋଇଛନ୍ତି ବୋଲି ସେ ଠିକ୍ ଆମ ବାବୁଙ୍କଭଳି କଥାବାର୍ତ୍ତା କରୁଛନ୍ତି, ହାବଭାବ ଦେଖାଉଛନ୍ତି । ଏହାଙ୍କୁ ଭଲ ଗୁଣିଆ ନ ଦେଖାଇଲେ ସାଧାରଣ ଗୁଣିଆ ପାରିବେନି । ଗାଁଲୋକଙ୍କ ଏହିକଥା ଶୁଣି ମୁରଲୀ ଶେଠ୍‌ଙ୍କୁ ସବୁକଥା ଜଣାଇବ ବୋଲି କହିଲା । ସେଥିସହିତ ଇଏ ବାବୁ କିଏ, ଏ ଯେଉଁ ବାବୁ ମରିଗଲେ ସେ କ'ଣ କରନ୍ତି, ସବୁ ଠିକେ ଠିକେ ମୁରଲୀ କଥା ପ୍ରସଙ୍ଗରେ ଏମାନଙ୍କଠାରୁ ବୁଝିନେଲା । ଯେଉଁବାବୁ ମରିଗଲେ, ସେ ଭଲ ସ୍ୱଭାବର ଲୋକ ନୁହନ୍ତି ବୋଲି ଗାଁ ଲୋକଙ୍କଠାରୁ ଶୁଣିଲା । ସେ ଜଣେ ଜମିଦାର ଘରର ପିଲା ହେଲେ କଅଣ ହେବ, ମଦ, ଜୁଆରେ ସେ କାଳ କାଟୁଥିଲେ । ବାପ ମା'ଙ୍କ କଥା ନ ଶୁଣି ସେ ସର୍ବଦା ନିଛେ ମଦନିଶାରେ ଟୁଳୁଟୁଳୁ ହେଉଥିଲେ । ନିଜର ସମସ୍ତ ଧନସମ୍ପତ୍ତି ସେ ଏହା ଭିତରେ ଧ୍ୱଂସକରି ସାରିଲେଣି । ସେ ସେଦିନ ମଦଖାଇ ଗାଡ଼ି ଚଳାଉଥିବାରୁ ଏମିତି ମାରାତ୍ମକ ଦୁର୍ଘଟଣାର ଶିକାର ହୋଇ ନିଜ ଜୀବନ ଦେଲେ ।

ଗ୍ରାମବାସୀଙ୍କ ସହିତ ଏହି ମରିଯାଇଥିବା ବାବୁଙ୍କ ସମ୍ପର୍କରେ କଥାବାର୍ତ୍ତା ସାରି ମୁରଲୀ ଶାମବାବୁଙ୍କଠାକୁ ଫେରି ଆସିଲାବେଳକୁ ଶାମବାବୁ ନାନାପ୍ରକାର ପ୍ରମାଣ ଦେଉଥାନ୍ତି, ସେ ପ୍ରକୃତରେ ଲକ୍ଷ୍ମଣବାବୁ ବୋଲି । ସେ ଲକ୍ଷ୍ମଣବାବୁ ନୁହନ୍ତି ବୋଲି ପରିବାରର ଲୋକେ ନାନା ପ୍ରକାର ଯୁକ୍ତିବାଢ଼ି ତାଙ୍କୁ ଅସ୍ୱୀକାର କରୁଥାନ୍ତି । ଘରର ଲୋକେ ତାଙ୍କୁ ଘର ଭିତରକୁ ପୂରାଇବାକୁ ନାରାଜ, ଏଣେ ଶାମବାବୁ ସେଠୁ ବାହୁଡ଼ିବାକୁ ଅମଙ୍ଗ । ଏ ଅବସ୍ଥା ଦେଖି ଗାଁର ମୁଖିଆ ମୁଖିଆ ଲୋକେ ତାଙ୍କୁ ସେଠୁ ନିବର୍ତ୍ତାଇବାକୁ ଚେଷ୍ଟା କଲେ । ସେ ଯେ ପ୍ରକୃତରେ ଲକ୍ଷ୍ମଣବାବୁ ନୁହନ୍ତି ଭଲ ଭାବରେ ବୁଝାଇଦେଲେ । ସେ ଯେତେବେଳେ ଲକ୍ଷ୍ମଣବାବୁ ନୁହନ୍ତି, ତାଙ୍କ ବାପ, ମା, ସ୍ତ୍ରୀ ତାଙ୍କୁ ସ୍ୱୀକାର କରିବେ କେମିତି ? ତାଙ୍କୁ ସେମାନେ ବୁଝାଇଦେଲେ, "ଆପଣ ପ୍ରକୃତରେ ଶେଠ୍ ଦେବକିଷନ୍ ଅଗ୍ରୱାଲଙ୍କ ନାତି । ଏତେବଡ଼ ଧନୀଘରର ପିଲାହୋଇ ଏଠାକୁ ଆସି ଏଠା ଦୁଃସ୍ଥ ଜମିଦାର ପରିବାରରେ

କାହିଁକି କାଳ କଟାଇବେ; ପୁଣି ଯେତେବେଳେ ସେହି ପରିବାରର କେହି ଜଣେ ସୁଦ୍ଧା ତାଙ୍କୁ ଗ୍ରହଣ କରିବାକୁ ରାଜି ନୁହନ୍ତି ।'' ସେମାନେ ଶେଷରେ ତାଙ୍କୁ ଗୋଟିଏ କଥା କହି ବିଦାୟ ଦେଲେ । ''ଆପଣଙ୍କ ସ୍ତ୍ରୀ ଯେତେବେଳେ ଆପଣ ତାଙ୍କ ସ୍ୱାମୀ ବୋଲି ସ୍ୱୀକାର କରୁ ନାହାନ୍ତି, ତାଛଡ଼ା ବାପା ମା ଆମେ ସମସ୍ତେ ସ୍ୱୀକାର କରୁନୁ, ଆପଣ କେଉଁ ଭରସାରେ ଏଠି ରହିବେ ? ଆପଣ ଯେଉଁଠୁ ଆସିଥିଲେ ସେଠାକୁ ଫେରି ଯାଆନ୍ତୁ । ଆପଣ କେତେବଡ଼ ଧନୀଘରର ପିଲା, ଆପଣ ସେ ରାଜନଅର ଛାଡ଼ି ଏଠା ଭଙ୍ଗାକୁଡ଼ିଆରେ ଦିନ କାଟିବେ କାହିଁକି ?''

ପରିବାରର କେହି ତାଙ୍କୁ ଗ୍ରହଣ ନ କରିବା ଦେଖି ବାଧହୋଇ ଶାମବାବୁ ମୁରଲୀ ସହିତ ସେଦିନ ସମ୍ପଦପୁର ଗାଁରୁ ନିରାଶ ହୋଇ ଫେରିଆସିଲେ ।

## ତେର

ଶାମକିଷନଙ୍କୁ ଦେବବାବୁ ଫେରିପାଇଲେ ସତ, କିନ୍ତୁ ଏ ଶାମକିଷନ ଓ ସେ ଶାମକିଷନ ଭିତରେ ଆକାଶପାତାଳ ପ୍ରଭେଦ । ଡ୍ରାଇଭର ମୁରଲୀ ସାହାଯ୍ୟରେ ସେ ଯେଉଁସବୁ ତଥ୍ୟ ସମ୍ପଦପୁର ଗାଁରୁ ସଂଗ୍ରହ କରିଥିଲେ, ସେଥିରୁ ଜଣାପଡ଼ିଲା ଏହି ଶାମକିଷନ ଏକ ଖଳପ୍ରକୃତିର ଲୋକ । ସେ ଶାମକିଷନର ଯେତିକି ସଦ୍‌ଗୁଣ ଥିଲା, ଏ ଶାମକିଷନର ମନ୍ଦଗୁଣ ତା'ଠାରୁ ଢେର୍ ଅଧିକ । କଳକାରଖାନାଆଦିକୁ ବୁଝାବୁଝି କରିବାକୁ ମୋଟେ ସମୟ ଦେବାକୁ ନାରାଜ ? କାରଖାନାକୁ ଗଲେ ଆଗ ଶାମକିଷନ ଭଳି ସବୁ ବୁଝାସୁଝା ନ କରି ଅଳ୍ପ ସମୟପରେ କାରଖାନା ଛାଡ଼ି ପକାଇ ଆସୁଛି । କଥାବାର୍ତ୍ତାରେ ପୂର୍ବ ଶାମକିଷନ ଭଳି ଭଦ୍ରାମି, ଶିଷ୍ଟାଚାର ନାହିଁ । ସାମାନ୍ୟ ଟିକିଏ କଥାରେ ରାଗିଯାଇ କାରଖାନାର କର୍ମଚାରୀମାନଙ୍କୁ ଯାହାତାହା ଭାଷାରେ ଗାଳିଗୁଲଜ କରୁଛି । ଶାମବାବୁଙ୍କର ଏ କି ପରିବର୍ତ୍ତନ ହେଲା ସମସ୍ତେ ଦେଖି ତାଟଙ୍ଗା । ଶାମବାବୁ ତ ଆଗରୁ ଏମିତି ନ ଥିଲେ । ଦୁର୍ଘଟନା ପରେ କ'ଣ ଏମିତି ହୋଇଗଲେ । କାରଖାନାରେ ଶାମକିଷନବାବୁଙ୍କର ଦୁର୍ବ୍ୟବହାର ଶ୍ରମିକ ଠାରୁ ଆରମ୍ଭ କରି ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କୁ ଅତିଷ୍ଠ କରି ପକାଇଲା । ପ୍ରତିଦିନ ଶାମବାବୁଙ୍କ ବିରୋଧରେ ଦେବବାବୁଙ୍କ ପାଖରେ ନାନା ପ୍ରକାର ଆପତ୍ତି ଅଭିଯୋଗ । ଦେବବାବୁ ଦେଖିଲେ ଶାମକୁ ଯଦି କାରଖାନା ପରିଚାଳନାରେ ରଖୁଛନ୍ତି, ତେବେ ସବୁ ବିଭ୍ରାଟ ହୋଇଯିବ । ଶ୍ରମିକମାନେ ଶାମର ଦୁର୍ବ୍ୟବହାରରେ ଯଦି ଉତ୍ତେଜିତ ହୋଇପଡ଼ନ୍ତି, ତେବେ ସେମାନଙ୍କୁ ସମ୍ଭାଳିବା

ତାଙ୍କ ପକ୍ଷରେ କଷ୍ଟକର ହୋଇପଡ଼ିବ । କି ଦୁର୍ଭାଗ୍ୟ ତାଙ୍କର । କର୍ତ୍ତବ୍ୟପରାୟଣ, ଭଦ୍ର ସେ ଶାମ କୁଆଡ଼େ ଗଲା, ତା ସ୍ଥାନରେ ପାଇଲେ, ଏ ଶାମ, ଯେ କି ସବୁ ପ୍ରକାର ବଦ୍‌ଗୁଣର ଅଧିକାରୀ ।

ଦିନେ ଶାମବାବୁଙ୍କୁ ଡାକି ଦେବବାବୁ କହିଲେ, "ଦେଖ ଶାମ, ଆମେ ବୋମ୍ବେ ଅଫିସରେ ଯେଉଁ ମେନେଜର ଥିଲେ, ସେ ବର୍ତ୍ତମାନ ଛୁଟିରେ ଯାଉଛନ୍ତି । ସେ ଫେରି ଆସୁ ଆସୁ ପାଞ୍ଚ ଛଅମାସ ଲାଗିଯାଇପାରେ । ସେଟା ଆମର ଏକ ଗୁରୁତ୍ୱପୂର୍ଣ୍ଣ ଅଫିସ, ସେଠି ଆମର ଜଣେ ନିଜର ଲୋକ ରହିବା ଦରକାର । ତୁମେ ଏହି କିଛିଦିନ ଲାଗି ସେଠା ଅଫିସ୍ ଦାୟିତ୍ୱରେ ରହ । ପୂର୍ବ ମେନେଜର ଛୁଟିରୁ ଫେରିଲେ ତୁମେ ଏ ଅଫିସକୁ ପୁଣି ଚାଲି ଆସିବ । ତୁମେ କାଲି ପାଖରୁ ସେ ଅଫିସକୁ ଯାଅ । ସେହି ମେନେଜର ସେଠାକାର କାମ ସହିତ ତୁମକୁ ପରିଚିତ କରାଇଦେଇ ଚାଲିଯିବେ । ବୋମ୍ବେ ଅଫିସ ତ ବେଶିଦୂର ନୁହେଁ । ତେଣୁ ତୁମେ ପ୍ରତିଦିନ ଏଠୁ ବୋମ୍ବେ ଅଫିସକୁ କାର୍‌ରେ ଯିବାଆସିବା କରିବ ।"

ଶାମବାବୁଙ୍କର ଯାହାକିଛି ମନ୍ଦସ୍ୱଭାବ ଥିଲା, ବୋମ୍ବେ ଅଫିସକୁ ଗଲାଦିନ ଠାରୁ ତାଙ୍କ ସ୍ୱଭାବ ଆହୁରି ଖରାପଆଡ଼କୁ ଗତି କଲା । ବୋମ୍ବେରେ ଯେତେ ଅସାମାଜିକ ଲୋକ ଥିଲେ, ସେମାନେ ଧୀରେ ଧୀରେ ଶାମବାବୁଙ୍କ ବନ୍ଧୁରେ ପରିଣତ ହୋଇଗଲେ । ଶାମବାବୁ ଅଫିସରେ ମାତ୍ର ଅଳ୍ପସମୟ ରହି ବାକି ସମୟତକ ଏହି ଅସାମାଜିକ ଲୋକଙ୍କ ସଙ୍ଗେ ମଦପିଆଠାରୁ ଆରମ୍ଭ କରି ଜୁଆଖେଳ ପର୍ଯ୍ୟନ୍ତ ସବୁ ପ୍ରକାର କୁକର୍ମରେ ଲିପ୍ତ ରହନ୍ତି । ବଡ଼ବାବୁଙ୍କ ନାତି ଓ ସଂସ୍ଥାର ଭବିଷ୍ୟତ ମାଲିକ ବୋଲି ଭାବି ବୋମ୍ବେ ଅଫିସରେ ଥିବା ଅଫିସର ଓ କର୍ମଚାରୀମାନେ ଭୟରେ ତାଙ୍କ ବିରୋଧରେ ଦେବବାବୁଙ୍କଠାରେ କିଛି ଅଭିଯୋଗ କରନ୍ତିନି । ସମସ୍ତଙ୍କର ବିଶ୍ୱାସ, ଟୋକାଟାକାଳିଆବାବୁ, ଦିନାକେତେ ଗଲେ ଠିକ୍ ବାଟକୁ ଆସିଯିବେ ନାହିଁ ତ ଆଉ କ'ଣ ?

ଶାମବାବୁ ବାଟକୁ ଆସିବା ପରିବର୍ତ୍ତରେ ଦିନକୁଦିନ ଅଧିକ ଅଧିକ ଅବାଟକୁ ଯିବାକୁ ଲାଗିଲେ । ଅସାମାଜିକ ଲୋକଗୁଡ଼ାକ ଯାହା ଅଫିସ୍ ବାହାରେ ତାଙ୍କର ସାଙ୍ଗସାଥି ହେଉଥିଲେ, ଏବେ ଏଣିକି ଅଫିସ୍ ଭିତରେ ଆସି ରୁଣ୍ଡ ହେଲେଣି । ଅଫିସ୍‌ର କର୍ମଚାରୀମାନେ ଭୟରେ ତାଙ୍କ ମୁହଁରେ କିଛି କହୁ ନ ଥାନ୍ତି, କିନ୍ତୁ ଭିତରେ ଭିତରେ ବଡ଼ ଅସନ୍ତୋଷ ହେଉଥାନ୍ତି । ବଡ଼ ମାଲିକଙ୍କ ପାଖରେ କହିବାକୁ ମଧ୍ୟ ଡର, କାରଣ ଇଏ ତ ଅନ୍ୟ ମେନେଜର ଭଳି କର୍ମଚାରୀ ନୁହନ୍ତି, ଏ ଯେ ଖୋଦ୍ ମାଲିକଙ୍କ ନାତି ଓ ଏହି ସଂସ୍ଥାର ଭାବୀ ମାଲିକ ।

ଶାମବାବୁଙ୍କ ଅତ୍ୟାଚାର ଖାଲି ଅଫିସ୍‌ରେ ବଢ଼ିଲାନି, ଘରେ ମଧ୍ୟ ବଢ଼ିଲା । ସ୍ତ୍ରୀ ରତ୍ନମଣି ଦେବୀଙ୍କୁ ଅଯଥାରେ ନାନା ପ୍ରକାର ଗାଳିଗୁଲଜ । ଶାମବାବୁ ବୋଧେ ଗଲାଦିନଠାରୁ ଘରପୂଝାରୀ ରନ୍ଧା ଆଉ ଖାଇବାକୁ ପସନ୍ଦ କଲେନି । ସ୍ତ୍ରୀ ରତ୍ନମଣିଠାରେ ସବୁବେଳେ ଅଭିଯୋଗ ଏ ପରୁଣାକାଳିଆ ପୂଝାରୀଗୁଡ଼ାଙ୍କୁ ରନ୍ଧା ଜଣାନାହିଁ । ଏମାନଙ୍କୁ ଶୀଘ୍ର ବାହାରକରି ସେମାନଙ୍କ ସ୍ଥାନରେ ଖାନ୍‌ସମା, ବବୁର୍ଚ୍ଚି ରଖିବା ଦରକାର । ଘରର ପରିଚାଳନା ତ ରତ୍ନମଣୀଙ୍କ ହାତରେ ନାହିଁ । ସେସବୁ ତ ଶାନ୍ତାଦେବୀଙ୍କ ହାତରେ । ତେଣୁ ସ୍ୱାମୀଙ୍କ କଥାକୁ ରଖିବାଭଳି ସେ କ'ଣ ବା କରିପାରିବେ । ଦିନେ ଶାମବାବୁ ଡାଇନିଂରୁମ୍‌ରେ ଖାଉଁ ଖାଉଁ ରନ୍ଧା ମନମୁତାବକ ହୋଇ ନ ଥିବାରୁ ଚାକର ପୂଝାରୀଙ୍କ ଉପରେ ପାଟିକରି ଖାଦ୍ୟ ଫୋପାଡ଼ିଦେଇ ଚାଲିଗଲେ । ସ୍ତ୍ରୀଙ୍କୁ କହିଦେଇଗଲେ, ଜେଜେମାକୁ କହିଦେବ ଆଜି ସନ୍ଧ୍ୟାସୁଦ୍ଧା ଯେମିତି ଏ ପଶୁଗୁଡ଼ାଙ୍କୁ ବାହାରକରି ଏମାନଙ୍କ ସ୍ଥାନରେ ଖାନ୍‌ସମା, ବବୁର୍ଚ୍ଚି ଆଦି ରଖିଥାନ୍ତି । ତା ନ ହେଲେ ଏ ଘରେ ମୋ ଖାଇବା ବନ୍ଦ ।

ରତ୍ନମଣୀ ଦେବୀ ସ୍ୱାମୀଙ୍କ ଏହି ଆଦେଶକୁ ଗ୍ରହଣ କରିବା ତ ଦୂରର କଥା, ଗୋସାଇଁଶାଶୁଙ୍କୁ ଏହାର ଆଭାସ ମଧ୍ୟ ଦେଲେନି । ଦୁର୍ଘଟନା ପରେ ସ୍ୱାମୀଙ୍କର ଏଭଳି କି ପରିବର୍ତ୍ତନ ହେଲା ସ୍ମରଣ କରି ଦୁଃଖ କରନ୍ତି । ସ୍ୱାମୀ ତ ଏଥିପୂର୍ବରୁ କେଡ଼େ ସୁନ୍ଦର ପ୍ରକୃତିର ଥିଲେ, ପରିବାରର ପ୍ରତ୍ୟେକ ଲୋକଙ୍କୁ ସୁଖ ପାଉଥିଲେ, ଦୁର୍ଘଟନା ପରେ ସେ କ'ଣ ଏହାର ଠିକ୍ ଓଲଟା ହୋଇ ଯାଇଛନ୍ତି । ଯେଉଁ ସ୍ୱାମୀ କାରଖାନା ବ୍ୟତୀତ ଅନ୍ୟତ୍ର ମୋଟେ ରହନ୍ତିନି, ସେହି ସ୍ୱାମୀ କ'ଣ କାରଖାନାକୁ କି ଅଫିସ୍‌କୁ ନ ଯାଇ ବାହାରେ ବୁଲୁଛନ୍ତି । ରତ୍ନମଣି ଦେବୀ ଧରିନେଲେ ଦୁର୍ଘଟନା ଯୋଗୁଁ ଏହିଭଳି ମାନସିକ ବିକୃତି ସମ୍ଭବତଃ ଘଟିଯାଇଛି । ଏହାକୁ ନିଜର ଦୁର୍ଭାଗ୍ୟ ବୋଲି ମଣିବାଛଡ଼ା ଅନ୍ୟ ଉପାୟ ନାହିଁ ।

ଶାମବାବୁ ଡାଇନିଂ ଟେବୁଲ ଉପରେ ଖାଇବା ପଦାର୍ଥ ଫୋପାଡ଼ିଦେବା କଥା ଶାନ୍ତାଦେବୀଙ୍କଠାରେ ଅଜଣା ରହିଲାନି । ସେ ଏହି ଖବରରେ ଯେତିକି ଦୁଃଖିତ ହେଲେ, ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ହେଲେ, ଶାମ ତ କେବେ ଏଭଳି ପ୍ରକୃତି ଦେଖାଏନି । ଦୁର୍ଘଟନା ପରେ ମାନସିକ ବିକାର ଘଟି କ'ଣ ଏହିଭଳି ପ୍ରକୃତି ପ୍ରକାଶ କରୁଛି ? ନାତିର ଏଭଳି ବ୍ୟବହାରରେ ଶାନ୍ତାଦେବୀ କ୍ଷୁବ୍ଧ ନ ହୋଇ ରତ୍ନମଣି ଦେବୀଙ୍କୁ ଡାକି କହିଲେ, "ବୁଝିଲ ରତ୍ନମଣି, ମୁଁ ବଡ଼ ଦୁଃଖିତ ଶାମ କ'ଣ ଡାଇନିଂରୁମ୍‌ରେ ଏମିତି କାଣ୍ଡ କରି ଚାଲିଗଲା । ତା ଖାଇବା ଟେବୁଲ ପାଖରେ ତୁମେ କ'ଣ ନ ଥିଲ ? ଟିକିଏ ବୁଝାଇଦେଇ ପାରିଲନି ? ପିଲାଟା

ଏମିତି ଫୋପଡ଼ାଫୋପଡ଼ି କରି ପଳାଇଗଲା । ଘରର ଚାକର, ଚାକରାଣୀମାନେ କ'ଣ ଭାବୁଥିବେ କହ ତ ? ଖାଇଲାବେଳେ ତୁମେ କ'ଣ ସେଠି ନ ଥିଲ ?''

''ନା, ମା, ମୁଁ ସେଠି ନ ଥିଲି । ପାଖ ରୁମ୍‌ରେ ବସି କ'ଣ ଗୋଟାଏ ପଢୁଥିଲି । ଡାଇନିଂରୁମ୍‌ରେ ଧଡ଼୍‌ଧାଡ଼୍ ଶବ୍ଦ ହେବାରୁ ସେଠାକୁ ଦୌଡ଼ି ଆସିଲି ।''

''ଦେଖ ରତ୍ନା, ସ୍ୱାମୀ ଖାଇ ବସିବେ, ତୁମେ ରାନ୍ଧ ବା ନ ରାନ୍ଧ ଅନ୍ତତଃ ଖାଇଲାବେଳେ ପାଖରେ ବସି ଖୁଆଇ ପାରିବନି ? ଚାକର ପୂଝାରୀଙ୍କ ହାତରେ ଛାଡ଼ି ଦେଇ ବସିଯିବ ? ସ୍ୱାମୀ କେମିତି ସନ୍ତୋଷରେ ଖାଇକରି ଯିବେ, ସେ ଦାୟିତ୍ୱ ତୁମର । ତୁମେ ଅନ୍ତତଃ ଟେବୁଲ ପାଖରେ ବସିଥିଲେ, ଗୋଳମାଳ ଏତେଦୂରକୁ ଯାଇ ନ ଥାନ୍ତା । ସେ ଉତ୍ତେଜିତ ହେବା ଆରମ୍ଭ କଲାକ୍ଷଣି, ତୁମେ ବୁଝାଇଦେଇ ତାଙ୍କୁ ଶାନ୍ତ କରିପାରିଥାନ୍ତ ।''

''ମା, ତୁମେ କ'ଣ ଜାଣନି, ସେ କ'ଣ ବୁଝିବା ଲୋକ, ଦୁର୍ଘଟନା ପରେ ତାଙ୍କର କ'ଣ ହୋଇଛି କେଜାଣି, ଅତି ଛୋଟ ଛୋଟ କଥାରେ ରାଗି ଗରମ ହୋଇ ଯାଉଛନ୍ତି । ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଡର ଲାଗୁଛି । ଆଗରୁ ସେ ତ କେବେ ଆମ ରନ୍ଧା ବିରୋଧରେ ନ ଥିଲେ । ଏବେ ଏଣିକି ସେ ଘରେ ଚାହୁଁଛନ୍ତି, ହୋଟେଲ ରନ୍ଧା, ଖାନ୍‌ସମା ବର୍ବୁର୍ଚ୍ଚିଙ୍କ ରନ୍ଧା ଓ ଖାଦ୍ୟ ପରଷା । ସେ ବାହାର ଖାଦ୍ୟକୁ ଅଧିକ ପସନ୍ଦ କରୁଛନ୍ତି । ଆମ ଘରରନ୍ଧାକୁ ମୋଟେ ପସନ୍ଦ କରୁ ନାହାନ୍ତି । ଏଥିରେ ତାଙ୍କୁ କ'ଣ ବୁଝାଇ ହେବ ?''

''ହଁ, ରତ୍ନା, ଦୁର୍ଘଟନା ପରଠାରୁ ଶ୍ୟାମର ସ୍ୱଭାବ ଚରିତ୍ରରେ ବହୁତ ପରିବର୍ତ୍ତନ ଆସିଛି । ଆମ ଶ୍ୟାମ ଯେମିତି ଆମ ସମସ୍ତଙ୍କ ସହ ପୂରାପୂରି ମିଶି ଯାଉଥିଲେ, ଏ ଶ୍ୟାମ ଯେମିତି ମିଶିପାରୁନି । ସେ ସବୁବେଳେ ଅନୁଭବ କରୁଛି, ତା ଆମ ଭିତରେ ଯେମିତି ଏକ ବିରାଟ ବ୍ୟବଧାନ ରହିଛି । ଏମିତି ତ ହେବାକଥା ନୁହେଁ । ଏମିତି କାହିଁକି ହେଲା ମୁଁ ବୁଝିପାରୁନି । ଦୁର୍ଘଟନା ଯୋଗୁଁ ମାନସିକ ବିକୃତି କ'ଣ ଏମିତି ହୋଇପାରେ ?''

''ଖାଲି ସେତିକି ନୁହେଁ ମା, ତାଙ୍କ ସ୍ୱଭାବଚରିତ୍ର ମଧ୍ୟ ମୋତେ ମୋଟେ ଭଲ ଲାଗୁନି । ଆଗରୁ ତାଙ୍କ ସ୍ୱଭାବଚରିତ୍ର ଖୁବ୍ ଉଚ୍ଚକୋଟୀର ଥିଲା, ବର୍ତ୍ତମାନ ଅତି ନିକୃଷ୍ଟ ଧରଣର ହୋଇଯାଇଛି । ଅଫିସ୍‌ରୁ ଆସି କୁଆଡ଼େ ଯା'ନ୍ତି, କାହା ସଙ୍ଗରେ ମିଶନ୍ତି, ମୁଁ କ'ଣ ଜାଣିପାରେ ? କେତେବେଳେ ରାତି ଗୋଟାକରେ ତ, କେତେବେଳେ ରାତି ଦୁଇଟାରେ ଘରକୁ ଫେରନ୍ତି । ତାଙ୍କର ଟଙ୍କା ଏତେ କ'ଣ ଦରକାର ହୁଏ କେଜାଣି, ମୋତେ ବାରମ୍ବାର ଟଙ୍କା ମାଗନ୍ତି । ମୋତେ ବେଳେବେଳେ ବାଧ୍ୟ କରନ୍ତି, ଆପଣଙ୍କଠାକୁ ଆସି ତାଙ୍କ ପାଇଁ ଟଙ୍କା ମାଗିବାକୁ ।

ମୁଁ ତ ରାଜି ହୁଏନି, ମୋ ଉପରେ ଅଜସ୍ର ଗାଳି ହୁଏ । ଭୟରେ ସେ ସବୁକଥା ମୁଁ କେବେ ଆପଣଙ୍କୁ କହେନି ।''

ଦେବକିଷନବାବୁ ନାତି ଶାମର ଏଭଳି ପରିବର୍ତ୍ତନରେ ଆଶ୍ଚର୍ଯ୍ୟ ହୁଅନ୍ତିନି । ସେ ଜାଣନ୍ତି, ଏ ଶାମ ତାଙ୍କର ଅତି ପ୍ରିୟ ନାତି ଶାମ ନୁହେଁ । ଏ ସିନା ଶାମର ରୂପ ନେଇଛି, ଏହା ଭିତରେ କାର୍ଯ୍ୟ କରୁଛି ଲକ୍ଷ୍ମଣର ଦୁର୍ବୁଦ୍ଧି । ଡ୍ରାଇଭର ମୁରଲୀର କଥା ଅନୁସାରେ ଲକ୍ଷ୍ମଣ ଏକ ଖଳପ୍ରକୃତିର ଲୋକ ଥିଲା, ତା'ର ଚରିତ୍ର ମଧ୍ୟ ଅତି କଦର୍ଯ୍ୟ । ଶାମର ରୂପ ଭିତରେ ଲକ୍ଷ୍ମଣର ଦୁର୍ବୁଦ୍ଧି କାର୍ଯ୍ୟ କଲେ ଫଳ ଏହା ହେବ ନାହିଁ ତ ଆଉ କ'ଣ ହେବ ? ଦେବବାବୁ ମନେ ମନେ ବଡ଼ ଦୁଃଖ କରନ୍ତି ଯେ ସେ ତାଙ୍କର ଶାମକୁ ହରାଇ ଯେଉଁ ଶାମକୁ ଘରକୁ ଆଣିଲେ, ସେ ଶାମର ରୂପ ନେଇଛି ସତ, କିନ୍ତୁ ଶାମର ଟିକିଏ ବି ଗୁଣ ତା'ଠାରେ ନାହିଁ । ଓଲଟି ଲକ୍ଷ୍ମଣର ଖଳପ୍ରକୃତି ଓ ଦୁର୍ବୁଦ୍ଧିଯାକ ପ୍ରକଟିତ ହୋଇଛି ଏଇ ଶାମଠାରେ । ତେବେ ତାଙ୍କର ଚିନ୍ତା ଏଇ ଶାମକୁ ସେ କେମିତି ବାଟକୁ ଆଣିବେ । ତାକୁ ଯଦି ବାଟକୁ ଅଣା ନ ଯାଏ, ସବୁ ଧ୍ୱଂସ ହୋଇଯିବ । ତା ବାପା ମା ଆସିଲେ ଶାମର ଏଭଳି ପ୍ରକୃତି ଦେଖି କମ୍ ଦୁଃଖ କରିବେନି ।

ଦିନକୁଦିନ ଶାମର ଦୌରାତ୍ମ୍ୟ ବଢ଼ିବାକୁ ଲାଗିଲା । ଦେବକିଷନବାବୁ ଶାମକୁ ବାଟକୁ ଆଣିବା ପାଇଁ ଯେଉଁ ଆଶା ପୋଷଣ କରିଥିଲେ, ସେଇ ଆଶା ଦୁରାଶାରେ ପରିଣତ ହେବାକୁ ବସିଲା । ଶାମକୁ କାରଖାନାରୁ ନେଇ ବୋମ୍ବେ ଅଫିସ୍‌ରେ ରଖିଲାରୁ ସେଠି ନାନା ପ୍ରକାର ଗୋଳମାଳ ହେଲା । ଶାମର ସାଙ୍ଗସାଥି ଗୁଣ୍ଡାଶ୍ରେଣୀୟ ଲୋକେ ଅଫିସ୍‌କୁ ଆସି ନାନା ପ୍ରକାର ଗୋଳମାଳ ଭିଆଇଲେ । ଶାମକୁ ନେଇ ସେ କ'ଣ କରିବେ ସେହି ହେଲା ତାଙ୍କର ଚିନ୍ତା । ସେ ଯେ ଦିନେ ତାଙ୍କ ପରିଚାଳନା ବିରୋଧରେ ଯାଇ ନାନା ବିଶୃଙ୍ଖଳା ସୃଷ୍ଟି କରିବ, ଏହି ସମ୍ଭାବନା ତାଙ୍କୁ ଜଳଜଳ ଦିଶିଲା । ଯେତେବେଳେ ସିଏ ତାଙ୍କର ଭବିଷ୍ୟତ ଉତ୍ତରାଧିକାରୀ, ତେଣୁ ତାକୁ ବାଟକୁ ନ ଆଣିଲେ ତାଙ୍କ ଶିଳ୍ପ ସାମ୍ରାଜ୍ୟର ଭବିଷ୍ୟତ ଯେ ଅନ୍ଧକାରମୟ ହେବ ଏଥିରେ ତାଙ୍କର ତିଳେମାତ୍ର ସନ୍ଦେହ ରହିଲା ନାହିଁ ।

ଦେବକିଷନବାବୁ ବେଳେବେଳେ ମନ କଷ୍ଟକରି ସ୍ତ୍ରୀ ଶାନ୍ତାଦେବୀଙ୍କ ଆଗରେ ଶାମର ଦୁର୍ଗୁଣ ସବୁ କହନ୍ତି । ଦିନକୁ ଦିନ ଏହି ଦୌରାତ୍ମ୍ୟ କେମିତି ବଢ଼ି ଚାଲିଛି, ତାହା ବୁଝାଇବାକୁ ମଧ୍ୟ ଚେଷ୍ଟା କରନ୍ତି । ବୋମ୍ବେର ଗୁଣ୍ଡାଶ୍ରେଣୀୟ ଅସାମାଜିକ ଲୋକଙ୍କ ସହ ତା'ର ସମ୍ପର୍କ ଦିନକୁଦିନ ତାଙ୍କ ପରିଚାଳନାରେ ଏକ ବିପଦ ବୋଲି ନିଜ ସ୍ତ୍ରୀକୁ ବୁଝାଇବାକୁ ଭୁଲନ୍ତିନି । ଶାମର ପିତାମାତା ତୀର୍ଥ ଭ୍ରମଣରେ ଯାଇଥିବାରୁ ଶାମକୁ ବାଟକୁ ଆଣିବା ପାଇଁ ସେ ଆଉ କାହାର

ସାହାଯ୍ୟ ନେବେ ଭାବି ପାରନ୍ତିନି । ଘରେ ସେ ଯେଉଁସବୁ କାଣ୍ଡ କରୁଛି, ସ୍ତ୍ରୀ ରତ୍ନା କେମିତି ତା'ଦ୍ୱାରା ନିର୍ଯ୍ୟାତିତା ହେଉଛି, ଶୁଣି ଦେବବାବୁ ବଡ଼ ବ୍ୟଥିତ ହୁଅନ୍ତି । ସ୍ତ୍ରୀ ଶାନ୍ତାଦେବୀ ଓ ନାତୁଣୀବୋହୂ ରତ୍ନମଣୀ ଶାମକୁ ବୁଝାସୁଝା କରି ବାଟକୁ ଆଣିବାକୁ ଯେଉଁ ଚେଷ୍ଟା କରିଛନ୍ତି ଓ ସେହି ଚେଷ୍ଟା କେମିତି ସଫଳ ହୋଇନି ଶୁଣି ଦେବବାବୁ କ'ଣ କରିବେ କିଛି ଠିକ୍ କରି ପାରନ୍ତିନି । ଘରେ ତା'ର ବ୍ୟବହାର ଦିନକୁଦିନ ଏତେ ଅସହ୍ୟ ହୋଇପଡ଼ିଲା ଯେ ଶାନ୍ତାଦେବୀ ଓ ରତ୍ନମଣୀ ଦେବୀ ଅତିଷ୍ଠ ହୋଇପଡ଼ିଲେ । ଶାନ୍ତାଦେବୀଙ୍କର ଚିନ୍ତା, ଶାମ ଯେତେବେଳେ ଅସାମାଜିକ ଲୋକଙ୍କ ହାତରେ ପଡ଼ିଯାଇଛି, ସେମାନେ ସମସ୍ତେ ମିଶି ତାଙ୍କ ପରିବାର ଭିତରେ କିଛି ଗୋଟାଏ କାଣ୍ଡ ଭିଆଇବେ ନାହିଁ ତ ? ଦିନେ ଶାନ୍ତାଦେବୀ ସ୍ୱାମୀଙ୍କୁ ଏହି ସମ୍ଭାବନା କଥା କହନ୍ତେ, ସେ ଏହାକୁ ହସି କାଟିଦେଲେ, କହିଲେ, "ଶାମ ଅସାମାଜିକ ଲୋକଙ୍କ ହାତରେ ପଡ଼ିଯାଇଛି ସତ, କିନ୍ତୁ ଆମ ସଂସ୍ଥାକୁ ବିପଦରେ ପକାଇ କିଛି ଗୋଟାଏ ବଡ଼ ଫାଇଦା ଉଠାଇନେବେ, ସେ ଆଶଙ୍କା ମୋର ନାହିଁ ଶାନ୍ତା ।"

"ତୁମେ ଏତେ ସରଳ ହୁଅ ନାହିଁ ।" ଶାନ୍ତାଦେବୀ କହିଲେ, "ଭଗବାନ କରନ୍ତୁ, ଶାମ ଏତେଦୂର ପର୍ଯ୍ୟନ୍ତ ନ ଯାଉ, କିନ୍ତୁ ଶାମ ବର୍ତ୍ତମାନ ଯେଉଁ ଅସାମାଜିକ ଲୋକଙ୍କ ହାତରେ ପଡ଼ିଯାଇଛି, ସେମାନେ ଯେ କେତେବେଳେ କି କାଣ୍ଡ ଭିଆଇବେ, ସେଆଡ଼କୁ ଟିକିଏ ଦୃଷ୍ଟିଦେଇ ଆମର ସତର୍କ ରହିବା ଦରକାର । ଅସାମାଜିକ ଲୋକଙ୍କ କାଣ୍ଡ ବେଳେବେଳେ ଆମ କଳ୍ପନାର ବାହାରେ ହୋଇପାରେ । ତା'ଛଡ଼ା ତୁମ ଚେହେରା ଓ ଶାମ ଚେହେରା ଭିତରେ ଯେଉଁ ସାମଞ୍ଜସ୍ୟ ଅଛି ତୁମ ଦୁହିଁଙ୍କ ରୂପ ନେଇ ଭବିଷ୍ୟତରେ କିଛି ଗୋଟାଏ ଗଣ୍ଡଗୋଳ ହୋଇଯିବ ନାହିଁ ତ ?"

ହସିଲେ ଦେବକିଷନବାବୁ, "ତୁମେ ବହୁତଦୂରକୁ ଭାବିଯାଇପାର ଶାନ୍ତା । ତେବେ ସେମାନେ ମୋ ବିରୋଧରେ ଏତେବଡ଼ ଷଡ୍‌ଯନ୍ତ୍ର କରିପାରିବେ ବୋଲି ମୁଁ କାହିଁକି ଆଶଙ୍କା କରିପାରୁନି ।"

ସ୍ୱାମୀ ସିନା ଏତେ ଆଶ୍ୱାସନା ଦେଲେ, କିନ୍ତୁ ଶାନ୍ତାଦେବୀଙ୍କର ମନ ଏଥିରେ ମାନିଲାନି । କ'ଣ ଏକ ବିପଦର ଆଶଙ୍କାରେ ସେ ସର୍ବଦା ମ୍ରିୟମାଣ ହୋଇପଡ଼ିଲେ । ନିଜ ପରିବାରର ଲୋକ ଯଦି ଅସାମାଜିକ ଲୋକଙ୍କ ହାତରେ କ୍ରୀଡ଼ନକ ହୁଅନ୍ତି, ତେବେ ଆସୁଥିବା ବିପଦକୁ ଏଡ଼ାଇଦେବା ସେତେ ସହଜ ନୁହେଁ ।

× × × × ×

ସେତେବେଳକୁ ପ୍ରାୟ ପାହାନ୍ତିଆ ହେବା ଉପରେ । ଦେବବାବୁଙ୍କ ପାଖରେ ଶୟନରତା ଥିଲେ ସ୍ତ୍ରୀ ଶାନ୍ତାଦେବୀ । ହଠାତ୍ ଶାନ୍ତାଦେବୀଙ୍କ ଏକ ଚିତ୍କାରରେ ଉଠିପଡ଼ିଲେ ଦେବବାବୁ । ଦେଖିଲେ ସ୍ତ୍ରୀ ଶାନ୍ତା ଭୟରେ ଥରୁଛନ୍ତି । ତାଙ୍କ ଗୋଟାସାରା ଦେହ ବରଡ଼ାପତ୍ର ଭଳି ଥରୁଛି । ନିଦ୍ରେ କ୍ରନ୍ଦନକଣ୍ଠରେ କହୁଛନ୍ତି, ''ମାର ନାହିଁ । ମାର ନାହିଁ ।''

ସ୍ତ୍ରୀଙ୍କର ଏ କ'ଣ ହେଲା, ଦେବବାବୁ ହଠାତ୍ ଜାଣିପାରିଲେନି । ସ୍ତ୍ରୀଙ୍କୁ ହଲାଇ ଦେଉ ଦେଉ ଦେବବାବୁ କହିଲେ, ''ତୁମେ କ'ଣ ସ୍ୱପ୍ନ ଦେଖୁଛ ନା କ'ଣ ଶାନ୍ତା । ତୁମେ ଏମିତି ଥରୁଛ କାହିଁକି ? ମୁଖରେ ତୁମର କ୍ରନ୍ଦନର ସ୍ୱର ?''

ଶାନ୍ତାଦେବୀଙ୍କ ନିଦ ହଠାତ୍ ଭାଙ୍ଗିଗଲା । ପାଖରେ ସ୍ୱାମୀଙ୍କୁ ଦେଖି ତାଙ୍କୁ କୁଣ୍ଢାଇପକାଇ ତାଙ୍କ ପ୍ରଶସ୍ତ ଛାତି ଭିତରେ ମୁହଁକୁ ଲୁଚାଇ କହିଲେ, ''ଓଃ, କେତେବଡ଼ ଦୁଃସ୍ୱପ୍ନଟାଏ ଦେଖିଲି ।''

''ଦୁଃସ୍ୱପ୍ନ ?'' ଦେବବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

''ହଁ, ଏକ ବିରାଟ ଦୁଃସ୍ୱପ୍ନ, ତୁମକୁ ନେଇ ।''

''ମୋତେ ନେଇ ?'' ଆହୁରି ଆଶ୍ଚର୍ଯ୍ୟ ହେଲେ ଦେବବାବୁ । କି ସ୍ୱପ୍ନ ଦେଖିଲ ଶୁଣେ ?''

ସେତେବେଳ ପର୍ଯ୍ୟନ୍ତ ଶାନ୍ତାଦେବୀଙ୍କ ଥରିବା ବନ୍ଦ ହୋଇ ନ ଥାଏ । ସେ ଦେବବାବୁଙ୍କୁ ଆହୁରି ଜୋର୍‌ରେ ଭିଡ଼ି ଧରି କହିଲେ, ''ଏମିତି ଦୁଃସ୍ୱପ୍ନ ମୁଁ କେବେ ଦେଖି ନ ଥିଲି । ଏହା ଯଦି ବାସ୍ତବରେ ଘଟେ, ତେବେ ମୁଁ ବଞ୍ଚି ପାରିବିନି ।'' କହୁ କହୁ କାନ୍ଦି ପକାଇଲେ ଶାନ୍ତାଦେବୀ ।

''କି ସ୍ୱପ୍ନ ଦେଖିଲ କହୁନାହଁ ? ନ କହି କାନ୍ଦିବାକୁ ଆରମ୍ଭ କରିଦେଲଣି କ'ଣ ?''

ଏଥର ଶାନ୍ତାଦେବୀ ଦେବବାବୁଙ୍କୁ କୋଳରୁ ମୁହଁ ଉଠାଇ କହିଲେ, ''ତୁମକୁ ଡକାୟତମାନେ ହରଣଚାଳ କରି ନେଇ କେଉଁଠି ଲୁଚାଇ ରଖିଛନ୍ତି । ପୋଲିସ ଅଫିସରମାନେ ଖୋଜି ଖୋଜି ତୁମ ପତ୍ତା ପାଉ ନାହାନ୍ତି । ଶାମ ନିଜକୁ ତୁମେ ବୋଲି ଚିହ୍ନା ଦେଇ ଶିଳ୍ପ ପରିଚାଳନା ପୂରାପୂରି ହାତକୁ ନେଇ ନେଇଛି । ତୁମ କାରଖାନାର ଯେଉଁସବୁ ଭଲ କାମ କରିବା ପାଇଁ ଠିକ୍ କରିଥିଲ, ସେସବୁକୁ କାଟି ଦେଇ ଟଙ୍କାତକ ଜୁଆ, ମଦପିଆରେ ଖରଚ କରି ଦେଇଛି । ହଠାତ୍ ମୁଁ ଦିନେ ଜାଣିପାରିଲି ଯେ ସେ ତୁମ ରୂପ ନେଇଥିଲେହେଁ ତୁମକୁ ପୂରାପୂରି

ଅନୁକରଣ କରିପାରିନି । ସେ ଯେତେବେଳେ ଜାଣିପାରିଛି ଯେ ମୁଁ ଶାମର ଠକାମି ଧରିପାରିଛି, ସେ ମୋତେ ହତ୍ୟା କରିବା ପାଇଁ ଘେନିଯାଇ ତୁମକୁ ଯେଉଁଠି ବନ୍ଦୀ କରି ରଖିଥିଲା, ସେଠି ମୋତେ ନେଇ ବନ୍ଦୀ କରି ରଖିଛି । ଯେଉଁଦିନ ସେ ଆମ ଦୁହିଁଙ୍କୁ ନେଇ ଠାକୁରାଣୀଙ୍କ ପାଖରେ ବଳି ଦେବାକୁ ଉଦ୍ୟତ ହେଉଛି, ଘାତକ ଆମ ବେକରେ ଧାରୁଆଖଣ୍ଡା ଲଗାଇବା ପୂର୍ବରୁ ହଠାତ୍ ମୁଁ ଚିତ୍କାର କରି ଉଠିଛି, ଫଳରେ ମୋ ନିଦ ଭାଙ୍ଗି ଯାଇଛି ।''

ହସିଲେ ଦେବବାବୁ, ''ଓଃ ଏଇକଥା । ତୁମେ ବଡ଼ ଦୁର୍ବଳହୃଦୟା, ଶାନ୍ତା । ଆଜିକାଲିକା ସଂସାର ପାଇଁ ତୁମେ ମୋଟେ ଉପଯୁକ୍ତା ନୁହେଁ । ଏତେ ଦୁର୍ବଳହୃଦୟା ହେଲେ କ'ଣ ତୁମେ ଚଳିପାରିବ ଆଜିକାଲିକା ଦୁନିଆରେ ? ଏ ସଂସାରରେ କେତେ ପ୍ରକାରର ଲୋକ ଅଛନ୍ତି, ଯେତିକି ଖରାପ ଲୋକ ଅଛନ୍ତି, ତା'ଠାରୁ ଢେର୍ ଅଧିକ ଭଲ ଲୋକ ଅଛନ୍ତି । ସମସ୍ତଙ୍କ ସହିତ ମିଳିମିଶି ଚଳିବାକୁ ପଡ଼ିବ । ଦୁଷ୍ଟଲୋକଗୁଡ଼ାଙ୍କୁ ଏତେ ଡରିଲେ କ'ଣ ଚଳି ହେବ ?'' ଦେବବାବୁଙ୍କ ଏହି ଆଶ୍ୱାସନା ବାଣୀ ଶାନ୍ତାଦେବୀଙ୍କ ମନରେ ଆଶାଜନକ ସାହସ ସଞ୍ଚାର କରି ପାରିଲା ନାହିଁ । ସେ ନିଜ ପରିବାର ଉପରକୁ ମାଡ଼ି ଆସୁଥିବା ବିପଦ ପ୍ରତି ଶଙ୍କିତ ହୋଇ ବଡ଼ ଭୟାଳୁ ହୋଇ ପଡ଼ିଲେ ।

ଏହି ଘଟନାର କିଛିଦିନ ପରେ ହଠାତ୍ ଦିନେ ଦେଖାଗଲା ଯେ ଶାମବାବୁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି । ଚାରିଆଡ଼େ ତାଙ୍କୁ ଖୋଜା ଚାଲିଲା, କେଉଁଠି ତାଙ୍କର ସନ୍ଧାନ ମିଳିଲା ନାହିଁ । ଏଥିପୂର୍ବରୁ ସେ ପ୍ରାୟ ପ୍ରତି ରାତ୍ରରେ ବୋମ୍ବେର ଏକ କୁଖ୍ୟାତ ନାଇଟ୍‌କ୍ଲବ୍‌କୁ ଯାଆନ୍ତି । କ୍ଲବ୍‌ରେ ନାଚ, ଗାନା ସହିତ ଜୁଆ, ମଦର ଢେଉ ଖେଳେ । ସେ ସେସବୁ ଶେଷକରି ଘରକୁ ଫେରୁ ଫେରୁ ରାତି ଗୋଟାଏ କି ଦୁଇଟା । ଯେଉଁଦିନ ତାଙ୍କୁ ହରଣଚାଳ କରାଗଲା, ସେଦିନ ରାତିରେ ସେ ଘରକୁ ଫେରି ନାହାନ୍ତି । କିଛିଦିନ ଧରି ଖୋଜାଖୋଜି କଲାପରେ ଯେତେବେଳେ ତାଙ୍କ ପତ୍ତା ମିଳିଲାନି, ସେତେବେଳେ ଦେବବାବୁ ବାଧ୍ୟ ହୋଇ ପୋଲିସକୁ ଖବର ଦେଲେ । ଶାମବାବୁଙ୍କ ଅନ୍ତର୍ଦ୍ଧାନ ହେବାକଥା ଚାରିଆଡ଼େ ପ୍ରଚାରିତ ହୋଇଗଲା । ଏହି ଖବରରେ ସ୍ତ୍ରୀ ରତ୍ନମଣୀ କାନ୍ଦି କାନ୍ଦି ବିଛଣା ଧରିଲେ । ନିଜ ଉପରେ ଯେତେ ଅତ୍ୟାଚାର କଲେ ମଧ୍ୟ, ଯେତେହେଲେ ସେ ତ ସ୍ୱାମୀ, ତାଙ୍କ ସୋହାଗ । ସେତକ ଯଦି ଗଲା, ଜୀବନରେ ଆଉ ରହିଲା କଅଣ ? ତାଙ୍କୁ ଧୈର୍ଯ୍ୟ ଧରିବା ପାଇଁ ଶାନ୍ତାଦେବୀ ବୁଝାଇ ବୁଝାଇ ନୟାନ୍ତ ହୋଇଗଲେଣି । ଶାନ୍ତାଦେବୀ ମନେ ମନେ ଭାବୁଥାନ୍ତି, ତାଙ୍କ ସ୍ୱପ୍ନ କ'ଣ ଓଲଟା ହୋଇଗଲା ? ବିପଦଟା ଯାହାହେଉ ସ୍ୱାମୀଙ୍କ ଉପରେ ପଡ଼ିନି ।

ହେଲେ ଯେ ନ ପଡ଼ିବ, ତା କିଏ କହିପାରେ ? ହୋଇପାରେ ଏହା ବିପଦ ଆଗମନର ଆରମ୍ଭ ।

ଦେବବାବୁ ଦିନେ ହଠାତ୍ ଫୋନ୍‌ରେ ଏକ ଅଜଣାଲୋକର ଧମକ ପାଇ ଚକିତ ହେଲେ । ଲୋକଟି ଧମକଦେଇ ଉତ୍ତେଜିତ ଗଳାରେ କହୁଛି, "ଆପଣଙ୍କ ନାତିକୁ ଆମେ ହରଣଚାଳ କରି ଆଣିଛୁ । ସେ ବର୍ତ୍ତମାନ ଆମ ହାତରେ ଅଛି । ଆପଣ ଯଦି ତାକୁ ଫେରାଇନେବାକୁ ଚାହାନ୍ତି, ତେବେ ଆପଣ ଆସନ୍ତା ଶନିବାର ରାତି ଏଗାରଟାବେଳେ ପୁନାର ସନ୍ଥ ତୁଳସୀଦାସ ପାର୍କଠାରେ ପାଞ୍ଚଲକ୍ଷ ଟଙ୍କା ସହ ଅପେକ୍ଷା କରିଥିବେ । ଆମେ ପାଞ୍ଚଲକ୍ଷ ଟଙ୍କା ପାଇଲେ ତାକୁ ଆପଣଙ୍କୁ ଫେରାଇଦେବୁ । ଦେଖନ୍ତୁ, ଏହା ଯେମିତି ପୋଲିସ କାନକୁ ନ ଯାଏ, ଗଲେ ଆପଣଙ୍କ ଜୀବନ ତଥା ଆପଣଙ୍କ ନାତିଙ୍କ ଜୀବନ ପ୍ରତି ବିପଦ ହେବ ।"

ଫୋନ୍‌ରେ ଦେବବାବୁ ଯାହା ଶୁଣିଲେ, କ'ଣ କରିବେ ଭାବି ପାରିଲେନି । ପୋଲିସ୍‌କୁ ଖବର ଦେବେ କି ନାହିଁ, ଠିକ୍ କରି ପାରିଲେନି । ସଙ୍ଗେ ସଙ୍ଗେ କାହାକୁ କିଛି ନ କହି ଘରକୁ ଚାଲିଆସି ସ୍ତ୍ରୀ ଶାନ୍ତାଦେବୀଙ୍କୁ ସବୁକଥା କହିଲେ । ଶାନ୍ତାଦେବୀ ଏହାଶୁଣି ଭୟରେ ଥରିବାକୁ ଲାଗିଲେ । ନିଜ ସ୍ୱାମୀଙ୍କ ଜୀବନ ପ୍ରତି ବିପଦଥିବାରୁ ପୋଲିସକୁ ଖବର ନ ଦେବାପାଇଁ ସ୍ୱାମୀଙ୍କୁ ପ୍ରବର୍ତ୍ତାଇଲେ । ଦେବବାବୁ ସ୍ତ୍ରୀଙ୍କ ଭଳି ଏତେ ଭୟାଳୁ ନୁହନ୍ତି । ପାଞ୍ଚଲକ୍ଷ ଟଙ୍କା ପଣିଦେବା ଲୋକ ତ ସେ ନୁହନ୍ତି । ସେ ସ୍ତ୍ରୀଙ୍କ ଅନୁରୋଧକୁ ଉପେକ୍ଷା କରି ସଙ୍ଗେ ସଙ୍ଗେ ପୋଲିସ ଅଫିସରମାନଙ୍କୁ ଡକାଇ ପଠାଇଲେ । ସେମାନେ ଆସିଗଲାରୁ କି ପଦକ୍ଷେପ ନେବେ, ସେମାନଙ୍କ ସହ ଗୁପ୍ତ ମନ୍ତ୍ରଣା ଚାଲିଲା । ପୁନାର ଯେଉଁ ସ୍ଥାନରେ ଟଙ୍କା ଦେଣନେଣ ହେବାକଥା ସେମାନେ ଅତି ଗୋପନୀୟ ଭାବରେ ପୁନା ପୋଲିସ ସାହାଯ୍ୟରେ ସେହି ସ୍ଥାନଟିକୁ ଘେରାଉ କରିଦେଲେ । ଯୋଜନା ହେଲା, ସେମାନେ ଟଙ୍କା ପାଇଁ ଆସିଲାକ୍ଷଣି ସେମାନଙ୍କୁ ଧରି ପକାଇବେ । ଦେବବାବୁଙ୍କର ପୋଲିସସହ ଏହି ଆଲୋଚନା ଖୁବ୍ ଗୋପନୀୟ ରଖାଗଲା । ପୋଲିସ ଅଫିସରମାନେ ସାଦା ପୋଷାକ ପିନ୍ଧି ପୋଲିସଗାଡ଼ିରେ ନ ଆସି ଦେବବାବୁ ପଠାଇଥିବା ଗାଡ଼ିରେ ଆସିଥିଲେ । ଡର ଥିଲା, ଅସାମାଜିକ ଲୋକଙ୍କ ଗୁପ୍ତଚରମାନେ ଯଦି ପାଖଆଖରେ ବୁଲୁଥାନ୍ତି, ପୋଲିସ ଅଫିସରମାନଙ୍କୁ ଦେଖି ସେମାନଙ୍କୁ ସତର୍କ ହେବାପାଇଁ ଖବର ଦେଇଦେବେ ।

ଅସାମାଜିକ ଲୋକଙ୍କ ଏତାଦୃଶ ଧମକରେ ଶାନ୍ତାଦେବୀ ଅଧିକ ମ୍ରିୟମାଣ ହୋଇ ପଡ଼ିଥାନ୍ତି । ସେଥିସହ ରତ୍ନମଣୀ ଦେବୀ ବି । ସ୍ୱାମୀଙ୍କ ହରଣଚାଳ ଦିନଠାରୁ ରତ୍ନମଣୀ ଦେବୀ କାନ୍ଦି କାନ୍ଦି କତରାରେ ଲାଗିଗଲେଣି । ଅସାମାଜିକ

ଲୋକେ ତାଙ୍କ ସ୍ୱାମୀଙ୍କ ପ୍ରତି କିଭଳି ଅତ୍ୟାଚାର କରୁଥିବେ, ଭାବି ଭାବି ସେ ପାଗଳଭଳି ହେଉଥାନ୍ତି । ତାଙ୍କର ଆଉ ଏକ ଭୟ, ସେମାନେ ଯଦି ତାଙ୍କ ସ୍ୱାମୀଙ୍କୁ ହତ୍ୟା କରନ୍ତି, ତେବେ ତାଙ୍କର ସବୁ ଗଲା । ସେ ଜୀବନ ଧରି ରହିବେ କେମିତି ? ଶାନ୍ତାଦେବୀ ବେଳେବେଳେ ରତ୍ନମଣୀ ଦେବୀଙ୍କ ପାଖକୁ ଆସି ତାଙ୍କୁ ନାନା ପ୍ରକାର ପ୍ରବୋଧନା ଦିଅନ୍ତି । ଅପହରଣକାରୀମାନଙ୍କୁ ପାଞ୍ଚଲକ୍ଷ ଟଙ୍କା ଦେଇ ଶାମକୁ ମୁକୁଳାଇବା ପାଇଁ ଦେବବାବୁ କେମିତି ଚେଷ୍ଟା ଚଳାଇଛନ୍ତି, ତାହାର ମଧ୍ୟ ଆଭାସ ଦେବାକୁ ସେ ଭୁଲନ୍ତି ନାହିଁ ।

ବଡ଼ ଆଶ୍ଚର୍ଯ୍ୟର କଥା, ଅପହରଣକାରୀମାନେ ଯେଉଁ ତାରିଖ, ଯେଉଁ ସମୟ ଓ ଯେଉଁ ସ୍ଥାନରୁ ଟଙ୍କା ନେବାପାଇଁ କହିଥିଲେ, ସେମାନେ ସେହି ନିର୍ଦ୍ଧାରିତ ସ୍ଥାନକୁ ନିର୍ଦ୍ଧାରିତ ସମୟରେ ଆସିଲେନି । ସମ୍ଭବତଃ ସେମାନେ କୌଣସି ସୂତ୍ରରୁ ଖବର ପାଇ ଯାଇଥିଲେ ପୋଲିସର ସତର୍କତାମୂଳକ ବ୍ୟବସ୍ଥା ସମ୍ବନ୍ଧରେ ବା ସେମାନେ ଏହା ଭିତରେ ସେମାନଙ୍କ ଯୋଜନାକୁ ବଦଳାଇ ଏହାକୁ ଅନ୍ୟ ଏକ ରୂପଦେବାକୁ ଚେଷ୍ଟା କରୁଥିଲେ । ବର୍ତ୍ତମାନ ପ୍ରଶ୍ନ ହେଲା : ତା'ଯଦି ହୁଏ, ତେବେ ଅପହରଣକାରୀମାନଙ୍କୁ ଚିହ୍ନଟ କରାଯିବ କେମିତି ? ସେମାନଙ୍କ ଖୋଜ ନେବାପାଇଁ ପୋଲିସ ଯାହା କରୁଛି କରୁ, ଦେବବାବୁ ବୋମ୍ବେର ଜଣେ ଅତି ଦକ୍ଷ ଘରୋଇ ଗୋଇନ୍ଦା ଅଫିସରଙ୍କୁ ଲଗାଇଲେ । ବୋମ୍ବେର ସବୁଠାରୁ ଦକ୍ଷ ଘରୋଇ ଗୋଏନ୍ଦା ମଙ୍ଗଳ ଦେଶାଇ ଏହାର ଭାର ନେଲେ । ମିଷ୍ଟର ଦେଶାଇ ତାଙ୍କ ଅଧସ୍ତନ କର୍ମଚାରୀମାନଙ୍କୁ ସାରା ବୋମ୍ବେ ସହର ଓ ଆଖପାଖ ଇଲାକାରେ ଖେଳାଇଦେଲେ । କାଳେ ଦେବବାବୁଙ୍କ ଉପରକୁ କିଛି ବିପଦ ମାଡ଼ି ଆସିପାରେ, ସେମାନେ ସେହି ଭୟରେ ଦେବବାବୁଙ୍କ ଉପରେ ମଧ୍ୟ କଡ଼ା ଦୃଷ୍ଟି ରଖିଲେ । ସେମାନଙ୍କ ଧାରଣା, ଦୋଷୀମାନେ ସେମାନଙ୍କ ଯୋଜନା ଏଥର ଦେବବାବୁଙ୍କ ଉପରେ ଚଳାଇପାରନ୍ତି । ସେମାନଙ୍କର ଭୟ ଥାଏ, ଦୋଷୀମାନେ ହୁଏତ ଦେବବାବୁଙ୍କୁ ହରଣଚାଳ କରି ନେଇ ନୂଆ ପ୍ରକାର ଖେଳ ଖେଳିବାକୁ ଚେଷ୍ଟା କରିପାରନ୍ତି । ମିଷ୍ଟର ମଙ୍ଗଳ ଦେଶାଇ ଖାଲି ଜଣେ ଦକ୍ଷ ଗୋଏନ୍ଦା ଅଫିସର ନୁହନ୍ତି, ଦୋଷୀମାନଙ୍କୁ ଧରିବା ପାଇଁ ସେ ନାନା ପ୍ରକାର ସୂକ୍ଷ୍ମ ଯନ୍ତ୍ରପାତି ବିଦେଶରୁ ମଗାଇ ବ୍ୟବହାର କରନ୍ତି ବୋଲି ସୁନାମ ଅଛି ।

× × × × ×

"ଶାନ୍ତା, ଶାନ୍ତା, ଏଆଡ଼େ ଆସିଲ, ମୋ ଅଫିସ୍ ଚାବିକାଠିଟା ଏଠି ରଖେ, କାହିଁକି ମିଳୁନାହିଁ ଦେଖିଲ ?"

ଶାନ୍ତାଦେବୀ ଦେବବାବୁଙ୍କ ଡାକ ଶୁଣି ତାଙ୍କ କକ୍ଷକୁ ଚାଲି ଆସିଲେ । ସେତେବେଳକୁ ଦେବବାବୁ ଯେଉଁ ଡ୍ରୟରରେ ଚାବିକାଠି ସାଧାରଣତଃ ରଖନ୍ତି, ସେ ଡ୍ରୟରରେ ନ ଖୋଜି ଅନ୍ୟଠି ଖୋଜୁଥାନ୍ତି । ସେ ହଠାତ୍ ପଶି ଆସି ଆଶ୍ଚର୍ଯ୍ୟ ହୋଇ କହିଲେ, ''ତୁମେ ଚାବିକାଠିକୁ ରଖ କେଉଁଠି, ଆଉ ଖୋଜୁଛ କେଉଁଠି ?'' ଏହା କହି, ସେ ଡ୍ରୟରରୁ ଚାବିକାଠି କାଢ଼ିଆଣି ଦେବବାବୁଙ୍କ ହାତକୁ ବଢ଼ାଇ ଦେଉ ଦେଉ କହିଲେ, ''ତୁମର ତ କେବେ ଏମିତି ଭୁଲ ହୁଏନି, ଆଜି କେମିତି ଏମିତି ଭୁଲ ହେଲା ?'' ଶାନ୍ତାଦେବୀ ଏତକ କହି ଦେବବାବୁଙ୍କ ମୁହଁକୁ ଅନାଇ ଦେଲେ । ଶାନ୍ତାଦେବୀଙ୍କ କଥାରେ ଦେବବାବୁ କେମିତି ଭୟ ପାଇଗଲା ଭଳି ଦିଶୁଥାନ୍ତି । ଦେବବାବୁ ତ କେବେ ଏମିତି ଶଙ୍କିତ ହେବାର ସେ ଦେଖି ନାହାନ୍ତି । ଆଜି ହଠାତ୍ ସେ ଏମିତି ଶଙ୍କିତ ହୋଇ ପଡୁଛନ୍ତି କାହିଁକି ? ଅଫିସ୍‌କୁ ଗଲାବେଳେ ଦେବବାବୁ ଯେମିତି ତାଙ୍କ ସହିତ ହସଖୁସି କଥାବାର୍ତ୍ତା କରି ଯାଆନ୍ତି, ଆଜି କ'ଣ ସେମିତି ହେଉ ନାହାନ୍ତି ! ସ୍ୱାମୀ କିଛି ନୂଆ ବିପଦ ଆଶଙ୍କାରେ ଏମିତି ଶଙ୍କିତ ହୋଇ ପଡ଼ିଛନ୍ତି ନା କଅଣ ? ସେହି ବିପଦ ଆଶଙ୍କାରେ ସେ ସବୁ ଭୁଲି ଯାଇଛନ୍ତି ବୋଧହୁଏ । ତେବେ କ'ଣ ସେହି ବିପଦ ଆଶଙ୍କାରେ ସେ ତାଙ୍କ ସହିତ ହସଖୁସି ହୋଇପାରୁ ନାହାନ୍ତି ?

ଅଫିସ୍‌ରୁ ଫେରି ଦେବବାବୁ ଶାନ୍ତାଦେବୀଙ୍କ ସହିତ କାରଖାନା ସମ୍ବନ୍ଧରେ ନାନା କଥାବାର୍ତ୍ତା ହୁଅନ୍ତି । କିନ୍ତୁ ଏଥର ସେସବୁ ନ ହେବା ଦେଖି ଓ ଦେବବାବୁ ଶାନ୍ତାଦେବୀଙ୍କ ଆଗକୁ ଆସିବାକୁ ପଛାଉଥିବା ଦେଖି ତାଙ୍କର ହଠାତ୍ ସନ୍ଦେହ ହେଲା, ସେ ପ୍ରକୃତରେ ଦେବବାବୁ ନୁହନ୍ତି କି ? ଯଦି ହୋଇଥାନ୍ତି, ତେବେ ତାଙ୍କଠାରୁ ଏଭଳି ଅସ୍ୱାଭାବିକ ଭାବରେ ଦୂରେଇ ରହିବାକୁ ଚେଷ୍ଟା କରୁଛନ୍ତି କାହିଁକି ? ତାଙ୍କ ମନରେ ଏକ ଦ୍ୱନ୍ଦ୍ୱ ଜାତ ହେଲା । ତାଙ୍କ ମନରେ ସନ୍ଦେହ ଅପହରଣକାରୀମାନେ ଦେବବାବୁଙ୍କୁ ଅପହରଣ କରି ନେଇ ଶାମବାବୁଙ୍କୁ ଦେବବାବୁଙ୍କ ରୂପ ଦେଇ ପଠାଇ ନାହାନ୍ତି ତ ? ତା ଯଦି ହୋଇଥାଏ, ତେବେ ତ ସର୍ବନାଶ ! ଉଭୟେ ତ ଦେଖିବାକୁ ଏକାଭଳି, ଏକାବୟସ, ଏକା ରୂପ, ଅଭିନ୍ନ ଯାଆଁଳା ଭାଇ ପରି ଦିଶନ୍ତି । ସେମାନେ ନ କହିଲେ ସେମାନଙ୍କ ଭିତରୁ କିଏ ଦେବବାବୁ, କିଏ ଶାମବାବୁ ଜାଣିବା କଷ୍ଟକର । ସେମାନଙ୍କ କଥା କହିବା ଭଙ୍ଗୀ ଓ କଣ୍ଠସ୍ୱର ଏକାଭଳି ହୋଇଥିବାରୁ ସେମାନଙ୍କୁ ଚିହ୍ନିବା କଷ୍ଟକର ହୋଇ ପଡ଼ିଥାଏ । ଶାନ୍ତାଦେବୀ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଯାଇଥାନ୍ତି ଇଏ ତାଙ୍କ ସ୍ୱାମୀ ଦେବବାବୁ କି ନୁହେଁ ଜାଣିବା ପାଇଁ । ଏହି ଦେବବାବୁଙ୍କ କଥାବାର୍ତ୍ତା, ଢଙ୍ଗରଙ୍ଗ ତାଙ୍କୁ କେମିତି ଅଲଗା ଅଲଗା ଜଣାପଡୁଥାଏ । ତଥାପି ସେ ସାହସ କରି ପଚାରି ପାରୁ ନ ଥାନ୍ତି, କାରଣ ସେ ଯଦି ପ୍ରକୃତ ଦେବବାବୁ ହୋଇଥାନ୍ତି, ତେବେ ଏହି ମିଥ୍ୟା ସନ୍ଦେହ ଶାନ୍ତାଦେବୀଙ୍କୁ ଏକ ଅସୁବିଧାରେ ପକାଇ ଦେଇପାରେ ।

ଏଇ କେତେଦିନ ହେଲା ଦେବବାବୁ ଶାନ୍ତାଦେବୀଙ୍କ ସହି ପୂର୍ବଭଳି କଥାବାର୍ତ୍ତା କରୁ ନାହାନ୍ତି । ମନରେ ତାଙ୍କର କିଛି ଗୋଟାଏ ଭୟ ଓ ସନ୍ଦେହ ରହିଲାଭଳି ଜଣାପଡୁଥାଏ । ଘର ଭିତରେ ସେ ଶାନ୍ତାଦେବୀଙ୍କୁ ଦେଖିଦେଲାବେଳକୁ ଅପ୍ରତିଭ ହୋଇ ପଡୁଥାନ୍ତି । ସତେ ଯେମିତି ସେ ଏମିତି କିଛି ଦୋଷ କରିଛନ୍ତି, ଯାହାପାଇଁ କି ଶାନ୍ତାଦେବୀଙ୍କ ମୁହଁକୁ ଅନାଇବାକୁ ତାଙ୍କର ସାହସ ନାହିଁ । ଶାନ୍ତାଦେବୀଙ୍କର ସନ୍ଦେହ, ସ୍ୱାମୀ ତ କେବେ ଏଭଳି ମନୋବୃତ୍ତି ଦେଖାନ୍ତି ନାହିଁ । ଆଜି କାହିଁକି ଏମିତି ମନୋବୃତ୍ତି ଦେଖାଉଛନ୍ତି ? ଇଏ କ'ଣ ତା'ହେଲେ ପ୍ରକୃତ ଦେବବାବୁ ନୁହନ୍ତି ?

ଦେବବାବୁ ପ୍ରତିଦିନ ଅଫିସ୍ ଯାଉଥାନ୍ତି ସତ, କିନ୍ତୁ ଫାଇଲପତ୍ର କିଛି ଶେଷ କରିପାରୁ ନ ଥାନ୍ତି । ଫାଇଲ ଉପରେ କ'ଣ ଆଦେଶଦେବେ ଠିକ୍ କରି ନ ପାରି ଅନ୍ୟତ୍ର ଚାଲି ଯାଉଥାନ୍ତି, ଯାହାକି କେବେ ଦେବବାବୁଙ୍କଠାରେ ପରିଲକ୍ଷିତ ହୁଏନି । ବେଳେବେଳେ ଦେହ ଭଲ ନାହିଁ କହି ଫାଇଲ ଦେଖାରେ ଟାଳଟୁଳ କରୁଥାନ୍ତି । ମେନେଜରମାନଙ୍କୁ ଆଉ ପୂର୍ବଭଳି ଦେଖାଦେଉ ନ ଥାନ୍ତି । ନିଜ ନିଜ ସମସ୍ୟା ନିଜେ ନିଜେ ସମାଧାନ କରିବାକୁ କହୁଥାନ୍ତି । ଦେବବାବୁଙ୍କ ଏଭଳି ହାବଭାବ ଦେଖି ଅଫିସ୍ ଲୋକେ ମଧ୍ୟ ତାଟଙ୍ଗା । ସମସ୍ତଙ୍କ ମୁହଁରେ ଗୋଟିଏ ପ୍ରଶ୍ନ ବଡ଼ ମାଲିକଙ୍କର ହଠାତ୍ ଏ କ'ଣ ହେଲା ?

ଏଣେ ଠିକ୍ ସମୟରେ ସେ ଘରକୁ ଆସୁ ନାହାନ୍ତି । ଅଫିସ୍‌ରୁ ବେଳେବେଳେ ସିଧାସଳଖ ବୋମ୍ବେ ଚାଲି ଯାଉଛନ୍ତି । ଯିବାପୂର୍ବରୁ ଶାନ୍ତାଦେବୀଙ୍କୁ ଦେବବାବୁ ଦେଖାକରି ଯାଉଥିଲେ, କିନ୍ତୁ ଏ ଦେବବାବୁ ସେପରି କିଛି କରୁ ନାହାନ୍ତି । ଦେବବାବୁ ସକାଳୁ ରାତି ପର୍ଯ୍ୟନ୍ତ ଯେଉଁ କାମ ଗୋଟିକ ପରେ ଗୋଟିଏ ଏକ ଧନ୍ଧାବନ୍ଧା ନୀତିରେ କରି ଯାଉଥିଲେ ଓ ତାଙ୍କ କାମରେ ଦିନଟିଏ ମଧ୍ୟ କୌଣସି ବ୍ୟତିକ୍ରମ ଦେଖାଯାଉ ନ ଥିଲା, ସେହିସବୁ କାମ ଏବେ ଏଣିକି ନାନା ବ୍ୟତିକ୍ରମ ଭିତରେ କରିଯାଉଛନ୍ତି, କାହାପର କେଉଁଟା ସେ ସାଧାରଣତଃ କରନ୍ତି, ତାହା ଭୁଲି ଯାଉଛନ୍ତି । ସ୍ୱାମୀଙ୍କର ଏହିଭଳି ହାବଭାବ ଦେଖି ଶାନ୍ତାଦେବୀଙ୍କର ସନ୍ଦେହ ଦିନକୁଦିନ ବଢ଼ିବାକୁ ଲାଗିଲା । ତାଙ୍କ ମନରେ ସନ୍ଦେହ ଦୃଢ଼ୀଭୂତ ହେଲା, ଇଏ ସମ୍ଭବତଃ ତାଙ୍କ ସ୍ୱାମୀ ଦେବବାବୁ ନୁହନ୍ତି । ତାହାହେଲେ ଇଏ କିଏ ? ଶାମବାବୁ ଦେବବାବୁଙ୍କ ରୂପ ନେଇ ଏ ଘରକୁ ଆସି ନାହାନ୍ତି ତ ? ଠିକ୍ ପରମୂହୂର୍ତ୍ତରେ ମନରେ ଝଡ଼ ଉଠିଲା, "ତାହାହେଲେ ତାଙ୍କ ସ୍ୱାମୀ ଦେବବାବୁ ଗଲେ କୁଆଡ଼େ ? ସେ କ'ଣ ତାହାହେଲେ ହରଣଚାଳ ହୋଇ ଯାଇଛନ୍ତି ? ଏହା ହୋଇପାରେ, ଅପହରଣକାରୀମାନେ ଦେବବାବୁଙ୍କୁ ହରଣଚାଳ କରି ନେଇ

ଶାମବାବୁଙ୍କୁ ଦେବବାବୁ ଭାବରେ ପଠାଇଛନ୍ତି କିଛି ଗୋଟାଏ ବଡ଼ ଫାଇଦା ଉଠାଇବା ଉଦ୍ଦେଶ୍ୟରେ । ଶାମବାବୁ ଏ ସଂସ୍ଥାର ମାଲିକ ଦେବବାବୁ ରୂପରେ ରହିଲେ ଏହି ସଂସ୍ଥାରୁ ଅର୍ଥ ଉଠାଇ ହରଣଚାଳକକାରୀମାନଙ୍କୁ ଦେଇ ପାରନ୍ତି । ବେଳକୁବେଳ ଶାନ୍ତାଦେବୀଙ୍କର ସେହି ସନ୍ଦେହ ଦୃଢ଼ୀଭୂତ ହେବାକୁ ଲାଗିଲା ।

ଶାନ୍ତାଦେବୀ ଅତି ବୁଦ୍ଧିମତୀ । ସେ ଏଥିପୂର୍ବରୁ ଦେବବାବୁଙ୍କ ଶରୀରରେ କେତେଗୋଟି ନିର୍ଦ୍ଦିଷ୍ଟ ସୂକ୍ଷ୍ମ ଚିହ୍ନ ଲକ୍ଷ୍ୟ କରି ନେଇଥିଲେ, ଯେଉଁ ଚିହ୍ନ ଶାମବାବୁଙ୍କ ଶରୀରରେ ନ ରହିବା କଥା । ଦିନେ ଦେବବାବୁ ଶାନ୍ତାଦେବୀଙ୍କ କୋଠରିପାଖ ନିଜ ଶୟନକକ୍ଷରେ ଶୋଇଥିଲାବେଳେ ସେ ଯାଇ ଏହିସବୁ ଚିହ୍ନ ଅଛି କି ନାହିଁ ପରୀକ୍ଷା କରି ଦେଖି ନେଇଥିଲେ । ବିଶେଷତଃ ସେ ଯେତେବେଳେ ଆମେରିକାରେ ଚିକିତ୍ସିତ ହେଉଥିଲେ, ଏକ ଅପରେସନର ଚିହ୍ନ ତାଙ୍କ ବାମହାତର ଉପର ବାହୁରେ ଥିଲା । ଏଭଳି ଚିହ୍ନ ଶାମବାବୁଙ୍କ ଠିକ୍ ସେହି ସ୍ଥାନରେ ରହିବା କଥା ନୁହେଁ । ଶାନ୍ତାଦେବୀ ଏତେଦିନ ଧରି ଯେଉଁ ଦ୍ୱନ୍ଦ୍ୱରେ ପଡ଼ିଥିଲେ ଇଏ ଶାମ କି ଦେବବାବୁ, ତାହା ଏହି ପରୀକ୍ଷାରୁ ଦୂର ହେଲା । ଇଏ ଯେ ପ୍ରକୃତରେ ଶାମ ଏଥିରେ ତାଙ୍କର ସନ୍ଦେହ ରହିଲାନି । ବର୍ତ୍ତମାନ ତାଙ୍କ ମନରେ ପ୍ରଶ୍ନ ଉଠିଲା, ତେବେ ଅପହରଣକାରୀମାନେ ଦେବବାବୁଙ୍କୁ ଅପହରଣ କରି ନେଇ କେଉଁଠି ବନ୍ଦୀ କରି ଲୁଚାଇ ରଖିଛନ୍ତି ? କେତେ ନିର୍ଯ୍ୟାତନା ଦେଉ ନ ଥିବେ ତାଙ୍କୁ ? ଶାନ୍ତାଦେବୀଙ୍କ ମନରେ କୋହ ଉଠିଲା । ସ୍ୱାମୀଙ୍କ କଥା ଭାବି ଭାବି ଆଖି ସଜଳ ହୋଇଉଠିଲା । କେଡ଼େ ହତଭାଗିନୀ ସେ ? ସ୍ୱାମୀଙ୍କ ଉପରକୁ କେତେବଡ଼ ବିପଦ ମାଡ଼ି ଆସିଛି ଅଥଚ ସେ କିଛି କରିପାରୁ ନାହାନ୍ତି ।

ବେଳେବେଳେ ମନରେ ଦ୍ୱନ୍ଦ୍ୱ ଜାତ ହେଉଥାଏ, ଇଏ ଦେବବାବୁ ହୋଇଥାଇ ପାରନ୍ତି । ଶରୀରର ସେହି ଚିହ୍ନ ଇତିମଧ୍ୟରେ ମିଳାଇଯାଇ ପାରିଥାଏ ? ଦେବବାବୁଙ୍କର କୌଣସି ମାନସିକ ଅଶାନ୍ତିଯୋଗୁଁ ସେ ତାଙ୍କଠାରୁ ଏମିତି ଦୂରେଇ ରହିବାକୁ ଭଲ ପାଇପାରନ୍ତି ଓ ତାଙ୍କ ଦୈନନ୍ଦିନ କାମରେ ବ୍ୟତିକ୍ରମ ଦେଖାଯାଇ ପାରିଥାଏ । ଏହିଭଳି ଦ୍ୱନ୍ଦ୍ୱ ଭିତରେ ପଡ଼ି ଶାନ୍ତାଦେବୀ କିଛି ଠିକ୍ କରିପାରୁ ନ ଥାନ୍ତି ଇଏ ନିଜ ସ୍ୱାମୀ କି ନୁହେଁ । ଏହି ଦ୍ୱନ୍ଦ୍ୱ ଭିତରେ ସେ ମଧ୍ୟ ନିଜକୁ ଦେବବାବୁଙ୍କ ଠାରୁ ଦୂରେଇ ରଖିଲେ ।

ଏହିଭଳି କିଛିଦିନ କଟିଗଲା । ପ୍ରକୃତରେ ଶାମବାବୁ ହରଣଚାଳ ହୋଇଛନ୍ତି କି ଦେବବାବୁ ହରଣଚାଳ ହୋଇଛନ୍ତି ସଠିକ୍ ଭାବରେ ଶାନ୍ତାଦେବୀ ଜାଣିପାରିଲେନି । କିନ୍ତୁ ଦିନକୁଦିନ ସ୍ୱାମୀଙ୍କ କାର୍ଯ୍ୟରେ ନାନା ବ୍ୟତିକ୍ରମ ଅଧିକରୁ ଅଧିକ ଦେଖାଦେଲା । ଦିନେ ମଧ୍ୟରାତ୍ରରେ ସ୍ୱାମୀ ନିଜ ଶୟନକକ୍ଷରେ ମଦ୍ୟପାନ କରୁଥିବାର ଦେଖି

ତାଙ୍କ ସନ୍ଦେହ ଦୃଢ଼ୀଭୂତ ହେଲା ଯେ ଇଏ କଦାପି ତାଙ୍କ ସ୍ୱାମୀ ନୁହନ୍ତି । ଇଏ ହେଉଛି ନିଶ୍ଚୟ ଶାମ । ଶାମ ମଦ୍ୟପାନରେ ଧୁରନ୍ଧର ବୋଲି ସେ ଏଥିପୂର୍ବରୁ ଖବର ପାଇଥିଲେ । ଦେବବାବୁ ସର୍ବଦା ମଦ୍ୟପାନ ବିରୋଧରେ । ସେ ଭୁଲରେ କେବେ ମଦ୍ୟପାନ କରନ୍ତିନି । ସେ ଆମେରିକାରୁ ରୋଗମୁକ୍ତ ହୋଇ ଫେରିବା ପୂର୍ବରୁ ପୁଅ ରାମକିଷନର ବ୍ୟବସ୍ଥାନୁଯାୟୀ ମେନେଜରମାନଙ୍କ ମିଟିଂରେ ମୂଲ୍ୟବାନ ମଦ ପରଷା ହେଉଥିଲା । ଦେବବାବୁ କାମରେ ଯୋଗଦେଲାକ୍ଷଣି ସଙ୍ଗେ ସଙ୍ଗେ ତାହା ବନ୍ଦ କରି ଦେଇଥିଲେ । ପୁଅ ବାହାରକୁ ରପ୍ତାନୀ ପାଇଁ ଯେଉଁ ବିଦେଶୀ ମଦ କାରଖାନା ବସାଇଥିଲେ, ଯେଉଁ କାରଖାନାର ଖ୍ୟାତି ଭାରତ ଭିତରେ ଓ ଭାରତ ବାହାରେ ଖୁବ୍ ଥିଲା ଓ ଏହି ମଦ ରପ୍ତାନୀ କରି ରାମବାବୁ ଅଜସ୍ର ଅର୍ଥ ଉପାର୍ଜନ କରୁଥିଲେ, ଦେବବାବୁ ପରିଚାଳନା ଦାୟିତ୍ୱ ନେବାକ୍ଷଣି ସେସବୁ ଉଠାଇ ଦେଇଥିଲେ । ନାତି ଶାମ ଦୁର୍ଘଟଣା ପରଠାରୁ ମଦ ଖାଇବା ଆରମ୍ଭ କରିଛି ବୋଲି ଶୁଣି ତା ଉପରେ ଭାରି ବିରକ୍ତ । ତେଣୁ ସେ ପରିସ୍ଥିତିରେ ସେ ମଦଖାଇବା ପ୍ରଶ୍ନ ଉଠି ନ ପାରେ । ଏହି ଘଟଣାଟି ତାଙ୍କୁ ନିଶ୍ଚିତ କରାଇଦେଲା ଯେ ଇଏ ତାଙ୍କ ସ୍ୱାମୀ ଦେବବାବୁ ନୁହନ୍ତି, ଇଏ ହେଉଛି ତାଙ୍କ ନାତି ଶାମ, ଦେବବାବୁଙ୍କ ଭଳି ଅଭିନୟ କରୁଛି ।

ତଥାପି ବି ତାଙ୍କ ମନରୁ ଦ୍ୱନ୍ଦ୍ୱ ଦୂର ହୋଇ ନ ଥାଏ । କେତେବେଳେ ଯଦି ଭାବୁଥାନ୍ତି, ଇଏ ଶାମ, ପର ମୁହୂର୍ତ୍ତରେ ମନରେ ପୁଣି କେତେ ଯୁକ୍ତି ଆସୁଥାଏ ଦେବବାବୁଙ୍କ ସପକ୍ଷରେ । ତେଣୁ ସେ ଖୋଲାଖୋଲି ଭାବରେ ବାହାରେ ପ୍ରକାଶ କରିପାରୁ ନ ଥାନ୍ତି, ଇଏ ଦେବବାବୁ ନୁହନ୍ତି ବୋଲି । ଏମିତି ଦ୍ୱନ୍ଦ୍ୱ ଭିତରେ ପଡ଼ି ସେ ଏହାର ସମାଧାନ ପାଇଁ ସ୍ୱାମୀଙ୍କ ଦ୍ୱାରା ନିଯୁକ୍ତ ଘରୋଇ ଡିଟେକ୍‌ଟିଭ ମଙ୍ଗଳ ଦେଶାଇଙ୍କୁ ଡକାଇ ତାଙ୍କ ସନ୍ଦେହ କଥା କହିଲେ । ଇଏ ଦେବବାବୁ ନୁହନ୍ତି ବୋଲି ଯେତେ ଯୁକ୍ତି ତାଙ୍କ ମନରେ ଠୁଳ ହୋଇଥିଲା, ସେସବୁ ମିଷ୍ଟର ଦେଶାଇଙ୍କ ଆଗରେ ପ୍ରକାଶ କଲେ । ସେଥିଭିତରୁ କେତେକ ମିଷ୍ଟର ଦେଶାଇ ଯୁକ୍ତି ଛଳରେ କାଟି ଦେଇ ଯେଉଁ କେତୋଟି ଅକାଟ୍ୟ ରହିଗଲା, ତାହା ପ୍ରମାଣ କଲା; ଇଏ ପ୍ରକୃତରେ ଦେବବାବୁ ନୁହନ୍ତି ବୋଲି । ଦେବବାବୁ ନ ହେଲେ ଇଏ ନିଶ୍ଚୟ ଶାମବାବୁ ହେବେ । ମିଷ୍ଟର ଦେଶାଇ ଏତେଦିନକାଳ ଯାହା ଶାମବାବୁଙ୍କୁ ଖୋଜୁଥିଲେ, ଏଥର ଶାମବାବୁଙ୍କୁ ଖୋଜିବା ବନ୍ଦ କରି ଦେବବାବୁଙ୍କୁ ଖୋଜିବାରେ ଲାଗିଗଲେ । ଅପହରଣକାରୀମାନେ ସେଦିନ କାହିଁକି ଟଙ୍କା ନେବା ପାଇଁ ଆସିଲେନି, ତା'ର କାରଣ ବର୍ତ୍ତମାନ ତାଙ୍କୁ ଜଳଜଳ ଦିଶିଲା । ସେମାନେ ପୋଲିସ ଭୟରେ ଯେ ଟଙ୍କା ନେବା ପାଇଁ ଆସିଲେନି,

ତା ନୁହଁ । ଇତିମଧ୍ୟରେ ସେମାନେ ସେମାନଙ୍କ ଯୋଜନା ବଦଳାଇ ଦେଇଥିବାରୁ ଶାମବାବୁଙ୍କୁ ଫେରାଇବା ପ୍ରଶ୍ନ ଉଠୁ ନ ଥିଲା । ସେମାନେ ଭାବିଲେ ଶାମବାବୁଙ୍କୁ ଫେରାଇ ପାଞ୍ଚଲକ୍ଷ ଟଙ୍କା ନେବେ କାହିଁକି, ଦେବବାବୁଙ୍କୁ ହରଣଚାଳ କରି ଆଣି ଶାମବାବୁଙ୍କୁ ଦେବବାବୁ କରି ତାଙ୍କ ଜରିଆରେ କୋଟି କୋଟି ଟଙ୍କା ମାରି ନ ନେବେ କାହିଁକି ? ମିଷ୍ଟର ଦେଶାଇ ଏହିଭଳି ଭାବି ଚାଲିଛନ୍ତି, ହଠାତ୍ ଶାନ୍ତାଦେବୀ କହିଲେ, "ଆପଣ ଆଉକିଛି ସାକ୍ଷ୍ୟ ଦରକାର କରନ୍ତି ନା ଏତିକି ହେବ ମିଷ୍ଟର ଦେଶାଇ ?"

ଶାନ୍ତାଦେବୀଙ୍କ ଏହି କଥା କେଇପଦରେ ମିଷ୍ଟର ଦେଶାଇ ପ୍ରକୃତିସ୍ଥ ହୋଇଯାଇ କହିଲେ, "ନା, ନା, ଆଉ ଦରକାର ନାହିଁ । ମୁଁ ଯାଇ ଦେବବାବୁଙ୍କୁ ଦେଖାକରେ । ସେଇ ଦେଖାବେଳେ ମୁଁ ଜାଣିପାରିବି ସେ ପ୍ରକୃତରେ ଦେବବାବୁ କି ନୁହେଁ ।"

## ଚଉଦ

ଇଣ୍ଟରକମ୍ ବାଜି ଉଠିଲା । ପ୍ରାଇଭେଟ୍ ସେକ୍ରେଟେରୀ ମିସ୍ ଜୁଭେଦା କହିଲେ, "ସାର୍, ଆପଣଙ୍କୁ ମିଷ୍ଟର ଦେଶାଇ ସାକ୍ଷାତ କରିବାକୁ ଚାହୁଁଛନ୍ତି ।"

"କିଏ ଦେଶାଇ ? ତାଙ୍କର ମୋ ଠାରେ କି କାମ ?" ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଦେବବାବୁ ।

ମିଷ୍ଟର ଦେଶାଇ ହେଉଛନ୍ତି ବୋମ୍ବେର ସୁପ୍ରସିଦ୍ଧ ପ୍ରାଇଭେଟ୍ ଡିଟେକ୍ଟିଭ୍ । ଶାମବାବୁଙ୍କୁ ଖୋଜି ବାହାର କରିବା ଦାୟିତ୍ୱ ପରା ଆପଣ ତାଙ୍କୁ ଦେଇଥିଲେ । ସେ ସଂକ୍ରାନ୍ତରେ ସେ ଆପଣଙ୍କ ସହ କ'ଣ କଥାବାର୍ତ୍ତା କରିବାକୁ ଆସିଛନ୍ତି ।"

"ହେଉ, ପଠାଇଦିଅ । ଦେଖ, ଜୁଭେଦା, ପରେ ପରେ କଫି ପଠାଇଦେବ ।"

ମିଷ୍ଟର ଦେଶାଇ ଦେବବାବୁଙ୍କ ଅଫିସ୍ କକ୍ଷ ଭିତରକୁ ପଶିଯାଇ ନମସ୍କାର ଜଣାଇ ସାମନା ଚେୟାରରେ ବସିଲେ । ସେ ଶାମବାବୁଙ୍କୁ ଖୋଜି ବାହାର କରିବା ପାଇଁ ଯେଉଁ ପ୍ରକୃତ ଯୋଜନା କରିଥିଲେ, ସେ ଯୋଜନାକୁ ନ କହି ଆଉ ଏକ ମନଗଢ଼ା ଯୋଜନା ଉପସ୍ଥାପିତ କରି ତାଙ୍କ ମତ ଲୋଡ଼ିଲେ । ଏଥିପୂର୍ବରୁ ସେ ଦେବବାବୁଙ୍କୁ ପ୍ରକୃତ ଯୋଜନାଟା ଦେଇଥିଲେ । ସେ ଏଥର ଯୋଜନାକୁ ବଦଳାଇ କହିବାର ଅର୍ଥ ଦୁଇ ପ୍ରକାର । ଇଏ ପ୍ରକୃତରେ ଦେବବାବୁ କି ନୁହେଁ ଜାଣିବେ । ସେ ଯଦି ପ୍ରକୃତ ଦେବବାବୁ ହୋଇଥାନ୍ତି, ପ୍ରଥମ ଯୋଜନା ଜାଣିଥିବାରୁ ଯୋଜନା ବଦଳିବାର କାରଣ ନିଶ୍ଚୟ ପଚାରିବେ । ସେ ଯଦି

ପ୍ରକୃତ ଦେବବାବୁ ନ ହୋଇଥାନ୍ତି, ତେବେ କିଛି ପଚାରିବେ ନାହିଁ, କାରଣ ପ୍ରଥମ ଯୋଜନା ସେ ଜାଣି ନାହାନ୍ତି । ଦ୍ୱିତୀୟ କାରଣ ହେଉଛି, ସେ ଯଦି ପ୍ରକୃତରେ ଦେବବାବୁ ନ ହୋଇ ଶାମବାବୁ ହୋଇଥାନ୍ତି, ପ୍ରକୃତ ଯୋଜନା ଜାଣିଗଲେ ଦୋଷୀମାନେ ସାବଧାନ ହୋଇଯିବେ । ତେଣୁ ସେ କ୍ଷେତ୍ରରେ ସେମାନଙ୍କୁ ଧରିବା କଷ୍ଟକର ହୋଇପଡ଼ିବ ।

ଯୋଜନାଟି ଶୁଣି ଦେବବାବୁ କହିଲେ, ‘‘ଆପଣ ତ କରିଛନ୍ତି, ମୋତେ ପଚାରି ଲାଭ କଅଣ ? ମୋର ସେ ବିଷୟରେ କି ଦକ୍ଷତା ଅଛି ଯେ ଆପଣଙ୍କୁ ପରାମର୍ଶ ଦେବି ମିଷ୍ଟର ଦେଶାଇ ? ଆପଣ ଏତେଦିନ ଧରି ଅପହରଣକାରୀମାନଙ୍କ ପତ୍ତା ଲଗାଇପାରି ନାହାନ୍ତି ବଡ଼ ଦୁଃଖର କଥା । ବିଚାରା ମୋ ନାତିଟି ସେମାନଙ୍କ ଅକ୍ତିଆରରେ ରହି କେତେ ଦୁଃଖକଷ୍ଟ ପାଉଥିବ, ସେ ଆଡ଼କୁ ଟିକିଏ ଦୃଷ୍ଟି ଦିଅନ୍ତୁ ମିଷ୍ଟର ଦେଶାଇ ।

× × × × ×

ଡକାୟତମାନେ ଯେଉଁ ଆଶାରେ ଦେବବାବୁଙ୍କୁ ହରଣଚାଳ କରିନେଇ ଶାମବାବୁଙ୍କୁ ଦେବବାବୁ ସାଜି ଅଗ୍ରୱାଲ ଶିଳ୍ପ ସାମ୍ରାଜ୍ୟର ମାଲିକ କରି ପଠାଇଥିଲେ ସେ ଆଶା ଫଳବତୀ ହେଲାନି । ସେମାନେ ଆଶା କରି ନ ଥିଲେ ମାଲିକ ହୋଇ ମଧ ସେମାନେ କିଛି ପାଇପାରିବେ ନାହିଁ ତାଙ୍କଠାରୁ । ଶାମବାବୁ ବା କ’ଣ କରିବେ ? ସେ ଦେଖିଲେ ଟ୍ରେଜେରି ପୂରାପୂରି ଶୂନ୍ୟ, ସାଧାରଣ ଦୈନନ୍ଦିନ ଚଳଣି ପାଇଁ ଯାହାକିଛି ଅଳ୍ପ ଟଙ୍କା ଅଛି, ସେ କିଛି ନୁହେଁ । ତାହାଙ୍କୁ ଯେଉଁ କେତେକ ଅସାଧୁ କର୍ମଚାରୀ ଗୋପନରେ ପରାମର୍ଶ ଦେଇଥିଲେ ସେ ରାମବାବୁଙ୍କ ଅମଳରୁ ଭୂମିତଳ ସୁଡ଼ଙ୍ଗରେ କୋଟି କୋଟି ଟଙ୍କାର ସୁନାଇଟା, ମୋହର ଆଦି ଗଚ୍ଛିତ ଅଛି । ସେସବୁ ଖୋଲି ଦେଖିଲାରୁ ସେସବୁ ଶୂନ୍ୟ ହୋଇ ଯାଇଛି । ମୂଲ୍ୟବାନ ଅଳଙ୍କାର ଭାବରେ ଯାହା ସମ୍ପତ୍ତି ଥିବା କଥା ସେସବୁ ଶାନ୍ତାଦେବୀଙ୍କ ଅକ୍ତିଆରରେ । ଶିଳ୍ପମାନଙ୍କର ଆୟ ଧନ ଯାହା, ସେସବୁ ବେଙ୍କ୍‌ରେ । ବେଙ୍କ୍‌ରୁ ସେସବୁ ଟଙ୍କା ଆଣିବା ଦାୟିତ୍ୱରେ ଅନ୍ୟମାନେ ଅଛନ୍ତି, ସେ ଇଚ୍ଛା କଲେ ମଧ ଆଣି ପାରିବେନି । କେଉଁ କେଉଁ କାର୍ଯ୍ୟ ପାଇଁ ଟଙ୍କା ବେଙ୍କ୍‌ରୁ ଆସିପାରିବ, ତାହା ପାଇଁ ଧରାବନ୍ଧା ନିୟମ ଅଛି । ସେହି ନିୟମ ବାହାରକୁ ଯାଇ ବେଙ୍କ୍‌ରୁ କେହି କିଛି ଟଙ୍କା ଉଠାଇ ପାରିବେନି । ସେ ଯଦି ସେହି ନିୟମ ବାହାରକୁ ଯାଇ ନିଜେ ଟଙ୍କା ଉଠାନ୍ତି, ତେବେ ଅନ୍ୟମାନେ ସନ୍ଦେହ କରିବେ ଓ ବେଙ୍କର ନିୟମକାନୁନ୍ ଏମିତି ଯେ ସେ ନିଜେ ମଧ ଉଠାଇପାରିବେ କି ନାହିଁ ସନ୍ଦେହ ।

ଶାମବାବୁ ଖୁବ୍ ସତର୍କ ହୋଇ ଚଳୁଥାନ୍ତି । କାଳେ କେଉଁଠି ଯଦି ଧରା ପଡ଼ିଯାନ୍ତି, ତେବେ ସବୁ ଯୋଜନା ଫସର ଫାଟିଯିବ । ଦେବବାବୁ ଅଫିସ୍ କାମ ଯେଉଁ ରୀତିରେ କରୁଥିଲେ, ଶାମବାବୁ ଠିକ୍ ସେଇ ରୀତିରେ କରୁଥାନ୍ତି ସତ, କିନ୍ତୁ ବ୍ୟତିକ୍ରମ ହୋଇ ଯାଉଥାଏ । ହେଲେ ଇଏ ଦେବବାବୁ ନୁହନ୍ତି ବୋଲି କାରଖାନାରେ କେହି ସେମିତି କିଛି ସନ୍ଦେହ କରି ନ ଥାନ୍ତି । ଶାମବାବୁଙ୍କ ଅସାମାଜିକ ବନ୍ଧୁମାନେ ଆସି ଶାମବାବୁଙ୍କୁ ଅନେକ ସମୟରେ ଭେଟନ୍ତି, କିନ୍ତୁ ଶାମବାବୁଙ୍କଠାରୁ କିଛି ନ ପାଇ ବଡ଼ ବିରକ୍ତ ହୁଅନ୍ତି । ଶାମବାବୁ ସେମାନଙ୍କୁ କାରଖାନାର ଚଳଣି କଥା ଯେତେ ବୁଝାଇଲେହେଁ ସେମାନେ ବୁଝନ୍ତି ନାହିଁ । କେମିତି ବା ବୁଝିବେ ? ଅନ୍ୟ ଶିଳ୍ପପତିମାନଙ୍କ ଟ୍ରେଜେରିରେ କୋଟି କୋଟି ଟଙ୍କା ଗଚ୍ଛିତ ଥିଲାବେଳେ, ଏହାଙ୍କ ଟ୍ରେଜେରି ଶୂନ୍ୟ ବୋଲି ସେମାନେ ବିଶ୍ୱାସ କରିବେ ବା କେମିତି ? ଶେଷରେ ସେମାନେ ଶାନ୍ତାଦେବୀଙ୍କ ଲୁହା ସିନ୍ଦୁକରୁ ସୁନା, ହୀରା, ନୀଳା, ମୋତି, ମାଣିକ୍ୟର ଗହଣାସବୁ ଜୋର ଜବରଦସ୍ତି ନେଇ ଆସିବା ପାଇଁ ଶାମବାବୁଙ୍କୁ ପ୍ରବର୍ତ୍ତାନ୍ତି । ଯଦି ସେ ନ ଆଣନ୍ତି, ତେବେ ତାଙ୍କୁ ଜୀବନରୁ ମାରି ଦେବାପାଇଁ ଧମକ ଦିଅନ୍ତି । ସେମାନଙ୍କ ଯୋଜନାନୁସାରେ କାମ କରିବାକୁ ରାଜି ହୁଅନ୍ତି ଶାମବାବୁ । ସେମାନଙ୍କ ଯୋଜନା ହେଉଛି ପ୍ରଥମେ ପ୍ରଥମେ ଶାମବାବୁ କୌଣସି ଏକ ଆଳରେ ଲୁହା ସିନ୍ଦୁକର ଚାବିକାଠି ଶାନ୍ତାଦେବୀଙ୍କୁ ମାଗିବେ, ଯଦି ନ ଦିଅନ୍ତି, ତେବେ ଅପହରଣକାରୀମାନେ ଶାମବାବୁଙ୍କ ସଲାସୁତରରେ ତାଙ୍କ ଉପରେ ଆକ୍ରମଣ କରି ଗହଣାଗାଣ୍ଠି ସବୁ ଲୁଟି ନେବେ । ଏହି ଯୋଜନା ଶାମବାବୁଙ୍କ ଯେଉଁ କକ୍ଷରେ ହେଉଥାଏ, ପୋଲିସ ଅଫିସରମାନେ ଏଥିପୂର୍ବରୁ ସେହି କକ୍ଷର କାନ୍ଥରେ ମାଇକ୍ରୋ ଟେପ୍‌ରେକର୍ଡର ସହିତ ମାଇକ୍ରୋ ଟ୍ରାନ୍ସମିଟରମାନ ସେମାନଙ୍କ ଅଜଣାରେ ପୋତି ଦେଇଥାନ୍ତି । ଶାମବାବୁଙ୍କ ସହିତ ଅପହରଣକାରୀମାନଙ୍କର ଯେଉଁସବୁ କଥାବାର୍ତ୍ତା ହେଉଥାଏ, ସେସବୁ ଜଣାପଡ଼ି ଯାଉଥାଏ ପୋଲିସ ଷ୍ଟେସନରେ ।

ଅପହରଣକାରୀମାନଙ୍କର ଯୋଜନା ଶୁଣିଲାପରେ ସଙ୍ଗେ ସଙ୍ଗେ ପୋଲିସ ଅଫିସରମାନଙ୍କ ସମ୍ମିଳନୀ ବସିଗଲା । ମିଷ୍ଟର ଦେଶାଇ ମଧ୍ୟ ସେହି ସମ୍ମିଳନୀରେ ଯୋଗ ଦେଲେ । କେତେକ ପୋଲିସ୍ ଅଫିସର କହିଲେ, ଅସାମାଜିକ ଲୋକମାନେ ଯେଉଁଦିନ ଶାନ୍ତାଦେବୀଙ୍କ କୋଠରିରେ ଡକାୟତି କରିବାକୁ ଆସିବେ, ସେହିଦିନ ସେମାନେ ଡକାୟତି କରୁଥିବାବେଳେ ସେମାନଙ୍କୁ ଆକ୍ରମଣ କରି ଧରି ନେବେ । କିନ୍ତୁ ମିଷ୍ଟର ଦେଶାଇଙ୍କ ଯୋଜନା ଥିଲା ଅନ୍ୟ ପ୍ରକାର । ତାଙ୍କ ମତ ହେଉଛି, ଏହା କଲେ ସେମାନେ ରାଗରେ ଦେବବାବୁଙ୍କୁ ହତ୍ୟା କରିପାରନ୍ତି ବା ଦେବବାବୁଙ୍କୁ

ପଣ ରଖି ପୋଲିସ ସହିତ ଖେଳି ପାରନ୍ତି । ଡକାୟତି କରୁଥିବା ଅପହରଣକାରୀମାନଙ୍କୁ ଧରି ପକାଇଲେ ମଧ୍ୟ ସେମାନଙ୍କ ସର୍ଦ୍ଦାରକୁ ଧରି ପାରିବେନି, କାରଣ ସେମାନଙ୍କ ସର୍ଦ୍ଦାର ଏହି ଡକାୟତିକୁ ସେଦିନ ହୁଏତ ଆସି ନ ପାରିଥାଏ । ମିଷ୍ଟର ଦେଶାଇଙ୍କ ଯୋଜନା ହେଉଛି ଡକାୟତିବେଳେ କାହାରିକୁ ଧରିବା ଦରକାର ନାହିଁ । ସେମାନେ ଲୁହାସିନ୍ଦୁକ ଖୋଲି ଗହଣାଗାଣ୍ଠି ନେଇଗଲାବେଳେ ଶାନ୍ତାଦେବୀଙ୍କୁ ମଧ୍ୟ ବନ୍ଦୀ କରି ସାଙ୍ଗରେ ଘେନିଯିବେ । ସେମାନେ ଶାନ୍ତାଦେବୀଙ୍କୁ ନେଇ ଦେବବାବୁ ଯେଉଁଠି ବନ୍ଦୀ ଅଛନ୍ତି, ସେଠି ରଖିବେ । ପୋଲିସ ଅଫିସରମାନେ ସେହି ସ୍ଥାନକୁ ଅଚାନକ ଆକ୍ରମଣ କରି ଦେବବାବୁ ଓ ଶାନ୍ତାଦେବୀଙ୍କୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଡକାୟତ ଦଳକୁ ସେମାନଙ୍କ ସରଦାର ସହ ସେଇଠି ଧରି ପକାଇବେ । ସେମାନେ ଯେଉଁ ସ୍ଥାନରେ ସାଧାରଣତଃ ରହନ୍ତି, ସେହି ସ୍ଥାନରେ ବା ତା' ଆଖପାଖରେ ସେମାନେ ଦେବବାବୁ ଓ ଶାନ୍ତାଦେବୀଙ୍କୁ ବନ୍ଦୀ ଅବସ୍ଥାରେ ନିଶ୍ଚୟ ରଖିବେ ।''

କେତେକ ପୋଲିସ ଅଫିସର ଯୁକ୍ତି ବାଢ଼ିଲେ, ''ସେମାନେ ଯଦି ତାହା ନ କରି ଅନ୍ୟ ଏକ ସ୍ଥାନରେ ଶାନ୍ତାଦେବୀଙ୍କୁ ବନ୍ଦୀ କରି ରଖନ୍ତି, ତେବେ ଦେବବାବୁଙ୍କୁ ଉଦ୍ଧାର କରିବା ଯୋଜନା ଫସର ଫାଟିଯିବ ।

ମିଷ୍ଟର ଦେଶାଇ ଯୁକ୍ତି ବାଢ଼ିଲେ, ''ନା, ତାହା ସେମାନେ କରିବେନି । ସେମାନଙ୍କର ଗୋପନୀୟ ସ୍ଥାନ ମାତ୍ର ଗୋଟାଏ ଥିବ । ଏକାଧିକ ଥିବନି । ଆଉ ଗୋଟାଏ ସ୍ଥାନ ରହିଲେ ଢେର୍ ଅସୁବିଧା, ଅଧିକ ବିଶ୍ୱସ୍ତ ଲୋକଙ୍କୁ ପ୍ରହରୀ ଭାବରେ ରଖିବାକୁ ପଡ଼ିବ । ଗୋପନୀୟ ସ୍ଥାନର ଗୋପନୀୟତା ଅଧାକୁ କମି ଆସିବ । ତା ଛଡ଼ା ଏକାଧିକ ନିରାପଦ ସ୍ଥାନ ପାଇବା ବି କଷ୍ଟକର । ତେଣୁ ଯେଉଁଠି ସେମାନେ ଦେବବାବୁଙ୍କୁ ରଖିଛନ୍ତି, ସେଇଠି ନେଇ ଶାନ୍ତାଦେବୀଙ୍କୁ ନିଶ୍ଚୟ ରଖିବେ । ସେହି ସ୍ଥାନ ମଧ୍ୟ ଏମିତି ହୋଇଥିବ ଯେ, ସେ ସ୍ଥାନର ଟେର୍ ପାଇବା ପୋଲିସ ପକ୍ଷରେ ମଧ୍ୟ କଷ୍ଟକର ହୋଇପଡ଼ିବ ।''

''ସେମାନେ ଶାନ୍ତାଦେବୀଙ୍କୁ ଘେନିଗଲେ ଆମେ ଦେବବାବୁଙ୍କ ଠିକଣା ପାଇବା କେମିତି ?'' ପୋଲିସ ଅଫିସରମାନେ ପଚାରିଲେ ।

''ଏଇ ଦେଖନ୍ତୁ, ଛୋଟ ଯନ୍ତ୍ରଟିଏ ମୁଁ ଆପଣମାନଙ୍କ ସମ୍ମୁଖରେ ଥୋଉଛି, ଏହା କ'ଣ ଜାଣନ୍ତି ? ଏହା ପୂରାପୂରି ଏକ ନୂଆ ଧରଣର ଯନ୍ତ୍ର । ଏହାର ନାଁ ହେଉଛି ମାଇକ୍ରୋ ରେଡ଼ାର ଭିଡିଓ ଟ୍ରାନ୍ସମିଟର । ଏହି ଯନ୍ତ୍ରଟିକୁ ଆମେ ଶାନ୍ତାଦେବୀଙ୍କ ଶରୀରରେ ଅସ୍ତ୍ରୋପଚାର କରି ଖଞ୍ଜିଦେବା । ସେମାନେ ଶାନ୍ତାଦେବୀଙ୍କୁ ହରଣଚାଳ କରି ଯେଉଁଠାକୁ ନେଉଥିବେ, ରେଡାର ସାହାଯ୍ୟରେ ସେ ସ୍ଥାନର ଦୃଶ୍ୟ ଆମ ଭିଡିଓ ପରଦାରେ ଆସି ପଡୁଥିବ । ସେମାନେ ଶାନ୍ତାଦେବୀଙ୍କୁ

ଯେଉଁସ୍ଥାନରେ ବନ୍ଦୀ କରି ରଖିବେ, ସେ ସ୍ଥାନର ରେଡାର ଫଟୋ ଆମ ଭିଡିଓ ମନିଟରରେ ପଡୁଥିବ । ସେମାନେ ଶାନ୍ତାଦେବୀଙ୍କୁ ନେଇ ଦେବବାବୁଙ୍କ କୋଠରିରେ ରଖିବେ କି ଆଉ କେଉଁଠି ରଖିବେ, ଆମେ ଆମ ଭିଡିଓ ମନିଟରରୁ ତାହା ଜାଣିପାରିବା ।

କିନ୍ତୁ ଆପଣ ଏହି ଯେଉଁ ଯନ୍ତ୍ରଟି ଦେଖାଉଛନ୍ତି, ଏହା କେମିତି କାର୍ଯ୍ୟ କରୁଛି ନ ଜାଣିଲେ ଏହି ଯନ୍ତ୍ର ଉପରେ ଆମର ଆସ୍ଥା ଆସିବ କେମିତି ? ଏହା ଯଦି ଠିକ୍ ବେଳେ କାମ ନ କଲା, ତେବେ ସବୁ ଗଲା ।''

''ନା, ସେ ଭୟ ମୋଟେ କରିବାର ନୁହେଁ । ଏହା ଏବେ ନୂଆ ହୋଇ ଜାପାନରେ ଉଦ୍ଭାବିତ ହୋଇଛି । ଏହା ବିକ୍ରୀ ଅବସ୍ଥାକୁ ଆସିପାରିନି । ଆସିବାକୁ ଆହୁରି ପାଞ୍ଚ ଛଅମାସ ଲାଗି ଯାଇପାରେ । ମୋର ଜଣେ ଜାପାନୀ ବନ୍ଧୁଙ୍କ ସହଯୋଗରେ ତାଙ୍କଠାରୁ ଧାର ସୂତ୍ରରେ ଏହାକୁ ଆଣିଛି । ଆମ କାମ ସରିଗଲେ ତାଙ୍କୁ ଫେରାଇଦେବି । ଏହା କେମିତି କାମ କରୁଛି ଆପଣମାନେ ଦେଖନ୍ତୁ ।''

ଏତକ କହି ସେହି ଯନ୍ତ୍ରଟିକୁ ଧରି ଜଣେ ପୋଲିସ ଅଫିସରଙ୍କୁ ସହର ଭିତରକୁ ବୁଲି ଯିବାକୁ କୁହାଗଲା । ସେ ଯନ୍ତ୍ରଟିକୁ ପକେଟରେ ରଖି ନିଜ ଗାଡ଼ିରେ ବାହାରିଗଲେ । ସେ କେଉଁ କେଉଁ ରାସ୍ତାଦେଇ କେଉଁ କେଉଁ ସ୍ଥାନକୁ ଯାଉଛନ୍ତି, ସେସବୁର ଏକ ଚଳଚ୍ଚିତ୍ର ଭିଡିଓ ସ୍କ୍ରିନ୍ ଉପରେ ପଡ଼ିଲା । ଏହି ଯନ୍ତ୍ରଟିର ଦକ୍ଷତା ଦେଖି ପୋଲିସ ଅଫିସରମାନେ ଆନନ୍ଦରେ ନାଚିବାକୁ ଲାଗିଲେ ।

ମିଷ୍ଟର ଦେଶାଇ ସେମାନଙ୍କର ଏହି ଯୋଜନା କଥା ଅତି ଗୋପନୀୟ ଭାବରେ ଶାନ୍ତାଦେବୀଙ୍କୁ ଜଣାଇଦେଲେ । ଅତି ଗୋପନୀୟ ଭାବରେ ଶାନ୍ତାଦେବୀଙ୍କୁ ଏକ କ୍ଲିନିକ୍‌କୁ ନେଇ ଅପରେସନ କରି ତାଙ୍କ ଦେହରେ ଏହି ଯନ୍ତ୍ରଟିକୁ ଖଞ୍ଜି ଦେଲେ । ଯନ୍ତ୍ରଟି କାର୍ଯ୍ୟ କରିବା ପାଇଁ ଏକ ମାଇକ୍ରୋବେଟେରୀ ମଧ୍ୟ ଯନ୍ତ୍ର ସହ ତାଙ୍କ ଶରୀର ଭିତରେ ପୋତାଗଲା । ବାହାରକୁ ଏସବୁ କିଛି ଜଣାପଡ଼ିବାର ଭୟ ନ ଥାଏ ।

× × × × ×

ରାତ୍ରର ମଧ୍ୟମ ପ୍ରହର । ସାରା ଶିଳ୍ପନଗରୀ ସୁପ୍ତ । ଚାରିଆଡ଼େ ନିର୍ଜନତାର ରାଜୁତି । ଦୁଆରେ ଖଟ୍ ଖଟ୍ ଆବାଜରେ ଶାନ୍ତାଦେବୀଙ୍କ ନିଦ ଚଟ୍‌କିନା ଭାଙ୍ଗିଗଲା । ଦେବବାବୁ ହରଣଚାଳ ହେବାଦିନୁ ତାଙ୍କୁ ରାତିରେ ଭଲ ନିଦ ହେଉ ନ ଥାଏ । ପାଖ ରୁମ୍‌ରେ ଶୋଇଛନ୍ତି ଦେବବାବୁଙ୍କ ରୂପ ଧାରଣ କରିଥିବା ଶାମ । ଶାମ ସେମାନଙ୍କ ଶତ୍ରୁଭାବରେ ଠିଆହେବା ଦିନଠାରୁ ନାନା ବିପଦର ଆଶଙ୍କା କରୁଥାନ୍ତି

ସେ । ତେଣୁ ଏ ପରିସ୍ଥିତିରେ ତାଙ୍କୁ ନିଦ ବା ହେବ କୁଆଡୁ ? ଦୁଆର ଖଟ୍ ଖଟ୍ ଆବାଜ ଶୁଣି ସେ ସଙ୍ଗେ ସଙ୍ଗେ ଯାଇ ଦୁଆର ଖୋଲିଲେ । ଦେଖିଲେ ଦୁଆରମୁହଁରେ ଦେବବାବୁ । ତାଙ୍କ ପଛରେ ଦୁଇ ଚାରିଜଣ ଲୋକ । ସେମାନଙ୍କୁ କାହାକୁ ଚିହ୍ନିଲାପରି ସେ ମନେ କଲେ ନାହିଁ । ହଠାତ୍ ସେମାନେ ତାଙ୍କ ଶୟନକକ୍ଷ ଦୁଆରମୁହଁରେ କାହିଁକି ?

ଶାନ୍ତାଦେବୀ ଦୁଆର ଖୋଲୁ ଖୋଲୁ ଦେବବାବୁ କହିଲେ, ''ଦେଖ ଶାନ୍ତା, ଗୋଟାଏ ଜରୁରୀ କାମ ପାଇଁ ତୁମକୁ ଉଠାଇବାକୁ ବାଧ ହେଲି । ତୁମେ ଟିକିଏ ତୁମ ଲୁହା ଆଲମାରି ଚାବି ଦେଲ । ମୋର ଗୋଟାଏ ହୀରାବସା ମୁଦି ସେଥିରେ ରହିଯାଇଛି, ନେବି ।''

ହୀରାବସା ମୁଦି ? ତୁମର ? ତୁମର ତ କେବେ ହୀରାବସା ମୁଦି ନ ଥିଲା । ହଠାତ୍ ଏ ରାତିଅଧରେ ତୁମ ମୁଣ୍ଡକୁ ଏ ଅଜବ୍ ଧାରଣା ପଶିଲା କେମିତି ? ମୋ ଜାଣିବାରେ ତ ତୁମର କେବେ ହୀରାମୁଦି ନ ଥିଲା । ଥିଲେବି, ମୋ ଲୁହା ଆଲମାରିକୁ ଏହା ଆସିବ କାହିଁକି ?''

''ହେଉ, ଚାବିକାଠିଟା ଆଣ ଦେଖିବା । ମୋର ମନେପଡୁଛି ଥିଲାଭଳିଆ ।''

''ସେମିତି ମୁଦି ତମେ କେବେ ରଖି ନାହଁ ।''

''ହେଉ, ଚାବିକାଠିଟା ଆଣ ଦେଖିବା । ମୁଁ ଦେଖି ଦେଇ ଚାଲିଯିବି ।''

ଶାନ୍ତାଦେବୀ ଜିଦ୍ ଧରିଲେ ଖୋଲିବେନି ।

ଏହି ସମୟରେ ହଠାତ୍ ଶାନ୍ତାଦେବୀଙ୍କର ମନେ ପଡ଼ିଗଲା ଦେଶାଇଙ୍କ କଥା । ଭାବିଲେ ଏମାନେ କ'ଣ ତାହାହେଲେ ସେହି ଅପହରଣକାରୀ ଦଳ ? ସେମାନଙ୍କ ଭିତରୁ ଜଣେ ଏକ ଧାରୁଆ ଛୁରୀ ବାହାର କରି ଛୁରୀକୁ ଏପଟସେପଟ କରୁଥାଏ । ଶାନ୍ତାଦେବୀ ଦେଖିଲେ ଆଉ ବାଧାଦେଇ ଲାଭ ନାହିଁ । ବାଧାଦେଲେ ବିପଦ । ସେ ସଙ୍ଗେ ସଙ୍ଗେ ଡ୍ରୟରରୁ ଚାବିକାଠି ଆଣି ଦେବବାବୁଙ୍କ ହାତକୁ ବଢ଼ାଇଦେଲେ । ଦେବବାବୁ ସଙ୍ଗେ ସଙ୍ଗେ ଲୁହା ଆଲମାରି ଖୋଲିଲେ । ଆଲମାରିରେ ଲକ୍ଷ ଲକ୍ଷ ଟଙ୍କାର ଯେଉଁ ସୁନାଗହଣା, ହୀରା, ମୋତି, ମାଣିକ୍ୟ ଯାହାସବୁ ଥିଲା ସେସବୁ ଧରି ଚାଲିଲେ । ଶାନ୍ତାଦେବୀ ଯଦି ପାଟି କରନ୍ତି, ତେବେ ଛୁରୀ ମାରି ତାଙ୍କୁ ଶେଷ କରିଦେବେ ବୋଲି ଧମକ ଦେଲେ । ଗହଣା ଘେନିଗଲାବେଳେ ସେମାନେ ଶାନ୍ତାଦେବୀଙ୍କ ପାଟିରେ ଲୁଗାବାନ୍ଧି, ଦୁଇହାତ ପଛକୁ ବାନ୍ଧିଦେଇ ଛୁରିକା ଭୟ ଦେଖାଇ ସେମାନଙ୍କ ସହିତ ଯିବାକୁ କହିଲେ । ଶାନ୍ତାଦେବୀ ବାଧହୋଇ ସେମାନଙ୍କ ପଛେ ପଛେ ଚାଲିଲେ । ନଅରର ଏକ ଛୋଟିଆ ଦୁଆର ଦେଇ

ସେମାନେ ବାହାରକୁ ଆସିଲେ । ବାହାରେ ଏକ କଳାରଙ୍ଗର କାର୍ ସେମାନଙ୍କୁ ଅପେକ୍ଷା କରିଥାଏ । ଶାନ୍ତାଦେବୀଙ୍କୁ ନେଇ ସେହି କାର୍‌ରେ ବସାଇବା ପୂର୍ବରୁ ତାଙ୍କର ଆଖି ଦୁଇଟିକୁ ବାନ୍ଧି ଦିଆଗଲା, ଯେମିତିକି ସେ ଜାଣିପାରିବେନି ତାଙ୍କୁ କେଉଁଠିକି ନିଆଯାଉଛି ।

× × × × ×

ଯେଉଁଦିନଠାରୁ ଶାନ୍ତାଦେବୀଙ୍କ ଶରୀରର ସେହି ଯନ୍ତ୍ରଟିକୁ ସ୍ଥାପନ କରାଗଲାଣି, ସେହିଦିନଠାରୁ ପ୍ରତିଦିନ ରାତ୍ରରେ ପୋଲିସ ଅଫିସରମାନେ ଶାନ୍ତାଦେବୀଙ୍କ ଉପରେ ଆଖି ରଖିଥାନ୍ତି, ଯେମିତିକି ତାଙ୍କ ଉପରକୁ କିଛି ଅଜଣାଭୟ ମାଡ଼ି ନ ଆସେ । ଶାନ୍ତାଦେବୀଙ୍କ ଉପରେ କିଛି ଆକ୍ରମଣ ହେଲେ କି ବଳାତ୍କାର ହେଲେ ଥାନାରେ ଥବା ଭିଡିଓ ମନିଟର ପରଦାରେ ସବୁ ଦେଖାଯାଉଥାଏ । ଶାନ୍ତାଦେବୀ ରାତିରେ ଖାଇପିଇ ଶୋଇଗଲା ପରେ ଅନ୍ୟ ପୋଲିସ ଅଫିସରମାନେ ଭିଡିଓ ମନିଟର ପାଖରୁ ଚାଲିଯାନ୍ତି, କିନ୍ତୁ ଜଣେ କନଷ୍ଟେବଲ ଜଗି ରହିଥାଏ, କାଳେ ରାତିରେ ତାଙ୍କ ଉପରେ କିଛି ଆକ୍ରମଣ ହେବ ।

ଗୋଟିଏ ଦିନ ରାତିରେ ମନିଟରକୁ ଜଗି ରହିଥିବା କନଷ୍ଟେବଲଟି ଟିକିଏ ଢୁଳାଇ ପଡ଼ିଥାଏ, ହଠାତ୍ ମନିଟରରେ କଥାବାର୍ତ୍ତା ହେଉଥିବାର ଶୁଣି ଚମକି ପଡ଼ିଲା । ସେ ଦେଖିଲା, ମନିଟରରେ ଶାନ୍ତାଦେବୀ, ତାଙ୍କ ସମ୍ମୁଖରେ ଦେବବାବୁ ଓ ଦେବବାବୁଙ୍କ ପଛଆଡ଼େ ଛୁରୀ ଧରିଥିବା ଲୋକ ଏସବୁ ଦେଖି କନଷ୍ଟେବଳଟି ଛାନିଆ । ସେ ଏଥିରୁ ଜାଣିନେଲା ଶାନ୍ତାଦେବୀଙ୍କୁ ହରଣଚାଳ କରିନେବା ପାଇଁ ଦୋଷୀମାନେ ପହଞ୍ଚିଗଲେ । ସେ ଆଉ ଲକ୍ଷ୍ୟ କରିବ କ'ଣ, ଦୌଡ଼ିଲା ଅନ୍ୟ ଅଫିସରମାନଙ୍କୁ ଡାକିବା ପାଇଁ । ସେମାନେ ସମସ୍ତେ ନିଦବାଉଳାରେ ଉଠି ମନିଟର ପାଖରେ ଜମା ହୋଇଗଲେ । ସେତେବେଳ ପର୍ଯ୍ୟନ୍ତ ଶାନ୍ତାଦେବୀ ଓ ଦେବବାବୁଙ୍କ ଭିତରେ ଯୁକ୍ତିତର୍କ ଚାଲିଥାଏ । ଦେବବାବୁଙ୍କ ପଛଆଡ଼େ ଛୁରୀ ଧରି ଠିଆ ହୋଇଥିବା ଲୋକକୁ ଚିହ୍ନିବାକୁ ସେମାନେ ଚେଷ୍ଟା କଲେ, କିନ୍ତୁ ତାଙ୍କ ମୁହଁ ପରିଷ୍କାର ଦିଶୁ ନ ଥିବାରୁ ଚିହ୍ନି ହେଉ ନ ଥାଏ । ସେହି ଲୋକମାନେ କିପରି ଛୁରୀ ଦେଖାଇ ଶାନ୍ତାଦେବୀଙ୍କଠାରୁ ଚାବିକାଠି ନେଇ ଲୁହା ଆଲମାରି ଖୋଲି ଗହଣାଗାଣ୍ଠି, ହୀରା, ମୋତି, ମାଣିକ୍ୟ ଆଦି ଯାହାଥିଲା ସେସବୁ କେମିତି ଘେନିଗଲେ ପୋଲିସ ଅଫିସରମାନେ ଦେଖି ପାରୁଥାନ୍ତି । ଶାନ୍ତାଦେବୀଙ୍କ ପାଟି ଓ ହାତ ଓ ପରେ ଆଖି ବାନ୍ଧି କେମିତି କାର୍‌ରେ ନେଲେ, ତାହା ରେଡ଼ାର ମନିଟରରେ ବେଶ୍ ପରିଷ୍କାର ଦିଶୁଥାଏ । ସେମାନେ ସହରର କେଉଁ କେଉଁ ରାସ୍ତାଦେଇ ଯାଇ ସମୁଦ୍ରକୂଳରେ ପହଞ୍ଚିଲେ, ତାହା ସେମାନେ ପରିଷ୍କାର ଦେଖିପାରୁଥାନ୍ତି ।

ସେମାନେ ସମୁଦ୍ରକୂଳରୁ ଗୋଟିଏ ଲଞ୍ଚରେ ଯାଇ କୂଳଠାରୁ କିଛିଦୂରରେ ଥିବା ଏକ ନିର୍ଜନ ଟାପୁରେ ପହଞ୍ଚିଲେ । ସେଠାରେ ଅପେକ୍ଷା କରିଥିବା ଆଉ ଏକ ଗାଡ଼ିରେ ଶାନ୍ତାଦେବୀ ଓ ଶାମବାବୁଙ୍କୁ ଗଛଲତା ଆଚ୍ଛାଦିତ ଏକ ନିର୍ଜନ ଭଙ୍ଗା ପରିତ୍ୟକ୍ତ କୋଠାକୁ ନେଲେ । ସେହି କୋଠାଟିକୁ ଚାରିଆଡୁ ଜଗୁଆଳିମାନେ ଜଗିଥାନ୍ତି । ଜଗୁଆଳୀମାନେ ସମସ୍ତେ ମାରଣାସ୍ତ୍ରରେ ସଜ୍ଜିତ । ପୋଲିସ ଅଫିସରମାନେ ଆଶ୍ଚର୍ଯ୍ୟ ହେଉଥାନ୍ତି, ଶାନ୍ତାଦେବୀଙ୍କୁ ତ ବନ୍ଦୀ କରିନେଲେ, ତାଙ୍କ ସହ ଶାମବାବୁଙ୍କୁ ବନ୍ଦୀ କରିବାର କାରଣ କଅଣ ? ଶାମବାବୁ ତ ସେମାନଙ୍କ ଦଳର ଲୋକ । ତାଙ୍କୁ ବନ୍ଦୀ କରି ରଖିବାର ଉଦ୍ଦେଶ୍ୟ କ'ଣ ହୋଇପାରେ ? ସମ୍ଭବତଃ ଅପହରଣକାରୀମାନଙ୍କ ନାୟକ ଶାମବାବୁଙ୍କ କାର୍ଯ୍ୟଦ୍ୱାରା ପ୍ରୀତ ନୁହେଁ । କେଉଁଠି କିଛି ଖିଲାପ ରହିଯାଇଛି ବୋଧହୁଏ ?

ଶାନ୍ତାଦେବୀଙ୍କୁ ନେଇ ଦେବବାବୁ ଯେଉଁ କୋଠରିରେ ବନ୍ଦୀ ହୋଇଥିଲେ ଠିକ୍ ସେହି କୋଠରିରେ ଛାଡ଼ିଦେଇ ଦୁଆର ବନ୍ଦ କରି ଆଣିଲେ । ଦୁଆର ବନ୍ଦ କରିବା ପୂର୍ବରୁ ଶାନ୍ତାଦେବୀଙ୍କ ହାତ ମୁହଁ ଓ ଆଖିରୁ ବନ୍ଧନ ଖୋଲିଦେଲେ । ନିଜ ସାମନାରେ ହଠାତ୍ ସ୍ୱାମୀଙ୍କୁ ଦେଖି ଶାନ୍ତାଦେବୀ କୋହ ସମ୍ଭାଳି ନ ପାରି ତାଙ୍କୁ କୁଣ୍ଢାଇପକାଇ କାନ୍ଦିବାକୁ ଲାଗିଲେ । ସେତେବେଳକୁ ଦେବବାବୁଙ୍କ ଆଖିରେ ଲୁହ ଭରିଗଲାଣି । ନିଜ ସାମନାରେ ନିଜ ସ୍ତ୍ରୀଙ୍କୁ ଏମିତି ଦୟନୀୟ ଅବସ୍ଥାରେ ଦେଖିବେ ବୋଲି ସେ କେବେ ଆଶା କରି ନ ଥିଲେ । ଶାନ୍ତାଦେବୀଙ୍କୁ କଅଣ ପାଇଁ ହରଣଚାଳ କରାଯାଇଛି ଜାଣିବା ପାଇଁ ତାଙ୍କ ମୁହଁକୁ ଉତ୍ସୁକ ହୋଇ ଅନାଇ ରହିଲେ । କୋହ ସମ୍ବରଣ କରି ସାରିବାପରେ ଶାନ୍ତାଦେବୀ କ'ଣ କ'ଣ ଘଟଣା ଏହା ଭିତରେ ଘଟିଯାଇଛି ସବୁ ଟିକିନିଖି ବର୍ଣ୍ଣନା କରିଗଲେ । ଶାନ୍ତାଦେବୀ ଅନ୍ଧପୁଟୁଳି ବନ୍ଧା ଅବସ୍ଥାରେ ଜାଣିପାରିଥିଲେ, ତାଙ୍କ ସହିତ ଶାମ ମଧ୍ୟ ବନ୍ଦୀ ହୋଇ ଆସିଛି ବୋଲି । କିନ୍ତୁ କ'ଣ ପାଇଁ ଶାମକୁ ମଧ୍ୟ ତାଙ୍କ ସହିତ ବନ୍ଦୀ କରି ଅଣାଯାଇଛି, ତା'ର କାରଣ ସେମାନେ ହଠାତ୍ ଖୋଜି ପାଇଲେନି । ଶାମବାବୁ ତ ସେମାନଙ୍କ ପକ୍ଷର ଲୋକ, ତାଙ୍କରି ପାଇଁ ତ ସେମାନେ ତାଙ୍କ ପରିବାର ଭିତରକୁ ପଶି ଏସବୁ ଧ୍ୱଂସ ଓ ଲୁଟତରାଜ ଚଳାଇବାକୁ ସକ୍ଷମ ହୋଇପାରିଲେ, ହଠାତ୍ ତାଙ୍କୁ ବନ୍ଦୀ କରି ଆଣିବାର କାରଣ କ'ଣ ହୋଇପାରେ ?

ଶାମର ବନ୍ଦୀ ହେବା ଖବରରେ ଦେବବାବୁଙ୍କ ଚିନ୍ତାର ଖିଅ ଅଲଗା ବାଟ ଧରିଲା । ବର୍ତ୍ତମାନ ସ୍ପଷ୍ଟ ଜଣାପଡ଼ିଲା ଶାମ ଏହି ଅପହରଣ ମୂଳରେ ଥିଲେହେଁ ସେ ଏହି ଦଳର ନାୟକ ନୁହେଁ । ଦଳର ନାୟକ ଆଉଜଣେ କେହି, ସେ ତାହା ହାତରେ କ୍ରୀଡ଼ନକ ମାତ୍ର ।

ଶାମବାବୁଙ୍କୁ ପାଖ କୋଠରିରେ ବନ୍ଦୀ କରି ରଖାଯାଇଥାଏ । ଶାମବାବୁଙ୍କୁ କେତେଜଣ ଲୋକ ବାରମ୍ବାର ପ୍ରଶ୍ନ କରୁଥିବାର ସେମାନେ ଶୁଣିପାରୁଥିଲେ । ସମୟେ ସମୟେ ପ୍ରହାର ମଧ୍ୟ ଚାଲିଥାଏ ଶାମ ଉପରେ । ଦେବବାବୁ ଅନୁମାନ କରିନେଲେ, ସମ୍ଭବତଃ ସେମାନେ କୋମ୍ପାନୀର ଟ୍ରେଜେରିରୁ ଆଶାନୁରୂପ ଟଙ୍କା ପାଇ ନ ପାରିବାରୁ ଶାମବାବୁ ଟଙ୍କାତକ ନିଜ ଅକ୍ତିଆରରେ ରଖିନେବା ସନ୍ଦେହ କରି ସେମାନେ ଶାମବାବୁଙ୍କୁ ପ୍ରହାର କରି ଚାଲିଥାନ୍ତି । ଶାମବାବୁ ଯେତେ ବୁଝାଇଲେହେଁ ଯେ କୋମ୍ପାନୀ ଟ୍ରେଜେରିରେ ସାମାନ୍ୟ ଅଳ୍ପ କେତେକ ଟଙ୍କା ବ୍ୟତୀତ ସବୁ ଟଙ୍କା ବେଙ୍କରେ ଥାଏ, ସେମାନେ ବୁଝୁ ନ ଥାନ୍ତି । ସବୁ ମିଲ ମାଲିକଙ୍କ ଟ୍ରେଜେରିରେ କୋଟି କୋଟି ଟଙ୍କା ଗଚ୍ଛିତ ଥିଲାବେଳେ ୟାଙ୍କ ଟ୍ରେଜେରିରେ କେମିତି କିଛି ନାହିଁ, ସେମାନେ ବିଶ୍ୱାସ କରିବେ ବା କେମିତି ? ସେମାନଙ୍କ ସନ୍ଦେହ ଶାମବାବୁ ପ୍ରକୃତ କଥା ପ୍ରକାଶ କରିବାକୁ ପଛାଉଛନ୍ତି, କାରଣ ସେ ସମସ୍ତ ଟଙ୍କା ନିଜେ ମାରିନେବାକୁ ପ୍ରସ୍ତୁତ ।

ବେଳକୁବେଳ ଶାମବାବୁଙ୍କ ଉପରେ ଅତ୍ୟାଚାର ବଢ଼ି ଚାଲିଲା । ଥରକୁଥର ପ୍ରହାର ଫଳରେ ସେ ବେଳେବେଳେ ଅଚେତ ହୋଇ ପଡୁଥାନ୍ତି । 'ମୋତେ ଆଉ ମାର ନାହିଁ', 'ମୋତେ ଆଉ ମାର ନାହିଁ' ଏହିଭଳି ଆକୁଳକ୍ରନ୍ଦନ ଶାନ୍ତାଦେବୀଙ୍କ କାନରେ ପଡ଼ି ଆଖିରେ ଲୁହ ଆଣୁଥାଏ । ଦେବବାବୁ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସି ରହିଥାନ୍ତି । ସେ ବା ଏଭଳି ଅବସ୍ଥାରେ କ'ଣ କରି ପାରିବେ ? ସେମାନେ ସମସ୍ତେ ତ ସେହି ଅପହରଣକାରୀମାନଙ୍କ ଆୟତ୍ତରେ । କିଏ ଜାଣେ ସେମାନଙ୍କ ଉପରେ ସେହିଭଳି ଅତ୍ୟାଚାର ହେବନି ବୋଲି ?

ଶାମବାବୁଙ୍କ ଉପରେ ପ୍ରହାର ଚାଲିଥାଏ । ସେ 'ମାର ନାହିଁ, ମାର ନାହିଁ, ବୋଲି କ୍ରନ୍ଦନ କରି ଯେତେ ଚିତ୍କାର କରୁଥାନ୍ତି କେହି ଶୁଣୁ ନ ଥାନ୍ତି । ଅନ୍ୟମାନେ ଓଲଟି କହୁଥାନ୍ତି, "ତା ନାକଦଣ୍ଡି ଫଟାଇଦେ ବେ, ସେ ବଳେ ସତକଥା କହିବ । ଶଳା ବସିଛି, ଗୋସାଇଁବାପର ସବୁ ଟଙ୍କା ମାରିନେଇ କୋଟିପତି ହୋଇଯିବ ।"

ଆଉଜଣେ କହୁଥାଏ, "ତା ଦେହରେ ଇଲେକ୍‌ଟ୍ରିକ୍ କରେଣ୍ଟ ଲଗାଇଲେ ଶଳା ସତକଥା କହିବ ।" ଆଉଜଣେ କହୁଥାଏ, "ଇଲେକ୍‌ଟ୍ରିକ୍ କରେଣ୍ଟ ଆଣ, ଖାଲି କହିଲେ କ'ଣ ହେବ ?"

ଏହି ସମୟରେ ହଠାତ୍ ପୋଲିସର ଘନ ଘନ ହୁଇସିଲ ବାଜି ଉଠିଲା । ସେଥିସହ ବନ୍ଧୁକର ଫାଙ୍କା ଆବାଜ । ହଠାତ୍ ଏ ନିର୍ଜନ ସ୍ଥାନକୁ ପୋଲିସ କିପରି ଆସିଲା, ଜାଣି ନ ପାରି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସମ୍ଭବତଃ

ଶାମବାବୁ ପୋଲିସକୁ ଖବର ଦେଇଛି ବୋଲି ସନ୍ଦେହ କରି ଶାମବାବୁଙ୍କ ଉପରେ ପ୍ରହାରର ପରିମାଣ ବଢ଼ାଇଦେଲେ । ଏହାପରେ ଶାମବାବୁଙ୍କ ପାଖରୁ କିଛି ଚିତ୍କାର ଶୁଣାଗଲା ନାହିଁ । ସେତେବେଳକୁ ସମ୍ଭବତଃ ଶାମବାବୁ ଅଚେତ ହୋଇ ତଳେ ପଡ଼ିଗଲେଣି । ଜଣେ କହୁଥାଏ, ‘‘ଦେଖିଲୁ ଦେଖିଲୁ, ଶଳାଟା ମରିଗଲା ନା କଅଣ ।’’

‘‘ନା, ନା, ମରି ନାହିଁ । ଆମେ ଚାଲିଗଲା ପରେ ଶଳା ବଞ୍ଚି ଯାଇପାରେ ।’’ ଅନ୍ୟମାନେ ପଳାଇ ଯାଉ ଯାଉ କହିଲେ ।

‘‘ଆଁ, ବଞ୍ଚି ଯାଇପାରେ ?’’ ଅପହରଣକାରୀଙ୍କ ସର୍ଦ୍ଦାର ପଳାଇ ଯାଉ ଯାଉ ହଠାତ୍ ଠିଆ ହୋଇଯାଇ ପଚାରିଲା । ‘‘ବଞ୍ଚିଗଲେ ତ ଆମ ପ୍ରତି ବିପଦ ? ସେ ଆମକୁ ଧରାଇ ଦେଇପାରେ । ଏହାପରେ ସଙ୍ଗେ ସଙ୍ଗେ ପିସ୍ତଲର ଗୋଟାକ ପରେ ଗୋଟାଏ ଦୁଇଟା ଆବାଜ, ତା’ପରେ ସବୁ ଶୂନ୍‌ଶାନ ।

ସେମାନେ ସମସ୍ତେ ତାକୁ ଛାଡ଼ି ତରତର ହୋଇ ଭୂମିତଳ ସୁଡ଼ଙ୍ଗବାଟେ ସମୁଦ୍ର ଭିତରକୁ ପଳାଇବାକୁ ଭୂମିତଳ କକ୍ଷରେ ପ୍ରବେଶ କଲେ । ଭୂମିତଳ କକ୍ଷରେ ସେମାନେ ଯେଉଁ ଲୁଟି କରିଥିବା ଧନରତ୍ନ, ଗହଣାଗାଣ୍ଠି ସବୁ ଜମା କରିଥିଲେ ସେସବୁକୁ ନେଇ ଏକ ବୁଡ଼ାଜାହାଜରେ ବସି ସୁଡ଼ଙ୍ଗ ଭିତରୁ ସମୁଦ୍ର ଅଭ୍ୟନ୍ତରକୁ ପଳାଇବା ପାଇଁ ବୁଡ଼ାଜାହାଜରେ ବସିଲେ ।

ରେଡ଼ାରଚାଳିତ ଭିଡିଓ ମନିଟରରେ ପୋଲିସ ଅଫିସରମାନେ ସବୁ ଦେଖିପାରି ସେମାନେ ବନ୍ଦୀ ହୋଇଥିବା ସ୍ଥାନଟି କେଉଁଠି ଜାଣିପାରିଥିଲେ । ସେମାନେ ଖୁବ୍ ସତର୍କତା ସହିତ ସେହି ନିର୍ଜନ ସ୍ଥାନକୁ ଯାଇ ବନ୍ଦୀଥିବା ଗୃହକୁ ଚାରିଆଡୁ ଘେରାଉ କରିଗଲେ । ସେମାନଙ୍କ ଧାରଣା, ସେମାନେ ଅପହରଣକାରୀ ଦଳର ନେତା ସମେତ ସମସ୍ତଙ୍କୁ ଧରିପାରିବେ ଓ ସେଥିସହ ଦେବବାବୁ ଓ ଶାନ୍ତାଦେବୀଙ୍କୁ ମଧ ଉଦ୍ଧାର କରିପାରିବେ । ଭିଡିଓ ମନିଟରରେ ସେମାନେ ସ୍ଥାନଟିକୁ ଦେଖି ଅନୁମାନ କରି ନେଇଥିଲେ ସ୍ଥାନଟି ପ୍ରକୃତରେ କେଉଁ ଜାଗା । ସେମାନେ ଯେଉଁ ପରିତ୍ୟକ୍ତ ଗୃହଟିରେ ଆଶ୍ରୟ ନେଇଥିଲେ, ସେହି ପରିତ୍ୟକ୍ତ ଗୃହ ସମ୍ବନ୍ଧରେ ପୋଲିସର ପୂର୍ବରୁ ଧାରଣା ଥିଲା । ଏକାଧିକ ଡକାୟତ ଦଳ ଏହି ପରିତ୍ୟକ୍ତ କୋଠାରୁ ଧରା ହେବାଫଳରେ ଘର ଭିତରର ଗଢ଼ଣ ଗୋପନୀୟତା ଆଦି ସବୁ ପୋଲିସକୁ ଜଣାଥିଲା । ପୋଲିସ ଅଫିସରମାନେ ଆଗରୁ ଅନୁମାନ କରି ନେଇଥିଲେ, ସେମାନେ ଯଦି ଦୋଷୀମାନଙ୍କୁ ବାହାରୁ ଘେରାଉ କରନ୍ତି, ତେବେ ସେମାନେ ସୁଡ଼ଙ୍ଗ ମଧଦେଇ ବୁଡ଼ାଜାହାଜ ସାହାଯ୍ୟରେ ସମୁଦ୍ର ଅଭ୍ୟନ୍ତରକୁ ଖସି ଯାଇପାରନ୍ତି । ସେମାନେ ଏହି ଆଶଙ୍କା କରି ସ୍ଥାନଟିକୁ ଘେରାଉ କରିବା ପୂର୍ବରୁ

ସେନାବାହିନୀଠାରୁ ଗୋଟିଏ ବୁଡ଼ାଜାହାଜ ଆଣି ସମୁଦ୍ରକୁ ଲାଗିଥିବା ସୁଡ଼ଙ୍ଗର ଦ୍ୱାରଠାରେ ଜଗି ରହିଥିଲେ । ଅପହରଣକାରୀ ଦଳ ଭୂମିତଳ ସୁଡ଼ଙ୍ଗ ଦେଇ ଯେମିତି ସମୁଦ୍ରକୁ ବାହାରିଛନ୍ତି, ପୋଲିସବାହିନୀ ସେମାନଙ୍କୁ ଧରି ପକାଇ ଆୟତ୍ତ କରିନେଲେ । କିଛି ସମୟ ଧରି ସେମାନଙ୍କ ଭିତରେ ଖଣ୍ଡଯୁଦ୍ଧ ଓ ଗୋଳା ବିନିମୟ ଚାଲିଥିଲା । କିନ୍ତୁ ଶକ୍ତିଶାଳୀ ପୋଲିସବାହିନୀ ଆଗରେ ସେମାନେ ବା କେତେ ମାତର । କିଛି ସମୟ ଖଣ୍ଡଯୁଦ୍ଧ ଚାଲିବାପରେ ସେମାନେ ସମସ୍ତେ ଆତ୍ମସମର୍ପଣ କରିବାକୁ ବାଧ ହେଲେ ।

ପୋଲିସବାହିନୀ ସେହି ଦୋଷୀମାନଙ୍କୁ ଓ ସେମାନେ ଲୁଟି ନେଇଥିବା ଧନରତ୍ନ ସହ ସେହି ଭୂମିତଳ ସୁଡ଼ଙ୍ଗ ଦେଇ ସେହି ପରିତ୍ୟକ୍ତ ପ୍ରାସାଦର ଭୂମିତଳ କକ୍ଷକୁ ଆସିଲେ । ସେଠାରୁ ଉପରକୁ ଆସି ଦେବବାବୁ ଓ ଶାନ୍ତାଦେବୀଙ୍କୁ ମୁକୁଳାଇଲେ ।

ଶାମବାବୁ କେଉଁଠି ଖୋଜିଲାରୁ ଆରଘରେ ଶାମବାବୁ ମରି ପଡ଼ିଥିବାର ଦେଖାଗଲା । ତାଙ୍କ ମୁହଁ ଓ ନାକଦଣ୍ଡି ଫାଟି ରକ୍ତ ବୋହୁଛି । ଛାତି ଓ ପେଟରେ ଗୁଳିର ଚିହ୍ନ । କ୍ଷତ ସ୍ଥାନରୁ ରକ୍ତ ବାହାରି ଚଟାଣରେ ଜମାଟ ବାନ୍ଧି ଯାଇଛି । ଶାମର ମୃତ ଅବସ୍ଥା ଦେଖି ଶାନ୍ତାଦେବୀ ଧୈର୍ଯ୍ୟ ଧରି ରହି ପାରିଲେନି । ମୃତ ଶରୀର ଉପରେ 'ଶ୍ୟାମ' 'ଶ୍ୟାମ' କହି ଲୋଟି ପଡ଼ିଲେ ।

ଶାମର ମୃତ ଶରୀରକୁ ଧରି ଯେତେବେଳେ ଦେବବାବୁ ଓ ଶାନ୍ତାଦେବୀ ନିଜ ଘରେ ଆସି ପହଞ୍ଚନ୍ତି, ଦେଖନ୍ତି ତ ପୁଅ ରାମ ଓ ବୋହୂ ବିଦେଶ ଭ୍ରମଣରୁ ଠିକ୍ ସେତିକିବେଳେ ଫେରି ଘରେ ଆସି ପହଞ୍ଚୁଛନ୍ତି । ଶାମର କ'ଣ ହେଲା, ଦେଖିବା ପାଇଁ ସେମାନେ ଦୌଡ଼ିଯାଇ ଶାମର ମୃତଦେହ ଦେଖି ତା' ମୃତଦେହ ଉପରେ ''ହା ଶାମ'', ''ହା ଶାମ'' କହି ଲୋଟି ପଡ଼ିଲେ ।





ଲେଖକ କଲିକତା ବିଶ୍ୱବିଦ୍ୟାଳୟର ପ୍ରେସିଡେନ୍ସି କଲେଜରୁ ଏମ୍.ଏସ୍‌ସି. ଡିଗ୍ରୀ ଲାଭ କରି ରେଭେନ୍ସା କଲେଜରେ ୧୯୪୮ ମସିହାରେ ରସାୟନ ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି ।

ମୌଳିକ ଗବେଷଣା କରି ୧୯୫୬ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରି ଭାରତର ଜଣେ ଶ୍ରେଷ୍ଠ ଗବେଷକ ଭାବରେ ୧୯୬୦ ମସିହାରେ ସର୍ବଭାରତୀୟ ସ୍ତରରେ ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ କେମିଷ୍ଟ୍ସ ଦ୍ୱାରା 'କୁପର୍ ସ୍ମୃତି ସ୍ୱର୍ଣ୍ଣପଦକ' ପ୍ରାପ୍ତ ହୋଇଥିଲେ । ତାହାପରେ ଯୁକ୍ତରାଷ୍ଟ୍ର ଆମେରିକାର ସୁବିଖ୍ୟାତ ବ୍ରେଣ୍ଡାଇସ୍ ବିଶ୍ୱବିଦ୍ୟାଳୟରୁ 'ପୋଷ୍ଟ-ଡକ୍ଟରାଲ ରିସର୍ଚ୍ଚ ଆସୋସିଏଟ୍' ଭାବରେ ନିଯୁକ୍ତି ପାଇ ସପରିବାର ଆମେରିକା ଯାଇଥିଲେ । ଲେଖକ ୧୯୬୧ ମସିହାଠାରୁ ୧୯୬୩ ମସିହା ପର୍ଯ୍ୟନ୍ତ ଆମେରିକାରେ ଅବସ୍ଥାନ କରି ଡି. ଏନ୍. ଏ. ଉପରେ ଗବେଷଣା ଚଳାଇଥିଲେ । ଆମେରିକାରେ ଅବସ୍ଥାନ କାଳରେ ସେ ହାରଭାର୍ଡ୍, ଏମ୍.ଆଇ.ଟି., କଲମ୍ବିଆ, ପ୍ରିନ୍‌ସଟନ୍, ଫିଲାଡେଲ୍‌ଫିଆ, ପିଟସ୍‌ବର୍ଗ, ଚିକାଗୋ ଆଦି ପୃଥିବୀ-ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟମାନ ପରିଦର୍ଶନ କରିବାର ସୁଯୋଗ ପାଇଥିଲେ । ଆମେରିକାରୁ ଫେରିବା ବାଟରେ ସେ ଲଣ୍ଡନ, କେମ୍ବ୍ରିଜ୍, ମିଉନିକ୍, ରୋମ୍ ଆଦି ଇଉରୋପର ପୃଥିବୀ-ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟମାନ ପରିଦର୍ଶନ କରିଥିଲେ । ୧୯୭୪ ମସିହାରେ ସେ ଶ୍ରେଷ୍ଠ ଲୋକପ୍ରିୟ ବିଜ୍ଞାନ-ଲେଖକ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲେ ।

୧୯୭୩ ମସିହାରେ ରେଭେନ୍ସା କଲେଜରେ ରସାୟନ ବିଭାଗର ପ୍ରୋଫେସର, ୧୯୭୮ ମସିହାରେ ମୁଖ୍ୟ ପ୍ରୋଫେସର ଭାବରେ ନିଯୁକ୍ତି ପାଇଥିଲେ । ଅଦ୍ୟାବଧି ସେ ୮୦ରୁ ଊର୍ଦ୍ଧ୍ୱ ବିଜ୍ଞାନ ପୁସ୍ତକ ରଚନା କରି ସାରିଲେଣି ।

ବିଦ୍ୟାପୁରୀ
ବାଲୁବଜାର, କଟକ-୨